# ଅନନ୍ୟ ଅନ୍ୱେଷା

(ପ୍ରବନ୍ଧ ସଂକଳନ)

**ଡକ୍ଟର୍ ଫଣୀନ୍ଦ୍ର ଭୂଷଣ ନନ୍ଦ**

ପ୍ରକାଶକ :

**ଅଗ୍ନି**

ପ୍ଲଟ ନଂ-୧୦୪୬ ଡି, ଚଣ୍ଡିମାତା କଲୋନି,
ରସୁଲଗଡ଼, ଭୁବନେଶ୍ୱର-୧୦

ପ୍ରଥମ ସଂସ୍କରଣ : ମାର୍ଚ୍ଚ - ୨୦୧୧

ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ଚନ୍ଦ୍ର ପତି

ମୂଲ୍ୟ : ୧୪୦ଟଙ୍କା

**ANANYA ANWESHA**

by **Dr. Fanindra Bhusan Nanda**

Publisher :
**Agni**
Plot No-1046 D, Chandimata Colony,
Rasulgarh, Bhubaneswar-10

First Edition :
March - 2011

Printed at
Apurba Off-Set,
Bhubaneswar-751 010

Cover Design :
Kshirod C. Pati

**Price : Rs.140 /-(One Hundred Forty only)**

*Digitized by srujanika@gmail.com*

# ମୁଖଶାଳା

ଏଠି ଉପସ୍ଥାପିତ ସନ୍ଦର୍ଭ ସମୂହ ଏକ ଏକ ବିଶେଷ ମୁହୂର୍ତ୍ତର ସର୍ଜନା । ଓଡ଼ିଆ ସାହିତ୍ୟର ପ୍ରତ୍ନ ସମ୍ପଦକୁ ଖୋଜିଲାବେଳେ ଏକ ଅନାହତ ଆକର୍ଷଣ ମୋତେ ସୁଦୂରକୁ ଟାଣେ । ସର୍ଜନା ଓ ଅନ୍ୱେଷାର ମୋହାବିଷ୍ଟ ମୁହୂର୍ତ୍ତରେ ପ୍ରାଚୀନ ପତ୍ରପତ୍ରିକା ପୃଷ୍ଠାରେ ସଂରକ୍ଷିତ ବିଶେଷ ଆଲେଖ୍ୟ ସବୁ ମୋତେ ଆହ୍ଲାଦିତ କରନ୍ତି । ଏହି ଆହ୍ଲାଦକର ମାନସିକ ସ୍ଥିତି ଆଲେଖ୍ୟ ଅନ୍ତରାଳର ପୃଷ୍ଠଭୂମିକୁ ଖୋଜିବାକୁ ଲାଗେ । ଖୋଜିବାର ଏହି ଅନନ୍ୟ ପ୍ରେରଣା ଭିତରୁ ସୃଷ୍ଟି ହୋଇଛି ଗୋଟିଏ ପରେ ଗୋଟିଏ ଆଲୋଚନା । ଅନ୍ୱେଷଣ ମାଧ୍ୟମରେ ଅନେକ ଅନାଲୋଚିତ ପ୍ରତିଭା ଏବଂ ତାଙ୍କର ସୃଷ୍ଟିକର୍ମ ଲୋକଲୋଚନକୁ ଆସିଛି । ପତ୍ରପତ୍ରିକା ପୃଷ୍ଠାରେ ଥିବା ଅଜ୍ଞାତ ତଥ୍ୟ ସବୁ ଆବିଷ୍କୃତ ହୋଇଛି । ଏହି ସାରସ୍ୱତ ଅନ୍ୱେଷଣ ପ୍ରକ୍ରିୟା ୧୯୮୦ରୁ ଏଯାବତ ଜାରି ରହିଛି । ଅନ୍ୱେଷଣ ମାଧ୍ୟମରେ କିଛି ପାଇବାର ଅମୃତ ପୁଲକ ସୃଷ୍ଟି କରିଛି ଏହି ଆଲୋଚନା ସମୂହକୁ । ଆଲୋଚନାଗୁଡିକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଏବଂ ଅଶେଷ ପାଠକୀୟ ଆଦୃତିପ୍ରାପ୍ତ । ପାଠକମାନଙ୍କ ଆଗ୍ରହକୁ ସମ୍ମାନ ଜଣାଇ ସେମିତି କିଛି ଆଲୋଚନାକୁ ଏକତ୍ରିତ କରି 'ଅନନ୍ୟ ଅନ୍ୱେଷା'ର ପରିକଳ୍ପନା ।

ଏହି ପୁସ୍ତକ ପ୍ରକାଶନର ଶୁଭ ଅବସରରେ ଯେଉଁ ପତ୍ରିକାଗୁଡିକ ଏହି ସବୁ ଆଲୋଚନାକୁ ସ୍ଥାନ ଦେଇଥିଲେ ସେହି ପତ୍ରିକାମାନଙ୍କର ସମ୍ପାଦକଙ୍କୁ ସ୍ମରଣ କରୁଛି ଏବଂ ଆଶା ରଖୁଛି ଏହି ସଂକଳନରେ ସଂକଳିତ ମହନୀୟ ସ୍ରଷ୍ଟାମାନଙ୍କ ଆଲୋଚନା ମାଧ୍ୟମରେ ତାଙ୍କର ସୃଜନଶୀଳ ଭିତ୍ତି ଓ ବିଭୂତି ପୁଣିଥରେ ପ୍ରତିଷ୍ଠିତ ହେବ ଓଡ଼ିଆ ସାହିତ୍ୟରେ । ଓଡ଼ିଆ ସାହିତ୍ୟର ଅଜ୍ଞାତ ଅଧ୍ୟାୟ ସବୁ ପୁଣିଥରେ ଆବିଷ୍କୃତ ହେବ ଏବଂ ପୂର୍ଣ୍ଣାଙ୍ଗ ଓଡ଼ିଆ ସାହିତ୍ୟର ଇତିହାସ ରଚନାର ପଥ ସୁଗମ ହେବ । ଅତୀତର ଭସ୍ମ ତଳୁ ଓଡ଼ିଆ ପାଠକ ନିଜର ଅସ୍ମିତାକୁ ଖୋଜି ପାଇବ ।

'ଅନନ୍ୟ ଅନ୍ୱେଷା'ର ପ୍ରକାଶନ ମୁହୂର୍ତ୍ତରେ ଏଥିପାଇଁ ପ୍ରେରଣା ଯୋଗାଇଥିବା କବି, ଗାଳ୍ପିକ ଓ ପ୍ରାବନ୍ଧିକ ଶ୍ରୀଯୁକ୍ତ ନକୁଳଚନ୍ଦ୍ର ସାହୁଙ୍କୁ ତାଙ୍କର ଅନବଦ୍ୟ ଉପଦେଶ ପାଇଁ ପ୍ରଣାମ କରୁଛି । ଓଡ଼ିଆ ସାହିତ୍ୟର ଅନେକ ଅନାଲୋକିତ ପ୍ରସଙ୍ଗକୁ ଅନ୍ୱେଷଣ କଲାବେଳେ ବୁଦ୍ଧିଦୀପ୍ତ ଅଗ୍ରଜ ଗବେଷକ ପ୍ରଫେସର ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ, ବିଶିଷ୍ଟ କବି ବ୍ରଜନାଥ ରଥ, ଅଧ୍ୟାପକ ଶ୍ରୀ ଦେବେନ୍ଦ୍ର କୁମାର ଦାଶ ଏବଂ ଡକ୍ଟର ଶ୍ରୀ ଗୌରାଙ୍ଗଚରଣ

Digitized by srujanika@gmail.com

ଦାଶଙ୍କ ମାର୍ଗଦର୍ଶନ ମୋତେ ଉଚିତ ପଥ ପ୍ରଦର୍ଶାଇଛି । ଓଡ଼ିଆ ଗବେଷଣା କ୍ଷେତ୍ରରେ ଏକ ରୁଚିପୂର୍ଣ୍ଣ ଗବେଷଣାର ମାର୍ଗ ପ୍ରଶସ୍ତ କରିଥିବା ଏହି ସାରସ୍ୱତ ତ୍ରୟୀଙ୍କ ମୋ ପ୍ରତି ସ୍ନେହ ଓ ସଦିଚ୍ଛାକୁ ଭୂମିଷ୍ଠ ପ୍ରଣାମ କରୁଛି ।

ପାଣ୍ଡୁଲିପି ଓ ଅକ୍ଷର ସଜ୍ଜାରେ ପରମ ଆଗ୍ରହ ପ୍ରକାଶ କରିଥିବା ବନ୍ଧୁ ଶ୍ରୀ ଆଶୁତୋଷ ଲେଙ୍କାଙ୍କ ଉଦ୍ୟମକୁ ସାଧୁବାଦ ଜଣାଉଛି । ସମ୍ଭ୍ରାନ୍ତ ପ୍ରକାଶନ ସଂସ୍ଥା ଅପୂର୍ବାର ସତ୍ତ୍ୱାଧିକାରୀ ବନ୍ଧୁ କ୍ଷୀରୋଦ ଚନ୍ଦ୍ର ପତି ଏହି ପୁସ୍ତକ ପ୍ରକାଶନ ପାଇଁ ସ୍ୱେଚ୍ଛାପ୍ରଣୋଦିତ ଆଗ୍ରହ ପ୍ରକାଶ କରିଥିବାରୁ ଧନ୍ୟବାଦ ଜଣାଉଛି ।

ମୋ ପ୍ରତି ନିଜର ଅକପଟ ଆସ୍ଥା ପ୍ରକଟ କରି ଯେଉଁ ପାଠକମାନେ ଏହି ପୁସ୍ତକ ପ୍ରକାଶନ ପାଇଁ ବାରମ୍ବାର ତାଗିଦ୍ କରିଛନ୍ତି ସେମାନଙ୍କୁ ନମସ୍କାର ଏବଂ ତାଙ୍କର ସମୁଜ୍ଜ୍ୱଳ ସାରସ୍ୱତ ପ୍ରେମ ପ୍ରତି ଏହି ପୁସ୍ତକ ଉତ୍ସର୍ଗୀକୃତ ।

**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

Digitized by srujanika@gmail.com

# ସୂଚୀପତ୍ର


| | |
|---|---|
| ରାଧାନାଥଙ୍କ ଏକ ଦୁର୍ଲ୍ଲଭ ପତ୍ର | ୭ |
| ସାର ବାସୁଦେବ ସୁଢ଼ଳ ଦେବଙ୍କ ଏକ ବିରଳ ପ୍ରସ୍ତାବ | ୩୧ |
| ଜାତୀୟତାର ଉନ୍ମେଷ ପର୍ବରେ ମୂର୍ଚ୍ଛିତ ସଂଯୋଜନ: | |
| ନୀଳମଣି ବିଦ୍ୟାରତ୍ନ | ୩୬ |
| ଓଡ଼ିଆ କାବ୍ୟରାଜ୍ୟର 'ଯୁବରାଜ' କବି ଦାମୋଦର ପଟ୍ଟନାୟକ | ୫୫ |
| ସାରସ୍ୱତ ମୁକୁରରେ ସମୁଜ୍ଜ୍ୱଳ ବିନ୍ଦୁ : ଉତ୍କଳବନ୍ଧୁ ବ୍ରଜବନ୍ଧୁ | ୮୦ |
| କବିତ୍ୱ ଓ ପାଣ୍ଡିତ୍ୟର ନୈସର୍ଗିକ ପଥ: କବି ଭାଗୀରଥି ରଥ | ୯୯ |
| ବିପ୍ଳବର ମନ୍ତ୍ରଦାତା:ବାଳକୃଷ୍ଣ କର | ୧୦୯ |
| କବି ପଦ୍ମଚରଣ ନାୟକଙ୍କ 'ଜୟଦ୍ରଥ ବଧ': ଏକ ସୂକ୍ଷ୍ମ ନିରୀକ୍ଷଣ | ୧୧୮ |
| କବିଭୂଷଣ ରାମକୃଷ୍ଣ ସାହୁ ଓ ବାମଣ୍ଡା | ୧୩୦ |
| ପାର୍ବତୀ ଉତ୍ତରାର୍ଦ୍ଧ: ଏକ ଦୃଷ୍ଟିପାତ | ୧୩୬ |
| ହିମାଚଳ ଓ ଗୋବିନ୍ଦ୍ର ଚନ୍ଦ୍ର ମହାପାତ୍ରଙ୍କ ସୃଷ୍ଟି ମାନସ | ୧୪୯ |
| ହିନ୍ଦୀ ସାହିତ୍ୟ ଜଗତରେ ଓଡ଼ିଆ ସମ୍ବାଦ: ପାଣ୍ଡେୟ ଲୋଚନ ପ୍ରସାଦ | ୧୫୪ |
| ଅନାଲୋଚିତ ପ୍ରତିଭା:କବି ମୌଲାନା ମୁସ୍ତକିମ୍ ଖାଁ | ୧୬୪ |
| ନିର୍ବାସିତର କାବ୍ୟିକ ପ୍ରକାଶ: ଲିଙ୍ଗରାଜ ପାଣିଗ୍ରାହୀଙ୍କ 'ଅମୃତେ ବିଷ' | ୧୮୦ |
| ସୁଲୋଚନା ଦେଈଙ୍କ 'ପଦ୍ମିନୀ': ଏକ ଅଧ୍ୟୟନ | ୧୯୧ |
| ମାୟାଧର ମାନସିଂହଙ୍କ ସମ୍ପାଦିତ 'ଶଙ୍ଖ' ଓ ସମ୍ବଲପୁରୀ ଭାଷା | ୨୦୨ |
| ଓଡ଼ିଆ ସାହିତ୍ୟରେ ଅଶ୍ଳୀଳତା | ୨୨୯ |
| ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ପ୍ରଦତ୍ତ ସ୍ମାରକପତ୍ର | ୨୪୨ |
| ବିସ୍ମୃତ ପତ୍ରିକା : ଉତ୍କଳ ମଧୁପ | ୨୫୯ |
| ଚିତ୍ର କବିତା ଓ ଚିତ୍ର ସମନ୍ୱୟ | ୨୭୦ |


Digitized by srujanika@gmail.com

# ରାଧାନାଥଙ୍କ ଏକ ଦୁର୍ଲ୍ଲଭ ପତ୍ର

ଶ୍ରୀହରିଶରଣମ୍ 　　　　　　　　　　　　　　　　　　କଟକ

ସବିନୟ ନିବେଦନମିଦଂ 　　　　　　　　　　　　　୨୦।୦୮।୧୮୯୯

ଶ୍ରୀମନ୍ମହାରାଜ,

ଶ୍ରୀ ଛାମୁଙ୍କ ଅନୁଗ୍ରହ ପ୍ରେରିତ ପତ୍ରର ପ୍ରାପ୍ତି ସ୍ୱୀକାର କି ଭାବରେ କରିବି, ମୋହର ଭାଷାରେ ତାହା ନାହିଁ। ଚିର ଜର୍ଜରିତ ହୋଇ ଜୀବନ୍ମୃତ ପ୍ରାୟ ହୋଇଅଛି। ଏ ଅବସ୍ଥାରେ ଉକ୍ତ ପତ୍ରର କୃପା କଟାକ୍ଷ ମାତ୍ର ମୋହ ପକ୍ଷରେ ଅମୃତମୟ ହେଲା ।

ମୋତେ ନିତାନ୍ତ ସ୍ୱାର୍ଥପର ବୋଲି ଭାବିବେ ନାହିଁ । ଶ୍ରୀ ଛାମୁ ମୋହର ବିପଦରେ ପ୍ରକୃତ ସହାୟସ୍ଥଳେ ମୁଁ ଏଭଳି ଅନୁରୋଧରେ ସାହସୀ ହୋଇଅଛି ନତୁବା ଏପରି ଅନୁରୋଧ କରିବାର ଲୋକ ମୁଁ ନୁହେଁ । ମୋହର ମନୁଷ୍ୟ ଦୁଇ ସହସ୍ର ଟଙ୍କା ନେଇ କଲିକତା ଯାତ୍ରା କରିଅଛନ୍ତି; ବାକୀ ୩୦୦୦ ଟଙ୍କାର ଏକାନ୍ତ ଆବଶ୍ୟକ । ଶ୍ରୀଛାମୁ ଦୁଇ ସହସ୍ର ଦେଲେ ବାକି ଏକ ସହସ୍ର ଋଣ କରିବାକୁହେବ । ଋଣକୁ ମୁଁ ଚିରକାଳ ଭୟ କରିଥାଏ ଏବଂ ମୋର ପାରିବାରିକ ବ୍ୟୟ ଅନେକ ବୋଲି ବାସ୍ତବିକ ମୁ ସମ୍ୱଳହୀନ । ଶ୍ରୀଛାମୁଙ୍କ ଦୁଇ ସହସ୍ର ଟଙ୍କା ମୋହର ବାମଣ୍ଡା ଗମନର ମଜୁରି ଦିଆଯିବ । ବାକି ଏକ ସହସ୍ର ଟଙ୍କା ଶ୍ରୀ ଛାମୁ ମୋତେ କେବଳ ପୁରସ୍କାର ସ୍ୱରୂପ ପ୍ରଦାନ କରିପାରନ୍ତି ନାହିଁ କି ? ଦେଶର କବିତ୍ୱ ସେବାଦ୍ୱାରା ମୋହର ଆଜି ଏପରି ଦଶା । ବୋମ୍ବାଇ... ମୋକଦ୍ଦମାରେ ଏକ ମାସ ମଧ୍ୟରେ ୬୦ ସହସ୍ର ଚାନ୍ଦା ଉଠିଥିଲା । ଉତ୍କଳରେ ୬୦ ପଇସା ସୁଦ୍ଧା ମିଳିବା କଷ୍ଟ । ଏପରି ସ୍ଥଳରେ ଶ୍ରୀ ଛାମୁ ହିଁ ଏକମାତ୍ର ଭରସା । ଏକଥା ମୁଁ ନିତାନ୍ତ ସ୍ତାବକତା ପ୍ରଣୋଦିତ ହୋଇ କହୁନାହିଁ; ହୃଦୟ କନ୍ଦରରୁ ଏ କଥାଟି ସ୍ୱତଃନିସୃତ ହେଉଅଛି । ସେହି ସକାଶେ କେବଳ ପୁରସ୍କାରର କଥା ଉତ୍‌ଥାପନ କଲି । ଶ୍ରୀଛାମୁ ନଦେଲେ ମୋତେ ଅଗତ୍ୟା କର୍ଜ୍ଜ କରିବାକୁ ହେବ । କିନ୍ତୁ ତଥାପି ଶ୍ରୀ ଛାମୁଙ୍କୁ ଭରସା କରିଅଛି । ମହାବିପଦଗ୍ରସ୍ତ ହୋଇ ଶ୍ରୀ ଛାମୁଙ୍କୁ ସ୍ମରଣ କରୁଅଛି ଏବଂ ଶ୍ରୀଛାମୁ ମୋତେ ଏହି ମହାସଙ୍କଟରୁ ଉଦ୍ଧାର କରନ୍ତୁ ।

ରାମକୃଷ୍ଣ ଡାକ୍ତର ମୋହ ନିକଟକୁ ଏବେ ଆସନ୍ତି ନାହିଁ । ବିପଦବେଳେ ସମସ୍ତେ ହିଁ ବିପକ୍ଷ ହୁଅନ୍ତି । କେବେ ଦେଖାହେଲେ ସମସ୍ତ କହିବି ।

ଶ୍ରୀ ଛାମୁଙ୍କ ଅମୃତ ଦୃଷ୍ଟି ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ରହିଲି । ଇତି ।

ବିନୟାବନତ

ଶ୍ରୀରାଧାନାଥ ରାୟ


Digitized by srujanika@gmail.com

୧୮୮୬ ଖ୍ରୀ.ରେ ସୁଢ଼ଳଦେବଙ୍କ ଅନୁରୋଧକ୍ରମେ ରାଧାନାଥ ବାମଣ୍ଡା ପ୍ରଥମଥର ପାଇଁ ଆସନ୍ତି । ରାଧାନାଥଙ୍କ ଆଗମନକୁ ଏଗାର ଥର ତୋପଧ୍ୱନି ଦ୍ୱାରା ସ୍ୱାଗତ କରାଯାଇଥିଲା ଏବଂ ବାମଣ୍ଡାର ସାରସ୍ୱତ ମଞ୍ଚରେ ତାଙ୍କୁ 'କବିବର' ଉପାଧିରେ ସମ୍ମାନିତ କରାଯାଇ ସମ୍ବର୍ଦ୍ଧିତ କରାହୋଇଥିଲା । ଏହାପରେ କବିବର ରାଧାନାଥ ଓ ବାମଣ୍ଡାରାଜା ସୁଢ଼ଳଦେବଙ୍କ ସ୍ୱାରସ୍ୱତ ସମ୍ପର୍କ ଘନିଷ୍ଠ ହୋଇ ବ୍ୟକ୍ତିଗତ ବନ୍ଧୁତାରେ ପର୍ଯ୍ୟବସିତ ହୋଇଥିଲା ।

ରାଧନାଥଙ୍କ ସମକାଳୀନ ଅନେକ ସାହିତ୍ୟରଥି ରାଜା ମହାରାଜାଙ୍କ ସହିତ ପତ୍ର ସମ୍ପର୍କ ଥିଲା । ତାଙ୍କର ଅନେକ ପତ୍ର ପ୍ରକାଶିତ ହୋଇସାରିଛି । ସାହିତ୍ୟ ସମାଲୋଚନା କ୍ଷେତ୍ରରେ ପତ୍ର ଏକ ପ୍ରମୁଖଭୂମିକା ଗ୍ରହଣ କରିଛି। ପତ୍ରରୁ ଲେଖକର ସାମାଜିକ ସ୍ଥିତି , ମାନସିକ ଭିତ୍ତି ଏବଂ ସ୍ୱାଭାବିକ ରଚନା ଶୈଳୀର ଦୃଷ୍ଟାନ୍ତ ଉପଲବ୍ଧ ହୋଇଥାଏ। ରାଧାନାଥ ଓ ସୁଢ଼ଳଦେବଙ୍କ ନିବିଡ ପତ୍ର-ସମ୍ପର୍କ ଥିଲା; କିନ୍ତୁ ଏହି ସମ୍ପର୍କକୁ ସ୍ପଷ୍ଟ କରିବା ପାଇଁ ତାଙ୍କର ପତ୍ରାବଳୀ ସମୂହ ସଂଗୃହୀତ ଓ ପ୍ରକାଶିତ ହୋଇପାରିନାହିଁ । କେବଳ ସୁଢ଼ଳଦେବଙ୍କର ଗୋଟିଏ ପତ୍ର ରାଧାନାଥ ଜୀବନୀ (ପୃ-୨୩୯)ରେ ପ୍ରକାଶିତ । ରାଧାନାଥଙ୍କ ସୁଢ଼ଳଦେବଙ୍କୁ ପ୍ରଦତ୍ତ ପତ୍ର ମଧ୍ୟରୁ ଗୋଟିଏ ମଧ୍ୟ ଲୋକଲୋଚନକୁ ଆସିନାହିଁ । ସଂଶିତ ପତ୍ରଟି ସୁଢ଼ଳଦେବଙ୍କ ଦାୟାଦ କିଶୋରୀଗଙ୍ଗ ଦେବଙ୍କ ବ୍ୟକ୍ତିଗତ ସଂଗ୍ରହରେ ଥିଲା । ସେ ଏହାର ଏକ ଜେରେକ୍ସ କପି ମୋତେ ଯୋଗାଇ ଦେଇଥିଲେ । ଜେରେକ୍ସ କପିର ଅସ୍ୱଷ୍ଟତା ହେତୁ କେତୋଟି ଶବ୍ଦ ପଢ଼ିବାରେ ଅସୁବିଧା ହୋଇଥିଲା । ପତ୍ରଟି ତା ୨୦।୮।୧୮୯୯ ତାରିଖରେ କଟକରୁ ସୁଢ଼ଳଦେବଙ୍କ ବାମଣ୍ଡା ଠିକଣାରେ ରେଜିଷ୍ଟ୍ରାର ଲେଟର ରୂପେ ଆସିଥିଲା । ପତ୍ରର ଉପରେ ''ଷ୍ଟ୍ରିକ୍ଟଲି ପ୍ରାଇଭେଟ'' ଲେଖାଥିଲା । ପ ତ୍ରଟିରେ ୨୨ ଅଗଷ୍ଟ ଦିନ ଦେବଗଡ ଡାକଘର ମୋହର ଲାଗିଥିଲା ।

ପତ୍ରଟିରେ ରାଧାନାଥଙ୍କ ବ୍ୟକ୍ତିତ୍ୱର କେତୋଟି ଦିଗ ପ୍ରତିଫଳିତ । ରାଧାନାଥ ଏବଂ ସୁଢ଼ଳଦେବଙ୍କ ବ୍ୟକ୍ତିଗତ ସମ୍ପର୍କ ସମେତ ରାଧାନାଥଙ୍କ ବ୍ୟକ୍ତିତ୍ୱକୁ ସ୍ପଷ୍ଟ କରିବା ଓ ତାଙ୍କ ଜୀବନର କେତେକ ଅନାଲୋଚିତ ଅଂଶର ପରିଚୟ ପାଇଁ ଏହି ପତ୍ରଟି ଏକ ଗୁରୁତ୍ୱପୂର୍ଣ୍ଣ ଦଲିଲ ।

ଏହି ପତ୍ରଟିର ବକ୍ତବ୍ୟକୁ ନିମ୍ନ ପ୍ରକାରେ ଭାଗ କରାଯାଇପାରେ ।

(୧) ସୁଢ଼ଳଦେବଙ୍କ ଅନୁଗ୍ରହ ପ୍ରେରିତ ପତ୍ର ପାଇ ରାଧାନାଥ ଆହ୍ଲାଦିତ । ସେ ଚିନ୍ତା ଜର୍ଜରିତ ହୋଇ ଜୀବନ୍ମୃତ ଅବସ୍ଥାରେ ଥିବାବେଳେ ପତ୍ରଟି ଅମୃତକୃପା ରୂପେ ଶାନ୍ତିପ୍ରଦ ।



Digitized by srujanika@gmail.com

୨) ସୁଢ଼ଳଦେବ ରାଧାନାଥଙ୍କ ବିପଦରେ ସହାୟ, ଏଣୁ ରାଧାନାଥ ଅସୁବିଧା ସମୟରେ ଋଣ ନକରି ସୁଢ଼ଳଦେବଙ୍କୁ ୩୦୦୦ ଟଙ୍କା ଦେବାକୁ ଅନୁରୋଧ କରିଛନ୍ତି । ଏଥି ମଧ୍ୟରୁ ୨୦୦୦ ଟଙ୍କା ବାମଣ୍ଡା ଗମନର ମଜୁରି ଏବଂ ବାକୀ ୧୦୦୦ ଟଙ୍କା ପୁରସ୍କାର ରୂପେ ପ୍ରଦାନ କରିବାକୁ ନିବେଦନ । ନଦେଲେ ଅଗତ୍ୟା କର୍ଜ୍ଜ କରିବାକୁ ପଡିବ ବୋଲି ଆଶଙ୍କା ପ୍ରକାଶ ।

୩) ଟଙ୍କା ମାଗିବାର ଆବଶ୍ୟକତା ନ ଜଣାଇ ନିଜର ଦଶା ସମ୍ପର୍କରେ ସୂଚନା ଦେଉଛନ୍ତି ରାଧାନାଥ । କବିତ୍ୱ ସେବାଦ୍ୱାରା ତାଙ୍କର ଦାରିଦ୍ର୍ୟ । ଉତ୍କଳ ଭିନ୍ନ ଅନ୍ୟ ପ୍ରଦେଶରେ ଏହି ଦଶା ହୋଇନଥାନ୍ତା ।

୪) ଓଡ଼ିଆ ସାହିତ୍ୟସେବା କରିବାକୁ ଯାଇ ଚାକିରି କ୍ଷେତ୍ରରେ ସେ ଆଜି ବିପଦଗ୍ରସ୍ତ । ଏହି ବିପଦରୁ ମୁକ୍ତି ପାଇବା ପାଇଁ ସେ ଆପଣାର ଜଣେ ଲୋକ ହାତରେ ୨୦୦୦ ଟଙ୍କା ଦେଇ କୋଲକତା ପଠାଇଛନ୍ତି । ଏଥିପାଇଁ ଆଉ କିଛି ଟଙ୍କା ଆବଶ୍ୟକ ଓ ଜଣେ ସାହିତ୍ୟପ୍ରେମୀ ରୂପେ ସୁଢ଼ଳଦେବ ଏହି ଟଙ୍କା ଦେବା ବିଧେୟ ।

୫) ସୁଢ଼ଳଦେବଙ୍କ ପତ୍ରରେ (ଯା'ର ଉତ୍ତର ସଂଶିତ ପତ୍ର) ରାମକୃଷ୍ଣ ସାହୁ ଡାକ୍ତରଙ୍କ ସମ୍ପର୍କରେ ପ୍ରଶ୍ନର ଉତ୍ତର ଦେଇ ରାଧାନାଥ ଜଣାଇଛନ୍ତି, ତାଙ୍କ ନିକଟକୁ ରାମକୃଷ୍ଣ ବର୍ତ୍ତମାନ ଆସୁନାହାନ୍ତି । ତାଙ୍କର ବିପଦ ସମୟ ଦେଖି ସମସ୍ତେ ବିପକ୍ଷ ହୋଇଛନ୍ତି ।

ରାଧାନାଥଙ୍କ ପତ୍ରରୁ ଉଦ୍‌ଭୂତ ଉପରୋକ୍ତ ପାଞ୍ଚଟି ପ୍ରସଙ୍ଗର ଯଥାର୍ଥ୍ୟ ରାଧାନାଥ ଓ ସୁଢ଼ଳଦେବଙ୍କ ମାନସିକତା, ବ୍ୟକ୍ତିତ୍ୱ ଓ କୃତିତ୍ୱ ଅନ୍ତରାଳରେ ଅନୁସନ୍ଧାନ କରାଯାଇପାରେ । ପୂର୍ବରୁ ରାଧାନାଥଙ୍କ ଦୁଇଟି ପତ୍ରର ବିଶ୍ଳେଷଣ କରିଛନ୍ତି ନଟବର ସାମନ୍ତରାୟ ତାଙ୍କର ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି ପୁସ୍ତକରେ, ଗଙ୍ଗାଧରଙ୍କୁ ଲିଖିତ ପତ୍ରଗୁଡିକର ପର୍ଯ୍ୟାଲୋଚନା କରିଛନ୍ତି ଦେବୀପ୍ରସନ୍ନ ପଟ୍ଟନାୟକ, 'କବିଲିପି' ପୁସ୍ତକରେ ଏବଂ 'ରାଧାନାଥଙ୍କ ଉକ୍ତି' ଶୀର୍ଷକରେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ରାଧାନାଥଙ୍କ ପତ୍ରାଂଶଗୁଡିକର ଆଲୋଚନା କରିଛନ୍ତି ଦେବେନ୍ଦ୍ର କୁମାର ଦାଶ ତାଙ୍କର 'ଗଙ୍ଗାଧର: କବିତା ଓ କବି ଆତ୍ମା''ପୁସ୍ତକରେ । ଏହି ସମସ୍ତ ଆଲୋଚନା ଏବଂ ରାଧାନାଥଙ୍କ ଏଯାବତ୍ ପ୍ରକାଶିତ ପତ୍ରସମୂହକୁ ବିଶ୍ଳେଷଣ କଲେ ଆମେ ନିମ୍ନ ସିଦ୍ଧାନ୍ତରେ ଉପନୀତ ହେବା-

(୧) ରାଧାନାଥଙ୍କ ପତ୍ର ତାଙ୍କର ମନକଥାର ପରିପ୍ରକାଶ ନୁହେଁ ।

(୨) ଉଦ୍ଦିଷ୍ଟ ବ୍ୟକ୍ତିଙ୍କୁ ସନ୍ତୋଷ କରିବା ପାଇଁ ରାଧାନାଥ ଅସତ୍ୟର ଆଶ୍ରୟ ଅନେକ ସ୍ଥଳରେ ନେଇଛନ୍ତି ।



Digitized by srujanika@gmail.com

(୩) ଭାଷାର କାରିଗରୀ ମଧ୍ୟରେ ରାଧାନାଥ ଏକ ଅସ୍ପଷ୍ଟ ଭାବ ବଳୟ ସୃଷ୍ଟିରେ ସକ୍ଷମ ହୋଇ ପାଠକଙ୍କୁ ଭ୍ରାନ୍ତ ଧାରଣା ଦିଅନ୍ତି । ଅନେକତ୍ର ସମାଲୋଚକଗଣ ରାଧାନାଥଙ୍କ ପତ୍ରର ବାହ୍ୟ ଅର୍ଥର ସ୍ରୋତରେ ଭାସିଯାଇ ସତ୍ୟଠାରୁ ଦୂରରେ ରହି ରାଧାନାଥଙ୍କର ଅତି-ମୂଲ୍ୟାୟନ କରନ୍ତି ।

-୨-

ରାଧାନାଥ ବାମଣ୍ଡାବାସୀଙ୍କ ପ୍ରିୟ କବି। ରାଧାନାଥ-ସାହିତ୍ୟର ପ୍ରଧାନ ପୃଷ୍ଠପୋଷକ ବାମଣ୍ଡା। ବାମଣ୍ଡା ଶବ୍ଦ ମଧ୍ୟ ରାଧାନାଥଙ୍କ ପାଇଁ ପ୍ରୀତିପଦ । ତାଙ୍କରି ଭାଷାରେ "ବାମଣ୍ଡାର ଔଦାର୍ଯ୍ୟ ମୁଦ୍ରା ଆଜୀବନ ମୋହର ହୃଦୟରେ ମୁଦ୍ରିତ ରହିବ ଏବଂ ମୋହର ଓ ଆତ୍ମୀୟବର୍ଗଙ୍କ ସମ୍ବନ୍ଧରେ ବାମଣ୍ଡା ଶବ୍ଦ ସର୍ବଦା ପ୍ରୀତିକର ଅନୁସ୍ମୃତିର ଉଦ୍‌ବୋଧକ ହେବ ।" (ସ.ହି. ୨୧।୭।୧୮୯୭)

ରାଧାନାଥଙ୍କ ସାହିତ୍ୟର ପ୍ରକାଶ ଓ ପ୍ରଚାରରେ ସୁଢ଼ଳଦେବ ମୁଖ୍ୟଭୂମିକା ଗ୍ରହଣ କରିଥିଲେ । 'ନନ୍ଦିକେଶ୍ୱରୀ' (୧୮୮୭) ସୁଢ଼ଳଦେବଙ୍କ ସୌଜନ୍ୟରୁ କଟକ ଭିକ୍ଟୋରିଆ ପ୍ରେସ୍‌ରେ ମୁଦ୍ରିତ୍ ହୋଇଥିଲା । 'ପାର୍ବତୀ' କାବ୍ୟଟି ପ୍ରଥମେ ସମ୍ବଲପୁର ହିତୈଷିଣୀ ୧୮୯୦ର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ହୋଇ ୧୮୯୧ରେ ଜଗନ୍ନାଥବଲ୍ଲଭ ପ୍ରେସ୍‌ରୁ ପୁସ୍ତକାକାରେ ମୁଦ୍ରିତ ହୋଇଥିଲା । 'ଚିଲିକା' କାବ୍ୟ ସମ୍ବଲପୁର ହିତୈଷିଣୀ ୩/୨୧, ୩/୨୨ ସଂଖ୍ୟାରେ ପୁନଃମୁଦ୍ରିତ ହୋଇଥିଲା । ଏହି ପୁନଃମୁଦ୍ରଣ ସମୟେ କିଛି ନୂତନ ପଙ୍‌କ୍ତି ସଂଯୁକ୍ତ କରାଯାଇଥିଲା । ମହାଯାତ୍ରା କାବ୍ୟ ସମ୍ବଲପୁର ହିତୈଷିଣୀରେ (୪/୩୩ଠାରୁ) କ୍ରମାନ୍ୱୟରେ ପ୍ରକାଶିତ । ଯଯାତି କେଶରୀ ସମ୍ବଲପୁର ହିତୈଷିଣୀ ୬/୧୭ ସଂଖ୍ୟାରୁ ଆରମ୍ଭ ହୋଇ ସମଗ୍ର କାବ୍ୟଟି ପ୍ରକାଶ ପାଇଥିଲା । ୧୮୯୫ରେ ବାମଣ୍ଡାର ସୁଢ଼ଳପ୍ରେସ୍‌ରେ ଏହାର ପ୍ରଥମ ସଂସ୍କରଣ ପ୍ରକାଶିତ । 'ଦରବାର' କାବ୍ୟର ଶେଷାଂଶ 'ସମ୍ବଲପୁର ହିତୈଷିଣୀ' (୬/୨୧)ରେ ପ୍ରକାଶ ପାଇଥିଲା । ଏହି ସମସ୍ତ କାବ୍ୟ ବ୍ୟତିରେକେ ରାଧାନାଥଙ୍କର ଅନେକ ପତ୍ର, ଆଲୋଚନାଦି ହିତୈଷିଣୀରେ ପ୍ରକାଶ ଲଭିଥିଲା । ରାଧାନାଥଙ୍କ ପ୍ରତିଟି କାବ୍ୟ କବିତାର ଅସଂଖ୍ୟ ସମାଲୋଚନା ହିତୈଷିଣୀରେ ପତ୍ରସ୍ଥ । ରାଧାନାଥଙ୍କ ସାହିତ୍ୟର ପ୍ରତିଟି ବିରୁଦ୍ଧ ସମାଲୋଚନାର ପ୍ରତିସମାଲୋଚନା ହିତୈଷିଣୀ ପୃଷ୍ଠାରେ ପ୍ରକାଶ ପାଇ ରାଧାନାଥ ପ୍ରତିଭାକୁ ଭାସ୍ୱର କରିଥିଲା । ୧୮୯୩ର 'ବିଜୁଳି'- 'ଇନ୍ଦ୍ରଧନୁ' କଳହ ସମୟେ ସମ୍ବଲପୁର ହିତୈଷିଣୀ, ବିଜୁଳି ପ୍ରମୁଖ ପତ୍ରିକା ରାଧାନାଥ ପ୍ରତିଭାକୁ ଓଡ଼ିଆ କାବ୍ୟରାଜ୍ୟରେ ସର୍ବଶ୍ରେଷ୍ଠ ସିଂହାସନ ପ୍ରଦାନ କରିଥିଲା । ରାଧାନାଥ ଥିଲେ ବାମଣ୍ଡାର ପ୍ରୀତିମୁଗ୍ଧ କବି । ସେ ସ୍ୱୀକାର କରନ୍ତି ବାମଣ୍ଡା ବା ବାମଣ୍ଡାଧିପତି ସୁଢ଼ଳଦେବଙ୍କ ସହିତ ପୂର୍ବରୁ ପରିଚୟ ହୋଇଥିଲେ ତାଙ୍କର ସାରସ୍ୱତ



Digitized by srujanika@gmail.com

ଜୀବନର ଉତ୍କୃଷ୍ଟତମ ଅଂଶ ବନ୍ଧ୍ୟା ହୋଇନଥାନ୍ତା । ରାଧାନାଥଙ୍କ ଏହି କୃତଜ୍ଞ ଚିତ୍ତ ନିଜର କୃତି ସମୂହର ପ୍ରତି ଛତ୍ରେଛତ୍ରେ ବାମଣ୍ଡାର ନିଷ୍କପଟ ପ୍ରଶଂସା କରିଛି । ଅକୃତ୍ରିମ ସାରସ୍ୱତ ସମ୍ପର୍କରେ ମହୀୟାନ୍ ଦୃଷ୍ଟାନ୍ତରୂପେ ରାଧାନାଥ ଓ ସୁଢ଼ଳଦେବଙ୍କ ସମ୍ପର୍କକୁ ଗ୍ରହଣ କରାଯାଇପାରେ । ରାଧାନାଥଙ୍କ କୃତିରୁ ବାମଣ୍ଡା ତଥା ସୁଢ଼ଳଦେବଙ୍କ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇଛି ।

ରାଧାନାଥ ତାଙ୍କର ପ୍ରତିଟି କାବ୍ୟ କବିତାରେ ସୁଢ଼ଳଦେବଙ୍କୁ 'କାବ୍ୟତାରା' ତଥା 'ବିଶ୍ୱକଲ୍ୟାଣ ଭାଜନ' ରୂପେ ବର୍ଣ୍ଣନା କଲାବେଳେ, 'ଦରବାର'ରେ '' ବିଦ୍ୱାନ-ମରାଳ-କୁଳ-ପଦ୍ମାକର'' ରୂପେ ଅଭିହିତ କରିଛନ୍ତି । 'ମହାଯାତ୍ରା' ଷଷ୍ଠସର୍ଗର ପ୍ରାରମ୍ଭରେ ଆଳଙ୍କାରିକ ସୁଢ଼ଳଦେବଙ୍କୁ ଆତ୍ମଜ ସହିତ ଯୋଗ୍ୟ ଶ୍ରୋତାରୂପେ ଆମନ୍ତ୍ରଣ କରାଯାଇଛି । 'ଚନ୍ଦ୍ରଭାଗା'ର ଉତ୍ସର୍ଗପତ୍ରରେ ସୁଢ଼ଳଦେବଙ୍କ ପ୍ରତିଭା ପରସ୍ପର ବିରୋଧୀ ଶ୍ରୀ ସରସ୍ୱତୀ ଓ ବିନୟଦ୍ୱାରା ବିଭୂଷିତ ବୋଲି ପ୍ରଶଂସା କରାଯାଇଛି । '' ଭ୍ରମଣକାରୀର ପତ୍ର''ରେ ରାଧାନାଥ ସୁଢ଼ଳଦେବଙ୍କ କର୍ମନିପୁଣତା, ସାରଲ୍ୟ, ଆଡମ୍ବରହୀନ ଗୁଣର ପ୍ରଶଂସା ସହିତ ବାମଣ୍ଡାର ଉତ୍କର୍ଷ ଶାସନର ଚିତ୍ର ପ୍ରଦାନ କରିଛନ୍ତି । ରାଧାନାଥଙ୍କ ଭାଷାରେ, ''ଦୁର୍ଭାଗ୍ୟକ୍ରମେ ଅଧିକାଂଶ ରାଜା ରାଜପଣ ପାଇ ମନୁଷ୍ୟପଣ ହରାନ୍ତି । ଏମାନଙ୍କଠାରୁ ଦୈବାଧୀନ ରାଜପଣ ବାଦ୍ ଦିଅ, ବାକି କ'ଣ ରହିଲା ? ବାକି କେବଳ ଗୋଟିଏ ଅକର୍ମଣ୍ୟ ବ୍ୟସନୀ ପୁରୁଷ । ବାସୁଦେବଙ୍କ କାର୍ଯ୍ୟାବଳୀ ଦେଖିଲେ ସ୍ୱୟଂ ଈର୍ଷା ସୁଦ୍ଧା ଏହା କହିପାରିବ ନାହିଁ । ରାଜପଣ ବାଦ ଦିଅ, ମହାରାଜ ବାସୁଦେବ ତଥାଚ ନରରାଜ ।'' ବାମଣ୍ଡା ପ୍ରବନ୍ଧରେ ସୁଢ଼ଳଦେବଙ୍କୁ ପୂର୍ଣ୍ଣ ମନୁଷ୍ୟର ସମସ୍ତ ସଦ୍‌ଗୁଣର ଅଧିକାରୀ ରୂପେ ବର୍ଣ୍ଣନା କରାଯାଇଛି । ସୁଢ଼ଳଦେବଙ୍କ ପାଣ୍ଡିତ୍ୟ ତାହାଙ୍କର ସୁରୁଚିର ପ୍ରତିଭୂ। ବାମଣ୍ଡାର ସାମଗ୍ରିକ ଉନ୍ନତି ବିଧାନରେ ସୁଢ଼ଳଦେବଙ୍କ ସର୍ବତୋମୁଖୀ ଯୋଗ୍ୟତା ସିଦ୍ଧିଲାଭ କରିଛି । ''ଗାର୍ହସ୍ଥ୍ୟ ଜୀବନରେ ସୁଢ଼ଳଦେବ ଆଦର୍ଶ ଗୃହସ୍ଥ, ରାଜାମାନଙ୍କ ମଧ୍ୟରେ ସୁଢ଼ଳଦେବ ଆଦର୍ଶ ଶାସକ, ପଣ୍ଡିତମାନଙ୍କ ମଧ୍ୟରେ ଆଦର୍ଶ ପଣ୍ଡିତ, ଶିକାରୀମାନଙ୍କ ମଧ୍ୟରେ ଆଦର୍ଶ ଶିକାରୀ, ଲେଖକମାନଙ୍କ ମଧ୍ୟରେ ଆଦର୍ଶ ଲେଖକ, କୃଷକମାନଙ୍କ ମଧ୍ୟରେ ଆଦର୍ଶ କୃଷକ, ମାଳୀମାନଙ୍କ ମଧ୍ୟରେ ଆଦର୍ଶମାଳୀ, ବଣିକମାନଙ୍କ ମଧ୍ୟରେ ଆଦର୍ଶ ବଣିକ ।'' (ବାମଣ୍ଡା)

ସୁଢ଼ଳଦେବଙ୍କ ତିରୋଧାନ ପରେ ବ୍ୟଥିତ ରାଧାନାଥ 'ସାର ବାସୁଦେବ ସୁଢ଼ଳଦେବ କେ.ସି.ଆଇ.ଇ ' ସ୍ମୃତିଚାରଣଟି ଉତ୍କଳ ସାହିତ୍ୟ (୭/୯)ରେ ରଚନା କରନ୍ତି । ଏଥିରେ କର୍ମବୀର ବାସୁଦେବଙ୍କୁ ବିଧିର ନୁହେଁ ନିଃସର୍ଗର ନୃପତିରୂପେ ସେ ସୂଚିତ କରନ୍ତି । ସୁଢ଼ଳଦେବଙ୍କ କର୍ମପ୍ରବଣତା ଓ ଗବେଷଣାଧର୍ମୀ ଆବିଷ୍କାର ସହିତ ରାଜ୍ୟର ବିକାଶସାଧନ



Digitized by srujanika@gmail.com

ଦିଗରେ ପଦକ୍ଷେପର ରାଧାନାଥ ଭୂୟସୀ ପ୍ରଶଂସା କରିଛନ୍ତି ।

ରାଧାନାଥଙ୍କ ମତରେ ସୁଢ଼ଳଦେବ ଥିଲେ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ଅନନ୍ୟ ସେବକ । ସେ ଥିଲେ ସୁନୀତି ଓ ସୁରୁଚିର ସମନ୍ୱୟକାରୀ। ଦେଶୀୟ ଶରୀରରେ ଇଉରୋପୀୟ ମସ୍ତିଷ୍କ ଖଞ୍ଜା ହୋଇଥିବାର ଘୋଷଣା କରନ୍ତି । ଓଡ଼ିଶାର ଅନ୍ୟାନ୍ୟ ରାଜାଙ୍କ ତୁଳନାରେ କର୍ମବୀର, ଜ୍ଞାନଯୋଗୀ ସୁଢ଼ଳଦେବଙ୍କୁ ରାଧାନାଥ ଅଧିକ ସମ୍ମାନ, ଅଧିକ ପ୍ରଶଂସା କରିଛନ୍ତି । ବାମଣ୍ଡାର ପ୍ରଶଂସାରେ ଶତମୁଖ ରାଧାନାଥ ଗଙ୍ଗାଧରଙ୍କୁ ପ୍ରଦତ୍ତ ଗୋପନୀୟ ପତ୍ରରେ ନିଜକୁ ନିଜେ ଖଣ୍ଡନ କରିଛନ୍ତି । '' ପ୍ରକୃତ ସାହିତ୍ୟାନୁରାଗୀ ରାଜା ଓଡ଼ିଶ୍ୟାରେ ଜଣେ ସୁଦ୍ଧା ନାହାନ୍ତି । ବାମଣ୍ଡା ଅବଶ୍ୟ ପ୍ରଶଂସ୍ୟ, ମାତ୍ର ଅମାରାତିରେ ଏକମାତ୍ର ଜ୍ୟୋତିରିଙ୍ଗଣବତ୍ ପ୍ରଶଂସ୍ୟ । ସେଥିରୁ ଅଧିକ କିଛି ନୁହଁନ୍ତି । ବାମଣ୍ଡା ରାଜାଙ୍କ ସହିତ ବନ୍ଧୁତାଦ୍ୱାରା ମୋହର ଲାଭ ନ ହୋଇ ବରଂ କ୍ଷତି ହୋଇଅଛି । ଆପଣ ମୋହର ଅତି ବିଶ୍ୱସ୍ତ ବନ୍ଧୁ ବୋଲି ହୃଦୟର କଥା ଆପଣଙ୍କୁ ଲେଖିଲି ।'' (ତା ୨୯।୧୧।୧୮୯୮ ପତ୍ର: କବିଲିପି : ପୃ. ୮୪-୮୫)

ବାମଣ୍ଡା ତଥା ସୁଢ଼ଳଦେବଙ୍କ ସହିତ ରାଧାନାଥଙ୍କ ସମ୍ପର୍କର ଦୃଢ଼ ଭିତ୍ତି ନିର୍ମାଣରେ ଏହି ପତ୍ରଟି ସହାୟକ । ଏହି ପତ୍ରରେ ରାଧାନାଥ ସୁଢ଼ଳଦେବଙ୍କୁ ନିଜର ବିପଦର ସହାୟ ରୂପେ ସ୍ୱୀକାର କରିଛନ୍ତି । ଅତି ବିପଦଗ୍ରସ୍ତ ସମୟରେ ମଣିଷ ଅନ୍ତରଙ୍ଗ ବନ୍ଧୁଙ୍କୁ ସ୍ମରଣ କରେ । ପୁନଶ୍ଚ ରାଧାନାଥଙ୍କ ତଥାକଥିତ ବିପଦ, ଯାହାକି ପରବର୍ତ୍ତୀ ପର୍ଯ୍ୟାୟରେ ବିଶ୍ଳେଷଣରୁ ସ୍ପଷ୍ଟ ହେବ ସେଥିରୁ ଉଦ୍ଧାର ପାଇବା ପାଇଁ ଅଧିକ ଅର୍ଥର ଦରକାର ପଡୁଥିଲା । ଏଣୁ ସ୍ୱତଃ ସେ ସୁଢ଼ଳଦେବଙ୍କ ପରି ସାରସ୍ୱତ ପୁରୁଷଙ୍କର ସାହାଯ୍ୟ ଦରକାର କରିଛନ୍ତି । ଫଳତଃ ଚିଠିଟି ରାଧାନାଥ ଓ ସୁଢ଼ଳଦେବଙ୍କ ସମ୍ପର୍କର ସ୍ୱର୍ଣ୍ଣସେତୁ ରୂପେ ପ୍ରତିଭାତ ।

-ମ-

ଚିଠିରେ ସୂଚିତ ରାଧାନାଥଙ୍କ ବିପଦ ଏକ ପ୍ରମୁଖ ପ୍ରସଙ୍ଗ । ତତ୍କାଳୀନ ଏହି ବିପଦ ସମ୍ପର୍କରେ ସମକାଳୀନ ପତ୍ରପତ୍ରିକା ତଥା ପରମାନନ୍ଦ ଆଚାର୍ଯ୍ୟଙ୍କ '' ରାଧାନାଥଙ୍କ ଅନନ୍ୟ ପ୍ରତିଭା'' ଓ ''ରାଧାନାଥ ଜୀବନୀ'' ପୁସ୍ତକରେ ସ୍ପଷ୍ଟ ସୂଚନା ମିଳିଥାଏ । '' ରାଧାନାଥ ଜୀବନୀ''ରେ ମହାଯାତ୍ରାର କେତେକ ଆପତ୍ତିକର ଜିନିଷ ଥିବାରୁ କେହି ଜଣେ ଅଧସ୍ତନ କର୍ମଚାରୀ ଆପତ୍ତି କରି ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇଦେବା କଥା ଉଲ୍ଲେଖ ଅଛି । ଏଥିପାଇଁ ଗଭର୍ଣ୍ଣମେଣ୍ଟରେ ମହା ଆନ୍ଦୋଳନ ସୃଷ୍ଟି ହେବା ଏବଂ ରାଧାନାଥ ଆପତ୍ତିକର ଅଂଶ 'ମହାଯାତ୍ରା' ତଥା 'ଶିବାଜୀଙ୍କ ଉତ୍ସାହବାକ୍ୟ'ରୁ ଉଠାଇ ଦେଇ ଦ୍ୱିତୀୟ ସଂସ୍କରଣ



Digitized by srujanika@gmail.com

ପ୍ରକାଶ କରିଥିଲେ । ଏହି ସମୟର ରାଧାନାଥଙ୍କ ମାନସିକ ଅବସ୍ଥାର ଚିତ୍ର ପ୍ରଦାନ କରି ରାଧାନାଥ ଜୀବନୀ ବର୍ଣ୍ଣନା କରେ, ''ଜୁଲାଇ ୧୭ ତାରିଖ ୧୮୯୯ ସାଲରୁ ନଭେମ୍ବର ଶେଷ ପର୍ଯ୍ୟନ୍ତ ପ୍ରାୟ ୪ ୧/୨ ମାସ ରାଧାନାଥଙ୍କ ସହିତ ଗଭର୍ଣ୍ଣମେଣ୍ଟଙ୍କର ଯେଉଁ ଗୋପନୀୟ ପତ୍ର ବ୍ୟବହାର ଚାଲିଥିଲା, ତହିଁରେ ରାଧାନାଥ ଅତିରିକ୍ତ ମାତ୍ରାରେ ବ୍ୟସ୍ତ, ବିବ୍ରତ ଓ ଅସ୍ଥିର ହୋଇ ପଡିଥିଲେ । ଦାରୁଣ ଦୁଶ୍ଚିନ୍ତାରେ ଜର୍ଜରିତ ହୋଇ ତାହାଙ୍କର ମନ ଅବସନ୍ନ ଓ ସ୍ୱାସ୍ଥ୍ୟର ବିଷମ କ୍ଷତି ହୋଇଥିଲା । ଗଭର୍ଣ୍ଣମେଣ୍ଟଙ୍କର ସମସ୍ତ ପତ୍ରାଦି ଗୋପନୀୟ ଥିଲା, ଏଣୁ ସାଧାରଣଙ୍କର ଅବଗତି ନିମିତ୍ତ ତାହା ଏଠାରେ ପ୍ରଦର୍ଶିତ ହେଲାନାହିଁ ।''(ରାଧାନାଥ ଜୀବନୀ - ପୃ. ୩୧୫)

ରାଧାନାଥ ଜୀବନୀରେ 'ମହାଯାତ୍ରା' ଓ 'ଶିବାଜୀଙ୍କ ଉତ୍ସାହ ବାକ୍ୟର'' ନିଷିଦ୍ଧ ଅଂଶ ଛପା ଯାଇଥିଲେ ମଧ୍ୟ ଗୋପନୀୟ ଚିଠିଗୁଡିକ ଛପାଯାଇ ନ ଥିବାରୁ ପରମାନନ୍ଦ ଆଚାର୍ଯ୍ୟ ଏହାର ସତ୍ୟତା ଉପରେ ସନ୍ଦେହ ପ୍ରକାଶ କରିଛନ୍ତି । ଏହି ଐତିହାସିକ ଚିଠିଗୁଡିକ ଛପାଇବା ପାଇଁ ସେ ରାଧାନାଥଙ୍କ ବଂଶଧରଙ୍କୁ ଅନୁରୋଧ କରିଛନ୍ତି ଏବଂ ସେ ସ୍ୱୀକାର କରିଛନ୍ତି ଏହିସବୁ ଗୋପନୀୟ ଚିଠିପତ୍ର ଓ ରାଧାନାଥଙ୍କ ଦୈନିକ ଡାଏରୀ ପ୍ରକାଶିତ ନ ହବାଯାଏ ଏହି ଗୁରୁ ବିଷୟଟିର ସମ୍ପୂର୍ଣ୍ଣ ତଥ୍ୟ ଐତିହାସିକ ଭିତ୍ତିରେ ପ୍ରତିଷ୍ଠିତ ହୋଇପାରିବ ନାହିଁ । (ରାଧାନାଥଙ୍କ ଅନନ୍ୟ ପ୍ରତିଭା- ପୃ. ୮୧ )

ପରମାନନ୍ଦ ଆଚାର୍ଯ୍ୟ ମୁଖ୍ୟତଃ ରାଧାନାଥଙ୍କ ନିଷିଦ୍ଧ ହୋଇଥିବା କାବ୍ୟାବଳୀ ଉପରେ ଗୁରୁତ୍ୱ ଦେଇ ତଥା ଏହାର ସତ୍ୟତା ପାଇଁ ଉଲ୍ଲିଖିତ ମନ୍ତବ୍ୟ ଦେଇଥିଲେ । କିନ୍ତୁ ସମକାଳୀନ ପତ୍ରପତ୍ରିକାକୁ ଦୃକ୍‌ପାତ କଲେ ଏତଦ୍‌ବ୍ୟତୀତ ରାଧାନାଥ ଜୀବନର ଭିନ୍ନ ଏକ ଦିଗ ଆଲୋକିତ ହୁଏ । ଏହି ଦିଗଟି ରାଧାନାଥଙ୍କ ଚାକିରୀ ଏବଂ ପାଠ୍ୟପୁସ୍ତକ ସମ୍ବନ୍ଧିତ ଯାହା ସମ୍ପର୍କରେ ଗବେଷକ ଆଚାର୍ଯ୍ୟ ନୀରବ ରହିଛନ୍ତି । ବରଂ ନଟବର ସାମନ୍ତରାୟ ଏହି ଦିଗ ଉପରେ ସାମାନ୍ୟ ଆଲୋଚନା କରିଛନ୍ତି । ପାଠ୍ୟପୁସ୍ତକ ବ୍ୟତିରେକେ ବକ୍ଷ୍ୟମାଣ ସମୟରେ ରାଧାନାଥଙ୍କ ଚାକିରି ଜୀବନରେ ଯେଉଁ ବିପଦ ଦେଖାଦେଇଥିଲା, ତାର ମୂଳ ଅନ୍ୱେଷଣ ଦ୍ୱାରା ଏହି ଚିଠିର ଉଦ୍ଦେଶ୍ୟ ପ୍ରତିପାଦିତ ହୋଇପାରିବ ।

ବଙ୍ଗଳା ସଞ୍ଜିବନୀ ପତ୍ରିକାରେ ରାଧାନାଥଙ୍କ ଚାକିରି କ୍ଷେତ୍ରରେ ଅଧୋଗତିର ଚିତ୍ର ପ୍ରଦତ୍ତ ହୋଇ ଏକ ସମ୍ବାଦ ପ୍ରକାଶ ପାଇଥିଲା । ଏହି ସମ୍ବାଦକୁ ଭିତ୍ତିକରି ବାଲେଶ୍ୱର ସମ୍ବାଦବାହିକା ଓ ଉତ୍କଳ ଦୀପିକାରେ ଯେଉଁ ସମ୍ବାଦ ପ୍ରକାଶ ପାଏ, ତାହାହିଁ ପରିସ୍ଥିତିକୁ ସ୍ପଷ୍ଟ କରିବ ।



Digitized by srujanika@gmail.com

**ସମ୍ବାଦ ବାହିକା (୩୨/ ୨୬) ୧୪.୧୨.୧୮୯୯**

ଜନରବ, ଇନ୍ସପେକ୍ଟର ରାୟ ରାଧାନାଥ ରାୟ ବାହାଦୁର ବଙ୍ଗଳାକୁ ଇନ୍ସପେକ୍ଟର ପଦରେ ପରିବର୍ତ୍ତିତ ହେଉଅଛନ୍ତି । କେହି କେହି କହନ୍ତି ସଞ୍ଜିବନୀରେ ପ୍ରକାଶିତ ତାଙ୍କର ଅଧୋଗତିର ସମ୍ବାଦ ମିଥ୍ୟା ଅଟେ । ଆମ୍ଭେମାନେ ଈଶ୍ୱରଙ୍କଠାରେ ଜଣାଉଅଛୁ । ସଞ୍ଜିବନୀର ସମ୍ବାଦ ମିଥ୍ୟା ହେଉ । ରାଧାନାଥ ବାବୁଙ୍କର ମାନହାନି ଜାତୀୟ ମାନହାନି ବୋଲି କେଉଁ ସହୃଦୟ ଲୋକ ଅସ୍ୱୀକାର କରିବ ? (ପୃ.୧୦୧)

**ଉତ୍କଳ ଦୀପିକା (୩୪/୪୯) ୨୩.୧୨.୧୮୯୯**

ଓଡ଼ିଶାର ସ୍କୁଲ ଇନ୍ସପେକ୍ଟର ରାୟ ରାଧାନାଥ ବାହାଦୁରଙ୍କ ସମ୍ବନ୍ଧେ ସଞ୍ଜିବନୀ ନାମକ ବଙ୍ଗଳା ସମ୍ବାଦପତ୍ରରେ ୨।୩ ସପ୍ତାହ ପୂର୍ବେ ଯାହା ଲେଖାଥିଲା ଗଞ୍ଜାମ ନିଉଜ୍ ତାହା ପାଠ କରି ଯଥାର୍ଥରେ ଅସମ୍ଭବ ହେଲେ ହେଁ ସ୍ଥାନୀୟ ସମ୍ବାଦପତ୍ରରୁ ନିଷ୍ଚୟ କଥା ଜାଣିବାକୁ ଇଚ୍ଛା କରିଅଛନ୍ତି । ଅତଏବ ଆମ୍ଭେମାନେ ଆନନ୍ଦ ସହିତ ପ୍ରକାଶ କରୁଅଛୁଁ କି ସଞ୍ଜିବନୀରେ ପ୍ରକାଶ ହୋଇଥିବା କଥାମାନ ସମ୍ପୂର୍ଣ୍ଣ ଅମୂଳକ ଅଟେ ଏବଂ ବଙ୍ଗୀୟ ସହଯୋଗୀ ସେପରି ଅଳୀକ ସମ୍ବାଦ ପ୍ରକାଶ କରି ଅବଧି ତାହା ସଂଶୋଧନ କରିନାହାନ୍ତି ଆଶ୍ଚର୍ଯ୍ୟର ବିଷୟ ଅଟେ (ପୃ.୩୮୫)

ଏତଦ୍‌ବ୍ୟତୀତ ଶିକ୍ଷାବିଭାଗର ଡାଇରେକ୍ଟର ଶ୍ରୀଯୁକ୍ତ ପେଡଲାରଙ୍କ କଟକ ଆଗମନ ଓ ବିଭିନ୍ନ ସ୍କୁଲ ପ୍ରଭୃତି ପରିଦର୍ଶନର ସମ୍ବାଦ ଦୀପିକା ଓ ବାହିକାରେ ପ୍ରକାଶ ପାଇଥିଲା । ଏହି ସମସ୍ତ ସମ୍ବାଦ ସହିତ ଜାନୁୟାରୀ ୨-୧୯୦୦ରେ ରାଧାନାଥଙ୍କର ଓଡ଼ିଶା ଶିକ୍ଷା ବିଭାଗରୁ ବର୍ଦ୍ଧମାନ ଶିକ୍ଷା ବିଭାଗକୁ ବଦଳିକୁ ବିଚାର କଲେ ରାଧାନାଥଙ୍କ ବିପତ୍ତି ସମ୍ପର୍କରେ ଅନୁମାନ କରାଯାଇପାରେ । ସଞ୍ଜିବନୀରେ ପ୍ରକାଶିତ ରାଧାନାଥଙ୍କ ଅଧୋଗତିର ସମ୍ବାଦ, ନିଜର ଜଣେ ଲୋକ ହାତରେ ୨୦୦୦ ଟଙ୍କା କଲିକତା ପଠାଇବା ଓ ଆଉ ଏକ ସହସ୍ର ଟଙ୍କାର ଆବଶ୍ୟକତା (ଆଲୋଚିତ ଚିଠି) ଡାଇରେକ୍ଟର ପେଡଲାରଙ୍କ ଓଡ଼ିଶା ଆଗମନ, ଏହି ସମ୍ବାଦକୁ ଦୀପିକା, ବାହିକା ପ୍ରଭୃତିର ଗୁରୁତ୍ୱ ପ୍ରଦାନକୁ ସମୂହ ଭାବରେ ବିଶ୍ଳେଷଣ କଲେ ରାଧାନାଥଙ୍କ କଥିତ ବିପଦର ଏକ ଅସ୍ପଷ୍ଟ ଚିତ୍ର ମିଳିପାରିବ ।

ରାଧାନାଥଙ୍କ ବକ୍ତବ୍ୟର ଅନୁକରଣରେ କୁହାଯାଇପାରେ, ରାଧାନାଥ ଓଡ଼ିଆ ସାହିତ୍ୟର ଜଣେ ନିଷ୍ପାପର ସେବକ । ସେ ଓଡ଼ିଆ ସାହିତ୍ୟର ସେବାକରି ବ୍ରିଟିଶ୍ ସରକାରର ଚକ୍ଷୁଶୂଳ, ଯାହାର ପରିଣତିସ୍ୱରୂପ ସେ ''ମହାଯାତ୍ରା'' ଓ ''ଶିବାଜୀଙ୍କ ଉତ୍ସାହ ବାକ୍ୟ''କୁ ଶଶିଭୂଷଣଙ୍କ ସାମ୍ନାରେ ଅଗ୍ନିରେ ନିକ୍ଷେପ କରି ନଷ୍ଟ କରିଦେଲେ । ଏହି ବିପଦ ସମୟରେ ରାଧାନାଥଙ୍କ ଅନୁସାରେ ସମସ୍ତ ଓଡ଼ିଆ ମିଳିତ ଭାବେ ରାଧାନାଥଙ୍କ ମାନସିକ ଓ ଆର୍ଥିକ



Digitized by srujanika@gmail.com

ସାହାଯ୍ୟ କରିବା ବିଧେୟ । ଗୋଟିଏ ଦେଶର ସାହିତ୍ୟ ସେବାଦ୍ୱାରା ସେ କ୍ଷତିଗ୍ରସ୍ତ ହୋଇଥିବାରୁ ତାଙ୍କୁ ଆର୍ଥିକ ସହାୟତା କରିବା ପ୍ରତିଟି ଦେଶବାସୀର ନୈତିକ କର୍ତ୍ତବ୍ୟ । ଏଣୁ ରାଧାନାଥ ବକ୍ଷ୍ୟମାଣ ପତ୍ରରେ ବମ୍ବାଇରେ ୬୦ ହଜାର ଚାନ୍ଦା ଉଠିବା ଓ ଓଡ଼ିଶାରେ ୬୦ ପଇସା ନ ମିଳିବାର ଖେଦୋକ୍ତି ପ୍ରକାଶ କରିଛନ୍ତି ।

ତେବେ ପ୍ରଶ୍ନ ଉଠେ, ଏହି ବିପଦରେ ଆର୍ଥିକ ସାହାଯ୍ୟର ଆବଶ୍ୟକତା କ'ଣ ? କଲିକତାକୁ ୩୦୦୦ଟଙ୍କା ପଠାଇବାର ଗୂଢ଼ ରହସ୍ୟ କ'ଣ ? ଏବଂ ସଞ୍ଜିବନୀରେ ପ୍ରକାଶିତ ରାଧାନାଥଙ୍କ ଅଧୋଗତି, ଯାହା ଦୀପିକାରେ ସୂଚିତ ତା'ର ଅର୍ଥ କ'ଣ ? ସଞ୍ଜିବନୀର ସମ୍ବାଦଟି ଲେଖକର ହସ୍ତଗତ ହୋଇପାରି ନ ଥିଲେ ମଧ ସଂଗୃହୀତ ତଥ୍ୟରୁ ପ୍ରତିପନ୍ନ ହୁଏ ରାଧାନାଥଙ୍କ ଚାକିରିଜୀବନରେ ଏକ ଘୋର ଅଧୋଗତି ଓ ତଦ୍‌ଜନିତ ବିପଦର ସମ୍ମୁଖୀନ ହୋଇ ସେ ତିନି ହଜାର ଟଙ୍କା କଲିକତାକୁ ପଠାଇବାକୁ ମନସ୍ଥ କରିଥିଲେ । ଏଠାରେ ପ୍ରଶ୍ନ ହୋଇପାରେ, ସେ ପଠାଇଥିବା ଟଙ୍କା କାହାକୁ ଦେବାପାଇଁ ଓ କେଉଁ ଉଦ୍ଦେଶ୍ୟରେ ପ୍ରେରିତ ? ତା'ପରେ ଶିକ୍ଷାବିଭାଗୀୟ ଡାଇରେକ୍ଟର ପେଡଲାରଙ୍କ ଓଡ଼ିଶାଗସ୍ତ ଓ ଓଡ଼ିଶା ଗସ୍ତ ପରେ ରାଧାନାଥଙ୍କ ଅଧୋଗତି ନ ହୋଇ କେବଳ ବଦଳି ହେବା, ଏସବୁ ବିଷୟକୁ କ୍ରମରେ ରଖି ପର୍ଯ୍ୟାଲୋଚନା କଲେ ମନେହୁଏ, ରାଧାନାଥ ପ୍ରକାଶ କରିଥିବା ଅର୍ଥ ତାଙ୍କ ବିରୁଦ୍ଧରେ ହେବାକୁ ଥିବା ବିଭାଗୀୟ କାର୍ଯ୍ୟାନୁଷ୍ଠାନର ପଥରୋଧ କରିଛି । ସେ ଚାହୁଁଥିଲେ, ସେ ଓଡ଼ିଆ ସାହିତ୍ୟର ସେବକ ଥିବାରୁ ଏହି ଟଙ୍କା ଓଡ଼ିଆମାନଙ୍କ ଦ୍ୱାରା ସଂଗୃହୀତ ହୋଇ ତାଙ୍କୁ ଦିଆଯାଉ । କେଉଁଥିପାଇଁ ତାଙ୍କ ବିରୁଦ୍ଧରେ ବିଭାଗୀୟ କାର୍ଯ୍ୟାନୁଷ୍ଠାନ କରାଯାଇଛି, ସେ ବିଷୟକୁ ଆଚ୍ଛନ୍ନ କରି ସାହିତ୍ୟସେବା ଦ୍ୱାରା କ୍ଷତିଗ୍ରସ୍ତ ହେବା ଉପରେ ଗୁରୁତ୍ୱ ଦେଇଛନ୍ତି । ସାହିତ୍ୟସେବା ଦ୍ୱାରା କ୍ଷତିଗ୍ରସ୍ତ ସାଧକର ଅନେକ ଅର୍ଥର ଆବଶ୍ୟକତା କାହିଁକି ?

ପରବର୍ତ୍ତୀ ପର୍ଯ୍ୟାୟରେ ରାଧାନାଥଙ୍କ ପାଠ୍ୟପୁସ୍ତକ ଓ ସାହିତ୍ୟସେବା ଦ୍ୱାରା କ୍ଷତିର ଏକ ସୂକ୍ଷ୍ମ ଆଭାସ ଦିଆଯିବ । ସେ ଯାହାହେଉ, ଏହି ଚିଠିରେ ରାଧାନାଥ ନିଜର ବାକ୍ ଚାତୁରୀ ଦ୍ୱାରା ଚାକିରି କ୍ଷେତ୍ରରେ ଅଧୋଗତିକୁ ପରଦା ପକାଇ ସାହିତ୍ୟସେବା ଦ୍ୱାରା ଆର୍ଥିକ କ୍ଷତିକୁ ପୂରଣ କରିବା ପାଇଁ ଗୁଣଗ୍ରାହୀ ଓ ସାହିତ୍ୟପ୍ରେମୀ ସୁଢ଼ଳଦେବଙ୍କୁ ଅର୍ଥ ସାହାଯ୍ୟ ମାଗିଛନ୍ତି ।

ପରୋକ୍ଷ ଭାବରେ ଆଲୋଚନା କଲେ ଓଡ଼ିଆମାନଙ୍କୁ ବମ୍ବେଇ ଉଦାହରଣ ଦେଇ ସେ ଅକ୍ଷେପ କରିଛନ୍ତି । ଓଡ଼ିଆମାନେ ସାହିତ୍ୟସେବୀଙ୍କୁ ଉପଯୁକ୍ତ ସମ୍ମାନ ଦେଉନଥିବାର ଅଭିଯୋଗ କରିଛନ୍ତି ।



Digitized by srujanika@gmail.com

ରାଧାନାଥଙ୍କ ପତ୍ର ବା ମତ ମନକଥାର ପରିପ୍ରକାଶ ନୁହେଁ, ଏହା ଉଦ୍ଦିଷ୍ଟ ବ୍ୟକ୍ତିକୁ ସାମୟିକ ସନ୍ତୋଷ ପ୍ରଦାନ କରିବାକୁ ଉଦ୍ଦିଷ୍ଟ । ଭାଷାର ଅପୂର୍ବ ଚାତୁର୍ଯ୍ୟ ମିଥ୍ୟାକୁ ସତ୍ୟର ବେହରଣ ଦ୍ୱାରା ପ୍ରତିଭାତ କରେ, ଆଲୋଚିତ ପତ୍ରରେ ବାମଣ୍ଡାଗମନ ବା ସୁଢ଼଼ଳଦେବଙ୍କ ସହିତ ସମ୍ପର୍କ ଅପେକ୍ଷା ଅର୍ଥପ୍ରାପ୍ତିକୁ ଅଧିକ ଗୁରୁତ୍ୱ ଦିଆଯାଇଛି । ସୁଢ଼଼ଳଦେବଙ୍କ ନିମନ୍ତ୍ରଣକ୍ରମେ ରାଧାନାଥ ନିଷ୍କାମଭାବେ ଜଣେ ସାରସ୍ୱତ ପୁରୁଷ ରୂପେ ଆବିର୍ଭାବ ହେବା କଥା ସମସ୍ତେ ବିଶ୍ୱାସ କରନ୍ତି । କିନ୍ତୁ ଏଠାରେ ବାମଣ୍ଡା ଗମନର ମଜୁରିରୂପେ ଦୁଇହଜାର ଟଙ୍କା ଦାବି ଏବଂ ଅତିରିକ୍ତ ପୁରସ୍କାର ସ୍ୱରୂପ ଏକ ହଜାର ଟଙ୍କା ଯାଚଞ୍ଚା କରାଯାଇଛି । ବିଭିନ୍ନ ସମୟରେ ଅସହାୟ ବ୍ୟକ୍ତିଙ୍କୁ ସୁଢ଼଼ଳଦେବ ଆର୍ଥିକ ସାହାଯ୍ୟ କରିବାର ଦୃଷ୍ଟାନ୍ତ ବିରଳ ନୁହେଁ । ସୁଢ଼଼ଳଦେବଙ୍କ ସମ୍ବେଦନଶୀଳ ହୃଦୟର ସହାନୁଭୂତି ଆକର୍ଷଣ ପାଇଁ ରାଧାନାଥ କବିତ୍ୱ ସେବାଦ୍ୱାରା ତାଙ୍କର ଏପରି ଦରିଦ୍ର ଅବସ୍ଥା ହେବାର ସୂଚାଇଛନ୍ତି । ସରସ୍ୱତୀ ଅନନ୍ୟସହା ଦେବୀ । ସରସ୍ୱତୀଙ୍କ ସେବକ ଲକ୍ଷ୍ମୀଙ୍କ କୃପାରୁ ବଞ୍ଚିତ ହୁଅନ୍ତି । ଏହି ଲୋକବାଣୀକୁ ନିଜର ଉଦ୍ଦେଶ୍ୟ ସାଧନ ପାଇଁ ରାଧାନାଥ ବ୍ୟବହାର କରିଛନ୍ତି । ଓଡ଼ିଶାରେ କବିତ୍ୱ ସେବା ଦ୍ୱାରା ଦାରିଦ୍ର୍ୟ କିପରି ଗ୍ରାସ କରେ, ସେ ବାରମ୍ବାର ଗଙ୍ଗାଧରଙ୍କ ପତ୍ରରେ ମଧ୍ୟ ଉଲ୍ଲେଖ କରିଛନ୍ତି । କବିତ୍ୱ ସେବାଦ୍ୱାରା ସେ କି ପ୍ରକାର କ୍ଷତିଗ୍ରସ୍ତ ଯେ କୌଣସି ଓଡ଼ିଆ ଅନୁଭବ କରିପାରିବେ ?

ଗଙ୍ଗାଧରଙ୍କୁ ୨୯।୧୧।୧୮୯୮ ପତ୍ରରେ ରାଧାନାଥ ଲେଖିଛନ୍ତି, ''ମୁଁ ସାହିତ୍ୟ ପ୍ରତି ପ୍ରଥମେ ମନୋଯୋଗୀ ହୋଇ ନିଜର ଭୟଙ୍କର କ୍ଷତି କରିଅଛି । ପାଠ୍ୟପୁସ୍ତକ ରଚନାପ୍ରତି ପୂର୍ବରୁ ମନୋଯୋଗୀ ହୋଇଥିଲେ, ଆଜି ସରିକି ମୋହର ଆର୍ଥିକ ଅବସ୍ଥା ଏପରି ଉନ୍ନତ ହୋଇଥାନ୍ତା ଯେ- ମୁଁ ମୋହୋର ସମସ୍ତ ଅବକାଶ ସାହିତ୍ୟ ପ୍ରତି ଅର୍ପଣ କରିପାରନ୍ତି । x x x ଫଳତଃ ଓଡ଼ିଶାରେ ସାହିତ୍ୟ ଚର୍ଚ୍ଚା ବିଡମ୍ବନା ମାତ୍ର ।'' (କବିଲିପି: ପୃ.୮୪-୮୫) ତା ୬।୯।୧୮୯୮ ପତ୍ରରେ ମଧ୍ୟ ''ସାହିତ୍ୟ ପ୍ରତି ବହୁଦିନରୁ ଅନୁରାଗ ଥିଲା- ଆର୍ଥିକ ଅବସ୍ଥା ଈଶ୍ୱର ପ୍ରସାଦରୁ ଚଳନୋପଯୋଗୀ ଅଟେ'' । (କବିଲିପି ପୃ.୬୨) ରାଧାନାଥ ଅନେକତ୍ର ଆର୍ଥିକ ଦୁରବସ୍ଥାରେ ଚଳୁଥିବାର ସୂଚାଇଛନ୍ତି । ମୁଖ୍ୟତଃ ଗଡଜାତ ରାଜାମାନଙ୍କ ପାଖକୁ ପତ୍ର ବିନିମୟ ବେଳେ ସେ କବିତ୍ୱ ସେବା ଦ୍ୱାରା ଦାରିଦ୍ର୍ୟବରଣ କରିଥିବାର କୁହନ୍ତି । ରାଧାନାଥ ସମକାଳୀନ ଓଡ଼ିଶାର ସର୍ବୋଚ୍ଚ ବେତନଧାରୀ କର୍ମଚାରୀ ଥିଲେ । ତାଙ୍କର ଅର୍ଜିତ ସମ୍ପତ୍ତିରେ ପୁତ୍ର ଶଶିଭୂଷଣ ଆଜୀବନ ସ୍ୱଚ୍ଛନ୍ଦ ଜୀବନଯାପନ କରିଥିଲେ । ଅନେକ ଦାନ, ଧ୍ୟାନ, କବି ସାହିତ୍ୟିକ, ରାଜା ମହାରାଜାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନାର ଖର୍ଚ୍ଚ ଶଶିଭୂଷଣ ଅକାତରେ କରୁଥିଲେ । ଧବଳେଶ୍ୱରଠାରେ ଏକ ବିଶ୍ରାମ



Digitized by srujanika@gmail.com

ଘର ମଧ୍ୟ ଶଶିଭୂଷଣ ନିର୍ମାଣ କରିଥିଲେ । ଶଶିଭୂଷଣଙ୍କର ପୈତୃକ ସମ୍ପତ୍ତି ଛଡା ଅନ୍ୟ କୌଣସି ଆୟର ପନ୍ଥା ନ ଥିଲା ।

ରାଧାନାଥଙ୍କ ଭାଇ ସୀତାନାଥ କଟକର ରାୟପ୍ରେସର ସତ୍ତ୍ୱାଧିକାରୀ ଥିଲେ ମଧ୍ୟ ଏହାର ପ୍ରକୃତ ମାଲିକ ଥିଲେ ରାଧାନାଥ । ୧୮୯୬ ବେଳକୁ ଏହି ପ୍ରେସ୍‌ଟି ଶଶିଭୂଷଣଙ୍କ ନାମକୁ ଚାଲିଆସିଥିଲା ।

ପାଠ୍ୟପୁସ୍ତକ ରଚନାରେ ଅଧିକ ଆର୍ଥିକ ଲାଭ ମିଳିଥାନ୍ତା ବୋଲି ରାଧାନାଥ ଅନେକତ୍ର କ୍ଷୋଭ ପ୍ରକାଶ କରିଥାନ୍ତି । ଅନ୍ୟପକ୍ଷରେ ପାଠ୍ୟପୁସ୍ତକ ନେଇ ସେ ଅନେକ ପ୍ରତିକୂଳ ସମାଲୋଚନାର ଶରବ୍ୟ ହୋଇଥିଲେ । ବିଶିଷ୍ଟ ଗବେଷକ ନଟବର ସାମନ୍ତରାୟ, '' ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ'' ପୁସ୍ତକରେ ତୁଳନାତ୍ମକଭାବେ ରାଧାନାଥଙ୍କ ପାଠ୍ୟପୁସ୍ତକଜନିତ ଅର୍ଥପ୍ରାପ୍ତି ଅତିକମ୍ ବୋଲି ସୂଚାଇଛନ୍ତି । କିନ୍ତୁ ରାଧାନାଥଙ୍କ ପ୍ରତ୍ୟକ୍ଷ ଲାଭ ବ୍ୟତିରେକେ ବୈକୁଣ୍ଠନାଥ ଦେ'ଙ୍କ ପ୍ରେସ ତଥା ସୀତାନାଥ ରାୟ ପ୍ରଭୃତିଙ୍କ ପାଠ୍ୟ ପୁସ୍ତକଜନିତ ଲାଭରେ ରାଧାନାଥଙ୍କର ପରୋକ୍ଷ ଭୂମିକା ରହିଥିଲା । ଏହି ପ୍ରସଙ୍ଗରେ ସମ୍ବାଦବାହିକା ତାରିଖ ୧୭।୭।୧୮୮୪ରେ ପ୍ରକାଶିତ ସମ୍ବାଦ ପ୍ରଣିଧାନଯୋଗ୍ୟ ।

''ସ୍କୁଲ ସମୂହର ଜଏଣ୍ଟ ଇନ୍‌ସପେକ୍ଟର ବାବୁ ରାଧାନାଥ ରାୟ କୁମାର ବୈକୁଣ୍ଠନାଥ ଦେ'ଙ୍କ ପ୍ରେସର ଶୁଭାକାଙ୍‌କ୍ଷୀ, ତେଣୁ କୁମାର ମହାଶୟ ଓଡ଼ିଶାର ଶିକ୍ଷାବିଭାଗର ପ୍ରଧାନ ପୁସ୍ତକ ବ୍ୟବସାୟୀ । ଏଠାରେ ଏପରି ଜନରବ ଏବଂ ଅନେକଙ୍କର ଏପରି ବିଶ୍ୱାସ ଯେ, ରାଧାନାଥ ବାବୁଙ୍କ ଲେଖା, ବୈକୁଣ୍ଠ ବାବୁଙ୍କ ନାମରେ ଭଣିତା ଅନେକ ପୁସ୍ତକ ଓଡ଼ିଶାରେ ଚଳୁଅଛି । ପୁଣି ଦେ'ଙ୍କ ପ୍ରେସର ବହିମାନ ଯହିଁରୁ ଅଧିକ ପରିମାଣରେ ବିକ୍ରି ହେବ ସେହି ନିମନ୍ତେ ରାଧନାଥ ବାବୁଙ୍କର ସର୍ବଦା ଚେଷ୍ଟା, ଏମନ୍ତ କି ଅନ୍ୟାନ୍ୟ ପ୍ରେସରେ ମୁଦ୍ରିତ ଭଲ ବହି ବିରୁଦ୍ଧରେ ଦେ'ଙ୍କ ପ୍ରେସ୍‌ରେ ମୁଦ୍ରିତ ସେ ଶ୍ରେଣୀର ପୁସ୍ତକ ସପକ୍ଷରେ ଦର୍ଶକାଭିପ୍ରାୟ ପୁସ୍ତକରେ ମନ୍ତବ୍ୟ ଲେଖନ୍ତି ଏବଂ ଅଧୀନସ୍ଥ କର୍ମଚାରୀମାନଙ୍କୁ ଉପଦେଶ ଦିଅନ୍ତି... ଏଠାରେ ମଧ୍ୟ ସାଧାରଣଙ୍କ ବିଶ୍ୱାସ ଏବଂ କାର୍ଯ୍ୟଗତିରୁ ଦେଖାଯାଉଛି ଯେ, ଯେଉଁ ଲୋକ ଗ୍ରନ୍ଥାକାର ହେବାକୁ ଇଚ୍ଛା କରିବ, ସେ ଗ୍ରନ୍ଥ ଲେଖୁ; କିନ୍ତୁ କୁମାରଙ୍କୁ ବହିର ସ୍ୱତ୍ୱ ବିକିବାକୁ ହେବ । ନିତାନ୍ତ ପକ୍ଷରେ ସେହି ପ୍ରେସରେ ବହି ନ ଛପାଇଲେ ଗତି ନାହିଁ ।''

ଉଲ୍ଲିଖିତ ତଥ୍ୟ ସମୂହକୁ ପାଥେୟ କରି ଶିକ୍ଷା ବିଭାଗର ସର୍ବମୟ କର୍ତ୍ତା ରାଧାନାଥଙ୍କର କି ପ୍ରକାର ଅର୍ଥାଭାବ ଥିଲା, ବୁଝାପଡେ ନାହିଁ । ଅନେକତ୍ର ସେ ନିଜର ଦାରିଦ୍ର ଓ ଅର୍ଥାଭାବର ଘୋଷଣା କରିଛନ୍ତି । କିନ୍ତୁ ସରଳ ଭାବେ ତାଙ୍କ ବକ୍ତବ୍ୟ ବୁଝିବା କଷ୍ଟକର ଓ ଅବିଶ୍ୱାସଯୋଗ୍ୟ ।



Digitized by srujanika@gmail.com

ଏହି ଚିଠିରେ ରାମକୃଷ୍ଣ ସାହୁଙ୍କ ସମ୍ପର୍କରେ ଯେଉଁ ସ୍ପଷ୍ଟୀକରଣ ଦିଆଯାଇଛି, ତାହା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସୁତ୍ଲଦେବଙ୍କ ରାମକୃଷ୍ଣ ସମ୍ପର୍କିତ ପ୍ରଶ୍ନକୁ (ଯେଉଁ ପତ୍ରର ଉତ୍ତର ଏହି ପତ୍ର) ସରଳ ଭାବରେ ଉତ୍ତର ନ ଦେଇ ରାଧାନାଥ ବେଶ୍ ପ୍ରହେଳିକାମୟ କରିଛନ୍ତି, ''ରାମକୃଷ୍ଣ ଡାକ୍ତର ମୋହର ନିକଟକୁ ଏବେ ଆସନ୍ତି ନାହିଁ । ବିପଦବେଳେ ସମସ୍ତେ ହିଁ ବିପକ୍ଷ ହୁଅନ୍ତି । କେବେ ଦେଖାହେଲେ ସମସ୍ତ କହିବି ।'' ରାଧାନାଥଙ୍କ ଏହି ଉତ୍ତର ରାମକୃଷ୍ଣଙ୍କୁ ଜଣେ ସୁବିଧାବାଦୀ ସ୍ୱାର୍ଥପର ମଣିଷ ରୂପେ ଚିତ୍ରିତ କରିବାକୁ ଯଥେଷ୍ଟ । ଦ୍ୱିତୀୟତଃ ୧୮୯୯ ବେଳକୁ ରାମକୃଷ୍ଣ ଓ ସୁତ୍ଲଦେବଙ୍କ ସମ୍ପର୍କରେ ସାମାନ୍ୟ ତିକ୍ତତା ଦେଖାଦେଇଥିଲା । ଏହି ତିକ୍ତଭାବକୁ ଆହୁରି ପ୍ରଜ୍ୱଳିତ କରିବା ରାଧାନାଥଙ୍କ ଉଦ୍ଦେଶ୍ୟ । ସୁତ୍ଲଦେବଙ୍କ ଅପ୍ରିୟ (ସେହି ସମୟରେ) ବ୍ୟକ୍ତିକୁ ଆକ୍ଷେପ କରି ସେ ତାଙ୍କର ସଦୟ ଦୃଷ୍ଟି ଆକର୍ଷଣ କରିବାକୁ ଉଦ୍ୟମ କରିଥିବା ଅନୁମିତ ହୁଏ ।

ଏହି ପତ୍ରର ରାମକୃଷ୍ଣ ପ୍ରସଙ୍ଗକୁ ଅବତାରଣା କରିବା ପୂର୍ବରୁ ରାମକୃଷ୍ଣଙ୍କ ରାଧାନାଥଙ୍କ ପ୍ରତି ସମ୍ମାନ ଓ ସୁତ୍ଲଦେବଙ୍କ ସହିତ ସମ୍ପର୍କକୁ ନିରୀକ୍ଷଣ କରିବା ସର୍ବାଦୌ କର୍ତ୍ତବ୍ୟ ।

ରାମକୃଷ୍ଣ ସାହୁ ରାଧାନାଥଙ୍କର ଅନ୍ୟତମ ଶ୍ରେଷ୍ଠ ଅନୁଗତ ରୂପେ ସ୍ୱୀକୃତ । 'ବିଜୁଳି'- 'ଇନ୍ଦ୍ରଧନୁ' କଳହରେ ରାମକୃଷ୍ଣ ରାଧାନାଥ - ସାହିତ୍ୟର ଜୟଗାନ କରି 'ବିଜୁଳି' ଶିବିରରେ ଅନ୍ୟତମ ରଥୀ ରୂପେ ଆବିର୍ଭୂତ ହୋଇଥିଲେ । 'ଇନ୍ଦ୍ରଧନୁ' ଗୋଷ୍ଠୀ ଲାଲା ରାମନାରାୟଣ ରାୟଙ୍କ ପରେ ରାମକୃଷ୍ଣ ସାହୁଙ୍କୁ ହିଁ ଅଧିକ ଆକ୍ରମଣ କରିଥିଲେ । ତାଙ୍କୁ କଣାଭୂଷଣ, କଣାମାମୁଁ ରୂପେ ଆକ୍ଷେପ କରାଯାଇଛି । 'ଇନ୍ଦ୍ରଧନୁ'ର ଚଟନୀ ଓ ବିଭିନ୍ନ ଲେଖାରେ ତାଙ୍କୁ ଆକ୍ଷେପ କରାଯାଇଛି । 'ନବ୍ୟକାବ୍ୟ ବିଜୟ' ପ୍ରହସନରେ '' ଛତା, ଜୋତା ଓ କାମିଜ, ଘଡି ଶୋଭିତ କଣା ପଣ୍ଡିତ କବି ଭୂଷଣଙ୍କ ପ୍ରବେଶ'' ରୂପେ ଆକ୍ଷେପ କରାଯାଇଛି । (ଇନ୍ଦ୍ରଧନୁ - ପୃ.୩୦) ସମ୍ବଲପୁର ହିତୈଷିଣୀରେ (୩।୨୯) ନବ୍ୟକାବ୍ୟ ଶୀର୍ଷକରେ ରାମକୃଷ୍ଣଙ୍କୁ ସମାଲୋଚନା କରାଯାଇଛି-

'' ନବ୍ୟକବି ପ୍ରାଦୁର୍ଭାବେ ନବୀନ ଉତ୍କଳ
ନବ୍ୟସାଜେ ସୁସଜ୍ଜିତ ଉତ୍କଳ ଜନନୀ
ଛାଡି କାଙ୍ଗାଳିନୀ ବେଶ ଆହା କି ସୁନ୍ଦର ।
ଶୁଭକ୍ଷଣ ଅନୁମାନି ରାମକୃଷ୍ଣ ସାହୁ
ଅଣ୍ଟାବାନ୍ଧି ଠିଆ ଏବେ ସାହିତ୍ୟ ପ୍ରାଙ୍ଗଣେ ।
ଠିଆ କି କେବଳ - ? ନନା ଖୋଲି ଚତୁଷ୍ପାଠୀ-
ବିଭୂଷିତ ଏବେ କବି ଭୂଷଣ ପଦରେ ।



Digitized by srujanika@gmail.com

ଘାଣ୍ଟି ଦଳୁଆ ପୋଖରୀ ଦରାଣ୍ଡିଣ ମୀନ
ଉଠିଲେ ଯାଦୁଆ ଲୋକ ଖରାପ୍ରାସ ପାଇ
ନିଜ ଦେହ କଣ୍ଡୂୟନେ ଯେହ୍ନେ ଲଭେ ସୁଖ
କବି ଭୂଷଣଙ୍କ କାବ୍ୟ ତେହ୍ନେ ପ୍ରୀତିପଦ ।''

ପ୍ରାଚୀନ ସାହିତ୍ୟକୁ ସମାଲୋଚନା କରି ଓ ରାଧାନାଥ ସାହିତ୍ୟର ଉତ୍କର୍ଷ ପ୍ରତିପାଦନ କରି ରାମକୃଷ୍ଣ ଭୀଷଣ ଭାବେ କ୍ଷତାକ୍ତ ହୋଇଛନ୍ତି । ରାଧାନାଥ ପ୍ରେମର ପଟାନ୍ତରହୀନ ଦୃଷ୍ଟାନ୍ତ ପ୍ରଦାନ କରି ସେ ବ୍ୟକ୍ତିଗତ ଭାବେ ସମାଲୋଚିତ ଓ କ୍ଷତିଗ୍ରସ୍ତ ।

ଲାଲା ରାମନାରାୟଣ ରାୟଙ୍କ ସଙ୍କଳିତ '' କବିତା ସଂଗ୍ରହ'' (୧୮୮୮) ପୁସ୍ତକର ପ୍ରକାଶକ ଥିଲେ ରାମକୃଷ୍ଣ । ଏହି ପୁସ୍ତକରେ ରାଧାନାଥଙ୍କ ନଅଟି କାବ୍ୟାଂଶ ସହିତ ମଧୁସୂଦନଙ୍କ ଦୁଇଟି କବିତା ଓ ବଳରାମ ଦାସଙ୍କ ଏକ କବିତାଂଶ ସଂକଳିତ । ଏହି ପୁସ୍ତକର ବିଜ୍ଞାପନରେ ରାମନାରାୟଣ ରାୟ ରାଧାନାଥଙ୍କ କବିତାକୁ ଆଦର୍ଶ ରୂପେ ଘୋଷଣା କରିଛନ୍ତି । ପ୍ରାକୃତିକ ଦୃଶ୍ୟ ଓ ଜାତୀୟ ଇତିହାସ ପ୍ରଖ୍ୟାପନରେ ରାଧାନାଥଙ୍କ କବିତା ଓଡ଼ିଶାରେ ଅଦ୍ୱିତୀୟ ।

ବିଭିନ୍ନ ସମୟରେ ରାଧାନାଥଙ୍କ ସାହିତ୍ୟର ଆଲୋଚନା କରିବାକୁ ଯାଇ ତାଙ୍କୁ ଅତି ପ୍ରଶଂସା କରିଛନ୍ତି ରାମକୃଷ୍ଣ । ବରପାଲି ପଣ୍ଡିତ ଲକ୍ଷ୍ମଣ ମିଶ୍ର ଅଳଙ୍କାର ଶାସ୍ତ୍ର ଓ ବ୍ୟାକରଣଗତ ତ୍ରୁଟି ଦର୍ଶାଇ ''ପାର୍ବତୀ'' କାବ୍ୟର ସମାଲୋଚନା 'ସମ୍ବଲପୁର ହିତୈଷିଣୀ'ରେ କରିଥିଲେ । ରାମକୃଷ୍ଣ 'ସମ୍ବଲପୁର ହିତୈଷିଣୀ' (୭।୨୭ ତା (୧୭।୧୨।୧୮୯୦)ରେ ଏକ ପତ୍ର ଦ୍ୱାରା ଲକ୍ଷ୍ମଣ ମିଶ୍ରଙ୍କ ମତକୁ ଖଣ୍ଡନ କରିଛନ୍ତି । ହିତୈଷିଣୀରେ ଛଦ୍ମନାମରେ ରାଧାନାଥ ବିରୋଧୀ ଗୋଷ୍ଠୀଙ୍କୁ ରାମକୃଷ୍ଣ ସମାଲୋଚନା କରିଛନ୍ତି । ଅନେକ ରଚନାରେ ସେ ରାଧାନାଥ ଓ ବାସୁଦେବ ସୁଢ଼ଳଦେବଙ୍କୁ ଅତିରିକ୍ତ ପ୍ରଶଂସା କରିବାକୁ ପଛେଇ ନାହାନ୍ତି ।

ରାଧାନାଥଙ୍କ ଆଲୋଚିତ ପତ୍ରଟି ୨୦।୮।୧୮୯୯ରେ ରଚିତ । ଏହି ପତ୍ରର ଅବ୍ୟବହିତ ପୂର୍ବ ମୁହୂର୍ତ୍ତରେ ରାମକୃଷ୍ଣ ସାହୁଙ୍କ ବାମଣ୍ଡା ରହଣି ଏବଂ ଅସୁସ୍ଥ ସୁଢ଼ଳଦେବଙ୍କୁ ଚିକିତ୍ସା କରିବା ସମ୍ପର୍କରେ କିଛି ସମ୍ବାଦ ସମ୍ବଲପୁର ହିତୈଷିଣୀରେ ପ୍ରକାଶ ପାଇଥିଲା । ହିତୈଷିଣୀ (୯।୧୧ତା୧୧।୮।୧୮୯୭)ରେ 'ବାମଣ୍ଡା ସମ୍ବାଦ' ଶୀର୍ଷକରେ ନିମ୍ନ ସମ୍ବାଦଟି ପ୍ରକାଶିତ-

'' ଶ୍ରୀ ମନ୍ମହାରାଜ ବାହାଦୁର ଆଜି ସୁଦ୍ଧା ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟ ଲାଭ ନକରି ପୂର୍ବବତ୍ ଶଯ୍ୟାଗତ ହୋଇ ରହିଥିବାରୁ ସମସ୍ତେ ଅତ୍ୟନ୍ତ ଦୁଃଖିତ ଏବଂ ଚିନ୍ତିତ ହୋଇଅଛନ୍ତି ।



Digitized by srujanika@gmail.com

ଶ୍ରୀଯୁକ୍ତ ବାବୁ ରାମକୃଷ୍ଣ ସାହୁ ଡାକ୍ତରଙ୍କ ଚିକିତ୍ସାରେ ରୋଗର ଚତୁର୍ଥାଂଶ ମାତ୍ର ଉପଶମ ହୋଇଥିଲା । ସେ ଏଥିମଧ୍ୟରେ ଆପଣା ଗୃହରେ ପ୍ରାୟ ସମସ୍ତେ ଭୟାନକ ରୂପେ ପୀଡିତ ଥିବାର ତାର ସମ୍ବାଦ ପାଇବାରୁ ଗତ ସୋମବାର ଦିନଠାରୁ ଚିକିତ୍ସା କାର୍ଯ୍ୟ ପରିତ୍ୟାଗ କରି କଟକ ଅଭିମୁଖେ ଯାତ୍ରା କରିଅଛନ୍ତି । ମାନନୀୟ ମହାରାଜ ରୋଗମୁକ୍ତ ନ ହେଉଣୁ ତାଙ୍କୁ ପରିତ୍ୟାଗ କରି ବାହାରିଯିବା ତାଙ୍କ ପକ୍ଷେ ଉଚିତ ହୋଇନାହିଁ ବୋଲି ସମସ୍ତେ କହି ଦୁଃଖ ପ୍ରକାଶ କରୁଅଛନ୍ତି । ସେ ଯାହା ହେଉ ବାମଣ୍ଡାର ଭୂତପୂର୍ବ ଚିଫ୍ ମେଡିକାଲ୍ ଅଫିସର ଶ୍ରୀଯୁକ୍ତ ରାଧିକା ପ୍ରସାଦ ସିଂହ ଏମ୍.ବି. ଆସିଷ୍ଟାଣ୍ଟ ସର୍ଜନ ମହୋଦୟ ଶୀଘ୍ର ଉପସ୍ଥିତ ହୋଇ ଚିକିତ୍ସା କାର୍ଯ୍ୟ ଆରମ୍ଭ କରିବାର ସ୍ଥିର ହୋଇଅଛି ।''

ଏହି ସମ୍ବାଦର ପ୍ରତିପାଦ କରି ଶ୍ରୀ ସତ୍ୟବାଦୀ, ବାମଣ୍ଡାଙ୍କ ୧୭।୮।୧୮୯୭ର ପତ୍ର ସମ୍ବଲପୁର ହିତୈଷିଣୀରେ ପ୍ରକାଶିତ ହୋଇ ରାମକୃଷ୍ଣ ଛାଡି ଚାଲିଯିବା ପରର ପ୍ରତିକ୍ରିୟାକୁ ପ୍ରତିଫଳିତ କରେ ।

''ଶ୍ରୀଯୁକ୍ତ ହିତୈଷିଣୀ ସମ୍ପାଦକ ସମୀପେଷୁ-

ମୋର ଏହି ପ୍ରବନ୍ଧଟି ଆପଣଙ୍କ ପତ୍ରିକାରେ ସ୍ଥାନଦେଇ ବାଧିତ କରିବା ହେବେ ।

ହିତୈଷିଣୀ ମେନେଜର ରାମକୃଷ୍ଣ ସାହୁ ଡାକ୍ତରଙ୍କ ପ୍ରଶଂସା ଗାଉଥିବାଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛୁଁ । ରାମକୃଷ୍ଣ ସାହୁ ଡାକ୍ତର ମହାରାଜଙ୍କୁ ଏପରି କଦର୍ଯ୍ୟ ଭାବରେ ଚିକିତ୍ସା କରିଅଛନ୍ତି ଯେ ତାହା ମହାରାଜ ଓ ତାଙ୍କର ପାରିଷଦବର୍ଗଙ୍କଠାରୁ ଆମ୍ଭେ ଶୁଣିଅଛୁଁ । ରାମକୃଷ୍ଣ ସାହୁ ମରଫିଆ ଓ ଆପୁ ପ୍ରୟୋଗ କରି ମହାରାଜାଙ୍କର ଏପରି କଦର୍ଯ୍ୟ ଏବଂ କଣ୍ଡୁ ଉପସ୍ଥିତ କରାଇଥିଲେ ଯେ ତାହା ପାଶୋରିବାକୁ ନାହିଁ । ରାମକୃଷ୍ଣ ସାହୁ ଏପରି ଜଟିଳ ମୂର୍ତ୍ତି ଯେ ମହାରାଜଙ୍କୁ ଠକିଠକି ଦିନ କର୍ତ୍ତନ କରିଅଛନ୍ତି । ମହାରାଜ ଯହୁଁ ତାଙ୍କର ଏପରି ଅବସ୍ଥା ଦେଖି ବାଇଶ ଦିନ ପରେ ଏକ ଜଣ ଡାକ୍ତର ଅଣାଇବାର ନିଶ୍ଚୟ କରି ତାହାଙ୍କୁ ଶୁଣାଇଲେ ସେତେବେଳେ ସେ ଗୃହରୁ ଟେଲିଗ୍ରାମ୍ ଅଣାଇ ପଳାୟନ କରିବାର ସୂତ୍ରପାତ କଲେ, ଠିକ୍ ମଧ୍ୟ ସେହି ସମୟକୁ ଟେଲିଗ୍ରାମ ପହଞ୍ଚିଲା, ସାହୁ ମହାଶୟ କାନ୍ଦି କାନ୍ଦି ବିଦାୟ ମାଗିଲେ, ମହାରାଜ ମଧ୍ୟ ପାଞ୍ଚଶତ (ଟ୫୦୦ଙ୍କା) ଦେଇ ଶୀଘ୍ର ବିଦାୟ କରିଦେଲେ ।

ଏହି ଘଟଣାକୁ ମେନେଜର ମହାଶୟ ଆଚ୍ଛନ୍ନ କରି ସାହୁଙ୍କର ଗମନରେ ଯେ ବାମଣ୍ଡାବାସୀ ଦୁଃଖିତ ହେବାର ଲେଖିଛନ୍ତି, ଏହା କିପରି କଥା ।ଇତି

୧୭।୮।୯୭ ଶ୍ରୀସତ୍ୟବାଦୀ, ବାମଣ୍ଡା

(ସମ୍ବଲପୁର ହିତୈଷିଣୀ (୯।୧୨ତା୧୮।୮।୯୭)

ସତ୍ୟବାଦୀଙ୍କ ଏହି ପତ୍ରକୁ ଖଣ୍ଡନ କରି ସମ୍ବଲପୁର ହିତୈଷିଣୀ (୯।୧୭ତା



Digitized by srujanika@gmail.com

୨୨।୯।୧୮୯୭ରିଖରେ ଶ୍ରୀ ମଧୁସୂଦନ ରାଓ ଓ ବିଶ୍ୱନାଥଙ୍କର ଏକ ପତ୍ର ପ୍ରକାଶ କରନ୍ତି । ସେମାନେ ରାମକୃଷ୍ଣଙ୍କ ପରିବାର ଲୋକ କଠିନ ପୀଡାକ୍ରାନ୍ତ ଥିବା ଓ ଟେଲିଗ୍ରାମ ସତ୍ୟ ଥିବାର ଦର୍ଶାଇଛନ୍ତି ।

ଏହି ଘଟଣାଦ୍ୱାରା ସୁଢ଼ଳଦେବ ଓ ରାମକୃଷ୍ଣଙ୍କ ସମ୍ପର୍କ ତିକ୍ତ ହୋଇ ଉଠିଥିଲା । ରାମକୃଷ୍ଣଙ୍କର ଅନ୍ୟତମ ପୃଷ୍ଠପୋଷକ ଓ ଉତ୍ସାହଦାତା ସୁଢ଼ଳଦେବ । କିନ୍ତୁ ଏହି ଘଟଣାପରେ ସେ ରାମକୃଷ୍ଣଙ୍କ ଉପରେ ବିରକ୍ତ ହେବା ସ୍ୱାଭାବିକ ।

ରାମକୃଷ୍ଣ ଓ ସୁଢ଼ଳଦେବଙ୍କ ସମ୍ପର୍କର ଏହି ତିକ୍ତମଧୁର କ୍ଷଣରେ ସୁଢ଼ଳଦେବ ରାମକୃଷ୍ଣଙ୍କ ବିଷୟରେ ରାଧାନାଥଙ୍କଠାରୁ ଜାଣିବାକୁ ଚାହିଁଛନ୍ତି । 'ନଇଁ ପଡିଥିବ ଯେତିକିବେଳେ ବିଧାଏ ପିଟିବ ସେତିକିବେଳେ ' ନ୍ୟାୟରେ ରାଧାନାଥଙ୍କ ମନ୍ତବ୍ୟ ସୁଢ଼ଳଦେବଙ୍କ ମାନସକୁ ଅଧିକ ତିକ୍ତତାରେ ଭରି ଦେଇଥିବ ସନ୍ଦେହ ନାହିଁ । ରାଧାନାଥଙ୍କ ପ୍ରତିଭା ପୂଜା ଓ ସାହିତ୍ୟର ପରିପ୍ରଚାର ପାଇଁ ସମସ୍ତ ବିଷକୁ ଆକଣ୍ଠପାନ କରିଥିବା ରାମକୃଷ୍ଣଙ୍କୁ ଅଧିକ ନିନ୍ଦିତ କରି ନିଜର ସ୍ୱାର୍ଥସାଧନର ଏହି ଅଭିନବ ଉପାୟହିଁ ରାଧାନାଥ ମାନସର ଅସରଳତାକୁ ଦୃଢ଼ୀଭୂତ କରେ ।

ବାସୁଦେବଙ୍କ ସହ ସମ୍ପର୍କର ପୁନରୁଦ୍ଧାର ପାଇଁ ଚେଷ୍ଟିତ ରାମକୃଷ୍ଣ 'ଭାରତାଦର୍ଶ' ନାମରେ ଏକ ପୁସ୍ତିକା ପ୍ରଣୟନ କରିଥିଲେ । ଭାରତାଦର୍ଶରେ ସୁଢ଼ଳଦେବ ଭାରତର ଅନ୍ୟତମ ଆଦର୍ଶ ଓ ଶ୍ରେଷ୍ଠ ନରପତି ରୂପେ ଚିତ୍ରିତ । ରାଧାନାଥଙ୍କ ପତ୍ର ପାଇଲାପରେ ବାସୁଦେବଙ୍କର ରାମକୃଷ୍ଣଙ୍କ ପ୍ରତି ବିଦ୍ୱେଷ ଏଭଳି ସ୍ତରରେ ପହଞ୍ଚିଥିଲା ଯେ ଆପଣାର ପ୍ରଶସ୍ତିରୂପକ ପୁସ୍ତିକା ଭାରତାଦର୍ଶ ସମ୍ବନ୍ଧରେ ଅଭିମତ ଶୀର୍ଷକରେ ସୁଢ଼ଳଦେବ ଲେଖିଥିଲେ ''ଶ୍ରୀଯୁକ୍ତ ରାମକୃଷ୍ଣ ସାହୁଙ୍କ ପ୍ରଣୀତ ଭାରତାଦର୍ଶ ପୁସ୍ତକ ଦେଖି ଆମ୍ଭେ ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ । ଶ୍ରୀ ରାଜା । କି । ବାମଣ୍ଡା- (ସମ୍ବଲପୁର ହିତୈଷିଣୀ (୧୧।୧୯ତା ୧୩।୯।୧୮୯୯)''

ଭାରତାଦର୍ଶ ପୁସ୍ତକ ଓ ସୁଢ଼ଳଦେବଙ୍କ ଏତାଦୃଶ ପ୍ରତିକ୍ରିୟା ଉପରେ ଉତ୍କଳ ଦୀପିକା ଓ ଉତ୍କଳ ସାହିତ୍ୟରେ ଆଲୋଚନା ହୋଇଥିବାର ଦେଖାଯାଏ । କିନ୍ତୁ ଏଭଳି ବିରକ୍ତି ପାଇଁ ରାଧାନାଥ ଯେ ପଥ ପ୍ରସ୍ତୁତ କରିଥିଲେ ତାହା ସମକାଳରେ କେହି ଜାଣିପାରି ନ ଥିଲେ । ସୁଢ଼ଳଦେବଙ୍କ ବିରକ୍ତିର ପାତ୍ର ରାମକୃଷ୍ଣ ପରବର୍ତ୍ତୀ ପର୍ଯ୍ୟାୟରେ (ସୁଢ଼ଳଦେବଙ୍କ ମୃତ୍ୟୁପରେ) ସଚ୍ଚିଦାନନ୍ଦ ଦେବଙ୍କ ପ୍ରିୟପାତ୍ର ହୁଅନ୍ତି । ଅନେକତ୍ର ସେ ବାମଣ୍ଡା ତଥା ବାମଣ୍ଡା ନୃପତିଙ୍କ ପ୍ରଶଂସା ଗାନ କରିଛନ୍ତି । ଏପରିକି ୧୯୧୧ ବେଳକୁ ସେ ସୁଢ଼ଳଦେବଙ୍କ ଏକ ଜୀବନୀ ସଚ୍ଚିଦାନନ୍ଦଙ୍କ ପରାମର୍ଶ କ୍ରମେ ଲେଖିବାକୁ ଆରମ୍ଭ



Digitized by srujanika@gmail.com

କରିଥିଲେ । (ମୋର ଜଣା ଲୋକ: ବୃନ୍ଦାବନ ନାଥ ଶର୍ମା: ଉତ୍କଳ ସାହିତ୍ୟ (୩୯।୬) ଆଶ୍ୱିନ-୧୩୪୩) ଏହି ରଚନାକୁ ସେ ସଂପୂର୍ଣ୍ଣ କରିପାରି ନ ଥିବାର ମନେ ହୁଏ । ରାମକୃଷ୍ଣଙ୍କ ସଂଗୃହୀତ ତଥ୍ୟ ଆଧାରରେ ପରବର୍ତ୍ତୀ ପର୍ଯ୍ୟାୟରେ ବଙ୍ଗଳା ଭାଷାରେ ଚଣ୍ଡିଚରଣ ବନ୍ଦୋପାଧ୍ୟାୟ 'ସାର୍ ବାସୁଦେବ ଜୀବନୀ'ର ରଚନା କରିଥିଲେ ।

ସୁଢ଼ଲଦେବଙ୍କ ଜୀବଦ୍ଦଶାରେ ନିଜର ପୂର୍ବ ସମ୍ପର୍କକୁ ପ୍ରତିଷ୍ଠା କରିବାକୁ ଚେଷ୍ଟିତ ରାମକୃଷ୍ଣଙ୍କ ଉଦ୍ୟମ ପ୍ରତି ରାଧାନାଥଙ୍କ ଏହି ପତ୍ର କୁଠାରାଘାତ କରିଥିଲା ।

-୬-

ଏହିପତ୍ରର ସ୍ୱରୂପ ବିଶ୍ଳେଷଣ କଲାବେଳେ ରାଧାନାଥଙ୍କ ବକ୍ତବ୍ୟର ଅସରଳତାହିଁ ମୁଖ୍ୟପ୍ରସଙ୍ଗ ରୂପେ ଦେଖାଦିଏ । ଗଙ୍ଗାଧରଙ୍କୁ ଲିଖିତ ୨୭।୭।୧୯୦୩ ପତ୍ରରେ ରାଧାନାଥ କୁହନ୍ତି, ''ମୋହୋ ମତରେ ମୁଁ ସ୍ୱାଭାବତଃ ଅସରଳ ନୁହେଁ ମାତ୍ର ସଂସାରକୁ ଚାହିଁ ସମୟ ସମୟରେ ପ୍ରକୃତ ମନର କଥା ଗୋପନ କରିବାକୁ ହୁଏ ।'' (କବିଲିପି: ପୃ.୯୩) ଏପରି ଏକ ପ୍ରେକ୍ଷାପଟରେ କେଉଁଟି ରାଧାନାଥଙ୍କ ମନର କଥା ଜାଣିବା ଅତୀବ କଷ୍ଟକର । ଏହି ପର୍ଯ୍ୟାୟରେ ରାଧାନାଥଙ୍କ ଅସରଳତା ଯେଉଁ କେତୋଟି ବିଶେଷ ଘଟଣାରେ ବୈଚିତ୍ର୍ୟମୟ ହୋଇଉଠିଛି ତାର ସଂକ୍ଷିପ୍ତ ସୂଚନା ମାତ୍ର ପ୍ରଦତ୍ତ ହେଲା ।

'କେଦାର ଗୌରୀ' କବିତାଟି ସଂସ୍କାରକ ଓ ସେବକ (୨୪-୬-୧୮୮୫)ରେ ପ୍ରଥମେ ପ୍ରକାଶ ପାଇଲାବେଳେ ଲେଖାଥିଲା ' କେଦାରଗୌରୀ ନିର୍ଝର ଭୁବନେଶ୍ୱର' । ଦେ'ଙ୍କ ଉତ୍କଳ ପ୍ରିଣ୍ଟିଂ କୋମ୍ପାନୀ ପ୍ରେସରେ ପୁସ୍ତିକାକାରେ (୧୮୮୫) ପ୍ରକାଶ ପାଇଲାବେଳେ ପ୍ରାରମ୍ଭରେ ଉଲ୍ଲେଖଥିଲା ''ଭୁବନେଶ୍ୱର କେଦାରଗୌରୀ ନାମରେ ରମଣୀୟ ନିର୍ଝର ଅଛି । ନିମ୍ନଲିଖିତ ପଦ୍ୟରେ ସେଥିର ପୌରାଣିକ କଥା ଲିପିବଦ୍ଧ ହୋଇଅଛି ।'' ପରବର୍ତ୍ତୀ ସଂସ୍କରଣ ବା ଗ୍ରନ୍ଥାବଳୀରେ ଏହି ସୂଚନାକୁ ବାଦ ଦିଆଯାଇଅଛି । କେଦାରଗୌରୀକୁ ପୌରାଣିକ ବିଷୟ ଗର୍ଭିତ ବୋଲି ମିଥ୍ୟାଚାର ବିରୁଦ୍ଧରେ ସମକାଳୀନ ପତ୍ରପତ୍ରିକାରେ ଅନେକ ସମାଲୋଚନା ପ୍ରକାଶ ପାଇଥିଲା । ସମାଲୋଚକଗଣ କାବ୍ୟବସ୍ତୁକୁ ପୌରାଣିକ ନୁହେଁ ବରଂ କବିଙ୍କର କଳ୍ପନାପ୍ରସୂତ ବୋଲି ଆଲୋଚନା କରିଛନ୍ତି ।

ରାଧାନାଥଙ୍କ ବିଭ୍ରାନ୍ତିକର ମତପ୍ରଦାନର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ ଗୋବିନ୍ଦ ମହାପାତ୍ରଙ୍କ 'ହିମାଚଳ' କବିତା ସମ୍ପର୍କରେ ମତ । 'ହିମାଚଳ' ସମ୍ପର୍କରେ ଉତ୍କଳପ୍ରଭା (୧।୭)ରେ ପ୍ରକାଶିତ ରାଧାନାଥଙ୍କ ଅଭିମତ ପ୍ରଣିଧାନଯୋଗ୍ୟ-



Digitized by srujanika@gmail.com

This is a composition far above the average and deserves a permanent place in the Oriya Literature. It is a piece less seen and one ought to see the Himalayas to be able to appreciate this truely beautiful poem. It would be unfair in my opinion to treat it on the same footing with the other poetical pieces published in the Utkal Prabha.

ରାଧାନାଥଙ୍କ ଏହି ମନ୍ତବ୍ୟକୁ ଓଡ଼ିଆ ଓ ନବସମ୍ବାଦ ତଥା ସମ୍ବଲପୁର ହିତୈଷିଣୀ ସମ୍ପାଦକ ପସନ୍ଦ କରି ନ ଥିଲେ । ଉତ୍କଳପ୍ରଭାରେ ପ୍ରକାଶିତ କବିତା ଭିତରୁ ହିମାଚଳକୁ ମହତ୍ତର ବୋଲି ରାଧାନାଥଙ୍କ ମତକୁ ଅନେକେ ଗ୍ରହଣ କରିପାରି ନ ଥିଲେ । ପରବର୍ତ୍ତୀ ପ୍ରସଙ୍ଗରେ ରାଧାନାଥ ନିଜର ମତକୁ ଖଣ୍ଡନ କରି ଓଡ଼ିଆ ଓ ନବସମ୍ବାଦ ଏବଂ ସମ୍ବଲପୁର ହିତୈଷିଣୀରେ ସ୍ପଷ୍ଟୀକରଣ ପ୍ରଦାନ କରିଥିଲେ ।

■ ଓଡ଼ିଆ ଓ ନବସମ୍ବାଦରେ ପ୍ରଦତ୍ତ ପତ୍ରାଂଶ :

" x x x ଗୋବିନ୍ଦ ବାବୁଙ୍କ ରଚନାକୁ ମୁଁ ଆଦର୍ଶ ରଚନା ବୋଲି କହିନାହିଁ । ପ୍ରସାଦଗୁଣର ଅଭାବ, କ୍ଲିଷ୍ଟତା, ଅପ୍ରଚୁର ଶବ୍ଦ ପ୍ରୟୋଗ, ଦୂରାନ୍ୱୟ, ଦୂଷିତ ମିତ୍ରାକ୍ଷର ପ୍ରଭୃତି ଦୋଷମାନ ତାହାଙ୍କ କବିତାରେ ଥିବାର ମୁଁ ଅସ୍ୱୀକାର କରୁନାହିଁ । x x x

"ମୁଁ ମତ ଦେଇଅଛି ବୋଲି ଯେ ମୋହୋର ମତ ଭ୍ରମସଂକୁଳ ନ ହେବ ଏକଥା କିଏ କହିଲା ? ମୋହୋର ମତ ମଧ୍ୟ ଯଥାଯଥ ପ୍ରକାଶିତ ହୋଇନାହିଁ । ଏକ ଏକ ସ୍ଥଳରେ ଏପରି ଭୁଲ୍ ହୋଇଅଛି ଯେ ମୁଁ ସ୍ୱୟଂ ସେଥିର ଅର୍ଥ ବୁଝି ପାରିଲି ନାହିଁ ।" (ରାଧାନାଥ ଗ୍ରନ୍ଥାବଳୀ - ପୃ.୩୯୯)

■■ ସମ୍ବଲପୁର ହିତୈଷିଣୀରେ ଦେଇଥିବା ସ୍ପଷ୍ଟୀକରଣ :

" ମୁଁ କାହିଁକି ଏପରି ମତଦେଲି- ଏହି ପ୍ରଶ୍ନର ଉତ୍ତରରେ କହୁଅଛି ଯେ ଗୋବିନ୍ଦ ବାବୁଙ୍କ କବିତାରେ ପ୍ରସାଦ ଗୁଣର ନିତାନ୍ତ ଅଭାବ । କୌଣସି କୌଣସି ସ୍ଥଳରେ ଅର୍ଥଗ୍ରହଣ ହେବାର ଦୁର୍ଘଟ । ଏକଏକ ସ୍ଥଳରେ ଭାବ ନିତାନ୍ତ ଅପରିସ୍ଫୁଟ ରୂପରେ ପ୍ରକାଶିତ ହୋଇଅଛି । ଏହି ଦୋଷମାନ କି 'ହିମାଚଳ' କି 'ଦୃଶ୍ୟରାଜି' ଉଭୟରେ ପ୍ରଚୁର ପରିମାଣରେ ବିଦ୍ୟମାନ । ମାତ୍ର ଏହି ତ୍ରୁଟି ସତ୍ତ୍ୱେ 'ହିମାଚଳ'ର ରଚନାକୁ ମୁଁ କଦାଚ ମନ୍ଦବୋଲି କହିବାକୁ ସାହାସୀ ହେବି ନାହିଁ । ସମ୍ବଲପୁର ହିତୈଷିଣୀ (୩।୩୮ତା୨.୩.୧୮୯୨)



Digitized by srujanika@gmail.com

ରାଧାନାଥଙ୍କ ପ୍ରଭାରେ ପ୍ରକାଶିତ ଇଂରାଜୀ ପ୍ରଶଂସା ପତ୍ର, ଓଡ଼ିଆ ଓ ନବସମ୍ବାଦ ଏବଂ ହିତୈଷିଣୀରେ ପ୍ରକାଶିତ ସ୍ପଷ୍ଟୀକରଣକୁ ଅନୁଧାନ କଲେ ନିଜସ୍ୱ ମତ ଖଣ୍ଡନର ଏବଂ ଅସରଳ ମତ ପ୍ରଦାନର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । ନବସମ୍ବାଦରେ ରାଧାନାଥ ନିଜର ମତ ଠିକ୍‌ଭାବେ ପ୍ରକାଶିତ ହୋଇନାହିଁ ଏବଂ ସ୍ଥାନେ ସ୍ଥାନେ ଏପରି ଭୁଲ୍ ହୋଇଅଛି ଯେ ମୁଁ ସ୍ୱୟଂ ସେଥିର ଅର୍ଥ ବୁଝିପାରୁନାହିଁ ବୋଲି ଅଭିଯୋଗ କରିଛନ୍ତି । କିନ୍ତୁ ପ୍ରଭାରେ ପ୍ରକାଶିତ ମତରେ ବେଠିକ୍ ପ୍ରକାଶନର କୌଣସି ସୂଚନା ନାହିଁ ବା ରାଧାନାଥଙ୍କ ପରି ପ୍ରତିଭା ଅର୍ଥ ବୁଝି ନ ପାରିବାର କୌଣସି କାରଣ ନାହିଁ । ଦ୍ୱିତୀୟତଃ ପ୍ରଭାରେ ପ୍ରକାଶିତ ଲେଖାଗୁଡିକ ମଧ୍ୟରୁ ହିମାଚଳକୁ ଶ୍ରେଷ୍ଠମାନ୍ୟତା ଦେଲା ପରେ ପ୍ରସାଦଗୁଣର ଅଭାବ, କ୍ଲିଷ୍ଟତା, ଅପ୍ରଚୁର ଶବ୍ଦ ପ୍ରୟୋଗ, ଦୂରନ୍ୱୟ, ଦୂଷିତ ମିତ୍ରାକ୍ଷର ପ୍ରଭୃତି ଦୋଷଥିବାର ସ୍ୱୀକାର କରିବା ନିଜ ମତକୁହିଁ ଖଣ୍ଡନ କରୁଛି । ଅନ୍ୟପକ୍ଷରେ ହିତୈଷିଣୀରେ ରାଧାନାଥ ଘୋଷଣା କରିଛନ୍ତି ଉପରୋକ୍ତ ଦୋଷ ସମୂହର ବିଦ୍ୟମାନରେ କେହି ଯେବେ ହିମାଚଳକୁ ନିକୃଷ୍ଟ ରଚନା ମଧ୍ୟରେ ପରିଗଣିତ କରନ୍ତି ସେ ଆଶ୍ଚର୍ଯ୍ୟ ହେବେନାହିଁ । ଏକପକ୍ଷରେ ଉତ୍କୃଷ୍ଟ ରଚନା ଏବଂ ଉତ୍କଳ ସାହିତ୍ୟରେ ସ୍ଥାୟୀ ସ୍ଥାନ ପାଇବାର ଉଦ୍‌ଘୋଷଣା ଅନ୍ୟପକ୍ଷରେ ଅନେକ ଦୋଷପୂର୍ଣ୍ଣ ନିକୃଷ୍ଟ ରଚନା ରୂପେ ଗୋଟିଏ କାବ୍ୟକୁ ଅଭିହିତ କରିବା ଜଣେ ବ୍ୟକ୍ତିଙ୍କ ପକ୍ଷରେ କେତେଦୂର ସମିଚୀନ ?

ବିଜୁଳି - ଇନ୍ଦ୍ରଧନୁ କଳହର ପ୍ରେକ୍ଷାପଟରେ ରାଧାନାଥ ନୈପଥ୍ୟ ନାୟକର ଭୂମିକା ସମ୍ପାଦନ କରିଛନ୍ତି । ସମଗ୍ର ବାଦ ବିସମ୍ବାଦ ମଧ୍ୟରେ ନିରବ ରହିଥିବା ରାଧାନାଥ ଶେଷରେ ' ଓଡ଼ିଆ ଓ ନବସମ୍ବାଦ' (ତ ୧୪।୩।୧୮୯୪)ରେ ସମ୍ପାଦକଙ୍କୁ ଏକପତ୍ର ଲେଖନ୍ତି ଯାହାର ମୁଖ୍ୟ ପ୍ରସଙ୍ଗ ହେଲା -

(୧) ରାମନାରାୟଣ ବାବୁଙ୍କ ଭଞ୍ଜୀୟ କବିତାର ଆଲୋଚନା ରାଧାନାଥଙ୍କ ମତ ଉପରେ ଗଠିତ ନୁହେଁ ତାଙ୍କର ମତ ଗ୍ରହଣ କରି ସମାଲୋଚନା କରିଥିଲେ ଏ ବିତଣ୍ଡା ଉଠି ନ ଥାନ୍ତା । ରାମନାରାୟଣ ବାବୁ ଏକ ଏକ ସ୍ଥଳେ ଭଞ୍ଜଙ୍କ ରଚନା ପ୍ରତି ଅଯଥା ଆକ୍ଷେପ କରିଛନ୍ତି ।

(୨) ଭଞ୍ଜକବିଙ୍କୁ ରାଧାନାଥ ନିଜର ଶିକ୍ଷାଗୁରୁ ରୂପେ ମାନ୍ୟତା ଦିଅନ୍ତି ଓ ଭକ୍ତି କରି ଆସୁଛନ୍ତି । ଭଞ୍ଜ ଭକ୍ତିର ଉତ୍କୃଷ୍ଟ ଉଦାହରଣ ତାଙ୍କ କବିତାରୁ ମିଳିପାରେ । ରାଧାନାଥଙ୍କ ମତରେ ଭଞ୍ଜଙ୍କର ଉତ୍କଟ ଆଦି ରସାଶ୍ରିତ ପଙ୍‌କ୍ତିମାନଙ୍କୁ ଆର୍ଷ ପ୍ରୟୋଗ ରୂପେ ଗ୍ରହଣ ଓ ସସମ୍ମାନ ପ୍ରତ୍ୟାଖ୍ୟାନ ଅଯୌକ୍ତିକ ନୁହେଁ । ତାଙ୍କଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟଲେଖକ ଓଡ଼ିଶାରେ ବୋଧହୁଏ କମ ବାହାରିବେ ।



Digitized by srujanika@gmail.com

(୩) ତାଙ୍କ ବିରୁଦ୍ଧରେ ଉଠିଥିବା ଅନେକ ଅମୂଳକ ଅଭିଯୋଗର ଅସାରତା ସ୍ୱତଃ ପ୍ରତିପନ୍ନ ହୋଇଛି । ଏଣୁ ସେ ଏହି କଳହ ବେଳେ ନିରବ ଥିଲେ । କେବଳ କେତେକ ହିତୈଷୀ ବନ୍ଧୁଙ୍କର ସଦଭିପ୍ରାୟର ସମ୍ମାନ ରକ୍ଷା ସକାଶେ ଏହି ପତ୍ର ଲେଖିଲେ ।

ଓଡ଼ିଆ ଓ ନବସମ୍ବାଦରେ ପ୍ରକାଶିତ ଏହି ତିନୋଟି ପ୍ରସଙ୍ଗ ବିଜୁଳି - ଇନ୍ଦ୍ରଧନୁ କଳହକୁ କେବଳ ଶିଥିଳ କରି ନ ଥିଲା ବରଂ ରାଧାନାଥ ପ୍ରେମୀଙ୍କୁ ବ୍ୟଥିତ କରିଥିଲା । ବିଜୁଳି ଦଳ ଏଥିରେ କ୍ଷୁବ୍ଧ ହୋଇଥିଲେ । 'ବାଚସ୍ପତି' ଛଦ୍ମନାମଧାରୀ ଜନୈକ ଲେଖକ 'ଭଞ୍ଜୀୟ ଆନ୍ଦୋଳନ ଓ ରାଧାନାଥବାବୁ' ଶୀର୍ଷକ ଲେଖାରେ ରାଧାନାଥଙ୍କ ପତ୍ରପ୍ରତି ନିଜର ବିରକ୍ତି ପ୍ରକାଶ କରିଥିଲେ-

''ଭଞ୍ଜୀୟ ଆନ୍ଦୋଳନର ଆରମ୍ଭରୁ ରାଧାନାଥ ବାବୁଙ୍କୁ ନେଇ ଟଣାଓଟରା ଲାଗିଅଛି । ଅଶ୍ଳୀଳତା ସମର୍ଥନକାରୀ ଦଳ ରାଧାନାଥବାବୁଙ୍କ ପ୍ରତି ଯେପରି କୁବ୍ୟବହାର କରି ଆସୁଛନ୍ତି ଏବଂ ଦିନକୁ ଦିନ ସେମାନଙ୍କର କୁପ୍ରବୃତ୍ତି ଯେପରି ବଢୁଅଛି, ତାହା ଭାବିଲେ ଲଜ୍ଜା, ଘୃଣା ଓ କ୍ଷୋଭରେ ହୃଦୟ ଅସ୍ଥିର ହୁଏ ! ରାଧାନାଥବାବୁ ଏତେକାଳ ନୀରବ ରହି କାହିଁକି ଯେ ହଠାତ୍ ଆସି ରଙ୍ଗଭୂମିରେ ଦେଖାଦେଲେ ଆମ୍ଭେମାନେ ବୁଝିପାରୁନାହୁଁ । x x x ରାଧାନାଥବାବୁ ବିରୋଧୀ ଦଳର ମନ ଫେରାଇବା ପାଇଁ କହିଅଛନ୍ତି, ''ମୋହୋଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟଲେଖକ ଓଡ଼ିଶାରେ ବୋଧହୁଏ ଅଳ୍ପ ବାହାରିବେ ।'' ଆମ୍ଭେମାନେ କହୁଁ ଏଣିକି ଉତ୍କଟ ଆଦିରସାଶ୍ରିତ କରି ଖଣ୍ଡେ ଅଧେ କାବ୍ୟ ଲେଖିପାରିଲେ ବିପକ୍ଷମାନେ ତାଙ୍କୁ ମୁଣ୍ଡରେ ବସାଇ ନୃତ୍ୟ କରିବେ । x x x

''ଇନ୍ଦ୍ରଧନୁର 'ବିଜ୍ଞ ମହାତ୍ମା'ମାନଙ୍କ ମତାନୁସରଣ କରି ରାଧାନାଥବାବୁ ମଧ୍ୟ ଉତ୍କଟ ଆଦିରସାଶ୍ରିତ ପଙ୍କ୍ତିମାନଙ୍କୁ ଆର୍ଷ ପ୍ରୟୋଗ ରୂପେ ଗ୍ରହଣ କରିବାକୁ ପରାମର୍ଶ ଦେଇଛନ୍ତି । ଉକ୍ତ 'ବିଜ୍ଞମହାତ୍ମା'ମାନେ ଏ ପର୍ଯ୍ୟନ୍ତ ଯେପରି ସାହିତ୍ୟଜ୍ଞତା ଓ କାବ୍ୟରସିକତା ପ୍ରଦର୍ଶନ କରି ଆସୁଛନ୍ତି ସେଥିରେ ସେମାନଙ୍କ ପକ୍ଷରେ ବିଚିତ୍ର ବା ଅସଙ୍ଗତି ବୋଲି କିଛି ନାହିଁ । ରାଧାନାଥ ବାବୁ ଯେ ଏପରି ହାସ୍ୟାସ୍ପଦ କଥା କହିପାରିବେ, ଏପରି ଧାରଣା ଆମ୍ଭମାନଙ୍କର ନ ଥିଲା । ଆମ୍ଭେମାନେ ଦେଖି ଶୁଣି ଆବାକ୍ ହୋଇଅଛୁଁ । ଏ ସଂସାରରେ ମନୁଷ୍ୟ ପକ୍ଷରେ କିଛି ଅସମ୍ଭବ ନୁହେଁ ।'' (ସମ୍ବଲପୁର ହିତୈଷିଣୀ ୫।୪୬ତା ୧୮.୪.୧୮୯୪)

ରାଧାନାଥଙ୍କ ଏହି ପତ୍ରର ରଚନାକାଳ ୫.୨.୧୮୯୪ ଏବଂ ଏହା ଓଡ଼ିଆ ଓ ନବସମ୍ବାଦ ୧୪.୩.୧୮୯୪ ସଂଖ୍ୟାରେ ପ୍ରକାଶିତ । ଆଲୋଚିତ ପତ୍ରର ରଚନାକାଳକୁ ମଧ୍ୟ ସମାଲୋଚକଗଣ ସନ୍ଦେହ ଚକ୍ଷୁରେ ଦେଖନ୍ତି । ଏହି ପତ୍ରରେ ଭଞ୍ଜଙ୍କ ଅନୁକାରୀ ଓ ଆଦିରସକୁ ଆର୍ଷ ପ୍ରୟୋଗ ରୂପେ ଗ୍ରହଣ କରିବାକୁ କହୁଥିବା ରାଧାନାଥଙ୍କ ସ୍ୱର ଗଙ୍ଗାଧରଙ୍କୁ



Digitized by srujanika@gmail.com

ପତ୍ର ଓ ମାତା ବହିର ଭୂମିକା ଲେଖିଲାବେଳେ ପରିବର୍ତ୍ତିତ ହୋଇଛି ।

ଗଙ୍ଗାଧରଙ୍କୁ ୧୮.୩.୧୮୯୫ ପତ୍ରରେ ରାଧାନାଥ ଲେଖନ୍ତି, '' ପ୍ରକୃତ ସାହିତ୍ୟ ଜ୍ଞାନ ସମୟସାପେକ୍ଷ ଅଟେ, ବିଶେଷତଃ ଓଡ଼ିଶାରେ । ଓଡ଼ିଶାରେ କାଳିଦାସଙ୍କ ସହିତ ଭଞ୍ଜଙ୍କ ପରି କବି ସମାନ ଆସନ ପାଆନ୍ତି । ହିମାଳୟ ସହିତ କପିଳାସ ତୁଳିତ ହୁଏ । ଏପରି ଦେଶରେ ସାହିତ୍ୟ ଜ୍ଞାନ ଲାଭ ସହଜ କଥାନୁହେଁ ।'' (କବିଲିପି ପୃ.୭୦)

କବି ଦାମୋଦର ମିଶ୍ରଙ୍କ ମାତା କାବ୍ୟର ମନ୍ତବ୍ୟରେ ରାଧାନାଥ ଘୋଷଣା କରନ୍ତି, '' ଆଦିରସ ନଥାଇ ସୁଦ୍ଧା 'ମାତା'ର ରଚନା କେତେ ମଧୁର ହୋଇଅଛି । ଆଦିରସରେ ଲେଖକମାନଙ୍କର ଅଧିକ ପ୍ରୟାସୀ ହେବାର ଉଚିତ ନୁହେଁ । ଆଦିରସରେ, ବିଶେଷତଃ ସ୍ଥୁଳ ଆଦିରସରେ, ଭଞ୍ଜଙ୍କୁ କେହି ଅତିକ୍ରମ କରିପାରିବେ ନାହିଁ । '' (ରାଧାନାଥଙ୍କ ମନ୍ତବ୍ୟ, ୮-୯, ୧୮୯୪)

ଭଞ୍ଜଙ୍କ ସାହିତ୍ୟ ବିଶେଷତଃ ଆଦିରସ ପ୍ରତି ରାଧାନାଥଙ୍କ ଦୃଷ୍ଟିଭଙ୍ଗୀ ଉଲ୍ଲିଖିତ ଉଦ୍ଧୃତି ଦୁଇଟିରେ ସୁସ୍ପଷ୍ଟ । ଅଥଚ ବିଜୁଳି- ଇନ୍ଦ୍ରଧନୁ କଳହ ପ୍ରେକ୍ଷାରେ ସେ ଯେତେବେଳେ ପାର୍ବତୀ, ଯଯାତିକେଶରୀ ପ୍ରଭୃତିର ଆଦିରସାତ୍ମକ ବର୍ଣ୍ଣନା ପାଇଁ ଭୀଷଣ ଭାବେ ସମାଲୋଚିତ ହେଲେ ତଥା ବକଚରିତ ଦ୍ୱାରା ଯେତେବେଳେ ଇନ୍ଦ୍ରଧନୁ ଦଳ ତାଙ୍କ ଉପରେ ପାଲଟା ଆକ୍ରମଣ କଲେ ସେତେବେଳେ ବାଧ୍ୟ ହୋଇ ଆତ୍ମସଫେଇ ଛଳରେ ସେ ନବସମ୍ବାଦରେ ପତ୍ରଟି ପ୍ରକାଶ କରନ୍ତି । ନବସମ୍ବାଦରେ ପ୍ରଦର୍ଶିତ ଭଞ୍ଜଙ୍କ ଅନୁକାରୀ ବକ୍ତବ୍ୟ ରାଧାନାଥଙ୍କ ହୃଦୟର ବାଣୀ ନୁହେଁ ବରଂ ପ୍ରହେଳିକାପୂର୍ଣ୍ଣ ଉଚ୍ଚାରଣ ।

ବିଜୁଳି - ଇନ୍ଦ୍ରଧନୁ କଳହରୁ ଆଢୁଆଳରେ ରହି ରାଧାନାଥ ନିରବ ସମର୍ଥନ ଜଣାଉଥିଲେ । ଭଞ୍ଜଙ୍କ ସହିତ ପ୍ରତିଯୋଗିତାରେ ରାଧାନାଥ ସାହିତ୍ୟ ଯେ ଉତ୍କର୍ଷ ପ୍ରତିପାଦିତ ହେବ ଏହା ସେ ଆଶା କରୁଥିଲେ ଅଥଚ ପ୍ରକାଶ୍ୟରେ ବନ୍ଧୁମାନଙ୍କୁ ଅନ୍ୟ ପ୍ରକାରେ ଧାରଣା ଦେଉଥିଲେ । ବିଶ୍ୱନାଥ ରଥଙ୍କୁ ପ୍ରଦତ୍ତ ପତ୍ରରେ ରାଧାନାଥ ଲେଖନ୍ତି, ''ପ୍ରାଚୀନ ଉତ୍କଳୀୟ କବିମାନଙ୍କ ସମାନ ହେବା ଦୂରେ ଥାଉ, ସେମାନଙ୍କର ପ୍ରତିଯୋଗିତା କରିବାର ସଙ୍କଳ୍ପ ସ୍ୱପ୍ନରେ ମୋ ମନରେ ଉଦିତ ହୋଇନାହିଁ ।'' (ରାଧାନାଥ ଗ୍ରନ୍ଥାବଳୀ, ପୃ୪୩୨)

ରାଧାନାଥଙ୍କ ମାନସିକତାର ଏହି ଦ୍ୱୈତସତ୍ତା ଅନେକ ପ୍ରସଙ୍ଗରେ ପରିଦୃଶ୍ୟମାନ । ଆଲୋଚନାର ବାହୁଲ୍ୟ ଦୃଷ୍ଟିରୁ ନିମ୍ନରେ କେତୋଟି ପ୍ରସଙ୍ଗର ସଂକ୍ଷିପ୍ତ ସୂଚନା ମାତ୍ର ପ୍ରଦାନ କରାଗଲା ।



Digitized by srujanika@gmail.com

**କ:** ପଣ୍ଡିତ ଲକ୍ଷ୍ମଣ ମିଶ୍ରଙ୍କ ରଚିତ 'ସାହିତ୍ୟ ସୁନ୍ଦରୀ' (ବାମଣ୍ଡା- ୧୮୯୭) ପୁସ୍ତକର ମୁଖବନ୍ଧରେ ରାଧାନାଥ କାବ୍ୟର ପ୍ରଶଂସା କରିଥିଲେ । ବିଦ୍ୟାରତ୍ନ ପ୍ରମୁଖ ଏଥିରେ ଅସନ୍ତୋଷ ପ୍ରକାଶ କରିବାରୁ ରାଧାନାଥ ସ୍ପଷ୍ଟୀକରଣ ଦେଇ ଏକ ପତ୍ର ଲେଖନ୍ତି ଯାହା 'ଅକବିର କବିତା' ଶୀର୍ଷକରେ ସମ୍ବଲପୁର ହିତୈଷିଣୀ (୯।୧୧)ରେ ପ୍ରକାଶ ପାଇଥିଲା । ଏଥିରେ ଶିଷ୍ଟାଚାର ସ୍ୱରୂପ ଦୁଇଚାରି ଶବ୍ଦ କହିବା କଥା ସେ ଲେଖନ୍ତି । ଗଙ୍ଗାଧରଙ୍କୁ ପ୍ରଦତ୍ତ ୨୯.୭.୧୮୯୭ ପତ୍ରରେ ମଧ୍ୟ ରାଧାନାଥ ଲକ୍ଷ୍ମଣ ମିଶ୍ରଙ୍କ 'ସାହିତ୍ୟ ସୁନ୍ଦରୀ' କଥା ଉଲ୍ଲେଖ କରିଛନ୍ତି । (କବିଲିପି, ପୃ.୭୯) ରାଧାନାଥ ପ୍ରଥମେ ସାହିତ୍ୟ ସୁନ୍ଦରୀକୁ ପ୍ରଶଂସା କରି ପରେ ନିଜର ମର୍ଯ୍ୟାଦା ରକ୍ଷା ପାଇଁ ମତ ପରିବର୍ତ୍ତନ କରିଥିଲେ ।

**ଖ:** ବଙ୍ଗଳାର ନାରୀ କବି ନଗେନ୍ଦ୍ରବାଳାଙ୍କ ସହିତ ରାଧାନାଥଙ୍କ ସମ୍ପର୍କ ଓ ତଜ୍ଜନିତ ପ୍ରାୟଶ୍ଚିତ ରାଧାନାଥଙ୍କ ଚରିତ୍ରର ଏକ ବିଡମ୍ବିତ ଅଧ୍ୟାୟ । ନଗେନ୍ଦ୍ରବାଳା ନିଜର କବିତା ଓ ଜୀବନରେ ରାଧାନାଥଙ୍କୁ ସ୍ୱର୍ଗର ଦେବତା ରୂପେ ସମ୍ମାନ ପ୍ରଦର୍ଶନ କରିଛନ୍ତି । ଅନ୍ୟପକ୍ଷରେ ରାଧାନାଥ ନଗେନ୍ଦ୍ରବାଳାଙ୍କ ବିକୃତ ଚରିତ୍ର ପ୍ରଭାବରେ ନିଜର ସଂଯମ ହରାଇବା, ସେହି କୁହୁକିନୀର କୁହୁକ ଏବଂ ମାୟାଜାଲରେ ପଥଭ୍ରଷ୍ଟ ହୋଇଥିବାର ଦର୍ଶାଇଛନ୍ତି ।

**ଗ:** ନୀଳମଣି ବିଦ୍ୟାରତ୍ନ ପ୍ରମୁଖ ଖଲ୍ଲିକୋଟଠାରେ ଏକ ସମ୍ବର୍ଦ୍ଧନା ସଭାକରି ରାଜା ହରିହର ମର୍ଦ୍ଦରାଜଙ୍କ ପ୍ରଦତ୍ତ ଏକ ସୁବର୍ଣ୍ଣ ଲେଖନୀ ରାଧାନାଥଙ୍କୁ ଉପହାର ପ୍ରଦାନର ଆୟୋଜନ କରିଥିଲେ । ବିଦ୍ୟାରତ୍ନଙ୍କ ଏହି ପ୍ରସ୍ତାବ ଅବଗତ ହୋଇ ରାଧାନାଥ କୃତ୍ରିମ ଉପହାର ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ( ରାଧାନାଥ ଗ୍ରନ୍ଥାବଳୀ- ପୃ. ୪୩୬) ଉତ୍କଳ ସମ୍ମିଳନୀ ପୂର୍ବଦିନ ଅର୍ଥାତ ଡିସେମ୍ବର ୨୯, ୧୯୦୩ କଟକସ୍ଥ ଟାଉନ୍ ଭିକ୍ଟୋରିଆ ସ୍କୁଲ ଗୃହରେ ଅନୁଷ୍ଠିତ ଉତ୍କଳ ସାହିତ୍ୟ ସମାଜର, ପ୍ରଥମ ବାର୍ଷିକ ଅଧିବେଶନରେ ସେହି ସୁବର୍ଣ୍ଣ ଲେଖନୀକୁ ରାଧାନାଥ ପରମ ଆହ୍ଲାଦରେ ଗ୍ରହଣ କରିଥିଲେ । ( ରାଧାନାଥ ଜୀବନୀ, ପୃ. ୪୫୯) । ଏହି ସମ୍ବାଦକୁ ଉତ୍କଳ ଦୀପିକା ୩୯।୧ତା୨.୧.୧୯୦୪ ସଂଖ୍ୟାରେ ପରିବେଷଣ କରିଥିଲା ।

**ଘ:** ଚିଲିକା କାବ୍ୟର '' ବିମାନ ଆକାରେ ଭାସେ ଶତ ଶତ
ନୀଳୋରସେ ତୋର ଶୈଳ ମାରକତ ।''
ପରିବର୍ତ୍ତେ '' ବିମାନ ଆକାରେ ଭାସେ ଅଗଣନ
ନିଳୋରସେ ଶୈଳ ବୈଦୁର୍ଯ୍ୟବରଣ ।''



Digitized by srujanika@gmail.com

ସଂଶୋଧନ ହେବା ପାଇଁ ରାଧାନାଥ ସମ୍ବଲପୁର ହିତୈଷିଣୀ (୨୩.୩.୧୯୦୪)ରେ ଏକପତ୍ର ପ୍ରକାଶ କରନ୍ତି । ଏହି ପଂକ୍ତିକୁ ସଂଶୋଧନ ସମୟରେ ସେ ସଂଶୋଧନ କରିଥିଲେ ମଧ ଅଶୁଦ୍ଧି ରହିଥିବାର ସୂଚାନ୍ତି । ଅଥଚ ୧୯୦୪ ପୂର୍ବରୁ ଚିଲିକା ଉତ୍କଳପ୍ରଭା, ସମ୍ବଲପୁର ହିତୈଷିଣୀରେ ପ୍ରକାଶ ପାଇବା ସହିତ ୧୮୯୧ରେ ମୟୂରଭଞ୍ଜ ପ୍ରେସ୍‌ରୁ ପୁସ୍ତକାକାରେ ଏବଂ ରାଧାନାଥ ଗ୍ରନ୍ଥାବଳୀ (୧୯୦୨)ରେ ସନ୍ନିବେଶିତ ହୋଇଥିଲା । ଏତେଗୁଡ଼ିଏ ସଂସ୍କରଣରେ ଏହି ଅଶୁଦ୍ଧି ରହିଲା, କେମିତି ?)

ଆଲୋଚିତ ପ୍ରସଙ୍ଗ ସମୂହରୁ ପ୍ରମାଣିତ ହୁଏ ରାଧାନାଥଙ୍କ ମାନସଭୂମିକୁ କଳନା କରିବା ଅତିକଷ୍ଟକର । ପ୍ରତିଟି କ୍ଷେତ୍ରରେ, ତାଙ୍କର ମତର ଖଣ୍ଡନ ମଣ୍ଡନର ବିଚିତ୍ର କଳା ସୁସ୍ପଷ୍ଟ । ରାଧାନାଥଙ୍କ ମାନସିକତାର ଏହା ଏକ ପ୍ରମୁଖ ଅଙ୍ଗ । ଫଳତଃ ରାଧାନାଥଙ୍କ ପ୍ରତିଟି ବକ୍ତବ୍ୟ ଅନ୍ତରାଳରେ ସତ୍ୟତାକୁ ଠାବ କରିବାକୁ ହେଲେ ଉପଯୁକ୍ତ ଅଧ୍ୟୟନ ସହିତ ରାଧାନାଥଙ୍କ ମାନସିକତା ସହିତ ପରିଚିତ ହେବା ଦରକାର ।

-୭-

ମାତୃଭାଷା ବଙ୍ଗଳା ହେବା ସତ୍ତ୍ୱେ ରାଧାନାଥ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା । ତାଙ୍କର କବିତ୍ୱ ପରାକାଷ୍ଠା ଦିଗନ୍ତ ପ୍ରସାରୀ । ଓଡ଼ିଆ କବିତାର ଅସପନ୍ନ ସମ୍ରାଟ ଆସନରେ ସେ ସମାସୀନ । ଆଧୁନିକ ଓଡ଼ିଆ ସାହିତ୍ୟ ଯୁଗକୁ ତାଙ୍କ ନାମରେ ନାମିତ କରାଯାଇଛି । ରାଧାନାଥଙ୍କ ପ୍ରତିଭା ସମସ୍ତ ପ୍ରଶଂସାର ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ। ଉତ୍କର୍ଷ ପ୍ରତିଭାର ଅଧିକାରୀ ସତ୍ତ୍ୱେ ଏକ ଅସହଜବୋଧ ତାଙ୍କ ଚରିତ୍ରର ମୁଖ୍ୟ ଅଙ୍ଗ। ସତ୍ୟକୁ ସ୍ୱୀକାର କରିବାର କୁଣ୍ଠା, ଅନେକ ଭୁଲ୍‌ର ଅବତାରଣା କରି ମିଥ୍ୟାକୁ ସତ୍ୟର ପୁଟଦେଇ ପରିବେଷଣ କରିଛି । ନିଜର ଜ୍ଞାତସାରରେ ସେ ଭୁଲ୍ ଉପରେ ପର୍ଦ୍ଦା ପକେଇଛନ୍ତି । ତାଙ୍କର ଏହି ଅସରଳତା ହିଁ ବିବାଦୀୟ ପରିସ୍ଥିତି ସୃଷ୍ଟିକରିଛି। ନିଜକୁ ପ୍ରତିଷ୍ଠା କରିବା ପାଇଁ ସୁଯୋଗ ସୃଷ୍ଟିକରିବା, ସାହିତ୍ୟର ଗତିପଥକୁ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ନିଜ ନିୟନ୍ତ୍ରଣରେ ରଖିବା ତାଙ୍କର ଚତୁରତାର ଅନ୍ୟତମ ଦୃଷ୍ଟାନ୍ତ । ତାଙ୍କର ଏହି ଅସରଳତାର ଜାଲରେ ପଥଭ୍ରଷ୍ଟ ହୋଇ ଅନେକ ସମାଲୋଚକ ରାଧାନାଥଙ୍କ ଐତିହାସିକ ଭୂମିକାକୁ ଅତିବାସ୍ତବ ରୂପେ ଉଚ୍ଚ ମୂଲ୍ୟାୟନ କରନ୍ତି ।

ରାଧାନାଥ ଥିଲେ ବିଭକ୍ତ ବ୍ୟକ୍ତିତ୍ୱର ଅଧିକାରୀ। ତାଙ୍କର ସାହିତ୍ୟ, ଭାଷଣ ଓ ଚିଠିପତ୍ରରେ ଏକ ଦ୍ୱୈତସତ୍ତାର ସ୍ୱାକ୍ଷର ବିଦ୍ୟମାନ। ଓଡ଼ିଆଙ୍କର ସରଳତାର ସୁଯୋଗ ନେଇ ସେ ଖୁବ୍ ସହଜରେ ନିଜକୁ ପ୍ରତିଷ୍ଠିତ କରି ପାରିଛନ୍ତି । ବିଦ୍ୟାରତ୍ନ, ରାମନାରାୟଣ, ଗଙ୍ଗାଧର, ଆର୍ତ୍ତତ୍ରାଣ, ରାମକୃଷ୍ଣ, ଦାମୋଦର, ଭୋଳାନାଥ, ବିଶ୍ୱନାଥ ପ୍ରମୁଖ ରାଧାନାଥ



Digitized by srujanika@gmail.com

ଭକ୍ତ ରାଧାନାଥଙ୍କ ଅସରଳତାର ଶିକାର ହୋଇ ତାଙ୍କର ଉକ୍ତିକୁ ସର୍ବମାନ୍ୟ ସ୍ୱୀକୃତି ଦେଇଛନ୍ତି । ଏପରି ଏକ ବିଭ୍ରାନ୍ତିକର ମୂଲ୍ୟାୟନ ଦ୍ୱାରା ସତ୍ୟାନୁସନ୍ଧାନର ଧାରା ଅନେକତ୍ର ବିଡମ୍ବିତ ହୋଇଛି । ରାଧାନାଥଙ୍କ ମିଥ୍ୟାବଳୟକୁ ଭେଦ କରିବାରେ ଅସମର୍ଥ ସମାଲୋଚକଗଣ ରାଧାନାଥ ତଥା ତାଙ୍କ ସାହିତ୍ୟକୁ ପ୍ରାଧାନ୍ୟ ଦେବା ଯୋଗୁ ସମକାଳୀନ ଅନ୍ୟାନ୍ୟ କାବ୍ୟରଥିଙ୍କୁ ଉପଯୁକ୍ତ ନ୍ୟାୟ ଦେଇପାରିନାହାନ୍ତି ।

ଏହି ଦୁର୍ଲଭ ପତ୍ରଟି ରାଧାନାଥ ସାହିତ୍ୟ ଓ ବ୍ୟକ୍ତିତ୍ୱ ଅଧ୍ୟୟନ ଦିଗରେ ଏକ ଐତିହାସିକ ଦଲିଲ ରୂପେ କାର୍ଯ୍ୟକରିବ । ରାଧାନାଥ ଓ ସୁଢ଼ଳଦେବଙ୍କ ସାରସ୍ୱତ ସମ୍ପର୍କ ଆଧୁନିକ ଓଡ଼ିଆ ସାହିତ୍ୟର ଏକ ଯୁଗାନ୍ତକାରୀ ଅଧ୍ୟାୟ। ରାଧାନାଥ ବିଭିନ୍ନ ପ୍ରତିକୂଳ ପରିସ୍ଥିତିର ଶିକାର ହୋଇ ସୁଢ଼ଳଦେବଙ୍କ ସମ୍ପର୍କ ଯୋଗୁଁ କ୍ଷତିଗ୍ରସ୍ତ ହୋଇଥିବାର (ଗଙ୍ଗାଧରଙ୍କୁ ପତ୍ର) ଘୋଷଣା କରିଥିଲେ ମଧ୍ୟ ସୁଢ଼ଳଦେବଙ୍କ ପୃଷ୍ଟପୋଷକତା ହିଁ ରାଧାନାଥ ସାହିତ୍ୟକୁ ପ୍ରତିଷ୍ଠା ଆଣିଦେଇଛି ଏବଂ ବହୁପ୍ରସାରୀ ହୋଇଛି ରାଧାନାଥ ପ୍ରତିଭା ।

ରାଧାନାଥଙ୍କ ଚାରିତ୍ରିକ ଅଧୋଗତି (ସଞ୍ଜିବନୀ ପତ୍ରିକାର ସମ୍ବାଦ) ସମୟରେ ମଧ୍ୟ ସେ ବିପଦର ବନ୍ଧୁରୂପେ ସୁଢ଼ଳଦେବଙ୍କୁ ଅର୍ଥ ସାହାଯ୍ୟ ମାଗିଛନ୍ତି । ଏହି ପତ୍ରଟି ରାଧାନାଥ ସୁଢ଼ଳଦେବଙ୍କ ସମ୍ପର୍କକୁ ମହନୀୟ କରି ତୋଳିବାବେଳେ ରାଧାନାଥଙ୍କ ବକ୍ତବ୍ୟ ଓ ଚିନ୍ତନର ପ୍ରଭେଦକୁ ସ୍ପଷ୍ଟଭାବରେ ପ୍ରତିଫଳିତ କରିଛି । ଏହି ଆଲୋଚନାରେ ପ୍ରଦର୍ଶିତ ରାଧାନାଥଙ୍କ ମାନସିକତା ସହିତ ପରିଚିତ ହେଲେ ହିଁ ଏହି ପତ୍ରର ଗୂଢ଼ାର୍ଥ ଓ ବ୍ୟଞ୍ଜନାର୍ଥ ଉପଲବ୍ଧି କରିହେବ ।

ବାସ୍ତବ ଦୃଷ୍ଟିଭଙ୍ଗୀ ନେଇ ରାଧାନାଥଙ୍କ ସାହିତ୍ୟ ଓ ବ୍ୟକ୍ତିତ୍ୱର ପୁନଃ ପର୍ଯ୍ୟାଲୋଚନା ଦିଗରେ ଏହି ଦୁର୍ଲଭ ପତ୍ରଟି ଏକ ନିରପେକ୍ଷ ଆହ୍ୱାନ ।❑❑❑

## ସହାୟକ ଗ୍ରନ୍ଥସୂଚୀ

### (କ)


ଉତ୍କଳ ଦୀପିକା

ଉତ୍କଳ ପ୍ରଭା

ଉତ୍କଳ ସାହିତ୍ୟ : (୩୯।୬) ଆଶ୍ୱିନ - ୧୩୪୩, ମୋର ଢଣାଲୋକ, ନାଥଶର୍ମା, ବୃନ୍ଦାବନ ।

ଏଷଣା, ୧୮ଶ, ଜୁନ୍- ୧୮୮୯: ଦାଶ ଦେବେନ୍ଦ୍ର କୁମାର: ବଙ୍ଗୀୟକାବ୍ୟ ଗ୍ରନ୍ଥରେ ରାଧାନାଥଙ୍କ ରଚିତ ଦୁଇଟି ଭୂମିକା ।

ଏଷଣା ୨୮ଶ - ଜୁନ, ୨୯ଶ- ଡିସେମ୍ବର -୧୯୯୪, ଦାଶ, ଦେବେନ୍ଦ୍ର କୁମାର: ଓଡ଼ିଶା- ବଙ୍ଗଳାର





Digitized by srujanika@gmail.com

ସାଂସ୍କୃତିକ ସହଯୋଗ: କବି ରାଧାନାଥ ଓ ନଗେନ୍ଦ୍ରବାଳା ।
ଓଡ଼ିଆ ଓ ନବସମ୍ବାଦ
ସମ୍ବଲପୁର ହିତୈଷିଣୀ
ସମ୍ବାଦ ବାହିକା ।

## (ଖ)

ଆଚାର୍ଯ୍ୟ, ପରମାନନ୍ଦ (୧୯୬୪) ରାଧାନାଥଙ୍କ ଅନନ୍ୟ ପ୍ରତିଭା: ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।

ଆଚାର୍ଯ୍ୟ, ସୁଦର୍ଶନ (ସଂ) (୧୯୯୧) ଇନ୍ଦ୍ରଧନୁ: ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ।

ଦାଶ, ଦେବେନ୍ଦ୍ର କୁମାର (୧୯୯୫) ଗଙ୍ଗାଧର: କବିତା ଓ କବିଆତ୍ମା, ପ୍ରଗତି ଉତ୍କଳ ସଂଘ, ରାଉରାକେଲା ।

(୨୦୦୪) ରାମକୃଷ୍ଣ କାବ୍ୟ ସଂଗ୍ରହ: ଓଡ଼ିଆ ଗବେଷଣା ପରିଷଦ, କଟକ

ନନ୍ଦ, ଫଣୀନ୍ଦ୍ର ଭୂଷଣ (୨୦୦୨) ସମ୍ବଲପୁର ହିତୈଷିଣୀ: ଏକ ଅଧ୍ୟୟନ, ଅପୂର୍ବା ଭୁବନେଶ୍ୱର ।

(୨୦୦୩) ବାସୁଦେବ ଗ୍ରନ୍ଥାବଳୀ: ପ୍ରଗତି ଉତ୍କଳ ସଂଘ, ରାଉରକେଲା ।

ପଟ୍ଟନାୟକ, ଦେବୀପ୍ରସନ୍ନ (୧୯୫୬) କବିଲିପି, ବିଶ୍ୱଭାରତୀ, ଶାନ୍ତିନିକେତନ , ଓଡ଼ିଆ ଗବେଷଣା ବିଭାଗ ।

ମିଶ୍ର, ପ୍ରସନ୍ନ କୁମାର, ଦାଶ, ଦେବେନ୍ଦ୍ର କୁମାର : (୧୯୯୮) କବିବର ରାଧାନାଥ ଗ୍ରନ୍ଥାବଳୀ ଗ୍ରନ୍ଥମନ୍ଦିର, କଟକ ।

ମିଶ୍ର, ଦାମୋଦର (୧୮୯୫) ମାତା, ରାୟପ୍ରେସ, କଟକ

ମିଶ୍ର, ଲକ୍ଷ୍ମଣ (୧୮୯୭) ସାହିତ୍ୟ ସୁନ୍ଦରୀ, ସୁଜ୍ଞ୍ଜଳ ପ୍ରେସ, ବାମଣ୍ଡା

ରାୟ, ଦୁର୍ଗାଚରଣ (୧୯୯୮) ୨ୟ ସଂ. ରାଧାନାଥ ଜୀବନୀ, ଫ୍ରେଣ୍ଡସ୍ ପବ୍ଲିଶର୍ସ କଟକ

ସରସ୍ୱତୀ, ନଗେନ୍ଦ୍ରବାଳା (୧୯୦୨) ଅମିୟଗାଥା (ବଙ୍ଗଳା-୧୯୦୨) ବ୍ରଜଗାଥା (ବଙ୍ଗଳା)

ସାମନ୍ତରାୟ, ନଟବର (୧୯୬୪) ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ

(୧୯୮୩) ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦), ବାଣୀଭବନ,ଭୁବନେଶ୍ୱର

(୧୯୭୦-୨ୟ) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ: ନିୟୁ ଷ୍ଟୁଡେଣ୍ଟ୍ ଷ୍ଟୋର , କଟକ ।



Digitized by srujanika@gmail.com

# ସାର ବାସୁଦେବ ସୁଢ଼ଳ ଦେବଙ୍କ
# ଏକ ବିରଳ ପ୍ରସ୍ତାବ

=୧=

'' ଆମ୍ଭମାନଙ୍କର ଜନ୍ମଭୂମି ଏ ଉତ୍କଳ ଦେଶ ଏପରି ଶୋଚନୀୟ ଅବସ୍ଥାରେ ଅଛି ଯେ କେହି ସାମାନ୍ୟ ପୁସ୍ତକ ଖଣ୍ଡିଏ ମୁଦ୍ରାଙ୍କନ କରାଇ ପ୍ରକାଶ କଲେ ତାହା ବିକ୍ରୟ ହୁଏ ନାହିଁ । ସୁତରାଂ ପ୍ରକାଶକମାନେ କ୍ଷତିଗ୍ରସ୍ତ ହୁଅନ୍ତି, ଏ ହେତୁ ଏ ଦେଶରେ ଭଲଭଲ ପୁସ୍ତକ ପ୍ରକାଶ କରିବାକୁ କେହି ସାହାସୀ ହେଉ ନାହାନ୍ତି । ସଦ୍‌ଗ୍ରନ୍ଥ ଅଧ୍ୟୟନ ଦ୍ୱାରା ମାନବର ସମୂହ ଉପକାର ସାଧିତ ହୁଏ ତାଦୃଶ ଗ୍ରନ୍ଥ ପ୍ରକାଶିତ ନ ହେବାରୁ ଉତ୍କଳର ଅନେକ ଲୋକ ତାଦୃଶ ଉପକାର ଲାଭରୁ ବଞ୍ଚିତ ହେଉଅଛନ୍ତି । ଦେଶର ବିଦ୍ୟୋତ୍ସାହୀ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏଥିର ପ୍ରତିକାର କଲେ ଅତି ସାମାନ୍ୟ ବ୍ୟୟ ସ୍ୱୀକାର କଲେ ଉକ୍ତ ଅଭାବ କେତେକାଂଶରେ ଦୂର ହୋଇପାରନ୍ତା । ଏ ବିଷୟରେ ଆମ୍ଭେ ଉତ୍କଳର କତିପୟ ସୁଶିକ୍ଷିତ ଭଦ୍ରବ୍ୟକ୍ତିଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ଉତ୍କଳର ବିଖ୍ୟାତନାମ ପ୍ରଜାବତ୍ସଳ, ବିଦ୍ୟୋତ୍ସାହୀ ରାଜା, ମହାରାଜା ଏବଂ ଜମିଦାର ମହୋଦୟମାନଙ୍କ ନିକଟରେ ଏହି ପ୍ରସ୍ତାବ କରୁଅଛୁଁ ଯେ ସେମାନେ ନବପ୍ରକାଶିତ ସଦ୍‌ଗ୍ରନ୍ଥମାନଙ୍କରୁ ନିର୍ଦ୍ଦିଷ୍ଟ ପରିମାଣର ଖଣ୍ଡିକେତେ ଲେଖାଏଁ କ୍ରୟ କରିବାକୁ ପ୍ରତିଶ୍ରୁତ ହେଲେ ଲୋକମାନେ ସଦ୍‌ଗ୍ରନ୍ଥ ପ୍ରକାଶରେ ପ୍ରବୃତ୍ତ ହେବେ ଏବଂ ଉଲ୍ଲିଖିତ ମହାନୁଭବମାନଙ୍କ ଗୃହୀତ ପୁସ୍ତକର ମୂଲ୍ୟ ଦ୍ୱାରା ଛାପାଖାନାର ଅଧିକାଂଶ ଦେୟ ଶୀଘ୍ର ପ୍ରତିଶୋଧ ହୋଇପାରିବ ସୁତରାଂ ପ୍ରକାଶକଙ୍କର ବିଶେଷ କ୍ଷତିଗ୍ରସ୍ତ ହେବାର ଆଶଙ୍କା ରହିବ ନାହିଁ । ମୁଦ୍ରାଙ୍କନଯୋଗ୍ୟ ପୁସ୍ତକମାନ ନିର୍ବାଚନ କରିବା ଏବଂ ତହିଁର ମୂଲ୍ୟ ନିର୍ଦ୍ଧାରଣ କରିବା ଭାର ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ପ୍ରମୁଖ ବ୍ୟକ୍ତିମାନଙ୍କୁ ଅର୍ପଣ କରାଯିବ । କେବଳ ସେହି ପୁସ୍ତକର ପ୍ରକାଶକମାନେ ଉପରୋକ୍ତ ପ୍ରକାରର ସାହାଯ୍ୟ ଲାଭର ଅଧିକାରୀ ହେବେ । ସ୍କୁଲର ପାଠ୍ୟପୁସ୍ତକ ପ୍ରକାଶକମାନେ ଉକ୍ତ ପ୍ରକାରର ସାହାଯ୍ୟ ପାଇପାରିବେ ନାହିଁ । ମୁଦ୍ରିତ ହୋଇଯାଇଥିବା ଏବଂ ବର୍ତ୍ତମାନ ଯନ୍ତ୍ରସ୍ଥ ଥିବା ପୁସ୍ତକ ସକାଶେ ଏ ନିୟମ ବର୍ତ୍ତିବ ନାହିଁ । କମେଟୀର ଅନୁମୋଦିତ ଗ୍ରନ୍ଥର ପ୍ରକାଶକମାନେ ପ୍ରତିଶ୍ରୁତ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ନିକଟକୁ ସ୍ୱପ୍ରକାଶିତ ପୁସ୍ତକ ଭେଲ୍ୟୁ ପେବଲ ପାକେଟରେ ପଠାଇ ମୂଲ୍ୟ ଗ୍ରହଣ କରିବେ। ଦେଶର ବିଖ୍ୟାତନାମା



Digitized by srujanika@gmail.com

ରାଜା ଜମିଦାରମାନଙ୍କର ନାମ ଏବଂ ସେମାନଙ୍କ ମଧ୍ୟରେ କିଏ କେତେଖଣ୍ଡ ଲେଖାଏଁ ପୁସ୍ତକ ଗ୍ରହଣ କରିବେ ତହିଁର ଗୋଟିଏ ହିସାବ ନିମ୍ନରେ ପ୍ରକାଶ କରୁଅଛୁଁ । ଭରଶା କରୁଁ ସେମାନେ ଆମ୍ଭର ଏହି ପ୍ରସ୍ତାବ ଆଦରର ସହିତ ଗ୍ରହଣ କରିବେ । ତାହା ହେଲେ ପୁସ୍ତକ ନିର୍ବାଚନ କମିଟିର ସଦସ୍ୟ ନିର୍ବାଚନ ଏବଂ ପ୍ରୟୋଜନୀୟ ନିୟମ ପ୍ରଣୟନ କରି ସମ୍ବାଦପତ୍ରରେ ପ୍ରକାଶ କରାଯିବ ଯେ ଦେଶର ସୁଶିକ୍ଷିତ ବ୍ୟକ୍ତିମାନେ ସଦ୍‌ଗ୍ରନ୍ଥ ପ୍ରକାଶ ବିଷୟରେ ଯତ୍ନଶୀଳ ହେବେ । ପରିଶେଷରେ ବକ୍ତବ୍ୟ ଏହି ଯେ ଉକ୍ତ ପ୍ରସ୍ତାବ ୧୦ ବର୍ଷ ପର୍ଯ୍ୟନ୍ତ ବଳବତ୍ତର ରହିବ ।''

ପ୍ରସ୍ତାବକ

ଦେବଗଡ ପୋଃ — ଶ୍ରୀ ରାଜା ସୁଢ଼ଳଦେବ

ସମ୍ବଲପୁର — ।କି। ବାମଣ୍ଡା

ତା୪-୬- ୧୮୯୬

ରାଜା ମହାରାଜାଦିଙ୍କ ନାମ କ୍ରୟ କରଣାର୍ଥ ପ୍ରସ୍ତାବ କରାଯାଇଥିବା ପୁସ୍ତକ ସଂଖ୍ୟା: -

| | | |
|---|---|---|
| ଶ୍ରୀଯୁକ୍ତ ମହାରାଜା ମୟୂରଭଞ୍ଜ | - | ୨୦ ଖଣ୍ଡ |
| ଶ୍ରୀଯୁକ୍ତ ମହାରାଜା କେନ୍ଦୁଝର | - | ୧୫ଖଣ୍ଡ |
| ଶ୍ରୀଯୁକ୍ତ ରାଜା କନିକା | - | ୫ ଖଣ୍ଡ |
| ଶ୍ରୀଯୁକ୍ତ ରାଜା ଆଠଗଡ | - | ୫ଖଣ୍ଡ |
| ଶ୍ରୀଯୁକ୍ତ ରାଜା ଡୋମପଡା | - | ୫ ଖଣ୍ଡ |
| ଶ୍ରୀଯୁକ୍ତ ରାଜା ନୂଆଗଡ | - | ୧୦ଖଣ୍ଡ |
| ଶ୍ରୀଯୁକ୍ତ ରାଜା ରଣପୁର | - | ୫ଖଣ୍ଡ |
| ଶ୍ରୀଯୁକ୍ତ ରାଜା ବୌଦ | - | ୫ଖଣ୍ଡ |
| ଶ୍ରୀଯୁକ୍ତ ରାଜା ଖଣ୍ଡପଡା | - | ୫ଖଣ୍ଡ |
| ଶ୍ରୀଯୁକ୍ତ ରାଜା ହିଣ୍ଡୋଳ | - | ୫ଖଣ୍ଡ |
| ଶ୍ରୀଯୁକ୍ତ ରାଜା ଆଠମଲ୍ଲିକ | - | ୫ଖଣ୍ଡ |
| ଶ୍ରୀଯୁକ୍ତ ରାଜା ସୋନପୁର | - | ୧୦ଖଣ୍ଡ |
| ଶ୍ରୀଯୁକ୍ତ ରାଜା ପାଟଣା | - | ୧୦ଖଣ୍ଡ |
| ଶ୍ରୀଯୁକ୍ତ ରାଜା ବାମଣ୍ଡା | - | ୧୦ଖଣ୍ଡ |
| ଶ୍ରୀଯୁକ୍ତ ରାଜା ଖଲ୍ଲିକୋଟ ଓ ଆଠଗଡ | - | ୧୦ଖଣ୍ଡ |
| ଶ୍ରୀଯୁକ୍ତ ରାଜା ପାରଳାଖେମୁଣ୍ଡି | - | ୧୦ଖଣ୍ଡ |



Digitized by srujanika@gmail.com

| | | |
|---|---|---|
| ଶ୍ରୀଯୁକ୍ତ ରାଜା ମଞ୍ଜୁଷା | - | ୫ ଖଣ୍ଡ |
| ଶ୍ରୀଯୁକ୍ତ ମହାରାଜା ଜୟପୁର | - | ୧୦ ଖଣ୍ଡ |
| ଶ୍ରୀଯୁକ୍ତ ରାଜା ବୈଦ୍ୟନାଥ ପଣ୍ଡିତ ଦର୍ପଣୀ | - | ୫ ଖଣ୍ଡ |
| ଶ୍ରୀଯୁକ୍ତ ଜମିଦାର ବରପାଲି | - | ୩ ଖଣ୍ଡ |
| ଶ୍ରୀଯୁକ୍ତ ଜମିଦାର ପଦ୍ମପୁର, ଚନ୍ଦ୍ରପୁର | - | ୩ ଖଣ୍ଡ |
| ଶ୍ରୀଯୁକ୍ତ ଜମିଦାର ଲକ୍ଷ୍ମଣନାଥ | - | ୩ ଖଣ୍ଡ |
| ଶ୍ରୀଯୁକ୍ତ ରାଧାଚରଣ ଦାସ ଜମିଦାର ସୁନହଟ | - | ୩ ଖଣ୍ଡ |
| ଶ୍ରୀଯୁକ୍ତ ରାଜା ବୈକୁଣ୍ଠନାଥ ଦେ ବାହାଦୂର ବାଲେଶ୍ୱର | - | ୧୦ ଖଣ୍ଡ |
| ଶ୍ରୀଯୁକ୍ତ ଜମିଦାର ବିହାରୀଲାଲ ପଣ୍ଡିତ କଟକ | - | ୩ ଖଣ୍ଡ |

=୨=

ସାର୍ ବାସୁଦେବ ସୁଢ଼ଳଦେବ ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟର ପ୍ରାଣକେନ୍ଦ୍ର ଥିଲେ । ସେ ଓଡ଼ିଆ ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ ପାଇଁ ସଂକଳ୍ପବଦ୍ଧ ଓ ଉଦ୍ୟମରତ ଥିଲେ । ଆଧୁନିକ ସାହିତ୍ୟର ପୃଷ୍ଠପୋଷକ ରୂପେ ସେ ସର୍ବସ୍ୱୀକୃତ । ଶୁଦ୍ଧ ପାଠ୍ୟପୁସ୍ତକ ପ୍ରଣୟନ, ଶିକ୍ଷା କ୍ଷେତ୍ରର କୁସଂସ୍କାର ଦୂରୀକରଣ ସହିତ ସୁକାବ୍ୟ ରଚନା ନିମନ୍ତେ ଅଳଙ୍କାର ପୁସ୍ତକ ସୃଷ୍ଟିକରି ସେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ବିଦ୍ୟାନଗରୀ କଟକରେ ସୁଢ଼ଳ ପ୍ରେସ୍ (୧୮୮୫) ସ୍ଥାପନ ଏବଂ ଦେବଗଡଠାରେ ଜଗନ୍ନାଥ ବଲ୍ଲଭ ପ୍ରେସ ପ୍ରତିଷ୍ଠା (୧୮୮୬) ଦ୍ୱାରା ସେ ଅନେକ ପତ୍ରପତ୍ରିକା ଓ ସଦ୍‌ଗ୍ରନ୍ଥ ପ୍ରକାଶନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ରୀତିଯୁଗୀୟ କବି ଉପେନ୍ଦ୍ର ଭଞ୍ଜଙ୍କ ଅବନାରସ ତରଙ୍ଗ ଠାରୁ ରାଧାନାଥଙ୍କ ଯଯାତିକେଶରୀ ଯାଏ ଅନେକ ପୁସ୍ତକ ବାମଣ୍ଡା ପ୍ରେସରୁ ସୁଢ଼ଳଦେବଙ୍କ ଆନୁକୂଲ୍ୟରେ ପ୍ରକାଶିତ । ଅନେକ ସଂସ୍କୃତ ପୁସ୍ତକର ଶୁଦ୍ଧ ସଂସ୍କରଣ ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ପାଠ୍ୟପୁସ୍ତକ ବ୍ୟତିରେକେ ଅନ୍ୟାନ୍ୟ ସଦ୍‌ଗ୍ରନ୍ଥର ପ୍ରକାଶନ ଏକ ଆୟାସସାଧ୍ୟ ବ୍ୟାପାର ଥିଲା । ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାକୁ ହେଲେ ବିଭିନ୍ନ ବିଷୟକ ପୁସ୍ତକ ପ୍ରଣୟନ ଓ ପ୍ରଚାର ଅପରିହାର୍ଯ୍ୟ ଥିଲା । ଏହି ଲକ୍ଷ୍ୟ ହାସଲ ପାଇଁ ସୁଢ଼ଳଦେବ ସମ୍ବଲପୁର ହିତୈଷିଣୀ (୮/୮ ତା- ୨୨-୭-୧୮୯୬) ସଂଖ୍ୟାରେ ଉପରୋକ୍ତ ପ୍ରସ୍ତାବଟି ପ୍ରକାଶ କରିଥିଲେ । ଏହି ପ୍ରସ୍ତାବ



Digitized by srujanika@gmail.com

ତତ୍‌କାଳୀନ ଓଡ଼ିଶାର ସମସ୍ତ ସାହିତ୍ୟିକ, ବୁଦ୍ଧିଜୀବୀ ଓ ରାଜା ମହାରାଜାଙ୍କ ପାଖକୁ ପ୍ରେରଣ କରାଯାଇଥିଲା । କିନ୍ତୁ ଦୁର୍ଭାଗ୍ୟର ବିଷୟ ଏହି ପ୍ରସ୍ତାବଟି ଉପଯୁକ୍ତ ସମର୍ଥନ ଅଭାବରେ କାର୍ଯ୍ୟକାରୀ ହୋଇ ପାରି ନ ଥିଲା । ସମ୍ବଲପୁର ହିତୈଷିଣୀ ସମ୍ପାଦକ ଉକ୍ତ ପ୍ରସ୍ତାବ ସହିତ 'ପ୍ରସ୍ତାବର ପରିଣାମ' ସମ୍ପର୍କରେ ନିଜର ଟିପ୍ପଣୀ ପ୍ରକାଶ କରିଥିଲେ । ପାଠକଙ୍କ ଅବଗତି ପାଇଁ ସେହି ଅମୂଲ୍ୟ ମନ୍ତବ୍ୟଟି ଏଠାରେ ଉଦ୍ଧୃତ କରାଗଲା ।

### '' ପ୍ରସ୍ତାବର ପରିଣାମ''

ଉତ୍କଳ ଦେଶରେ ମୁଦ୍ରାଯନ୍ତ୍ର ଏବଂ ଶିକ୍ଷିତ ଲୋକର ସଂଖ୍ୟା ଦିନକୁଦିନ ବଢୁଅଛି କିନ୍ତୁ ସେହି ହିସାବରେ ସଦ୍‌ଗ୍ରନ୍ଥର ସଂଖ୍ୟା ଅଧିକ ହେବାକୁ ନାହିଁ । ଉତ୍କଳ ଭାଷାରେ ମୁଦ୍ରିତ ପୁସ୍ତକମାନ ଆଲୋଚନା କଲେ ଅଧିକାଂଶ ଅସାର ପୁସ୍ତକ ଥିବାର ପ୍ରତିପନ୍ନ ହେବ । ଏ ଦେଶର ଲୋକମାନେ ସେହିସବୁ ବାଜେ ପୁସ୍ତକ କିଣିବାକୁ ଯେପରି ଭଲପାଆନ୍ତି ଭଲ ପୁସ୍ତକ ପ୍ରତି ସେପରି ନୁହେଁ । ସୁତରାଂ ସଦ୍‌ଗ୍ରନ୍ଥ ପ୍ରକାଶକମାନେ ପରିଶ୍ରମର ପୁରସ୍କାର ପାଇବାତ ଦୂରର କଥା, ପ୍ରେସର ଦେୟ ପରିଶୋଧ ସକାଶେ ନାନା ପ୍ରକାର କଷ୍ଟ ଅସୁବିଧା ଭୋଗ କରିଥାନ୍ତି । ଏହି ହେତୁ ଉତ୍କଳର ସୁଲେଖକମାନେ ପୁସ୍ତକ ପୁସ୍ତିକା ପ୍ରକାଶ କରିବାରେ ଅନିଚ୍ଛୁକ । ସେମାନଙ୍କର ଉତ୍ସାହ ବର୍ଦ୍ଧନ କରିବା ଏବଂ ଦେଶର ସଦ୍‌ଗ୍ରନ୍ଥ ପ୍ରଚାର ବୃଦ୍ଧି କରିବା ଉଦ୍ଦେଶ୍ୟରେ ବାମଣ୍ଡାଧିପତି ମହୋଦୟ ଉତ୍କଳ ବିଖ୍ୟାତନାମା ରାଜା ଜମିଦାରମାନଙ୍କ ନିକଟରେ ଉପରୋକ୍ତ ପ୍ରସ୍ତାବଟି ଉପସ୍ଥିତ କରିଥିଲେ । ଉକ୍ତ ପ୍ରସ୍ତାବଟି ମୁଦ୍ରିତ ହୋଇ ଗତ ମାସ ୪ ତାରିଖରେ ସେହି ସମସ୍ତ ରାଜା ଜମିଦାରମାନଙ୍କ ନିକଟକୁ ପଠାଯାଇଥିଲା । ବଡଦୁଃଖର ବିଷୟ ଯେ ମୟୂରଭଞ୍ଜ ମହାରାଜା, ଡୋମପଡାର ରାଜା, ବାଲେଶ୍ୱରର ଅନ୍ୟତମ ଜମିଦାର ଶ୍ରୀଯୁକ୍ତ ସାମନ୍ତ ରାଧାଚରଣ ଦାସ, କାଉପୁର ମହାଶୟ, ପଦ୍ମପୁର ଚନ୍ଦ୍ରପୁରର ଜମିଦାର ସାହେବଙ୍କ ବ୍ୟତୀତ ଅନ୍ୟ କୌଣସି ରାଜା ଜମିଦାର ଉକ୍ତ ପ୍ରସ୍ତାବ ଗ୍ରହଣ କରିବା ତେଣେ ଥାଉ ସେହି ପ୍ରସ୍ତାବର ପ୍ରାପ୍ତି ସ୍ୱୀକାର ସୁଦ୍ଧା କଲେ ନାହିଁ । ଉଲ୍ଲିଖିତ ରାଜା ମହାରାଜା ଏବଂ ଜମିଦାରମାନେ ଉକ୍ତ ପ୍ରସ୍ତାବ ଅନୁମୋଦନ କରି ପ୍ରସ୍ତାବକଙ୍କୁ ଧନ୍ୟବାଦ ଦେଇ ପତ୍ର ଲେଖି ଅଛନ୍ତି । ବାସ୍ତବରେ ପ୍ରସ୍ତବାଟି କାହାରି ପକ୍ଷରେ ଅସାଧ ନୁହେଁ ଅଥଚ ତଦ୍ୱାରା ଦେଶର ଗୋଟିଏ ସୁମହତ କାର୍ଯ୍ୟ ସାଧନ ହୋଇପାରିଥାନ୍ତା । ଶୀଘ୍ର ମୁଦ୍ରାଙ୍କନ ବ୍ୟୟର ଆଂଶିକ ପରିଶୋଧର ସୁବିଧା ଲାଭ କଲେ ଅନେକେ ବ୍ୟୟସାଧ ସଦ୍‌ଗ୍ରନ୍ଥ ପ୍ରକାଶ କାର୍ଯ୍ୟରେ ଉଦ୍ୟୋଗୀ ହୋଇପାରନ୍ତେ । ଯେଉଁ ଦେଶର ରାଜା ଜମିଦାରମାନେ ହିତକର ଅନୁଷ୍ଠାନରେ ସାମାନ୍ୟ ପରିମାଣରେ ତ୍ୟାଗ



Digitized by srujanika@gmail.com

ସ୍ୱୀକାର କରିବାକୁ କୁଣ୍ଠିତ, ସେ ଦେଶର ଉନ୍ନତି ଆଶା କରିବା ବାତୁଳତା ମାତ୍ର । ବାମଣ୍ଡାଧିପତି ମହୋଦୟ ରାଜା ଜମିଦାରମାନଙ୍କ ନିକଟରୁ ଉତ୍ତର ନ ପାଇବାରୁ ଉକ୍ତ ସଂକଳ୍ପ ତ୍ୟାଗ କରିଅଛନ୍ତି । ''

ସୁଢ଼ଳ ଦେବଙ୍କ ପ୍ରସ୍ତାବ ଏବଂ ହିତୈଷିଣୀ ସମ୍ପାଦକଙ୍କ ମନ୍ତବ୍ୟରୁ ତତ୍‌କାଳୀନ ସମାଜର ବାସ୍ତବ ଚିତ୍ର ସ୍ପଷ୍ଟ ହୋଇଥାଏ । ସଦ୍‌ଗ୍ରନ୍ଥର ପ୍ରଚାର ଓ ପ୍ରସାର ପାଇଁ ତଥା ମାତୃସେବାର ଦ୍ୱାର ଉନ୍ମୋଚନ ପାଇଁ ସୀମିତ ଲୋକ ବଦ୍ଧପରିକର ଥିଲେ । ଅନେକ ଆଦର୍ଶ ପ୍ରସ୍ତାବ ସମର୍ଥନ ଅଭାବରେ କାର୍ଯ୍ୟକାରୀ ହୋଇ ପାରୁନଥିଲା । ସେମିତି ଏକ ଦୁଃଖଦ ପରିଣତିର ସମ୍ମୁଖୀନ ହୋଇଥିଲା ସୁଢ଼ଳଦେବଙ୍କ ପ୍ରସ୍ତାବ ।

ସୁଢ଼ଳଦେବଙ୍କ ଏହି ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରୁ ନ ଥିବାରୁ ସେ ଏକକ ଭାବରେ ସଦ୍‌ଗ୍ରନ୍ଥ ପ୍ରକାଶନ ଦିଗରେ ଉଦ୍ୟମ କରିଥିଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ ସୁଢ଼ଳପ୍ରେସ, ଜଗନ୍ନାଥ ବଲ୍ଲଭ ପ୍ରେସ, କାଳିକାପ୍ରେସରୁ ନୟମିତ ଭାବରେ ପତ୍ରପତ୍ରିକା ତଥା ସଦ୍‌ଗ୍ରନ୍ଥ ସମୂହ ପ୍ରକାଶ ଲାଭ କରୁଥିଲା । ବାମଣ୍ଡାର କବି ସାହିତ୍ୟିକଙ୍କ ବ୍ୟତୀତ ବହିରାଗତ ଅନେକ କବି ସାହିତ୍ୟିକଙ୍କ କୃତି ଏହି ପ୍ରେସରୁ ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ ପ୍ରକାଶ ପାଇଥିଲା । ବାମଣ୍ଡାରୁ ପ୍ରକାଶିତ ପୁସ୍ତକାବଳୀ ଏକ ମାର୍ମିକ ଅଧ୍ୟୟନର ଅପେକ୍ଷା ରଖେ । ସେ ଯାହେଉ ଓଡ଼ିଆ ଭାଷା ସାହିତ୍ୟର ସମୃଦ୍ଧିକଳ୍ପେ ବାମଣ୍ଡାର ପୁସ୍ତକ ପ୍ରକାଶନ ଏକ ଉଲ୍ଲେଖନୀୟ ଭୂମିକା ସମ୍ପାଦନ କରିଥିଲା । ରାଧାନାଥ, ଗଙ୍ଗାଧର, ଚିନ୍ତାମଣି, ମଧୁସୂଦନଙ୍କଠାରୁ ଆରମ୍ଭକରି ଅନେକ ନବୀନ ସାରସ୍ୱତ ସ୍ରଷ୍ଟାଙ୍କ ପୁସ୍ତକ ବାମଣ୍ଡା ପ୍ରେସରୁ ପ୍ରକାଶିତ ହୋଇଥିଲା । ସୁଢ଼ଳଦେବଙ୍କ ପରେ ତାଙ୍କର ସୁଯୋଗ୍ୟ ସନ୍ତାନ ସଚ୍ଚିଦାନନ୍ଦ ଦେବ ଏହି ପରମ୍ପରାକୁ ସୁଦୂର ପ୍ରସାରୀ କରିଥିଲେ ।

ଯୁଗେ ଯୁଗେ ସଦ୍‌ଗ୍ରନ୍ଥ ଓ ସତ୍‌ସାହିତ୍ୟିକ ଗଣ ଅବହେଳାର ଶୀକାର ହୋଇଛନ୍ତି । ମୁଷ୍ଟିମେୟ ଗୁଣଗ୍ରାହୀ ସାହିତ୍ୟର ପ୍ରତିଷ୍ଠା ପାଇଁ ପ୍ରାଣପାତ ଉଦ୍ୟମ କରିଛନ୍ତି । ଏହି ଦୁଇଗୋଷ୍ଠୀଙ୍କ ଉତ୍ସର୍ଗୀକୃତ ସାଧନା ହିଁ ପ୍ରଳମ୍ବମାନ ସାରସ୍ୱତ ଧାରାକୁ କାଳଜୟୀ କରିଛି । ଏମିତି ଏକ କାଳଜୟୀ ସାରସ୍ୱତ ଧାରାର ଅନ୍ୟତମ ପ୍ରତିଭୂ ଥିଲେ ସାର ସୁଢ଼ଳଦେବ ଏବଂ ତାଙ୍କର ନିଷ୍ଠାପର ସାଧନାର ନିଛକ ଦୃଷ୍ଟାନ୍ତ ରୂପେ ଉଦ୍ଧୃତ ପ୍ରସ୍ତାବଟିକୁ ଗ୍ରହଣ କରାଯାଇପାରେ । ଅସଫଳ ହେଲେ ମଧ୍ୟ ଜଣେ ଜ୍ଞାନତପସ୍ୱୀର ଏହି ଆଦର୍ଶ ପ୍ରସ୍ତାବକୁ ସମ୍ମାନ ଜଣାଇବାର ଅବକାଶ ଆସିଛି ।□□□



Digitized by srujanika@gmail.com

# ଜାତୀୟତାର ଉନ୍ମେଷ ଫର୍ଦ୍ଦରେ ମୂର୍ଚ୍ଛିତ ସଂଯୋଜନ: ନୀଳମଣି ବିଦ୍ୟାରତ୍ନ

## ଅପୂର୍ବ କର୍ମ ମନ୍ଦିରର ମୁଖଶାଳା :

ଓଡ଼ିଆ ସାରସ୍ୱତ କୋଣାର୍କ ପ୍ରତିଷ୍ଠା ପାଇଁ କେତେ ବିଶୁ ମହାରଣା କେତେ ଶିବେଇ ସାଆନ୍ତ ପ୍ରାଣବଳୀ ଦେଇଛନ୍ତି । ଧର୍ମପଦମାନେ ନିଜର କାରିଗରି କୌଶଳକୁ ଦେଶ ଓ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗୀଦେଇ ଅନ୍ଧକାର ଗର୍ଭରେ ଉଭେଇ ଯାଇଛନ୍ତି । ଜାତୀୟ ତିମିରାଚ୍ଛନ୍ନ ଇତିହାସ ଭିତରୁ ସେଇ ଧର୍ମପଦମାନଙ୍କୁ ଉଦ୍ଧାର କରିବା ଓ ପ୍ରକୃତ ଶ୍ରେୟ ପ୍ରଦାନର ସମୟ ଉପଗତ। ସମୟର ସାଇତା ସଂଭାବନାକୁ ଅତିକ୍ରମ କରି ଜାତୀୟତାର ଉନ୍ମେଷ ଫର୍ଦ୍ଦରେ ଅନ୍ୟ ଏକ ମୂର୍ଚ୍ଛିତ ସଂଯୋଜନ: ନୀଳମଣି ବିଦ୍ୟାରତ୍ନ । ଜାତୀୟ ଜୀବନକୁ ପ୍ରତ୍ୟୟପୂର୍ଣ୍ଣ ଦିଗନ୍ତର ସନ୍ଧାନ ଦେବାର କୃତି ଓ କୃତିତ୍ୱ : ନୀଳମଣି ବିଦ୍ୟାରତ୍ନ । ଓଡ଼ିଆ ସାରସ୍ୱତ କୃଷ୍ଟି ନିର୍ଦ୍ଧାରଣ ଦିଗରେ ଉତ୍ସର୍ଗୀକୃତ : ନୀଳମଣି ବିଦ୍ୟାରତ୍ନ । ନୀଳମଣି ବିଦ୍ୟାରତ୍ନ ଓଡ଼ିଆ ସାରସ୍ୱତ ଜଗତର ସ୍ୱପ୍ନ ଓ ସଂକଳ୍ପର ଅଭିନବ ଦୀପଶିଖା । ଏକ ବର୍ଣ୍ଣମୟ ବୈଚିତ୍ର୍ୟମୟ ରେଖା ।

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରସ୍ତୁତି ଲଗ୍ନର ଜଣେ ଧୂରୀଣ ଆଦର୍ଶ ସାରସ୍ୱତ ସେବକ ବିଦ୍ୟାରତ୍ନ । ଏକ ବଳିଷ୍ଠ ଓଡ଼ିଆ ଭାଷା ସାହିତ୍ୟ ନିର୍ମାଣ ଦିଗରେ ତାଙ୍କର ସର୍ଜନାତ୍ମକ ଦୃଷ୍ଟିଭଙ୍ଗୀ ଓଡ଼ିଆ ସାହିତ୍ୟକୁ ଦେଇଛି ନୂତନ ଦିଗବଳୟର ସଂଧାନ । କେବଳ ଭାଷାର ସମୃଦ୍ଧି ସାଧନ ନୁହେଁ ବରଂ ନୂତନ ସାହିତ୍ୟିକ ସୃଷ୍ଟି, ଶିକ୍ଷାର ପ୍ରଚାର ଓ ପ୍ରସାର ସହିତ ସମାଜ ସଂସ୍କାର କ୍ଷେତ୍ରରେ ସେ ଗ୍ରହଣ କରିଥିଲେ ବିପ୍ଳବାତ୍ମକ ପଦକ୍ଷେପ । ଏହି ଆଭିମୁଖ୍ୟରେ ତାଙ୍କର ପ୍ରଧାନ ଆୟୁଧ ଥିଲା ପତ୍ରପତ୍ରିକା। ପତ୍ରପତ୍ରିକା ମାଧ୍ୟମରେ ସେ ସଂଗ୍ରାମ ଚଳାଇଥିଲେ ଏବଂ ବିଜୟ ଲାଭ ମଧ୍ୟ କରିଥିଲେ । ବିଦ୍ୟାରତ୍ନଙ୍କ ସମ୍ପାଦନାରେ ସମ୍ବଲପୁର ହିତୈଷିଣୀ, ଉତ୍କଳ ମଧୁପ, ପ୍ରଜାବନ୍ଧୁ, ଗଞ୍ଜାମ ଗୁଣଦର୍ପଣ ପ୍ରଭୃତି ପତ୍ରିକା ଭାଷା ସାହିତ୍ୟର ସମୃଦ୍ଧି ସାଧନ ସହିତ ପୂର୍ଣ୍ଣାଙ୍ଗ ଉତ୍କଳ ଗଠନ ଦିଗରେ କ୍ରାନ୍ତିକାରୀ ଭୂମିକା ନିର୍ବାହ କରିଥିଲା ।

ବିଦ୍ୟାରତ୍ନ ଜଣେ କ୍ରାନ୍ତଦ୍ରଷ୍ଟା ସାରସ୍ୱତ ପୁରୁଷ। ତାଙ୍କର ସୁଦୂର ବୀକ୍ଷଣ ମାଧ୍ୟମରେ ସେ



Digitized by srujanika@gmail.com

ଓଡ଼ିଆ ସାହିତ୍ୟର ଭବିଷ୍ୟତକୁ ଅବଲୋକନ କରିଥିଲେ। ଏକ ସୁସ୍ଥ, ସୁନ୍ଦର ଓ ବଳିଷ୍ଠ ସାରସ୍ୱତ ପ୍ରାକାର ନିର୍ମାଣ ଫଳରେ ସାହିତ୍ୟସୌଧ ଚିରସ୍ଥାୟୀ ହବ ଏହା ସେ ହୃଦୟଙ୍ଗମ କରିଥିଲେ । ସେହି ମହାନ ସାହିତ୍ୟରଥୀଙ୍କ ଅନ୍ତଃକରଣର ବାଣୀ ଆବେଗର ସୂକ୍ଷ୍ମ ପର୍ଯ୍ୟାଲୋଚନାର ନିମନ୍ତେ ଏହି ଆଲୋଚନା ଉଦ୍ଦିଷ୍ଟ ।

**ସାରସ୍ୱତ ସର୍ଜନାର ସ୍ୱପ୍ନ ଓ ସଂକଳ୍ପ:**

ବାଙ୍କୀର ବୈଦ୍ୟେଶ୍ୱର ସଂଲଗ୍ନ ବ୍ରଜବିହାରୀପୁର ଶାସନରେ ବ୍ରଜବିହାରୀପୁର ଶାସନରେ ତା ୧୪।୧୨।୧୮୬୭ ରେ ନୀଳମଣି ମିଶ୍ରଙ୍କ ଜନ୍ମ । ପିତା ସୌରିଚରଣ ମିଶ୍ର ଏବଂ ମାତା ରୋହିଣୀ ଦେବୀଙ୍କର ସେ ଜ୍ୟେଷ୍ଠ ସନ୍ତାନ। ତାଙ୍କର ଥିଲେ ଛଅ ଭାଇ ଓ ତିନି ଭଉଣୀ । ଭାଇମାନଙ୍କ ନାମ ଯଥାକ୍ରମେ ଦାମୋଦର, ବିଦ୍ୟାଧର, ଦିଗମ୍ବର, ଗଦାଧର, ଗଙ୍ଗାଧର ଓ ବିମ୍ବାଧର । ଏମାନଙ୍କ ମଧ୍ୟରୁ ଦାମୋଦର ମିଶ୍ର କବିତ୍ୱ କ୍ଷେତ୍ରରେ ପରାକାଷ୍ଠା ପ୍ରଦର୍ଶନ କରି କବିରତ୍ନ ଉପାଧି ପାଇଥିଲେ । ବିଦ୍ୟାଧର ବୈଦ୍ୟରତ୍ନ, ବିମ୍ବାଧର ଭିଷକ୍ ରତ୍ନ ଓ ଗଦାଧର ପଦ୍ୟଭୂଷଣ ରୂପେ ପ୍ରସିଦ୍ଧ ଥିଲେ । ନୀଳମଣିଙ୍କ ବର୍ଣ୍ଣ ଶ୍ୟାମଳ ଥିବାରୁ ପିତାମାତା ସ୍ନେହରେ 'ନୀଳମଣି' ନାମ ପ୍ରଦାନ କରିଥିଲେ । ନୀଳମଣି ୧୮୮୦ରେ ବୈଦ୍ୟେଶ୍ୱର ସ୍କୁଲରୁ ପ୍ରାଇମେରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ୧୮୮୨ରେ ଚର୍ଚ୍ଚିକା ମିଡିଲ ଭର୍ଣ୍ଣାକ୍ୟୁଲାର ଶିକ୍ଷାପରେ ଧନାଭାବରେ ଉଚ୍ଚଶିକ୍ଷାରୁ ବଞ୍ଚିତ ହୁଅନ୍ତି। ସ୍ୱଅଧ୍ୟବସାୟ ବଳରେ ସଂସ୍କୃତ ଓ ଇଂରେଜୀରେ ଦକ୍ଷତା ହାସଲ କରନ୍ତି । ରାଧାନାଥଙ୍କ ସହଯୋଗରେ ବଡମ୍ବା ରାଜ୍ୟର ଗୋପୀନାଥପୁର ପ୍ରାଇମେରୀ ସ୍କୁଲରେ ଶିକ୍ଷକତା କରନ୍ତି। ନୀଳମଣି ମିଶ୍ର ପ୍ରଥମେ ସଂସ୍କାରକର ବଡ଼ମ୍ବା ସମ୍ବାଦଦାତା ରୂପେ କାର୍ଯ୍ୟ କରୁଥିଲେ । ସଂସ୍କାରକରେ ଶିକ୍ଷା, ସମାଜ ଓ ଦେଶୋନ୍ନତି ସମ୍ପର୍କରେ ତାଙ୍କର କେତୋଟି ପତ୍ର ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ ଲକ୍ଷ୍ମୀନାରାୟଣ ନାୟକଙ୍କ 'ଧାତ୍ରୀ ଶିକ୍ଷା' ଓ 'ହିତୋପଦେଶର' ସମୀକ୍ଷାତ୍ମକ ପତ୍ର ସଂସ୍କାରକରେ ଦୃଷ୍ଟିଗୋଚର ହୁଏ। ମଣିରତ୍ନମାଳାର ଓଡ଼ିଆ ଗଦ୍ୟାନୁବାଦ ମଧ୍ୟ ସଂସ୍କାରକରେ ପ୍ରକାଶିତ । ଏହି ବଡମ୍ବା ରହଣି ସମୟରେ ତାଙ୍କ କାବ୍ୟ ପ୍ରତିଭାରେ ମୁଗ୍ଧ ହୋଇ ରାଜା ଦାଶରଥି ମଙ୍ଗରାଜ ବୀରବର ମହାପାତ୍ରଙ୍କ ଧର୍ମପତ୍ନୀ ତାଙ୍କୁ ପଞ୍ଚବସ୍ତ୍ର, ଟଙ୍କା ସହିତ ''ବିଦ୍ୟାରତ୍ନ'' ଉପାଧିରେ ଭୂଷିତ କରନ୍ତି । ଫଳରେ ନୀଳମଣି ବିଦ୍ୟାରତ୍ନ ରୂପେ ସେ ଉତ୍କଳ ବିଖ୍ୟାତ ହୁଅନ୍ତି । ନୀଳମଣି ମିଶ୍ରଙ୍କର ବିଦ୍ୟାରତ୍ନ ଉପାଧି ପ୍ରାପ୍ତି ସମ୍ପର୍କରେ ଅନେକ କପୋଳକଳ୍ପିତ କାହାଣୀ ବିଭିନ୍ନ ଲେଖକ ଅବତାରଣା କରନ୍ତି । କିନ୍ତୁ ତାଙ୍କର ବିଦ୍ୟାରତ୍ନ ପ୍ରାପ୍ତି ସମ୍ପର୍କରେ 'ସଂସ୍କାରକ' ଚତୁର୍ଥ ବର୍ଷ ୧୦ମ ସଂଖ୍ୟା ତା



Digitized by srujanika@gmail.com

୧୦। ୩। ୧୮୮୭ରେ ପ୍ରକାଶିତ ଏକ ବିରଳ ପତ୍ରକୁ ଏଠାରେ ପତ୍ରସ୍ଥ କରାଗଲା । ଉକ୍ତ ପତ୍ରରୁ ବିଦ୍ୟାରତ୍ନ ଉପାଧି ପ୍ରାପ୍ତିର ପ୍ରାମାଣିକତା ସ୍ପଷ୍ଟ ହୋଇଥାଏ ।

ସମ୍ପାଦକ ମହାଶୟ !

ନିମ୍ନଲିଖିତ ପ୍ରବନ୍ଧଟିକୁ ଆପଣଙ୍କର ଜଗତ ବିଖ୍ୟାତ ପତ୍ରିକାରେ ପ୍ରକାଶ କରି ବାଧିତ କରିବା ହେବେ ।

ମହାଶୟ ! ବଡମ୍ବାର ମାନନୀୟ ନାବାଳକ ରାଜା ଶ୍ରୀ ବିଶ୍ୱମ୍ବର ବୀରବର ମଙ୍ଗରାଜ ମହାପାତ୍ର ଆପଣାର ଜନନୀଙ୍କ ସହିତରେ ଗୋପୀନାଥପୁର ସିଂହନାଥଦେବଙ୍କ ସମୀପରେ ପୁରୀଯାତ୍ରା ଉଦ୍ଦେଶ୍ୟରେ ବିରାଜମାନ ଥିଲେ । ଶ୍ରଦ୍ଧେୟ ମାନେଜରବାବୁ ଶ୍ରୀ ମଦନମୋହନ ପଟ୍ଟନାୟକ ଏବଂ ଭୂତପୂର୍ବ ଦେୱାନ, ଡାକ୍ତର ଓ ଦାରୋଗା ପ୍ରଭୃତି ଉକ୍ତ ସ୍ଥଳରେ ଉପସ୍ଥିତ ଥିଲେ । ଗୋପୀନାଥପୁର ସ୍କୁଲ ହେଡପଣ୍ଡିତ ଶ୍ରୀଯୁକ୍ତ ବାବୁ ନୀଳମଣି ମିଶ୍ର ମହାଶୟ ଆପଣାର ଛାତ୍ରମାନଙ୍କୁ ସଙ୍ଗରେ ନେଇ ରାଜାଙ୍କ ସହିତ ସାକ୍ଷାତ କଲେ ଏବଂ ସୁରଚିତ ରାଜ ମହୋଦୟଙ୍କ ପୁରୀଯାତ୍ରା ବିଷୟକ ପଦ୍ୟଟିଏ ଅର୍ପଣପୂର୍ବକ ରାଜା ମହୋଦୟଙ୍କ ଶ୍ରୀ ଛାମୁରେ '' ବିଦ୍ୟାରତ୍ନ'' ଉପାଧି ଲାଭ କରିଅଛନ୍ତି ଏବଂ ରାଜା ସାହେବ ଛାତ୍ରମାନଙ୍କୁ ପଠିତ ପାଠ ଅର୍ଥାତ୍ ପଣକିଆ ପ୍ରଭୃତିରୁ ପ୍ରଶ୍ନ କରି ତହିଁର ଉତ୍ତରରେ ପ୍ରୀତ ହୋଇଅଛନ୍ତି ।

ନିବେଦନ ମିତି !!

ଆପଣଙ୍କର ବଶମ୍ବଦ

୯.୨.୮୭

ଶ୍ରୀ ଚୈତନ୍ୟ ପଣ୍ଡା ଶିକ୍ଷକ

ବୈଦ୍ୟଶ୍ୱର ସ୍କୁଲ, ବାଙ୍କୀ

ବଡ଼ମ୍ବା ରହଣୀ ସମୟରେ ସେ ଦୀନ ମଜୁରିଆମାନଙ୍କୁ ଶିକ୍ଷିତ କରିବା ଅଭିଳାଷରେ ରାତିରେ ସ୍କୁଲ ଖୋଲି ଶିକ୍ଷା ଦେଉଥିଲେ ଯାହାକୁ ଓଡ଼ିଶାର ପ୍ରଥମ ନୈଶ ବିଦ୍ୟାଳୟର ଗୌରବ ପ୍ରଦାନ କରାଯାଇପାରେ ।

**ପ୍ରସାରିତ ସାହିତ୍ୟ ଦୃଷ୍ଟି ସମ୍ପାଦନାର ପୁଲକିତ ସୌନ୍ଦର୍ଯ୍ୟ:**

ବାମଣ୍ଡା ରାଜା ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ସଂସ୍କାରକ' (୧୮୮୬-୮୭) ପତ୍ରିକାରେ ବିଦ୍ୟାରତ୍ନଙ୍କ ସାରସ୍ୱତଚର୍ଯ୍ୟା ସୁଢ଼ଳଦେବଙ୍କୁ ଆକୃଷ୍ଟ କରେ । ଫଳରେ ସୁଢ଼ଳଦେବ ତାଙ୍କର ବିଦ୍‌ବତ୍ତାର ପରିଚୟ ପାଇ ବାମଣ୍ଡାରେ ଶିକ୍ଷକତା



Digitized by srujanika@gmail.com

କରିବା ପାଇଁ ନିମନ୍ତ୍ରଣ କରନ୍ତି । ୧୮୮୭ରୁ ୧୯୦୨ ଜାନୁୟାରୀ ପର୍ଯ୍ୟନ୍ତ ଦୀର୍ଘ ୧୫ ବର୍ଷ ତାଙ୍କର ବାମଣ୍ଡା ଅବସ୍ଥାନ ହିଁ ବିଦ୍ୟାରତ୍ନ ପ୍ରତିଭାର ସୁବର୍ଣ୍ଣ ଯୁଗ । ଗୁଣଗ୍ରାହୀ ସୁଢ଼ଳଦେବଙ୍କ ତତ୍ତ୍ୱାବଧାନରେ ବିଦ୍ୟାରତ୍ନ ପ୍ରତିଭା ଉତ୍କର୍ଷତାର ଶିଖର ସ୍ପର୍ଶ କରିଛି । ଏଣୁ ବ୍ୟାସକବି ଫକୀରମୋହନ ଘୋଷଣା କରନ୍ତି,

"ଜଗା ଶିରେ ଧରି ଏକା ପଡ଼ିଅଛ ନନା
ପରଶ ମଣିକି ଛୁଇଁ ଲୁହା ହୁଏ ସୁନା ।" (ଉତ୍କଳ ଭ୍ରମଣଂ)

ପ୍ରକୃତରେ ସୁଢ଼ଳଦେବଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପ୍ରଭାବରେ ବିଦ୍ୟାରତ୍ନଙ୍କ ପ୍ରତିଭା ଓଡ଼ିଶାରେ ଯୋଗ୍ୟାସନ ପାଇଛି । ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ ବାମଣ୍ଡାରୁ ୧୮୮୯ରେ 'ସମ୍ବଲପୁର ହିତୈଷିଣୀ' ପତ୍ରିକା ପ୍ରକାଶ ଲାଭକରେ । ଏହି ପତ୍ରିକାର ସମ୍ପାଦନା ଭାର ୧୯୦୨ ପର୍ଯ୍ୟନ୍ତ ନୀଳମଣି ବିଦ୍ୟାରତ୍ନ ଗ୍ରହଣ କରନ୍ତି । ବିଦ୍ୟାରତ୍ନଙ୍କ ବଳିଷ୍ଠ ସମ୍ପାଦନାରେ ଏ ପତ୍ରିକା ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ଋଦ୍ଧିମନ୍ତ କରେ । ତେଣୁ ମାନସିଂ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି-" ହିତୈଷିଣୀ ସମ୍ପାଦକ ଭାବରେ ପ୍ରାଇମେରୀ ଶିକ୍ଷକ ବିଦ୍ୟାରତ୍ନେ ଓଡ଼ିଶାର ପତ୍ରିକା ପରିଚାଳନାକୁ ପ୍ରଥମକରି ଗୌରବାନ୍ୱିତ, ପ୍ରତିଭାନ୍ୱିତ ଓ ଜାତି ଗଠନର ପ୍ରତ୍ୟକ୍ଷ କରି ଥୋଇଲେ । ସମ୍ବଲପୁର ହିତୈଷିଣୀ ମାଧ୍ୟମରେ ବିଦ୍ୟାରତ୍ନେ ସେତେବେଳର ଛିନ୍ନଛତ୍ର ଅବସ୍ଥାରେ ଥିବା ସମଗ୍ର ଗଡ଼ଜାତ ଅଞ୍ଚଳ ଓ ବିଶେଷକରି ସମ୍ବଲପୁର ବା ପଶ୍ଚିମ ଓଡ଼ିଶାର ଓଡ଼ିଆ ଜାତୀୟତାକୁ ଯେପରି ବଞ୍ଚାଇ ରଖିଥିଲେ ତାହାର ତୁଳନା ନାହିଁ ।" (ଓଡ଼ିଆ ସାହିତ୍ୟର ଇତିହାସ - ମାୟାଧର ମାନସିଂ) ମାନସିଂଙ୍କ ଏ ସ୍ୱୀକାରୋକ୍ତିର ସତ୍ୟତା ସମ୍ବଲପୁର ହିତୈଷିଣୀର ସାମଗ୍ରିକ ଅଧ୍ୟୟନରୁ ପ୍ରମାଣିତ ହୋଇଥାଏ । 'ସମ୍ବଲପୁର ହିତୈଷିଣୀ'ର ଦୀର୍ଘ ୩୫ ବର୍ଷ କାଳର ପ୍ରକାଶନ ଅନ୍ତରାଳରେ ଓଡ଼ିଆ ଭାଷା ସାହିତ୍ୟ ଓ ରାଜନୀତି କ୍ଷେତ୍ରରେ ଏକ ଯୁଗାନ୍ତର ସୃଷ୍ଟି ହୋଇଥିଲା । କେବଳ ସମ୍ବାଦ ପରିବେଷଣ ଏହାର ଆଭିମୁଖ୍ୟ ନ ଥିଲା ବରଂ ସେ ସମୟର କୁସଂସ୍କାରାଚ୍ଛନ୍ନ ସମାଜକୁ କଳୁଷମୁକ୍ତ କରିବା ପାଇଁ ଏହା ବଦ୍ଧପରିକର ଥିଲା । ବିଦ୍ୟାରତ୍ନଙ୍କ ନିଷ୍ଠାପର ସମ୍ପାଦନା ଉପଯୁକ୍ତ ଲକ୍ଷ୍ୟ ସାଧନାରେ ସଫଳକାମ ହୋଇଥିଲା ।

ସମ୍ବଲପୁର ହିତୈଷିଣୀର ପ୍ରତି ପୃଷ୍ଠାରେ ନିଶାସେବନ, ବାଲ୍ୟବିବାହ, ଆମିଷ ଭକ୍ଷଣ, ଅଶିକ୍ଷା ଅନ୍ଧକାର ବିରୁଦ୍ଧରେ ଲେଖାମାନ ପ୍ରକାଶ ପାଇ ଲୋକଙ୍କୁ ସଚେତନ କରି ତୋଳିଥିଲା । ଯେଉଁ କେତୋଟି ଜାତୀୟ କର୍ତ୍ତବ୍ୟ ସମ୍ପାଦନରେ 'ସମ୍ବଲପୁର ହିତୈଷିଣୀ' ସଫଳ ହୋଇଥିଲା ସେଗୁଡିକୁ ନିମ୍ନ ପ୍ରକାରେ ତାଲିକାଭୁକ୍ତ କରାଯାଇପାରେ ।



Digitized by srujanika@gmail.com

୧: ବାଲ୍ୟ ବିବାହର ଦୂରୀକରଣ ଓ ବାଲ୍ୟ ବିଧବା ବିବାହ ପ୍ରଚଳନ ।

୨: ନିଶା ସେବନର ଅପକାର ପ୍ରଦର୍ଶନ ଓ ନିଶା ବିନାଶ ଅଭିଯାନ।

୩: ଶିକ୍ଷା କ୍ଷେତ୍ରରୁ କୁସଂସ୍କାର ଦୂରୀକରଣ ଏବଂ ବିଶୁଦ୍ଧ ପାଠ୍ୟପୁସ୍ତକ ପ୍ରଚଳନ ।

୪: ଓଡ଼ିଆ ଭାଷା ପ୍ରଚଳନରେ ନିଷ୍ଠା ପ୍ରଦର୍ଶନ ।

୫: ସମ୍ବଲପୁରରେ ଓଡ଼ିଆ ଭାଷା ସରକାରୀ ଭାଷାରୂପେ ପ୍ରଚଳନ । ଏହାର ଅନେକ ଉଦାହରଣ ସମ୍ବଲପୁର ହିତୈଷିଣୀରୁ ମିଳିପାରେ, ଏଠି ଗୋଟିଏ ମାତ୍ର ଉଦ୍ଧୃତି ନିଆଗଲା ।

> '' X X X ଆମ୍ଭେମାନେ ପୂର୍ବରେ କହିଅଛୁ ଏବଂ ବର୍ତ୍ତମାନ ମଧ୍ୟ କହୁ ଅଛୁଁ ଯେ ଓଡ଼ିଆ ଦେଶରେ ହିନ୍ଦୀଭାଷା ଚଳାଇବା କଦାପି ନିରାପଦ ନୁହେଁ । ତଦ୍ୱାରା ଓଡ଼ିଆ ଭାଷା ଲୋପ ହେବ; ଓଡ଼ିଆମାନଙ୍କ ପ୍ରତି ଅବିଚାର ହେବ ଏବଂ କଚେରୀ କାର୍ଯ୍ୟରେ ଭୟାନକ ବିଶୃଙ୍ଖଳା ଘଟିବ, ଅଧିକ ଅମଲା ରଖିବା ଆବଶ୍ୟକ ହେବ। ବର୍ତ୍ତମାନ ଅମଲାମାନେ ଓଡ଼ିଆ ଅକ୍ଷର ଯେତେ ଶୀଘ୍ର ଲେଖୁଛନ୍ତି ହିନ୍ଦୀ ଅକ୍ଷର ସେତେ ଶୀଘ୍ର ଲେଖି ପାରିବେ ନାହିଁ X X X ଆମ୍ଭେମାନେ ପୁନଃ ପୁନଃ କହୁଅଛୁଁ ସମ୍ବଲପୁରରେ ହିନ୍ଦୀ ଭାଷା ଚଳାଇବା କେବେ ହେଁ ଉଚିତ୍ ନୁହେଁ ଯେବେ ଓଡ଼ିଆ ଭାଷା ପ୍ରଚଳନରେ ଅସୁବିଧା ଅନୁଭୂତ ହୁଏ ତେବେ ଏ ଜିଲ୍ଲାକୁ ମଧ୍ୟପ୍ରଦେଶର ଅଧୀନରେ ନ ରଖି ଓଡ଼ିଶା ସହିତ ସାମିଲ କରାଯାଉ ।'' (ଓଡ଼ିଆ ଭାଷାର ବିଲୋପ ଚେଷ୍ଟା: ସ: ହି: ୬/ ୧୨ -ତା - ୨୨। ୮।୧୮୯୪ )

୬: ଓଡ଼ିଶାରେ ରେଳପଥ ନିର୍ମାଣ ।

୭: ସତୀଦାହ ପ୍ରଥାର ଉଚ୍ଛେଦ ସାଧନ ।

୮: ଆଧୁନିକ ଓଡ଼ିଆ କାବ୍ୟ, କବିତା, ଆଲୋଚନା ପ୍ରକାଶନ ଅନ୍ତରାଳରେ ଏକ ନୂତନ ଲେଖକ ଗୋଷ୍ଠୀ ସୃଷ୍ଟି ।

ଏ ସମସ୍ତ ବିଷୟରେ 'ସମ୍ବଲପୁର ହିତୈଷିଣୀ'ରୁ ରାଶିରାଶି ଉଦାହରଣ ନିଆଯାଇପାରେ । ଯାହାର ଅନ୍ତରାଳରେ ସମ୍ପାଦକ ବିଦ୍ୟାରତ୍ନଙ୍କ ଦୂରଦୃଷ୍ଟି ହିଁ ପ୍ରଚ୍ଛନ୍ନ । ବିଦ୍ୟାରତ୍ନଙ୍କ ସମ୍ପାଦନାରେ ହିତୈଷିଣୀ ସେ ସମୟରେ ଓଡ଼ିଆ ପତ୍ରିକା କ୍ଷେତ୍ରରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଗଙ୍ଗାଧର, ସଚ୍ଚିଦାନନ୍ଦ ଦେବ, ଚିନ୍ତାମଣି, ନନ୍ଦକିଶୋରଙ୍କୁ ବିଦ୍ୟାରତ୍ନ ହିଁ ପ୍ରତିଷ୍ଠା ଆଣିଦେଇଥିଲେ । ଏ ପର୍ଯ୍ୟାୟରେ ବିଜୁଳି -



Digitized by srujanika@gmail.com

ଇନ୍ଦ୍ରଧନୁ (୧୮୯୩) ଯୁଗାନ୍ତକାରୀ ସାହିତ୍ୟିକ ବିବାଦ କଥାକୁ ସ୍ମରଣ କରାଯାଇପାରେ । ଏ ବିବାଦଦ୍ୱାରା ଆଉ ଯାହା ହେଉନା କାହିଁକି ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠା ସମ୍ଭବ ହେଲା । ଏ ପ୍ରସଙ୍ଗରେ ବିବାଦର ଅନ୍ୟତମ ନିୟାମକ ରୂପେ ବିଦ୍ୟାରତ୍ନଙ୍କ ଭୂମିକା ବେଶ ଗୌରବାବହ ମନେହୁଏ । ଏହି ବିତର୍କିତ ଭୂମି ଉପରେ ଓଡ଼ିଆ ଆଲୋଚନା ସାହିତ୍ୟର ନବକଳେବର ସାଧିତ ହେଲା ।

ବିଦ୍ୟାରତ୍ନ କେବଳ ସାହିତ୍ୟ କ୍ଷେତ୍ରରେ ସଂସ୍କାରକର ଭୂମିକା ସମ୍ପାଦନ କରି ନଥିଲେ ବରଂ ଭାରତୀୟ ଜାତୀୟ ଦୁର୍ଗତିର କାରଣ ଉପସ୍ଥାପନ କରି ପରାଧୀନ ଭାରତୀୟଙ୍କ ମନରେ ଜାତୀୟଭାବର ଉଦ୍ରେକ କରିଥିଲେ । ଏ ପର୍ଯ୍ୟାୟରେ ସେ ଇଂରେଜ ଶାସନ ବିରୁଦ୍ଧରେ ମନ୍ତବ୍ୟ ପ୍ରକାଶ କରିବାରେ ପଶ୍ଚାତ୍‌ପଦ ହୋଇ ନ ଥିଲେ । ତାଙ୍କର ନିର୍ଭୀକ ସମ୍ପାଦନାର ଦୃଷ୍ଟାନ୍ତ ସମ୍ବଲପୁର ହିତୈଷିଣୀରୁ ଗ୍ରହଣ କରାଯାଇପାରେ,

> – ପଚିଶ କୋଟୀ ଭାରତବାସୀଙ୍କୁ କେତେଜଣ ଇଂରେଜ ଶାସନରେ ରଖିଅଛନ୍ତି, ପିଞ୍ଜରାବଦ୍ଧ ବିହଙ୍ଗର ମଧ ଟିକିଏ ସ୍ୱାଧୀନତା ଅଛି, କିନ୍ତୁ ଭାରତର ହଲିବାର ଅଧିକାର ନାହିଁ । ଇଂରେଜମାନେ ଦେଶୀୟମାନଙ୍କୁ କୁକୁର, ବିରାଡି ପରି ଦେଖନ୍ତି । ମନୁଷ୍ୟ ମନୁଷ୍ୟ ପ୍ରତି ଯେପରି ସମ୍ମାନ ଓ ଶ୍ରଦ୍ଧା ପ୍ରଦର୍ଶନ କରିଥାଏ, ଇଂରେଜମାନେ ଏ ଦେଶୀୟମାନଙ୍କ ପ୍ରତି ତାହା କିଛି ମାତ୍ର କରନ୍ତି ନାହିଁ ଏପରି ତାଚ୍ଛଲ୍ୟର କିଛି କାରଣ ନାହିଁ ? X X X ପ୍ରତ୍ୟେକ ବ୍ୟକ୍ତି କର୍ମକ୍ଷମ ନ ହେଲେ ଜାତୀୟ ଉନ୍ନତି ହୁଅଇ ନାହିଁ । X X X '' (ଭାରତରେ ଜାତୀୟ ଦୁର୍ଗତିର କାରଣ – ସମ୍ବଲପୁର ହିତୈଷିଣୀ –୪।୨୭ ତା ୭-୧୨-୧୮୯୨)

ପୁରୁଷ ପ୍ରଧାନ ସମାଜରେ ସ୍ତ୍ରୀ ଜାତିର ଦୁଃଖ ପ୍ରତି ଲେଖନୀ ଇଙ୍ଗିତ କରିଛନ୍ତି ବିଦ୍ୟାରତ୍ନ । ସେ ହୃଦ୍‌ବୋଧ କରିଥିଲେ, ସ୍ତ୍ରୀ ଜାତିର ଉନ୍ନତି ବିନା ସମାଜର ଉନ୍ନତି ଅସମ୍ଭବ । ଏ ପର୍ଯ୍ୟାୟରେ ସେ ଅନେକ ସମ୍ବାଦ ପରିବେଷଣ କରି ବହୁ ବିବାହ ଓ ବୃଦ୍ଧମାନଙ୍କର ଶିଶୁବିବାହ ପ୍ରଥା ଉଠାଇ ଦେବାକୁ ସରକାରଙ୍କୁ ନିବେଦନ କରିଛନ୍ତି । (ସମ୍ବଲପୁର ହିତୈଷିଣୀ: ୩/୩ ତା - ୬। ୧। ୧୮୯୨ ।)

ବିଦ୍ୟାରତ୍ନ ଜଣେ ଜୀବନବାଦୀ ସାରସ୍ୱତ ପୁରୁଷ । ପରୋପକାରକୁ ସେ ଜୀବନର ପରମ ବ୍ରତ ରୂପେ ଗ୍ରହଣ କରିଥିଲେ । ଦରିଦ୍ର ଛାତ୍ରମାନଙ୍କୁ ମାଗଣା ଶିକ୍ଷାଦାନ ସହିତ ଆର୍ଥିକ ସାହଯ୍ୟ କରୁଥିଲେ । ଦୁଃସ୍ଥ ସାହିତ୍ୟିକମାନଙ୍କୁ ବିଭିନ୍ନ ରାଜଦରବାରରୁ ସାହାଯ୍ୟ



Digitized by srujanika@gmail.com

ପ୍ରଦାନ କରିବାରେ ସହାୟତା କରିଥିଲେ । ବାମଣ୍ଡାରେ ଘରପୋଡି ସମୟରେ ବୃନ୍ଦାବନ ନାଥଶର୍ମାଙ୍କୁ ସାହାଯ୍ୟ କରିବା କଥା ନାଥଶର୍ମା, ମୋର ଜଣା ଲୋକ (ଉତ୍କଳ ସାହିତ୍ୟ ୪୦/୩) ଶୀର୍ଷକରେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଗଙ୍ଗାଧରଙ୍କୁ ବାମଣ୍ଡା ରାଜ ଦରବାରରୁ ବୃତ୍ତି ପ୍ରଦାନ ପାଇଁ ସେ ସଚ୍ଚିଦାନନ୍ଦ ଦେବଙ୍କୁ ସ୍ୱୀକୃତ କରାଇଥିଲେ, କିନ୍ତୁ ଠିକ୍ ଏହି ସମୟରେ ସଚ୍ଚିଦାନନ୍ଦଙ୍କ ମୃତ୍ୟୁ ଯୋଗୁ ଏହା ଫଳପ୍ରଦ ହୋଇପାରିଲା ନାହିଁ । ଗଙ୍ଗାଧର ପ୍ରସଙ୍ଗ ପ୍ରବନ୍ଧ (ଉତ୍କଳ ସାହିତ୍ୟ-୨୮/୧)ରେ ଏକଥାକୁ ବିଦ୍ୟାରତ୍ନ ସ୍ୱୀକାର କରନ୍ତି- (''ବାମଣ୍ଡାଧିଶ୍ୱର ସଚ୍ଚିଦାନନ୍ଦଦେବ ଗଙ୍ଗାଧରଙ୍କୁ ଆପଣା ସାହିତ୍ୟସଭାର ସଦସ୍ୟ ରୂପେ ରଖିବାର ପ୍ରସ୍ତାବ କରିଥିଲେ । କବି ଗଙ୍ଗାଧର ସରକାରୀ କାର୍ଯ୍ୟତ୍ୟାଗ ପରେ ଅନ୍ୟତ୍ର ନ ରହି ସ୍ୱଗ୍ରାମରେ ଶେଷ ଜୀବନ ଅତିବାହନର ଇଚ୍ଛା କଥା ମୋତେ ଜଣାଇ ଥିବାରୁ ମୁଁ ବାମଣ୍ଡାଧୀଶ୍ୱରଙ୍କ ସଂକଳ୍ପ ପରିବର୍ତ୍ତନ କରାଇ ତାଙ୍କୁ ସାହିତ୍ୟ ଚର୍ଚ୍ଚା ପାଇଁ ଗୋଟିଏ ମାସିକ ବୃତ୍ତି ପ୍ରଦାନର ପରାମର୍ଶ ଦେଇଥିଲି । X X X କଥୋପକଥନର ପ୍ରାୟ ମାସକ ପରେ ସଚ୍ଚିଦାନନ୍ଦ ସ୍ୱର୍ଗାରୋହଣକଲେ ।''ପୃ-୧୫ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା ଏବଂ ସାମନ୍ତ ଚନ୍ଦ୍ରଶେଖରଙ୍କ ପ୍ରତିଭାକୁ ସେ ପ୍ରଥମେ ଲୋକଲୋଚନକୁ ଆଣିଥିଲେ (ଉତ୍କଳର ଦୁଇଟି ଉଜ୍ଜ୍ୱଳ ରତ୍ନ'' ସମ୍ବଲପୁର ହିତୈଷିଣୀ - ତା ୬-୬-୧୮୯୪) ତା ନୁହେଁ ବରଂ ଚନ୍ଦ୍ରଶେଖରଙ୍କ ଦାରିଦ୍ର୍ୟତା ସମ୍ପର୍କରେ 'ପ୍ରଜାବନ୍ଧୁ' ପତ୍ରିକାରେ ନିବେଦନ କରି ଆର୍ଥିକ ସାହାଯ୍ୟ କରାଇ ଦେଇଥିଲେ । ('' ସାମନ୍ତଙ୍କ ଚାନ୍ଦା- ପ୍ରଜାବନ୍ଧୁ - ୨୨-୧୦-୧୯୦୨'' ଉଦ୍ଧୃତ - ସମ୍ବଲପୁର ହିତୈଷିଣୀ ୧୪-୨୯-୧୦-୧୯୦୨) ୧୯୧୬ରେ ବାମଣ୍ଡାରେ ଫକୀରମୋହନଙ୍କୁ 'ସରସ୍ୱତୀ' ଉପାଧି ଦେବାରେ ବିଦ୍ୟାରତ୍ନଙ୍କ ଆନ୍ତରିକ ଉଦ୍ୟମ ରହିଥିଲା । (ମୋର ଜଣାଲୋକ -ଉତ୍କଳ ସାହିତ୍ୟ - ୪୦/୩ ପୃ-୧୩୬ )

ବିଦ୍ୟାରତ୍ନଙ୍କ ବାମଣ୍ଡା ରହଣୀ ସମୟରେ ସେ ଛାତ୍ରମାନଙ୍କ ଚରିତ୍ର ଗଠନରେ ବିଶେଷ ଦୃଷ୍ଟି ଦେଇଥିଲେ । ଛାତ୍ରମାନଙ୍କୁ ବିଶୁଦ୍ଧ ଓଡ଼ିଆ ରଚନା ଦିଗରେ ଉତ୍ସାହିତ କରିଥିଲେ । ସେ କେବଳ ଯେ ସମ୍ବଲପୁର ହିତୈଷିଣୀର ସମ୍ପାଦନା ବା ଦେବଗଡ ରାଜକୁମାର ସ୍କୁଲର ୨ୟ ଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ ତା ନୁହେଁ ବରଂ ସେ ଥିଲେ ବାମଣ୍ଡା ଦରବାରର ଅନ୍ୟତମ ଉପଦେଷ୍ଟା (କାଉନସିଲର)।

ସମ୍ବଲପୁର ହିତୈଷିଣୀ ସମ୍ପାଦନା ସହିତ ସେ ୧୯୦୦ ଜୁନ୍‌ରେ 'ଉତ୍କଳ ମଧୁପ' ରୂପେ ଏକ ବିବଧ ବିଷୟକ ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକା ବିଜ୍ଞାନ, କୃଷି,



Digitized by srujanika@gmail.com

ସମାଜତତ୍ତ୍ୱ, ନୀତିବାଣୀ, ଔଷଧତତ୍ତ୍ୱ, ଉପଦେଶାମୃତ, ପ୍ରହେଳିକା ଓ ପ୍ରବାଦ, ଦ୍ରବ୍ୟଗୁଣ, ସ୍ୱାସ୍ଥ୍ୟପ୍ରସଙ୍ଗ ଜ୍ୟୋତିଷ ଶାସ୍ତ୍ର, ବିଚିତ୍ର ବାର୍ତ୍ତା, ମହାପୁରୁଷଙ୍କ ଉକ୍ତି, ସଙ୍ଗୀତ ପ୍ରଭୃତି ବିଷୟରେ ଲେଖାମାନ ପ୍ରକାଶ କରୁଥିଲା। ଏହି ପତ୍ରିକା ସେ ସମୟର ଜନସାଧାରଣଙ୍କୁ ସାମୂହିକ ଜ୍ଞାନ ପ୍ରଦାନର ଆଭିମୁଖ୍ୟ ପ୍ରକାଶ କରେ ।

'' ନାନାବିଧ ଶ୍ରେଷ୍ଠ ଗ୍ରନ୍ଥ ଆଲୋଡ଼ନ
ବିବିଧ ଭାଷାର ପତ୍ରିକା ପଠନ
କଲେ ଯାହା ଲାଭ ହେବ ସାରଧନ
ବାଣ୍ଟିବ 'ମଧୁପ' ସ୍ୱଦେଶ ହିତେ;
ଦେଶେ ଅଛି ପୁରି ଗ୍ରନ୍ଥ କୋଟି କୋଟି
ପାଠେ ନ ଆଣ୍ଟିବ ଏ ଜୀବନ ଗୋଟି
ଗ୍ରନ୍ଥ ପାଠଫଳ ଯାହା ମୋଟାମୋଟି
କ୍ରମେ ଭେଟି ଦେବି ସହର୍ଷ ଚିତ୍ତେ ।'' ('' ବାସନା ଓ ପ୍ରାର୍ଥନା'' - ଉତ୍କଳ ମଧୁପ - ୬/୧- ଅଗଷ୍ଟ-୧୯୨୫)

'ଉତ୍କଳ ମଧୁପ' ବାମଣ୍ଡାରୁ ଆବିର୍ଭାବ ହୋଇ ଦିଗପହଣ୍ଡି, ଖଲ୍ଲିକୋଟ ହୋଇ ଶେଷରେ 'ଉତ୍କଳ -ସାହିତ୍ୟ' ପ୍ରେସରୁ ପ୍ରକାଶ ପାଏ ।(ଏଇ ଲେଖକର '' ଉତ୍କଳ ମଧୁପ : ଏକ ଦୃଷ୍ଟିପାତ'' ଝଙ୍କାର ୫୧/୧୧, ଫେବୃଆରୀ-୨୦୦୦ ଦ୍ରଷ୍ଟବ୍ୟ)

ବିଦ୍ୟାରତ୍ନ ଜଣେ ମୌଳିକ ନିରପେକ୍ଷ ସମ୍ପାଦକ ଭାବେ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ । ଫକୀରମୋହନ ସ୍ୱୀକାର କରନ୍ତି, ବିଦ୍ୟାରତ୍ନ ବଂଶଟା ଓଡ଼ିଶାର ସମ୍ପାଦକ ବଂଶ । ଏମାନଙ୍କର ମାତୃସାହିତ୍ୟ ପ୍ରୀତି ପ୍ରଶଂସନୀୟ । (ମୋର ଜଣାଲୋକ , ଫକୀରମୋହନ- ବୃନ୍ଦାବନ ନାଥଶର୍ମା, ଉତ୍କଳ ସାହିତ୍ୟ - ୩୯/୫- ଭାଦ୍ର - ୧୩୪୨) । ବାମଣ୍ଡା ଛାଡିଯିବା ପରେ ବିଦ୍ୟାରତ୍ନ ଖଲ୍ଲିକୋଟ ରାଜ୍ୟରେ ଅବସ୍ଥାନ କଲେ । ବିଦ୍ୟାରତ୍ନଙ୍କ ପ୍ରରୋଚନାରେ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ରମ୍ଭାଠାରେ ଏକ ପ୍ରେସ ସ୍ଥାପନ କରି ବିଦ୍ୟାରତ୍ନଙ୍କୁ ପରିଚାଳନା ଦାୟିତ୍ୱ ଦେଲେ । ବିଦ୍ୟାରତ୍ନ ଏହି ପ୍ରେସରୁ ୧୯୦୨- ଜୁନ୍ ମାସରେ 'ପ୍ରଜାବନ୍ଧୁ' ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କଲେ । ଏହି ପତ୍ରିକା ମାଧ୍ୟମରେ ବିଦ୍ୟାରତ୍ନେ ଗଞ୍ଜାମର ଓଡ଼ିଶାରେ ମିଶ୍ରଣ ନେଇ ଆନ୍ଦୋଳନ ଚଳାଇଲେ । ଏହି ପର୍ଯ୍ୟାୟରେ 'ଗଞ୍ଜାମ ଜାତୀୟ ସମ୍ମିଳନୀ' ଗଠନ ପରବର୍ତ୍ତୀ ପର୍ଯ୍ୟାୟରେ ଯେ 'ଉତ୍କଳ - ସମ୍ମିଳନୀ'ର ରୂପ ନେଲା, ଯେକୌଣସି ନିରପେକ୍ଷ ସମାଲୋଚକ ଏହା ସ୍ୱୀକାର କରିବେ ।



Digitized by srujanika@gmail.com

ଏ ପ୍ରସଙ୍ଗରେ ମାନସିଂଙ୍କ ପ୍ରଶଂସା ପ୍ରଣିଧାନଯୋଗ୍ୟ- As editor of Praja Bandhu in the district of Ganjam then in Madras Presidency Vidyaratna first organised a conference of the Oriyas in Madras in 1902, demanding unification of all Oriya tracts. This gave birth to the larger " Utkala-Sammilani" or the All-Orissa Political Conference, which in its first Session in 1903 brought to its platform Oriyas from all ranks and parts of the country demanding a homogeneous Oriya state ''। (History of Oriya Literature : Dr. M. Mansingh pp. -213- Sahitya Akademi, New Delhi-1962)

ଖଲ୍ଲିକୋଟ ରହଣୀ ସମୟରେ ବିଦ୍ୟାରତ୍ନ 'ପ୍ରଜାବନ୍ଧୁ' ସହିତ 'ଉତ୍କଳ ମଧୁପ' ପ୍ରକାଶନର ଦାୟିତ୍ୱ ସମ୍ପାଦନ କରିଥିଲେ। ୧୯୦୪ ପର୍ଯ୍ୟନ୍ତ ପ୍ରଜାବନ୍ଧୁ ଓ ଉତ୍କଳ ମଧୁପ ଖଲ୍ଲିକୋଟରୁ ପ୍ରକାଶପାଏ । ତାପରେ ବିଦ୍ୟାରତ୍ନ ଖଲ୍ଲିକୋଟ ଛାଡି ବଡଖେମୁଣ୍ଡି ଯାଆନ୍ତି । ବଡ଼ଖେମୁଣ୍ଡି ରାଜା କୃପାମୟ ଦେବଙ୍କ ପୃଷ୍ଠପୋଷକତାରେ 'ଉତ୍କଳ ମଧୁପ' ୨ୟ ପର୍ଯ୍ୟାୟ ପ୍ରକାଶପାଏ । (ଉତ୍କଳ ମଧୁପ - ଅଗଷ୍ଟ - ୧୯୧୫, ପୃ-୩୪) ଏହି ସମୟରେ ସେ 'ଗଞ୍ଜାମ ଗୁଣ ଦର୍ପଣ'ର ସମ୍ପାଦନା ଦାୟିତ୍ୱ ଗ୍ରହଣ କରନ୍ତି । ରାଜା ବିଦ୍ୟାରତ୍ନଙ୍କୁ 'ଗଜପତି ଭୀମଦେବ' ପ୍ରେସର ମ୍ୟାନେଜର ଭାବେ ନିଯୁକ୍ତ କରନ୍ତି । ବିଦ୍ୟାରତ୍ନଙ୍କ ସମ୍ପାଦନାରେ 'ଉତ୍କଳ ମଧୁପ' ଓ 'ଗଞ୍ଜାମ ଗୁଣ ଦର୍ପଣ' ସୁସମ୍ପାଦିତ ହୋଇ ଓଡ଼ିଆ ପତ୍ରିକା କ୍ଷେତ୍ରରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ଦାବି କରେ । ଗୌରୀଶଙ୍କର ରାୟଙ୍କ ତିରୋଧାନ ପରେ ଉତ୍କଳ ଦୀପିକା ସମ୍ବାଦପତ୍ର ଦିଗହରା ହୋଇପଡିଲା । ତା ୬.୧.୧୯୨୩ ଠାରୁ ଉତ୍କଳ ଦୀପିକାର ସମ୍ପାଦନା ବିଦ୍ୟାରତ୍ନ ଗ୍ରହଣ କରି ଏହାର ବିପର୍ଯ୍ୟସ୍ତ ଅବସ୍ଥାକୁ ସୁଧାରିବାର ଚେଷ୍ଟା କରିଥିଲେ। ସତ୍ୟ ବ୍ୟକ୍ତ କରିବା ଏବଂ ଲୋକଙ୍କ ସେବା ସମ୍ପାଦକର କର୍ତ୍ତବ୍ୟ ବୋଲି ସେ ଦୀପିକାରେ ଆହ୍ୱାନ ଦେଇଥିଲେ । ସ୍ୱାସ୍ଥ୍ୟଭଗ୍ନ ଦୃଷ୍ଟିରୁ ସେ ଦୀପିକାର ଅଳ୍ପ କେତୋଟି ସଂଖ୍ୟାର ସମ୍ପାଦନା ମାଧ୍ୟମରେ ନିଜର ପରିଚ୍ଛନ୍ନ ଦୃଷ୍ଟି ଓ ଗଭୀର ଦେଶପ୍ରେମର ପରିଚୟ ଦେଇଯାଇଛନ୍ତି ।

ଓଡ଼ିଆ ପତ୍ରିକା ସମ୍ପାଦନା କ୍ଷେତ୍ରରେ ବିଦ୍ୟାରତ୍ନ ଏକ ଅନନ୍ୟ ପ୍ରତିଭା । ପ୍ରତିଟି ସମ୍ବାଦ ବା ରଚନାକୁ ସେ ସୁସମ୍ପାଦିତ ଭାବେ ନିଜ ପତ୍ରିକାରେ ସ୍ଥାନ ଦେଉଥିଲେ । ସ୍ଥଳ ବିଶେଷରେ ନିଜର ନିରପେକ୍ଷ ଏବଂ ଯୁକ୍ତିପୂର୍ଣ୍ଣ ମତାମତ ପ୍ରଦାନ କରୁଥିଲେ । ଯା'ଫଳରେ ସେ ଯେତେବେଳେ ଯେଉଁ ପତ୍ରିକାର ସମ୍ପାଦନା ଗ୍ରହଣ କରିଛନ୍ତି ସେ ପତ୍ରିକା ଉତ୍କର୍ଷତା'ର ସୀମା ସ୍ପର୍ଶ କରିଛି । ଫକୀରମୋହନଙ୍କ ଭାଷାରେ-



Digitized by srujanika@gmail.com

''ତୁମ୍ଭର ପତ୍ରିକା ଲଭିଅଛି ଉଚ୍ଚସ୍ଥାନ
ତୁମ୍ଭେ ଏକା କରି ଜାଣ କବିଙ୍କୁ ସମ୍ମାନ।
ମାତୃଭାଷା ଉନ୍ନତିରେ ଦିବାନିଶି ଯତ୍ନ
ଚିରଜୀବୀ ହୁଅ ନୀଳମଣି ବିଦ୍ୟାରତ୍ନ ।'' । ( ଉତ୍କଳ ଭ୍ରମଣଂ)

**ସମକାଳର ପ୍ରବାଳ ବିଦ୍ୟାରତ୍ନଙ୍କ କୃତି ସକଳ:**

ବିଦ୍ୟାରତ୍ନଙ୍କ ଜୀବନକାଳ ସାହିତ୍ୟର ଉନ୍ନତି ପାଇଁ ଉତ୍ସର୍ଗୀତ । ଓଡ଼ିଆ ସାହିତ୍ୟିକଗଣଙ୍କର ସାହିତ୍ୟ ରଚନା ପାଟବତା ବୃଦ୍ଧି, ଶିକ୍ଷା କ୍ଷେତ୍ରରେ ବିଶୁଦ୍ଧ ପାଠ୍ୟପୁସ୍ତକ ପ୍ରଚଳନ, ଅନାଲୋଚିତ ପ୍ରତିଭାଙ୍କୁ ଯଥାଯଥ ସମ୍ମାନ ପ୍ରଦର୍ଶନ ଦିଗରେ ସେ ନିଜର ଐକାନ୍ତିକ ପ୍ରଚେଷ୍ଟା ଜାରି ରଖିଥିଲେ । ଫଳରେ ତାଙ୍କର ଜୀବନର ଉତ୍କୃଷ୍ଟତମ ସମୟ ସମ୍ପାଦକୀୟ ଲେଖା ମାଧ୍ୟମରେ ଏବଂ ବିଭିନ୍ନ ପତ୍ରପତ୍ରିକାର ଗୁଣାତ୍ମକମାନ ବୃଦ୍ଧି ଦିଗରେ ନିୟୋଜିତ ହୋଇଛି । ଏପରି ଏକ ପ୍ରତିଭା ସ୍ୱଚ୍ଛ ସାହିତ୍ୟ ସୃଷ୍ଟି କରିବାରେ ବିଚିତ୍ରତା କିଛି ନାହିଁ। ବେଳେ ବେଳେ ତାଙ୍କର କୃତି ସମୂହରେ କଳାତ୍ମକ ଉତ୍କର୍ଷତା ଖୋଜିଲେ ହତାଶ ହେବାକୁ ପଡେ । ସେ ସମୟର ସ୍ୱଳ୍ପ ଶିକ୍ଷିତ ସମାଜକୁ ଜ୍ଞାନ ପ୍ରଦାନ ଏବଂ ତାଙ୍କ ମନର ଅନ୍ଧ କୁସଂସ୍କାର ଦୂରୀକରଣ ହିଁ ତାଙ୍କର ମୂଳଲକ୍ଷ୍ୟ। ତାଙ୍କ ସୃଷ୍ଟିର ଏକ ସୂକ୍ଷ୍ମ ଅନୁଧ୍ୟାନ ନିମ୍ନରେ ପ୍ରଦତ୍ତ ହେଲା।

**(କ) ପଶୁଚିକିତ୍ସା ଓ ଗୋଚିକିତ୍ସା ସମ୍ପର୍କରେ:**

ଜୀବେ ଦୟା ଭାରତୀୟ ସଂସ୍କୃତିର ଆଦର୍ଶ । ଏହି ଆଦର୍ଶର ପଥିକୃତ ସାଧକ ବିଦ୍ୟାରତ୍ନ ଓଡ଼ିଆ ଭାଷାରେ ପ୍ରଥମେ ଗୋସେବା ବା ପଶୁ ଚିକିତ୍ସା ଉପରେ ପୁସ୍ତକ ପ୍ରଣୟନ କରନ୍ତି । ସମ୍ବଲପୁର ହିତୈଷିଣୀ (୩/୩୫)ରେ ବିଦ୍ୟାରତ୍ନଙ୍କ ଗୋଧନରକ୍ଷା ପୁସ୍ତକର ସମାଲୋଚନା କଳାବେଳ ଗଣେଶ୍ୱର ପଟ୍ଟନାୟକ ମତଦିଅନ୍ତି '' X X Xଦେଶରେ ଅନେକ ବିଦ୍ୱାନ ଅଛନ୍ତି, ତଥାପି ଉତ୍କଳରେ ଏପର୍ଯ୍ୟନ୍ତ କେହି ମତ୍ତତା ନିବାରଣ ବା ଗୋରକ୍ଷଣ ବିଷୟକ ପୁସ୍ତକ, ପତ୍ରିକା ପ୍ରଚାର ବିଷୟରେ ଅଗ୍ରସର ହୋଇ ନ ଥିଲେ, ବିଦ୍ୟାରତ୍ନ ମହାଶୟ ପ୍ରଥମେ ତଦବିଷୟକ ପଥ ପ୍ରଦର୍ଶନ କରି ଆପଣାର ମହାନୁଭବକତା ଏବଂ ଉଦାରତାର ପରିଚୟ ଦେଇଛନ୍ତି।'' ଏ ପର୍ଯ୍ୟାୟର ପୁସ୍ତକଗୁଡିକ ନିମ୍ନରେ ଆଲୋଚିତ ହେଲା ।

**୧ ) ଗୋଧନ ରକ୍ଷା:**ଏହି ପୁସ୍ତକ ବାମଣ୍ଡା ସୁଢ଼ଳ ପ୍ରେସରୁ ୧୮୯୨ରେ ପ୍ରକାଶିତ ହୁଏ । ପ୍ରାଚୀନ ଶାସ୍ତ୍ରମାନଙ୍କରେ ଗୋଧନର ମହତ୍ତ୍ୱ କିପରି ପ୍ରଦର୍ଶିତ ହୋଇଛି ଏବଂ ଗୋଧନର ସୁରକ୍ଷା କିପରି ପ୍ରତ୍ୟେକ ଗୃହସ୍ଥର କର୍ତ୍ତବ୍ୟ ଏହାହିଁ ଦର୍ଶାଯାଇଛି । ବିଭିନ୍ନ



Digitized by srujanika@gmail.com

ରୋଗର ପ୍ରତିଷେଧକ ବ୍ୟବସ୍ଥା ପ୍ରଦାନ କରାଯାଇଛି । ରାଧାନାଥ ଏ ପୁସ୍ତକର ଭୂୟସି ପ୍ରଶଂସା କରନ୍ତି। (ସମ୍ବଲପୁର ହିତୈଷିଣୀ: ୬।୩୯ ତା -୯-୩-୧୮୯୨)

**୨) ଗୋ ଚିକିତ୍ସା (୧୮୯୪):** ସୁଢ଼ଳ ପ୍ରେସରେ ମୁଦ୍ରିତ । ୧ମ ଭାଗ ଓ ୨ୟ ଭାଗ ରୂପେ ୨ଟି ପୁସ୍ତିକା ପ୍ରକାଶିତ ୧ମ ଭାଗର ଏକାଧିକ ସଂସ୍କରଣ ପ୍ରକାଶିତ । ଗୋଚିକିତ୍ସା ୨ୟ ଭାଗ ୧୮୯୮ରେ ବାମଣ୍ଡା ସୁଢ଼ଳ ପ୍ରେସରେ ମୁଦ୍ରିତ ହୋଇ ଲୋକପ୍ରିୟତା ଅର୍ଜନ କରିଥିଲା । ୧ମ ଭାଗରେ ୩୧ ପ୍ରକାର ଗୋରୋଗର ଦେଶ ପ୍ରଚଳିତ ଅନେକ ପ୍ରକାର ଔଷଧ ଭାଗ ଲେଖାଅଛି। ମୂଲ୍ୟ ଏକ ଅଣାମାତ୍ର।୨ୟ ଭାଗରେ ୧୩ଗୋଟି ଗୋ ରୋଗର ପ୍ରତ୍ୟକ୍ଷ ଫଳପ୍ରଦ ଔଷଧାବଳୀ ସନ୍ନିବେଶିତ ହୋଇଅଛି। କେବଳ ଗୋ ବସନ୍ତ ରୋଗର ଚିକିତ୍ସାଦି ବିବରଣୀରେ ୨୫ ପୃଷ୍ଠା ସ୍ଥାନ ବ୍ୟୟ ହୋଇଛି, ମୂଲ୍ୟ ଦୁଇଅଣା ମାତ୍ର ।

**୩) ପଶୁ ଚିକିତ୍ସା(୧୯୦୦):** ବାମଣ୍ଡା ସୁଢ଼ଳ ପ୍ରେସରେ ପ୍ରକାଶିତ । ବିଭିନ୍ନ ପଶୁରୋଗର ନିରାକରଣର ଉପାୟ ପ୍ରଦତ୍ତ ହୋଇଛି । ଠାକୁରାଣୀରୋଗ, ଫାଟୁଆ ରୋଗ କେମିତି ବିଭିନ୍ନ ଦେଶରେ ବିଭିନ୍ନ ନାମରେ ପ୍ରଚଳିତ, ତା'ର ଏକ ସଂପୂର୍ଣ୍ଣ ତାଲିକା ପ୍ରଦାନ କରାଯାଇଛି। ବିଭିନ୍ନ ରୋଗ ପାଇଁ ଔଷଧର ଅନୁପାତ ନିର୍ଣ୍ଣୟ କରି ଦିଆଯାଇଛି ।

**୪) ଗରିବର ଗୋରୁ:** ୧୯୨୨ରେ ପୁସ୍ତକଟି ପ୍ରକାଶିତ। ଛାଗକୁ ଗରିବର ଗୋରୁ ରୂପେ ଅଭିହିତ କରାଯାଇଛି । ଛାଗପାଳନର ଅର୍ଥନୈତିକ ଓ ସାମାଜିକ ଦିଗ ବର୍ଣ୍ଣିତ ହୋଇଛି । ଛେଳିମାନଙ୍କର ଯତ୍ନ, ରୋଗର ପ୍ରତିକାର ଉପରେ ମୂଲ୍ୟବାନ ପରାମର୍ଶ ପୁସ୍ତକଟିରେ ସନ୍ନିବେଶିତ ।

**(ଖ) ବିଭିନ୍ନ ମାନବୀୟ ରୋଗ ଚିକିତ୍ସା ସମ୍ପର୍କରେ-**

**୧: ପାରିବାରିକ ଚିକିତ୍ସା :** ବିଭିନ୍ନ ରୋଗର ଚେରମୂଳ ପ୍ରଭୃତି ଦ୍ୱାରା ସହଜ ଚିକିତ୍ସାର ଉପାୟ ବର୍ଣ୍ଣିତ ହୋଇଛି । ଏହି ପୁସ୍ତକର ମୂଲ୍ୟ ଚାରିଅଣା ମାତ୍ର, ବାମଣ୍ଡା ସୁଢ଼ଳ ପ୍ରେସରେ ମୁଦ୍ରିତ ।

**୨: ବସନ୍ତ ରୋଗ ଚିକିତ୍ସା :** ମୂଲ୍ୟ ତିନି ପଇସା ମାତ୍ର । ବାମଣ୍ଡା ସୁଢ଼ଳ ପ୍ରେସରେ ମୁଦ୍ରିତ। ବସନ୍ତ ରୋଗର ବିଭିନ୍ନ ଲକ୍ଷଣ ଏବଂ ପ୍ରତିକାର ବ୍ୟବସ୍ଥା ପ୍ରଦତ୍ତ ହୋଇଛି । ଏହାର ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ ୧୯୧୪ରେ ଗଜପତି ଭୀମଦେବ ପ୍ରେସ ବଡଖେମୁଣ୍ଡିରୁ ପ୍ରକାଶ ପାଏ ।



Digitized by srujanika@gmail.com

୩: ଜ୍ୱର ଚିକିତ୍ସା: ବାମଣ୍ଡା ସୁଡ଼ଳ ପ୍ରେସରେ ୧୮୯୮ରେ ମୁଦ୍ରିତ । ମୂଲ୍ୟ ତିନିଅଣା । ୩୬ ପୃଷ୍ଠାର ଏ ପୁସ୍ତକରେ ନାଡୀ, ନେତ୍ର, ମୂତ୍ର ପ୍ରଭୃତି ପରୀକ୍ଷାର ଉପଦେଶ ସକଳବିଧ ଜ୍ୱରର ଲକ୍ଷଣ ଏବଂ ରୋଗନାଶକ ସହଜ ପ୍ରାପ୍ୟ ଔଷଧାବଳୀ, ଜ୍ୱରର ସକଳବିଧ ଉପଦ୍ରବର ପ୍ରତିକାର ଉପାୟ, ଜ୍ୱରରେ କୁଇନାଇନ୍ ପ୍ରୟୋଗ ପ୍ରଣାଳୀ ସହଜ ଭାବରେ ବର୍ଣ୍ଣନା କରାଯାଇଛି ।

୪: ବିସୂଚିକା ଚିକିତ୍ସା: ବିବିଧ ପୁସ୍ତକ ପତ୍ରିକା ଅବଲମ୍ବନରେ ଲିଖିତ । ବାମଣ୍ଡା ସୁଡ଼ଳ ପ୍ରେସରେ ୧୮୯୩ରେ ପ୍ରକାଶିତ । ୧୦ ପୃଷ୍ଠାର ଏ ପୁସ୍ତିକାର ଏକାଧିକ ସଂସ୍କରଣ ପ୍ରକାଶିତ ହୋଇ ସର୍ବସାଧାରଣରେ ପ୍ରଚାର କରାଯାଇଛି । ସେ ସମୟରେ ସମାଜର ବିଭିନ୍ନ ରୋଗକୁ ପାଣିପଣା ଦେଇ ପୂଜା କରାଯାଉଥିଲା । ଏପରି କୁସଂସ୍କାର ବିରୁଦ୍ଧରେ ବିଦ୍ୟାରତ୍ନ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲେ । ତାଙ୍କର ରଚିତ 'ବିସୂଚିକା ଚିକିତ୍ସା' ସେ ସମୟରେ ରୋଗୀମାନଙ୍କୁ ପ୍ରତିଷେଧକ ଗ୍ରହଣରେ ସାହାଯ୍ୟ କରିଥିଲା । ଏ ପୁସ୍ତକର ପ୍ରଶଂସା କରି ବାମଣ୍ଡା ରାଜା ସୁଢ଼ଳଦେବ କହନ୍ତି- ବିସୂଚିକା ଚିକିତ୍ସା ପୁସ୍ତକ ମୋଫସଲୀ ଲୋକମାନଙ୍କ ପକ୍ଷେ ବିଶେଷ ଉପଯୋଗୀ ବୋଧ ହେବାରୁ ତାହା ବାମଣ୍ଡା ମୋଫସଲରେ ପ୍ରଚାର କରିବା ଉଚିତ ବୋଧ କରୁଅଛୁ । ଅତଏବ ତହିଁରୁ ୫୦୦ ଖଣ୍ଡ ପୁସ୍ତକ ପଠାଇବେ। (ସମ୍ବଲପୁର ହିତୈଷିଣୀ: ୫/୪ ତା ୨୮।୬।୧୮୯୩) ବିଜୟ ଚନ୍ଦ୍ର ମଜୁମଦାର ଏହାର ଉପଯୋଗିତା ଉପରେ କହନ୍ତି:

It will be impudent on my part if I offer any opinion on a subject, I know nothing of I read over some pages of your book to my friend Mr. M.L. Mitra Asst. Surgeon Raipur C.P. and have now great pleasure to communicate to you that he expressed good opinion in respect of some of the medicines you have prescribed - your's truly- B.C. Majumdar.

Headmaster, Sambalpur H-S. ।(ସ.ହି. ୫।୪)

(୫) ବିବିଧ ବିଷ ଚିକିତ୍ସା: ଅରୁଣୋଦୟ ପ୍ରେସ, କଟକରେ ୧୯୧୪ରେ ଏହି ପୁସ୍ତକ ପ୍ରକାଶିତ । ଏହି ପୁସ୍ତକର ପ୍ରକାଶକ ଶ୍ରୀ ତ୍ରିପତି ଗାୟକ ରତ୍ନ। ଏଠାରେ ବିଛା, ବାୟା କୁକୁର, ବାୟା ବିଲୁଆ, ମୂଷିକ, ମହୁମାଛି, କୁମ୍ଭୀର, ବାଘ, ଚୁଚୁନ୍ଦ୍ରା, ପୋକ,ଜୋକ ଦଂଶନ ଜନିତ ବିଷର ପ୍ରତିକାର ସମ୍ପର୍କରେ ଦେଶୀୟ ଔଷଧର ବର୍ଣ୍ଣନା ରହିଛି।

(୬) ସର୍ପ ବିଷ ଚିକିତ୍ସା: ଏହି ପୁସ୍ତକର ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ ୧୯୧୩ରେ କଟକ ପ୍ରିଣ୍ଟି କମ୍ପାନୀରେ ପ୍ରକାଶପାଏ। ସର୍ପର ପ୍ରକୃତି ଓ ବାସସ୍ଥାନର



Digitized by srujanika@gmail.com

ପ୍ରାଞ୍ଜଳ ବର୍ଣ୍ଣନା ସହିତ ସର୍ପ ବିଷ ହରଣର ବିଭିନ୍ନ ପ୍ରତିକାର ବର୍ଣ୍ଣିତ ହୋଇଛି। ବିଭିନ୍ନ ଔଷଧର ବର୍ଣ୍ଣନା ସହିତ କେଉଁ କେଉଁ ଔଷକ୍ଷ ପ୍ରୟୋଗରେ କେଉଁଠାରେ କିଏ କେତେ ଜଣ ସର୍ପାଘାତ ଲୋକଙ୍କୁ ବିଷମୁକ୍ତ କରିଛନ୍ତି ତାର ବର୍ଣ୍ଣନା ରହିଛି । ଚଉଦ ପୃଷ୍ଠାର ଏହି କ୍ଷୁଦ୍ର ପୁସ୍ତକ ଲୋକଙ୍କର ଅତି ଉପକାରୀ ସିଦ୍ଧ ହୋଇଥିଲା ।

(୭) ଜଳ ଚିକିତ୍ସା : ୧୨ ପୃଷ୍ଠାର ଏହି ପୁସ୍ତକରେ ଜଳ ଚିକିତ୍ସାର ବିଭିନ୍ନ ଦିଗ ଆଲୋଚିତ । ଶରୀର ପାଇଁ ଜଳର ଅପରିହାର୍ଯ୍ୟତା ପୁସ୍ତକରେ ବର୍ଣ୍ଣିତ। ବିଭିନ୍ନ ଜଳର ଔଷଧୀୟ ଗୁଣ ଓ ଶରୀର ଉପରେ ତାର ପ୍ରଭାବକୁ ବିଦ୍ୟାରତ୍ନ ସାଧାରଣ ଉପଯୋଗୀ ଭାଷାରେ ପରିବେଷଣ କରିଛନ୍ତି ।

**(ଗ)ବିଭିନ୍ନ ନିଶାଦ୍ରବ୍ୟ ବିରୁଦ୍ଧରେ:**

**୧) ତମାଖୁର ଅପକାରିତା (୧୮୯୫):** ବିଦ୍ୟାରତ୍ନ ତମାଖୁ ସେବନର ଅପକାରିତାକୁ ବିଭିନ୍ନ ବୈଜ୍ଞାନିକ ଅନୁଶୀଳନ ଦ୍ୱାରା ପ୍ରତିପନ୍ନ କରିଛନ୍ତି । ଏ ପୁସ୍ତକର ପ୍ରଶଂସାରେ କବିବର ରାଧାନାଥ ଓ ରାଜା ସୁଢ଼ଳଦେବ ଶତମୁଖ ହୋଇଛନ୍ତି । (ସମ୍ବଲପୁର ହିତୈଷିଣୀ: ୬/୩୯ ତା ୨୭-୨-୧୮୯୫)

**୨) ଅହିଫେନର ଅପକାରିତା :** ଅହିଫେନର ଉତ୍ପାଦନ, ପ୍ରକାରଭେଦ, ସେବନରେ ଅପକାରିତା, ଔଷଧୀଗୁଣ ପ୍ରଭୃତି ଉପରେ ବିଦ୍ୟାରତ୍ନେ ନିବିଡଭାବେ ଆଲୋଚନା କରିଛନ୍ତି । ଏହା ସେବନ ଦ୍ୱାରା ଦୁର୍ଗତି ପ୍ରାପ୍ତ ବ୍ୟକ୍ତିଙ୍କର ଉଦାହରଣ ଦିଆଯାଇଛି । ଅହିଫେନ ସେବନ ଦ୍ୱାରା ଯେ ଦେଶର ଆର୍ଥିକ ଅବନତି ସଂଘଟିତ ହୁଏ ଏକଥା ସେ ଦର୍ଶାଇଛନ୍ତି । (ଓଡ଼ିଶା-୨୩।୧୧।୧୯୩୯)

**(୩) ବିଷବୈରୀ (୧୮୯୨) :** ନିଶାନିବାରଣ ଏବଂ ଏହାର ଅପକାରିତା ବର୍ଣ୍ଣିତ ହୋଇଛି । ତାଙ୍କରି ଭାଷାରେ 'ପ୍ରିୟ ପାଠକେ ଲଙ୍କାରୁ ଯେତେକ ଜନ୍ମ ସମସ୍ତେ ରାକ୍ଷସ, ଯେତେ ମାଦକ ପଦାର୍ଥ ଦେଖିବାକୁ ପାଅ ସମସ୍ତ ବିଷ । ଅତଏବ ବିଷଭକ୍ଷଣ କରି ଶାରୀରିକ ମାନସିକ ଆର୍ଥିକ କ୍ଷତିସାଧନ କରନାହିଁ । ସେ ସବୁକୁ ପୁରୁଷ ପରିଜ୍ଞାନରେ ପରିବର୍ଜନ କର ।'' (ସମ୍ବଲପୁର ହିତୈଷିଣୀ:୩/୩୫- ତା ୧୦-୨-୧୮୯୨)

**(୪) ନାଶପତ୍ର :** (୧୯୧୪) କଟକ ପ୍ରିଣ୍ଟିଂ କମ୍ପାନୀରେ ୧୯୧୪ରେ ପୁସ୍ତକଟି ପ୍ରକାଶିତ । ଏଥିରେ ତମାଖୁର ଶରୀର ଉପରେ ବିଷକ୍ରିୟା ଏବଂ ତାର ପ୍ରତିକାର ବର୍ଣ୍ଣିତ । ଦେଶ ବିଦେଶରେ ତମାଖୁ ସେବନର ବିଷମୟ ପରିଣାମ ସଦୃଷ୍ଟାନ୍ତ ପ୍ରଦର୍ଶିତ । ବିଦ୍ୟାରତ୍ନଙ୍କ ଭାଷାରେ '' ଅନେକଙ୍କ ମତରେ ଅନ୍ୟାନ୍ୟ ମାଦକଦ୍ରବ୍ୟ ତୁଳନାରେ ତମାଖୁ କିଛି ନୁହେଁ



Digitized by srujanika@gmail.com

ଅର୍ଥାତ ତମାଖୁକୁ ମାଦକଦ୍ରବ୍ୟ ବୋଲାଯାଇ ନ ପାରେ ବା ତମାଖୁ ନାମମାତ୍ର ମାଦକ ଦ୍ରବ୍ୟ । କିନ୍ତୁ ଦ୍ରବ୍ୟଗୁଣବିତ୍ ଶରୀରତତ୍ତ୍ୱଜ୍ଞ ପଣ୍ଡିତ ବର୍ଗଙ୍କ ବିବେଚନାରେ ତମାଖୁ ବଡ କ୍ଷତିକାରକ ମାଦକଦ୍ରବ୍ୟ। ତମାଖୁକୁ ଅଫିମର ପ୍ରାଣାଧିକ ମିତ୍ର, ଗଞ୍ଜେଇର କନିଷ୍ଠ ଭ୍ରାତା ଓ ସୁରା ରାକ୍ଷସୀର ପିତା ବୋଲି ରୂପକ କଲେ ମଧ୍ୟ ଅସଙ୍ଗତ ହେବ ନାହିଁ । '' (ପୃ-୧୦)

**(ଘ) ବିଭିନ୍ନ ବିଷୟକ ଶିକ୍ଷଣୀୟ ପୁସ୍ତକ :**

ଏ ପର୍ଯ୍ୟାୟରେ ବିଭିନ୍ନ ମହାପୁରୁଷଙ୍କ ଜୀବନୀଠାରୁ ବିଭିନ୍ନ ସଦ୍‌ଗ୍ରନ୍ଥ ପ୍ରସୂତ ନୀତିବାଣୀକୁ ବିଦ୍ୟାରତ୍ନେ ସଂକଳିତ କରିଛନ୍ତି ।

**(୧) ବାମଣ୍ଡା ଦର୍ଶନ :** ୧୮୮୭ରେ ବାମଣ୍ଡାରେ ଅବସ୍ଥାନ ପରେ ବିଦ୍ୟାରତ୍ନଙ୍କ ଲେଖନୀ ଚଳଚଞ୍ଚଳ ହୋଇଉଠିଥିଲା । ପ୍ରଧାନପାଟର ପ୍ରପାତ, ପ୍ରକୃତିର ଅଭିନବ ଲୀଳାଖେଳା ତାଙ୍କ କବି ହୃଦୟକୁ ପୁଲକିତ କରିଥିଲା। ଆତ୍ମା ତାଙ୍କର ବାମଣ୍ଡାର ଗୁଣକୀର୍ତ୍ତନରେ ମୋହାଚ୍ଛନ୍ନ ହୋଇଉଠିଲା । ଏହି ମୋହାବିଷ୍ଟ ଶବ୍‌ଦାଞ୍ଜଳିର କବିତା ରୂପ ବାମଣ୍ଡାଦର୍ଶନ। ଯାହାକି ପୁସ୍ତକାକାରେ ବାମଣ୍ଡା ଜଗନ୍ନାଥବଲ୍ଲଭ ପ୍ରେସରେ ୧୮୮୭ରେ ପ୍ରକାଶ ପାଇଥିଲା ଏବଂ ସୁଢ଼ଳଦେବଙ୍କ ସୁଦୃଷ୍ଟି ଆକର୍ଷଣ କରିପାରିଥିଲା । (ସଂସ୍କାରକ -୧୪-୭-୧୮୮୭)

**(୨)ଭିକ୍‌ଟୋରିଆ ଚରିତ (୧୮୯୭):** ଭିକ୍ଟୋରିଆ ରାଣୀଙ୍କ ଜୀବନୀ ବର୍ଣ୍ଣନା ହୋଇଛି । ଏ ପୁସ୍ତକର ମୂଳଲକ୍ଷ୍ୟ ହେଲା ଛାତ୍ରମାନଙ୍କୁ ଜ୍ଞାନ ପ୍ରଦାନ। ତଥାପି ମଧ୍ୟ ଏ ପୁସ୍ତକ ଅନ୍ତରାଳରେ ଭିକ୍ଟୋରିଆଙ୍କ ପିତା ଏଡ୍‌ୱାର୍ଡ କିପରି ବିଧବା ଲୁଇସାଙ୍କୁ ବିବାହ କଲେ, ସେ ଦେଶରେ କିପରି ନାରୀଶିକ୍ଷା ପ୍ରଚଳିତ ଥିଲା, ସେମାନେ କିପରି ଗଣଶିକ୍ଷା ମାଧ୍ୟମରେ ସମାଜର ଉନ୍ନତି ସାଧିତ ଏବଂ ପୃଥିବୀର ଏକ ପଞ୍ଚମାଂଶର ଅଧିପତି ସାଜିଥିଲେ ବର୍ଣ୍ଣିତ ହୋଇଛି । ଏହି ପୁସ୍ତକ ୧୮୯୭ରେ ପ୍ରଥମେ ସୁଢ଼ଳ ପ୍ରେସ, ବାମଣ୍ଡାରେ ପ୍ରକାଶିତ ହୋଇଥିଲା। ୧୯୦୦ରେ ଦ୍ୱିତୀୟ ସଂସ୍କରଣ ସେହି ପ୍ରେସରେ ଖଲ୍ଲିକୋଟ ଅଧୀଶ୍ୱର ହରିହର ମର୍ଦ୍ଦରାଜଙ୍କ ସାହାଯ୍ୟରେ ପ୍ରକାଶିତ ହୋଇ ବିନା ମୂଲ୍ୟରେ ବିତରିତ ହୁଏ। ('ଭୂମିକା'- ଭିକ୍ଟୋରିଆ ଚରିତ - ୧୯୦୦ ବାମଣ୍ଡା) ଏ ପୁସ୍ତକ ମଧ୍ୟପ୍ରଦେଶ ଶିକ୍ଷା ବିଭାଗ ପ୍ରାଇଜ୍ ଓ ଲାଇବ୍ରେରୀ ପୁସ୍ତକରୂପେ ଶିକ୍ଷାବିଭାଗ ଇନ୍‌ସପେକ୍ଟରଙ୍କ ଅନୁମୋଦନ ଲାଭ କରିଥିଲା । (ସମ୍ବଲପୁର ହିତୈଷିଣୀ: ତା ୨୩-୮-୧୮୯୯)



Digitized by srujanika@gmail.com

୩: ଜିହ୍ୱାସୁଖ ଓ ଜୀବନ (୧୮୯୬)

ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଓଡ଼ିଆ ଓ ଇଂରେଜୀ ଭାଷାର ବିବିଧ ପୁସ୍ତକ, ପତ୍ରିକା ଅବଲମ୍ବନରେ ଏ ପୁସ୍ତକ ରଚିତ ଏବଂ ବାମଣ୍ଡା ସୁଢ଼ଳ ପ୍ରେସରେ ୧୮୯୬ରେ ପ୍ରକାଶିତ । ବିଭିନ୍ନ ସଦ୍‌ଗ୍ରନ୍ଥ ଆଲୋଡନ କରି ନିରାମିଷ ଖାଦ୍ୟର ଗୁଣ, ମାଂସ ସ୍ୱଭାବସିଦ୍ଧ ଖାଦ୍ୟ ନୁହେଁ, ଆମିଷ ବଳର ଖାଦ୍ୟ ନୁହେଁ, ଆମିଷ ବୁଦ୍ଧିର ପ୍ରଖରତା ନାଶକ, ଶରୀରର ଉତ୍ତାପ ରକ୍ଷା ନିମିତ୍ତ ଆମିଷ ଭକ୍ଷଣ ଅନାବଶ୍ୟକ, ଜୀବହିଂସା ନିଷ୍ଠୁରତାର ଜନନୀ, ଆମିଷ ଭକ୍ଷଣ କଲେ ଦୁଷ୍ପ୍ରବୃତ୍ତି ପ୍ରବଳ ହୁଏ, ଏକମାତ୍ର ଆମିଷ ଭକ୍ଷଣ ଜୀବନରକ୍ଷା କରାଯାଇ ନ ପାରେ, ଆମିଷ ଭକ୍ଷଣ ସମ୍ବନ୍ଧରେ ସାଧାରଣ ଆପତ୍ତି, ଶାସ୍ତ୍ରୀୟ ବିଚାର ପ୍ରଭୃତି ବିଷୟରେ ତାର୍କିକ ଅବତାରଣା ଏ ପୁସ୍ତକରେ କରାଯାଇଛି । ୫୬ ପୃଷ୍ଠାର ଏ ପୁସ୍ତକ ବେଶ୍ ଲୋକପ୍ରିୟତା ଅର୍ଜନ କରିପାରିଥିଲା । ଏ ପୁସ୍ତକ ପାଠ କରି ଅନେକ ବ୍ୟକ୍ତି ଆମିଷ ଭକ୍ଷଣ ପରିତ୍ୟାଗ କରିଥିଲେ । ସେମାନଙ୍କ ସ୍ୱୀକାରୋକ୍ତି ଏବଂ ପତ୍ର ବିଭିନ୍ନ ସମୟରେ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ପ୍ରକାଶିତ ହୋଇଛି । (ସମ୍ବଲପୁର ହିତୈଷିଣୀ: ତା ୧୦-୨-୧୮୯୭ ଓ ଅନ୍ୟାନ୍ୟ ସଂଖ୍ୟା ଦ୍ରଷ୍ଟବ୍ୟ)

୪: ରାଜଧର୍ମ (୧୮୯୭):

ବିଭିନ୍ନ ସଦ୍‌ଗ୍ରନ୍ଥ ବିଶ୍ଳେଷଣ କରି ରାଜଧର୍ମ ଉପରେ ଆଲୋକପାତ କରିଛନ୍ତି । ବାମଣ୍ଡା ସୁଢ଼ଳପ୍ରେସ୍‌ରେ ପ୍ରକାଶିତ । ଏ ପୁସ୍ତକ ସମ୍ପର୍କରେ '' ସମ୍ବଲପୁର ହିତୈଷିଣୀ ୮/୪୦ ତା ୩-୩-୧୮୯୭ରେ ଆଲୋଚିତ ହୋଇଛି ।

୫: କୃତନୀତି ପରାଗ (୧୯୦୩):

ଏହାର ୧ମ ଭାଗ ଓ ୨ୟ ଭାଗ ୧୯୦୩ରେ ପ୍ରକାଶିତ । ଏଗୁଡିକ ଉପଦେଶମୂଳକ କବିତା । କେତୋଟି ଉଦାହରଣ ଏଠି ଗ୍ରହଣ କରାଯାଇପାରେ ।

''ଯଦ୍ୟପି ହୁଅନ୍ତା କାର୍ଯ୍ୟ କଥାରେ କେବଳ
ଅନୁନ୍ନତ ଥାଆନ୍ତା କି ଆଜ ଏ ଉତ୍କଳ ।
ଶାସକ ହେବାକୁ ଯେବେ ପ୍ରବଳ ବାସନା
ଶାସିତ ହେଲାକୁ କିମ୍ବା ନକର ସାଧନା ।
ସହସା କ୍ରୋଧାନ୍ଧ ହେବା ଅତି କୁଲକ୍ଷଣ
ଭାବି ଦେଖ ଅଛି କିନା କ୍ଷମାର କାରଣ ।'' ଇତ୍ୟାଦି



Digitized by srujanika@gmail.com

୬. ମଣି ମଞ୍ଜୁଷା (୧୯୧୧):

ଏହି ପୁସ୍ତକ ବିଦ୍ୟାରତ୍ନଙ୍କ ଦ୍ୱାରା ସମ୍ପାଦିତ ହୋଇ ଗଜପତି ଭୀମଦେବ ପ୍ରେସ୍, ବଡ ଖେମୁଣ୍ଡିରେ ୧୯୧୧ରେ ପ୍ରକାଶ ଲଭେ । ମୂଲ୍ୟ ଛଅ ପଇସା । ସଂସ୍କୃତ ଭାଷାରେ ରଚିତ ବିଭିନ୍ନ ନୀତିଶ୍ଳୋକକୁ ନିଜସ୍ୱ ଭାଷାରେ ସଂପାଦିତ କରିଛନ୍ତି ବିଦ୍ୟାରତ୍ନ । ବର୍ଣ୍ଣମାଳା କ୍ରମରେ ଏଗୁଡିକ ସଜ୍ଜିତ ହୋଇଛି । ଯେପରିକି-

ଅମୃତଂ କ୍ଷୀର ଭୋଜନଂ

ଅନଭ୍ୟାସେ ବିଷଂ ବିଦ୍ୟା

X X X

ଅପୁତ୍ରସ୍ୟ ଗୃହଂ ଶୂନ୍ୟ (ପୃ-୧)

ଆତୁରେ ନିୟମୋ ନାସ୍ତି । (ପୃ-୩)

X X X

କବୟଃ କିଂ ନ ପଶ୍ୟନ୍ତି (ପୃ-୪)

X X X

କା ବିଦ୍ୟା କବିତା ବିନା

X X X

କ୍ଷାନ୍ତିତୁଲ୍ୟାଂ ତପୋନାସ୍ତି ।(ପୃ-୨୪)

ଚବିଶ ପୃଷ୍ଠାର ଏ ପୁସ୍ତିକା ନୀତିଗର୍ଭିତ ଶ୍ଳୋକ ସମୂହକୁ ନେଇ ନିଜର ନାମ '' ମଣି ମଞ୍ଜୁଷା''କୁ ସାର୍ଥକ କରୁଛି ।

**୭. ଦଶକର୍ମ ପଦ୍ଧତି (୧୮୮୯):** ପୌରୋହିତ୍ୟ କର୍ମରେ ନିୟୋଜିତ ବ୍ରାହ୍ମଣମାନଙ୍କୁ ବିଶୁଦ୍ଧ କର୍ମପଦ୍ଧତି ଯୋଗାଇଦେବା ପାଇଁ ଏ ବହି ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରେ ୧୮୮୯ରେ ମୁଦ୍ରିତ ହୁଏ । ଏହି ପରିପ୍ରେକ୍ଷୀରେ ସ୍ମରଣ କରାଯାଇପାରେ ବାମଣ୍ଡା ରାଜା ସୁଢ଼ଲଦେବ ବ୍ରାହ୍ମଣମାନଙ୍କର ପୁରୋହିତ ପରୀକ୍ଷା ପ୍ରଚଳନ କରାଇ ସ୍ୱୀକୃତି ପ୍ରାପ୍ତ କୃତୀ ବ୍ରାହ୍ମଣମାନଙ୍କୁ ପୁରୋହିତ କର୍ମ କରିବାର ଅନୁମତି ଦେଉଥିଲେ । (ସମ୍ବଲପୁର ହିତୈଷିଣୀ ୯/୪୭ - ତା ୧୩-୪-୧୮୮୯) ବ୍ରାହ୍ମଣମାନଙ୍କୁ ବିଶୁଦ୍ଧ ପୁସ୍ତକ ଯୋଗାଇବା ଅଭିପ୍ରାୟରେ 'ଦଶକର୍ମ ପଦ୍ଧତି' ପରି ଅନେକ ବହି ମଧ୍ୟ ଏ ପ୍ରେସ୍‌ରୁ ମୁଦ୍ରିତ ହୋଇ ପ୍ରଚାରିତ ହୋଇଥିଲା । ଏ କର୍ମର ଅନ୍ୟତମ ଉଦ୍ୟୋକ୍ତା ଥିଲେ ବିଦ୍ୟାରତ୍ନ । ବିଭିନ୍ନ ପୁସ୍ତକ ଓ ତାଳପତ୍ର ପୋଥି ଅଧ୍ୟୟନ କରି ଏ ପୁସ୍ତକ ସଂକଳିତ ହୋଇଛି । ଏହାର



Digitized by srujanika@gmail.com

ବିଶୁଦ୍ଧତା ମଧ୍ୟ ପଣ୍ଡିତ ମଣ୍ଡଳୀ ଦ୍ୱାରା ପରୀକ୍ଷିତ ଓ ସ୍ୱୀକୃତ । (ଏଇ ଲେଖକଙ୍କର କ୍ଷେତ୍ର ଗବେଷଣା ସମୟେ ଅନେକ ପଣ୍ଡିତ ବ୍ରାହ୍ମଣ ଏହାର ବିଶୁଦ୍ଧତାକୁ ସ୍ୱୀକାର କରିଛନ୍ତି)

**୮. ଜୀବନ ବନ୍ଧୁ (୧୯୧୫):** କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ୧୯୧୫ରେ ପୁସ୍ତକଟି ମୁଦ୍ରିତ । ଜଳପାନର ବିଭିନ୍ନ ଦିଗ ପୁସ୍ତକଟିରେ ବର୍ଣ୍ଣିତ । ଜଳ ହିଁ ଜୀବନ । ଏଣୁ ପୁସ୍ତକରେ ଜଳକୁ 'ଜୀବନବନ୍ଧୁ' ଶୀର୍ଷକରେ ସମ୍ବୋଧିତ କରାଯାଇଛି । ବିଶୁଦ୍ଧ ଜଳ ବ୍ୟବହାର ଦ୍ୱାରା ଅନେକ ରୋଗ ଉପଶମିତ ହୋଇଥାଏ ।

**୯. ବାଳିକା ବନ୍ଧୁ (୧୯୧୨) :** ଦଶପୃଷ୍ଠାର ଏହି କ୍ଷୁଦ୍ର ପୁସ୍ତିକାଟି ବାମଣ୍ଡା ହିତୈଷିଣୀ ପ୍ରେସରେ ମୁଦ୍ରିତ । ପୁସ୍ତକରେ ନାରୀ ଶିକ୍ଷାର ବିଭିନ୍ନ ଦିଗ ଆଲୋଚିତ । ବାଳିକାମାନଙ୍କର ଶିକ୍ଷା ଉଦ୍ଦେଶ୍ୟରେ ପୁସ୍ତକଟି ରଚିତ ।

**୧୦.ବାଳିକା ସଖା :** ଗଳ୍ପ ଛଳରେ ଦେଶବିଦେଶର ଦୃଷ୍ଟାନ୍ତ ପ୍ରଦାନ ଦ୍ୱାରା ବାଳିକାମାନଙ୍କୁ ଶିକ୍ଷିତ କରିବା ବହିଟିର ଆଭିମୁଖ୍ୟ । ପୁସ୍ତକରେ ତତ୍କାଳବୁଦ୍ଧି, ସ୍ୱଦେଶପ୍ରୀତି, ଭ୍ରାତୃପ୍ରେମ, ଅନୁକରଣ ପ୍ରିୟତା, ପରୋପକାର ସାଧନ, ମାତୃସେବା, ମାତୃଭକ୍ତି, ଦୟା, ଆତ୍ମୋତ୍ସର୍ଗ, କର୍ତ୍ତବ୍ୟନିଷ୍ଠା ଏବଂ ତ୍ୟାଗ ସ୍ୱୀକାର ପ୍ରଭୃତି ଶିକ୍ଷଣୀୟ ବିଷୟର ଅବତାରଣା କରାଯାଇଛି ।

**୧୧. ସମୁଦ୍ର ଯାତ୍ରା ବିଚାର (୧୯୧୩):** ସମୁଦ୍ର ଯାତ୍ରା ଦ୍ୱାରା ବିଦେଶ ଗମନ କଲେ ହିନ୍ଦୁର ହିନ୍ଦୁତ୍ୱ ନଷ୍ଟ ହୁଏ ବୋଲି ପ୍ରଚଳିତ କୁସଂସ୍କାର ବିରୁଦ୍ଧରେ ପୁସ୍ତକଟିରେ ଆହ୍ୱାନ ଦିଆଯାଇଛି । ସମୁଦ୍ର ପଥରେ ପ୍ରାଚୀନକାଳରେ ହିନ୍ଦୁମାନଙ୍କର ଦ୍ୱୀପାନ୍ତର ଗମନର ଶାସ୍ତ୍ରୀୟ ପ୍ରମାଣ ପ୍ରଦାନ ସହିତ ବିଦ୍ୟାରତ୍ନ ସମୁଦ୍ରଯାତ୍ରା ଦ୍ୱାରା ଦେଶୋନ୍ନତି ସମ୍ଭବର ସୂଚନା ଦେଇଛନ୍ତି ।

ଉଲ୍ଲିଖିତ ପୁସ୍ତକ ସମୂହ ଲେଖକର ସଂଗୃହିତ ପୁସ୍ତକ ମଧ୍ୟରୁ ନିର୍ବାଚିତ କିଛି ପୁସ୍ତକର ଆକଳନ ମାତ୍ର । ଏହା ବ୍ୟତିରେକେ ବିଦ୍ୟାରତ୍ନଙ୍କ ପୁସ୍ତକ ତାଲିକା ଖୁବ୍ ଦୀର୍ଘ । ଏଠାରେ ଆଲୋଚିତ ପୁସ୍ତକ ବ୍ୟତୀତ ବିଦ୍ୟାରତ୍ନଙ୍କ ଅଜୀର୍ଣ୍ଣ କଣ୍ଟକ, ଆମବାତ ଚିକିତ୍ସା, ଗରମ ରୋଗଚିକିତ୍ସା, ଶିରୋରୋଗ ଚିକିତ୍ସା, ସଦୁକ୍ତି ସଂଗ୍ରହ, ଉଦ୍ବୋଧିନୀ, କୁମାରୋତ୍ସବ, ନାରିକେଳ ଚାଷ, ଲାଟଦର୍ଶନ, ମୋହମୁଦ୍ଗର, ପଣକିଆପାଠ, ଗ୍ରାମ୍ୟ ସମିତି, ଚା'ପାନ, ଚଟଣୀ ସଂଗ୍ରହ, ନାଶପତ୍ର, ମଦିରା ମହାତ୍ମ୍ୟ, ନାଶପତ୍ର, ମଦନ ବିନୋଦ ବା ଧାତୁ ପୁଷ୍ଟିର ଉପାୟ, ରଥଗୀତ, ରସନାରଞ୍ଜନ, ସଙ୍ଗୀତ ମକରନ୍ଦ, ସଙ୍ଗୀତ କଳାନିଧି ପ୍ରଭୃତି ପୁସ୍ତକ ଜନସଚେତନତା ସୃଷ୍ଟିରେ ସଫଳ ହୋଇଥିଲା । ସମକାଳର ଅମୂଲ୍ୟ ପ୍ରବାଳ



Digitized by srujanika@gmail.com

ପରି ତାଙ୍କ ପୁସ୍ତକ ସମୂହ ଦୁର୍ଲ୍ଲଭ ଏବଂ ମୂଲ୍ୟବାନ । ଏହା ବ୍ୟତିରେକେ ବିଦ୍ୟାରତ୍ନ ରାଶି ରାଶି ଶିକ୍ଷଣୀୟ ପୁସ୍ତକ ରଚନା କରି ଯାଇଛନ୍ତି । ତାଙ୍କର ସମସ୍ତ ପୁସ୍ତକ ଏବଂ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ରଚନା ସମଗ୍ରର ସଂକଳନ ବିନା ଏ ଯୁଗାନ୍ତକାରୀ ପ୍ରତିଭାର ପୂର୍ଣ୍ଣାଙ୍ଗ ଅଧ୍ୟୟନ ଅସମ୍ଭବ । ଏ କ୍ଷେତ୍ରରେ ସରକାରୀ ଓ ବେସରକାରୀ ଉଦ୍ୟମକୁ ସ୍ୱାଗତ କରିବା ଦିଗରେ ଏହି ଆଲୋଚନା ଉତ୍ସର୍ଗୀକୃତ ।

**ଶୂନ୍ୟଗର୍ଭ ସମୟର ଶିଳାପତନ :**

ବିଦ୍ୟାରତ୍ନଙ୍କ ସମଗ୍ର ଜୀବନକାଳ ଓଡ଼ିଆ ସମାଜ ଜୀବନର ଉନ୍ନତିକଳ୍ପେ ଅଙ୍ଗୀକାରବଦ୍ଧ । ଓଡ଼ିଆ ଭାଷା ଆନ୍ଦୋଳନ, ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣଠାରୁ ଉତ୍କଳ ସମ୍ମିଳନୀର କାଳଜୟୀ ପରିଣତି ଭିତରେ ଜଣେ ଅଗ୍ରଦୂତ ରୂପେ ବିଦ୍ୟାରତ୍ନ ପ୍ରତିଭା ଚିର ଦେଦୀପ୍ୟମାନ । ଆତ୍ମ ପ୍ରତ୍ୟୟପୂର୍ଣ୍ଣ ବିଦ୍ୟାରତ୍ନ ରୂପୀ ସୁଦୃଶ୍ୟ ମନ୍ଦିରର ଶିଳା ପତନର ଦୃଶ୍ୟ ଯେତିକି ମର୍ମନ୍ତୁଦ ସେତିକି ବ୍ୟଥାବ୍ୟଂଜିତ । ଶୂନ୍ୟଗର୍ଭ ସମୟର ଅର୍ଥ ଦ୍ୟୋତନା ଭିତରେ ବିଦ୍ୟାରତ୍ନଙ୍କ ସାରସ୍ୱତ ଅବଦାନ ଉଜ୍ଜ୍ୱଳମୟ । ବିଦ୍ୟାରତ୍ନଙ୍କ ଶିଳାପତନର ମୁହୂର୍ତ୍ତ ପ୍ରତିଟି ଓଡ଼ିଆଙ୍କ ହୃଦ୍‌ସ୍ପନ୍ଦନ ବଢ଼ିବାର ମୁହୂର୍ତ୍ତ । ଏହି ମୁହୂର୍ତ୍ତ ଜୁଲାଇ-୨୬-୧୯୨୪ରେ ଏକ ମହନୀୟ କର୍ମୀ ଜୀବନର ଶେଷ ଲିପିକୁ ଲିପିବଦ୍ଧ କରିଗଲା । ଦାୟବଦ୍ଧତାରେ ହନ୍ତସନ୍ତ ପ୍ରତିଟି ଓଡ଼ିଆ ସେହି ଦିବଂଗତ ପ୍ରତିଭାକୁ ଝୁରିହେଲେ ସିନା କିନ୍ତୁ ତାର ଅସଂପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କରି ପାରିଲେ ନାହିଁ । ସେହି କର୍ମଯୋଗୀଙ୍କ ଚିରଂଜୀବୀ କର୍ମପ୍ରବଣତାକୁ ଆସନ୍ତୁ ଉତ୍କଳ ଦୀପିକା ସ୍ୱରରେ ସ୍ମୃତିଚାରଣ କରିବା ।

**ପରଲୋକଗତ ବିଦ୍ୟାରତ୍ନ :**

ଗଭୀର ଦୁଃଖର ସହିତ ଜଣାଉ ଅଛୁଁ ଯେ, ଦୀପିକାର ଭୂତପୂର୍ବ ସମ୍ପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଆଉ ଇହଧାମରେ ନାହାନ୍ତି ଗତ ତା-୨୬ ରିଖ ସନ୍ଧ୍ୟା ୬ ଘ: ସମୟରେ ତାଙ୍କ ଜୀବନଲୀଳା ସାଙ୍ଗହେଲା । ବିଦ୍ୟାରତ୍ନ ମହାଶୟଙ୍କୁ ଉତ୍କଳରେ ପ୍ରାୟ ସମସ୍ତେ ଚିହ୍ନନ୍ତି । ସମ୍ବାଦପତ୍ର କିପରି ଭଲ ଭାବରେ ଚଳାଇବାକୁ ହୁଏ ସମ୍ବଲପୁର ହିତୈଷିଣୀ ସମ୍ପାଦକ ରୂପେ ସେ ପ୍ରଥମେ ଉତ୍କଳକୁ ଦେଖାଇଥିଲେ । ତାପରେ ପ୍ରଜାବନ୍ଧୁର ଚାଳକ ରୂପେ ସେ ଉତ୍କଳ ଦେଶ ମିଶ୍ରଣକୁ ଉତ୍କଳର ପ୍ରଧାନ ଜାତୀୟ ସମସ୍ୟାରେ ପରିଣତ କରିଥିଲେ । ମଧୁବାବୁ ଉତ୍କଳ ସମ୍ମିଳନୀର ଜନ୍ମଦାତା ସତ କିନ୍ତୁ ବାସ୍ତବରେ ଗଞ୍ଜାମ ସମ୍ମିଳନୀ ଉତ୍କଳ ସମ୍ମିଳନୀର



Digitized by srujanika@gmail.com

ଜନ୍ମଦାତା; ସେହି ଗଞ୍ଜାମ ସମ୍ମିଳନୀରେ ନୀଳମଣିଙ୍କର ଉଦ୍ୟୋଗ ଓ ପ୍ରଭାବ ଅଦ୍ୟାପି ଦେଶବାସୀଙ୍କର ମନେଥିବ ।

ବିଦ୍ୟାରତ୍ନ ନିଜେ ସାହିତ୍ୟିକ ଥିଲେ ଏବଂ ସାହିତ୍ୟିକମାନଙ୍କୁ ଚିହ୍ନି ଚିହ୍ନାଇବାରେ ତାଙ୍କର ବିଶେଷ ପଟୁତା ଥିଲା। ରାଧାନାଥ, ମଧୁସୂଦନ ତାଙ୍କ କାର୍ଯ୍ୟଦ୍ୱାରା ବହୁତ ଉତ୍ସାହିତ ହୋଇଥିଲେ ଏବଂ ରାଜା ସଚ୍ଚିଦାନନ୍ଦ ତାଙ୍କରି ପ୍ରଭାବରେ ପ୍ରଭାବିତ ହୋଇ ବାମଣ୍ଡାର ରାଜକବି ହୋଇ ରହିବା ପାଇଁ ୰ ଗଙ୍ଗାଧରଙ୍କୁ ଥରେ ନିମନ୍ତ୍ରଣ କରିଥିଲେ।

ବୟୋଧିକ ସଙ୍ଗେ ସଙ୍ଗେ ତାଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହେବାକୁ ଲାଗିଲା । ତଥାପି ସେ ବୃଦ୍ଧାବସ୍ଥାରେ ଦୀପିକାର ସମ୍ପାଦକ ଭାର ଗ୍ରହଣ କରିଥିଲେ । ଏ କାର୍ଯ୍ୟରୁ ପ୍ରାୟ ୨ ମାସ ହେବ ଅବସର ଗ୍ରହଣ କରିଥିଲେ । ସ୍ୱାସ୍ଥ୍ୟ ଭଙ୍ଗ ସତ୍ତ୍ୱେ ଏତେ ଚଞ୍ଚଳ ସେ ଆମ୍ଭମାନଙ୍କୁ ଛାଡି ଚାଲିଯିବେ ବୋଲି ଆମ୍ଭେମାନେ ଆଦୌ ଭାବି ନ ଥିଲୁ । ବିଦ୍ୟାରତ୍ନ ଆଜୀବନ ସାହିତ୍ୟସେବୀ ଥିଲେ । ଏପରିକି ମୃତ୍ୟୁର ଶେଷ ସମୟ ପର୍ଯ୍ୟନ୍ତ ସାହିତ୍ୟର ଉନ୍ନତି ପାଇଁ ସେ ଭାବୁଥିଲେ । ମୃତ୍ୟୁ ସମୟକୁ ତାଙ୍କର ବୟସ ପ୍ରାୟ ୬୭ ବର୍ଷ ହୋଇଥିଲା । ଶୋକସନ୍ତପ୍ତ ପରିବାରଙ୍କୁ ଅନ୍ତରର ସହିତ ସାନ୍ତ୍ୱନା ପ୍ରଦାନ କରୁଅଛୁଁ । (ଉତ୍କଳ ଦୀପିକା ୫୯/୩୧ ତା ୨-୮-୧୯୨୪)□□□



Digitized by srujanika@gmail.com

# ଓଡ଼ିଆ କାବ୍ୟରାଜ୍ୟର 'ଯୁବରାଜ': କବି ଦାମୋଦର ପଟ୍ଟନାୟକ

'' କହ କହ ଯୁବରାଜ ନକରି କପଟ
କାହା ଯୁବରାଜ ତୁମ୍ଭେ କାହିଁ ତମ ଧାମ ?
କୁହନ୍ତୁ ବା ଦୀପିକାର, ସେ ତ ଅପୁତ୍ରିକ !!
ତେବେ କିହେ ତୁମ୍ଭେ ଓଡ଼ିଶ୍ୟାର ଯୁବରାଜ ?
ଯୁବକଦଳ ଅଗ୍ରଣି ! କହ ସତ ସତ ।
ଯଦିବା ଓଡ଼ିଶ୍ୟାବାସୀଙ୍କର ଯୁବରାଜ
ଦୀପିକା କୋଳରେ କିମ୍ପା ଏତେ ଲୀଳାଖେଳା ?
ଧନ୍ୟା ସେ ଦୀପିକା ଯେହୁ ଏହୁ ଯୁବରାଜେ
ବସାଇ ଅଛନ୍ତି ନେଇ ଆପଣା କ୍ରୋଡରେ ।
ଦୁହେଁ ଦୁହିଁଙ୍କ ଯୋଗରେ ଆହା !! କି ସୁନ୍ଦର !!
ବର୍ଣ୍ଣିବାକୁ କେ ସକ୍ଷମ ସେ ମିଳନ ଶୋଭା ।''
(ସମ୍ବଲପୁର ହିତୈଷିଣୀ - ୫/୯ ତା-୨।୮।୧୮୯୩)

ଯୁଗାନ୍ତକାରୀ ବିଜୁଳି- ଇନ୍ଦ୍ରଧନୁ ସାରସ୍ୱତ କଳହରେ ଭଞ୍ଜ ସପକ୍ଷବାଦୀ ଶିବିରର ପ୍ରମୁଖ ଯୋଦ୍ଧା 'ଯୁବରାଜ' । ପ୍ରଶ୍ନ ଉଠେ, କିଏ ଏହି ଯୁବରାଜ, ଯିଏ 'ଇନ୍ଦ୍ରଧନୁ' ଦଳର ଗୋଲକଧନ୍ଦାଙ୍କ ପରେ ସର୍ବଶ୍ରେଷ୍ଠ ରଥି । 'ଇନ୍ଦ୍ରଧନୁ- ବିଜୁଳି'ର ପ୍ରଚଣ୍ଡ ସମରର ସେନାପତି ଯୁବରାଜ । 'ଇନ୍ଦ୍ରଧନୁ'(୧/୮) ଡିସେମ୍ବର-୧୮୯୩ ସଂଖ୍ୟାରେ ପ୍ରକାଶିତ 'ବାଲିଯାତ୍ରା' କବିତାରେ 'ଯୁବରାଜ' ଇନ୍ଦ୍ରଜାଲିକ ଭୂମିକା ସମ୍ପାଦନ କରି ବିଜୁଳି ଓ ଇନ୍ଦ୍ରଧନୁ ଦଳଙ୍କ ସାମର୍ଥ୍ୟ ପ୍ରଦର୍ଶନ କରିଛନ୍ତି ।

ଏଣୁ 'ନବଯୁଗ ଉପହାର' (ଇନ୍ଦ୍ରଧନୁ-୧/୧୪) କବିତାରେ ଯୁବରାଜଙ୍କୁ ଇନ୍ଦ୍ରଜାଲି ବୋଲି ଅଭିହିତ କରାଯାଇଛି ।

'' ଅଛି ଯୁବରାଜ ରାଜକବି ଇନ୍ଦ୍ରଜାଲି
ଉଭା ଶୋଭା ଦେଖାଏ ସେ ମୁକ୍ତଭାଷୀ ପୁଣ



Digitized by srujanika@gmail.com

କୁଳାନନ୍ଦ ମହାତର୍କୀ  x x x।''

(ନବଯୁଗ ଉପହାର : ଇନ୍ଦ୍ରଧନୁ,ସଂ : ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ( ୧ ୯ ୯ ୧ ) ପୃ.୪୬)

ଏହି ଅବାଞ୍ଛିତ ସାରସ୍ୱତ କଳହକୁ ସମାଲୋଚନା କରି ଭକ୍ତକବି ମଧୁସୂଦନ ରାଓ 'ଶ୍ରୀ ମୁରାରି' ଛଦ୍ମନାମରେ ''ସାବାସ୍- ସାହିତ୍ୟ ଚର୍ଚ୍ଚା ସାବାସ୍ ସାବାସ୍'' ଶୀର୍ଷକରେ ଏକ ବ୍ୟଙ୍ଗ କବିତା 'ବାଲେଶ୍ୱର ସାମ୍ବାଦବାହିକା'- ୨୬/୩୪: ୨୪-୮-୧୮୯୩ ସଂଖ୍ୟାରେ ଲେଖିଥିଲେ । ଏଥିରେ ଯୁବରାଜଙ୍କ ଭୂମିକା ସମ୍ପର୍କରେ ସେ ଲେଖିଥିଲେ-

'' ଯୁବରାଜ ଶୁଭେ ବିରାଜି ଭଞ୍ଜ କାବ୍ୟ କୁଞ୍ଜରେ
କିକ୍ରୀଡା କରୁଛ ସଭଗ,  ବ୍ରୀଡାଛଡା ଖଞ୍ଜରେ
ବ୍ରଜରାଜ ପ୍ରାୟେ କାହାର ଅଙ୍କ ଉଚ୍ଛଳି ଭଲେ
ଭଣ୍ଡ ଭାଗବତ ଭାଷୁଛ ମିଶି ରସିକ ପଲେ ।''

ଯୁବରାଜ କିଏ ? ଉତ୍କଳୀୟ ବାଙ୍ମୟରେ ତାଙ୍କର ଭୂମିକା କ'ଣ ? ଇନ୍ଦ୍ରଧନୁ ଦଳର ପ୍ରମୁଖ ସେନାପତି ଯୁବରାଜଙ୍କ ପୂର୍ବ ଓ ପରବର୍ତ୍ତୀ ସାରସ୍ୱତଚର୍ଯ୍ୟାର ପରିଚୟ କ'ଣ ? '' ପୂର୍ବରୁ ଓଡ଼ିଆ ଆଲୋଚକମାନେ ଇନ୍ଦ୍ରଧନୁ - ବିଜୁଳି ସଂଘର୍ଷକୁ ଅଯଥାରେ ପ୍ରାଚୀନ-ଆଧୁନିକ ସାହିତ୍ୟର ସଂଘର୍ଷ ଭାବରେ ଅଭିହିତ କରି ବହୁଶ୍ରମ ଓ ସମୟ ନଷ୍ଟ କରିଛନ୍ତି ଅଥଚ ଉଭୟ ଦଳର ଯୋଦ୍ଧାମାନଙ୍କର ପ୍ରକୃତ ପରିଚୟ ଅନୁସନ୍ଧାନ କରି ନାହାନ୍ତି । ପରେ 'ଇନ୍ଦ୍ରଧନୁ'ର 'ଭୂମିକା'ରେ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ 'ଇନ୍ଦ୍ରଧନୁ'ରେ ଲେଖୁଥିବା ବିଭିନ୍ନ ଲେଖକଙ୍କର ପ୍ରକୃତ ପରିଚୟ ଆମକୁ ପ୍ରଦାନ କରିଛନ୍ତି ।'' (ରାମକୃଷ୍ଣ କାବ୍ୟସଂଗ୍ରହ, ସଂ. ଦେବେନ୍ଦ୍ର କୁମାର ଦାଶ - ପୃ.୯) ଗବେଷକ ଦେବେନ୍ଦ୍ର କୁମାର ଦାଶଙ୍କ ' କବିଭୂଷଣ'ଙ୍କ ପରିଚୟ ନିର୍ଣ୍ଣୟ ପ୍ରସଙ୍ଗରେ ଉପରୋକ୍ତ ଆକ୍ଷେପୋକ୍ତି ଅନେକାଂଶରେ ସତ୍ୟ ମନେହୁଏ । ସେ ଯାହା ହେଉ, ଯୁବରାଜ ଯେ ଦାମୋଦର ପଟ୍ଟନାୟକ, ଏହା ବିଭିନ୍ନ ସୂତ୍ରରୁ ସମର୍ଥିତ । ମୁକୁର (୧୦/୮)-୧୯୧୫ ସଂଖ୍ୟାରେ ଦାମୋଦର ପଟ୍ଟନାୟକଙ୍କ ବିୟୋଗରେ ଲିଖିତ କବିତାରେ ଉଲ୍ଲେଖ ଅଛି,

''ଇନ୍ଦ୍ରଧନୁ ବିଜୁଳିର ପ୍ରଚଣ୍ଡ ସମୟରେ
ଯୁବରାଜ ହେଲେ ସେନାପତି ।''

ଭଞ୍ଜୀୟ ଶିବିରର ସର୍ବଶ୍ରେଷ୍ଠ ଯୋଦ୍ଧା ଥିଲେ ଗୋଲକଧନ୍ଦା ବା ଗୋପାଳବଲ୍ଲଭ ଦାସ । ତାଙ୍କ ପରେ ଯୁବରାଜ ବା ଦାମୋଦର  ପଟ୍ଟନାୟକଙ୍କ  ସ୍ଥାନ । ମୃତ୍ୟୁଞ୍ଜୟ ରଥଙ୍କ 'କର୍ମଯୋଗୀ ଗୌରୀଶଙ୍କର',  ସୁଦର୍ଶନ ଆଚାର୍ଯ୍ୟଙ୍କ 'ଇନ୍ଦ୍ରଧନୁ'ର  ମୁଖବନ୍ଧ,



Digitized by srujanika@gmail.com

ଦେବେନ୍ଦ୍ର କୁମାର ଦାଶଙ୍କ ' ରାମକୃଷ୍ଣ କାବ୍ୟ ସଂଗ୍ରହ' ପ୍ରଭୃତି ପୁସ୍ତକରେ ଦାମୋଦର ପଟ୍ଟନାୟକଙ୍କୁ ଇନ୍ଦ୍ରଧନୁ ଦଳର ଶ୍ରେଷ୍ଠ ଯୋଦ୍ଧା ତଥା ଯୁବରାଜ ରୂପେ ସ୍ୱୀକାର କରାଯାଇଛି । ଯୁବରାଜଙ୍କ ବିଶଦ ପରିଚୟ ପ୍ରଦାନ କରି ମୃତ୍ୟୁଞ୍ଜୟ ରଥ ଲେଖନ୍ତି :

'' ନାରୀକବି ସୁଲକ୍ଷଣାଙ୍କର କନିଷ୍ଠ ପୁତ୍ର ଦାମୋଦରବାବୁ ମଧ୍ୟ ଜଣେ ସାହିତ୍ୟିଜ୍ଞ ଏବଂ ସୁଲେଖକ ଥିଲେ । ଇନ୍ଦ୍ରଧନୁର ଯୁବରାଜ ନାମଧାରୀ ଲେଖକ ଦାମୋଦରବାବୁଙ୍କ ଭିନ୍ନ ଅନ୍ୟକେହି ନୁହନ୍ତି । ସଙ୍ଗୀତ ସାହିତ୍ୟଚର୍ଚ୍ଚାରେ ଅଧିକ ଶକ୍ତି ସେ ବିନିଯୋଗ କରିଥିଲେ । ଭିନ୍ନ କବିଙ୍କର ପ୍ରାଚୀନ ଓଡ଼ିଆ ସଙ୍ଗୀତ ସଂକଳନ ଓ ନୂତନ ସଂଗୀତ ରଚନାରେ ସେ ଯେଉଁ ଅଧ୍ୟବସାୟ ପ୍ରଦର୍ଶନ କରିଅଛନ୍ତି, ତାହା ପ୍ରଶଂସନୀୟ । ପରିଶେଷରେ ଓଡ଼ିଆରେ ଜଗନ୍ନାଥ କୀର୍ତ୍ତନ ନୂତନ ସୃଷ୍ଟିକରି ସେ କୀର୍ତ୍ତନିଆ ସମାଜରେ ଚିରସ୍ମରଣୀୟ ହୋଇଅଛନ୍ତି । ଏ ସବୁଥିରେ ସେ ଆପଣାକୁ ' ଦେବାନ ଦାମୋଦର ' ବୋଲି ଚିହ୍ନାଇ ଅଛନ୍ତି । ଏପରି ପରିଚୟ ଦେବା ଅସଙ୍ଗତ ହୋଇନାହିଁ । କାରଣ ଜୀବନଟାଯାକ ସେ ଦେବାନି କରିଥିଲେ । ତାଳଚେର, ପାଲଲହଡା ଓ ଆଠଗଡରୁ ଦେବାନ ହୋଇଯାଇ ଶେଷରେ ନରସିଂହପୁର ରାଜ୍ୟର ଦେବାନ ଓ ସୁପିରିଣ୍ଟେଣ୍ଡେଣ୍ଟ ହୋଇଥିଲେ ଏବଂ ସେହିଠାରେ ଜଗନ୍ନାଥ କୀର୍ତ୍ତନ ଆରମ୍ଭ କରି ଅମରଧାମକୁ ପ୍ରସ୍ଥାନ କରିଥିଲେ । ତାଙ୍କର 'ଜାତୀୟ ସଂଗୀତ' ଏବଂ 'ଭଲପିଲା' ମଧ୍ୟ ଉତ୍କଳ ସାହିତ୍ୟ ପାଠକମାନଙ୍କ ନିକଟରେ ସମାଦର ଲାଭ କରିଅଛି ।'' (କର୍ମଯୋଗୀ ଗୌରୀଶଙ୍କର: (୧୯୨୫): ମୃତ୍ୟୁଞ୍ଜୟ ରଥ, ପୃ.୭୭-୭୮)

ଏହି କଳହ ସମୟରେ ଅନ୍ୟଏକ ଦାମୋଦର ପଟ୍ଟନାୟକ ଭଞ୍ଜଙ୍କ ବିପକ୍ଷରେ ଲେଖନୀଚାଳନା କରିଥିବାର ଦୃଷ୍ଟିଗୋଚର ହୁଏ । ଉଭୟ ଦାମୋଦର ପଟ୍ଟନାୟକଙ୍କ ଠିକଣା ଢେଙ୍କାନାଳ ପ୍ରଦତ୍ତ ହୋଇଥିବାରୁ ସାଧାରଣରେ ସନ୍ଦେହ ପ୍ରକାଶ ପାଏ । ସନ୍ଦେହ ମୋଚନାର୍ଥେ ଜମ୍ବେଶ୍ୱର ପଟ୍ଟନାୟକ ଉତ୍କଳ ଦୀପିକା (୨୮/୪୦)ରେ ଏକ ପତ୍ର ମାଧ୍ୟମରେ ଉଭୟଙ୍କର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି। ପ୍ରଥମ ଦାମୋଦର ପଟ୍ଟନାୟକ କଟକ ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ କଚେରିରେ ଚାକିରି କଲାବେଳେ ଦ୍ୱିତୀୟ ଜଣକ ବାମଣ୍ଡା ରାଜାଙ୍କ ଅଧୀନରେ କାର୍ଯ୍ୟକରନ୍ତି । ପ୍ରଥମ ଜଣକ ଇନ୍ଦ୍ରଧନୁ ପକ୍ଷୀୟ, ଦ୍ୱିତୀୟ ଜଣକ ଅଳ୍ପବୟସ୍କ ଓ ସମ୍ବଲପୁର ହିତୈଷିଣୀରେ ଭଞ୍ଜବିରୋଧୀ ଆଲୋଚନା ଲେଖୁଥିଲେ । (ଉପେନ୍ଦ୍ର କାବ୍ୟ: ସମ୍ବଲପୁର ହିତୈଷିଣୀ -୫/୧୫ ଏବଂ ଅନ୍ୟାନ୍ୟ ରଚନା) ପ୍ରଥମୋକ୍ତବାବୁ ମହାଶୟଙ୍କ ଅନୁମତି ଅନୁସାରେ ଏହି ପତ୍ରରେ ସ୍ପଷ୍ଟୀକରଣ ଦେଇଥିବା



Digitized by srujanika@gmail.com

କଥା ଜମେଶ୍ୱର ପଟ୍ଟନାୟକ ପ୍ରକାଶ କରନ୍ତି । ଏହି ପତ୍ର ପ୍ରକାଶ ପରେ ବିଜୁଳି ଦଳ ପ୍ରଥମୋକ୍ତ ଦାମୋଦରଙ୍କୁ 'ଜମ୍ବୁରିଦାମ' ରୂପେ ସମ୍ବୋଧନ କରିବା ଦେଖାଯାଏ । ଜଗଦାନନ୍ଦ ଦାସ ( ବାମଣ୍ଡାର ତତ୍‌କାଳୀନ ଶିକ୍ଷକ)ଙ୍କ ''ଶ୍ରୀଜ- ଦାସ, ବାମଣ୍ଡା'' ଛଦ୍ମନାମରେ ରଚିତ '' କଳିଭଙ୍ଗା ଡବଲ ଚଉତିଶା' କବିତାରେ ଏହାର ଦୃଷ୍ଟାନ୍ତ ଉପଲବ୍ଧ ।

'' ସୁଦାମ ଗୋପାଳ ଜମ୍ବୁରିଦାମ

ସୁସଙ୍ଗୀ ଗୋକୁଳି ରଖିବ ନାମ ।''(ସମ୍ବଲପୁର ହିତୈଷିଣୀ - ୫/୧୯, ୧୧-୧୦-୧୮୯୩)

ଯୁବରାଜ, ଇନ୍ଦ୍ରଜାଲ, ଜମ୍ବୁରିଦାମ ନାମରେ ପରିଚିତ ଦାମୋଦର ପଟ୍ଟନାୟକ ବିଶିଷ୍ଟ ନାରୀକବି ସୁଲକ୍ଷଣା ଦେବୀଙ୍କ କନିଷ୍ଠ ପୁତ୍ର । ସୁଲକ୍ଷଣାଦେବୀ ୧୮୨୯ ମସିହାରେ ତିଗିରିଆର ଦାଶରଥି ବେବର୍ତ୍ତାଙ୍କ ଔରସରୁ ଜନ୍ମଗ୍ରହଣ କରିଥିଲେ । ସେ ଢେଙ୍କାନାଳର ଦେୱାନ ଦାଶରଥି  ପଟ୍ଟନାୟକଙ୍କ ପୁତ୍ର ନିତ୍ୟାନନ୍ଦ ପଟ୍ଟନାୟକଙ୍କୁ ବିବାହ କରିଥିଲେ । 'ପାରିଜାତମାଳା' ତାଙ୍କର ଏକ ଅନବଦ୍ୟ ସୃଷ୍ଟି ।  ଏତଦ୍‌ବ୍ୟତୀତ 'ଦୀନବନ୍ଧୁ କୋଇଲି' ଓ 'ଜଣାଣ' ତାଙ୍କର କାବ୍ୟମାନସର ସ୍ୱାକ୍ଷର ବହନ କରେ । 'ପାରିଜାତମାଳା' ପ୍ରକାଶ କରି ଦାମୋଦର ପଟ୍ଟନାୟକ ମାତୃଭକ୍ତିର ସୁମହାନ ପରିଚୟ ପ୍ରଦାନ କରିଛନ୍ତି । ମାତୃଦେବୀଙ୍କ ରଚିତ ' ଦୀନବନ୍ଧୁ କୋଇଲି' ଓ 'ଜଣାଣ ମାଳିକା'କୁ ମଧ୍ୟ ଦାମୋଦର ୧୮୮୯ରେ ପ୍ରକାଶ କରିଥିଲେ । ସ୍ନେହମୟୀ ଜନନୀଙ୍କ କବିତା କୁସୁମକୁ ଏକତ୍ରିତ କରି ସେ 'ପାରିଜାତ ମାଳା' ନାମକରଣ  କରିବା କଥା ପୁସ୍ତକର ନିବେଦନରେ ସ୍ୱୀକାର କରିଛନ୍ତି ।

ଦାମୋଦର  ନିଜର ପ୍ରାରମ୍ଭିକ ଶିକ୍ଷା କବିଜନନୀଙ୍କ  ଆନୁକୂଲ୍ୟରେ ସମ୍ପନ୍ନ କରିଥିଲେ । ଏହାକୁ ଦାମୋଦର 'ନିବେଦନ'ରେ ସୁସ୍ପଷ୍ଟ କରନ୍ତି-

''ଅନ୍ୟାନ୍ୟ ରଚନା ପରି ବଡଦେଉଳ ରଚନାରୁ  ଅନେକଗୁଡିଏ ଉଚ୍ଚଭାବ ମୋତେ ଶିକ୍ଷା କରିବାକୁ ସୁବିଧା ମିଳିଅଛି । ସ୍ୱାର୍ଥ ବା ନିଃସ୍ୱାର୍ଥ  ଭାବରେ ହେଉ ମୁଁ କୁହେଁ ମୋର ସେହି ଅଶେଷ ଗୁଣାଳଙ୍କୃତା, ସାକ୍ଷାତ୍ ଦେବୀ ରୂପା ବୃଦ୍ଧାଜନନୀ ମତେ ପ୍ରକୃତ 'ମାତୃଭାଷା'ରେ କିପରି ପବିତ୍ର ଭାବରେ ରଚନା କରିବାକୁ ହୁଏ ତାହା ବିଶଦରୂପେ ଶିକ୍ଷା ଦେଇଅଛନ୍ତି ଏବଂ ସେଥିସକାଶେ ମୁଁ ଆପଣା ଜୀବନକୁ କୃତାର୍ଥ ମନେ କରିଅଛି ।''

(ନିବେଦନ  :  ପାରିଜାତମାଳା-୧୮୯୬)



Digitized by srujanika@gmail.com

ଇନ୍ଦ୍ରଧନୁ ବିଜୁଳି ମସୀଯୁଦ୍ଧକୁ ଏକ ମହନୀୟ ସଂଗ୍ରାମ ରୂପେ ଅନେକେ ଗ୍ରହଣ କରିଥିଲେ । ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ସାମ୍ରାଜ୍ଞୀ ସୁଲକ୍ଷଣା ଦେବୀଙ୍କ ପୁତ୍ର ଦାମୋଦର ସେହି ଯୁଦ୍ଧରେ ଝାସ ଦେବା ପୂର୍ବରୁ ମାତୃତାଲିମ ପ୍ରାପ୍ତ ଲେଖନୀକୁ ଉତ୍ତୋଳନ କରିଥିଲେ ଏବଂ ବୀରତ୍ୱବ୍ୟଞ୍ଜକ ଯୁବରାଜ ପଦ ଗ୍ରହଣ କରିଥିଲେ । ମାନସିକ ସ୍ତରରେ ମସୀଯୁଦ୍ଧରେ ନିଜକୁ ସାମିଲ କରିବାକୁ ସେ 'ଯୁବରାଜ' ନାମ ଗହଣ କରିବା ଉଚିତ ମନେହୁଏ । କୌଣସି ରାଜ୍ୟର 'ଯୁବରାଜ' ନ ଥିଲେ ମଧ୍ୟ ଏହି ମାତୃଭକ୍ତ ନିଜ ଜନନୀଙ୍କୁ କାବ୍ୟସାମ୍ରାଜ୍ଞୀ ରୂପେ ସମ୍ମାନ ଜଣାଇ ନିଜକୁ ତାଙ୍କର ଉପଯୁକ୍ତ ଦାୟାଦ ଭାବେ ଚିହ୍ନିତ କରିଛନ୍ତି । ଏହି ପ୍ରଚୋଦନା ହିଁ ଅବଚେତନରେ 'ଯୁବରାଜ' ଆଖ୍ୟା ଗ୍ରହଣ କରିବାକୁ ପ୍ରଚୋଦିତ କରିଥିବା ମନେହୁଏ । ଓଡ଼ିଆ କବିତା ରାଜ୍ୟର ଏହି ଯୁବରାଜଙ୍କ ସବିଶେଷ ପରିଚୟ ସହିତ ତାଙ୍କର ସାରସ୍ୱତ ସାଧନାର ମର୍ମଉଦ୍‌ଘାଟନ ହିଁ ପ୍ରସ୍ତୁତ ପ୍ରବନ୍ଧର ଆଭିମୁଖ୍ୟ ।

ମାତା ନାରୀ କବି ସୁଲକ୍ଷଣା ଦେବୀଙ୍କ ଗର୍ଭରୁ ଓ ପିତା ନିତ୍ୟାନନ୍ଦ ପଟ୍ଟନାୟକଙ୍କ ଔରସରୁ ୧୮୬୨ ଖ୍ରୀ.ରେ ଦାମୋଦର ପଟ୍ଟନାୟକଙ୍କ ଜନ୍ମ । ଚଉବନ ବର୍ଷ ବୟସରେ ତା ୯।୧୨।୧୯୧୫ରେ ହୃଦ୍‌ଘାତରେ ତାଙ୍କର ମୃତ୍ୟୁ ହୁଏ । ସେ ତାଳଚେର, ପାଲଲହଡା, ନରସିଂହପୁର, ଆଠଗଡ, ଢେ଼ଙ୍କାନାଳ ପ୍ରଭୃତି ଦେଶୀୟ ରାଜ୍ୟରେ ଦେୱାନ ତଥା ମେନେଜର ରୂପେ କାର୍ଯ୍ୟ କରିଥିଲେ ।

ଦାମୋଦର ପଟ୍ଟନାୟକ କେବଳ ଜଣେ କବି ବା ଉଚ୍ଚକୋଟୀର ପ୍ରଶାସକ ନ ଥିଲେ, ବରଂ ସେ ଥିଲେ ଜଣେ ସ୍ୱାଭିମାନୀ ସଂମ୍ବେଦନଶୀଳ ଚରିତ୍ର । ଶିକ୍ଷା, ସାହିତ୍ୟ, ସଂସ୍କୃତିର ଉନ୍ନତି ସହିତ ଓଡ଼ିଆ ଭାଷାର ସମୃଦ୍ଧି ପାଇଁ ସେ ସଚେଷ୍ଟ ଥିଲେ । ଏହି ପ୍ରସଙ୍ଗରେ ତାଙ୍କ ଜୀବନର କେତୋଟି ଦୃଷ୍ଟାନ୍ତ ଉଲ୍ଲେଖଯୋଗ୍ୟ।

୧୮୯୮ରେ ତାଳଚେରର ରାଜା ରାମଚନ୍ଦ୍ର ଦେବଙ୍କର ସୁଢ଼ଳଦେବଙ୍କ କନ୍ୟାଙ୍କ ସହିତ ବିବାହୋତ୍ସବରେ ଦାମୋଦର ଯୋଗ ଦେଇଥିଲେ । ବିଦାକି ସ୍ୱରୂପ ତାଙ୍କୁ ପାଟବସ୍ତ୍ର ସହିତ ଏକଶତକୋଡିଏ ଟଙ୍କା ପ୍ରଦାନ କରାଯାଇଥିଲା । ସେ ଏହି ଟଙ୍କାକୁ ବାମଣ୍ଡାର ପ୍ରାଥମିକ ବିଦ୍ୟାଳୟକୁ ଦାନ କରିଥିଲେ, ଯାହାର ସୁଧରେ ବର୍ଷକୁ ବର୍ଷ ମେଧାବୀ ଛାତ୍ରଙ୍କୁ ପୁରସ୍କୃତ କରିବାର ବିଧି ପ୍ରଚଳିତ ଥିଲା । ଉତ୍କଳ ସମ୍ମିଳନୀର ରମ୍ଭା ଶାଖା ସମ୍ମିଳନୀରେ ଯୋଗଦେବାକୁ ଆସି ଖଲ୍ଲିକୋଟ ମହାରାଜାଙ୍କ ପ୍ରଦତ୍ତ ପାଥେୟ ଓ ବିଦାକିକୁ ସେ ଅସ୍ୱୀକାର କରିଥିଲେ । ମାତୃସେବାରେ ଆସି ଅର୍ଥଗ୍ରହଣ କରିବାକୁ ସେ ଘୃଣା



Digitized by srujanika@gmail.com

କରିଥିଲେ । ଫଳତଃ ଗୁଣଗ୍ରାହୀ ଖଲ୍ଲିକୋଟ ମହାରାଜା ହରିହର ମର୍ଦ୍ଦରାଜ ତାଙ୍କୁ ସ୍ମୃତିଚିହ୍ନ ରୂପେ ଏକ ସୁବର୍ଣ୍ଣ ମୁଦ୍ରିକା ପ୍ରଦାନ କରିଥିଲେ।

ଦାମୋଦର ପଟ୍ଟନାୟକଙ୍କ ଅନେକ ରଚନା ଇତଃସ୍ତତଃ ପ୍ରକାଶିତ । 'ମହିମାଧର୍ମ ସମ୍ପର୍କରେ ଖଣ୍ଡିଏ ପତ୍ର' ତାଙ୍କର ପ୍ରଥମ ପ୍ରକାଶିତ ରଚନା ରୂପେ ପ୍ରତିଭାତ ହୁଏ । ଏହି ପତ୍ରଟି ପ୍ରଥମ ପ୍ରକାଶିତ ରଚନା ରୂପେ ପ୍ରତିଭାତ ହୁଏ । ଏହି ପତ୍ରଟି 'ଉତ୍କଳ ଦୀପିକା' ୧୭-୩-୧୮୮୩ରେ ପ୍ରକାଶିତ । ଏଥିରେ ଢ଼େଙ୍କାନାଳ ନିକଟସ୍ଥ ମହୁଲପଡା ମଠ ଓ ମହିମାଙ୍କ ପ୍ରଥମ ଶିଷ୍ୟ ନରସିଂହ ଦାସଙ୍କ ସମ୍ପର୍କରେ ସୂଚନା ପ୍ରଦତ୍ତ ହୋଇଛି । ଏହି ପତ୍ରରେ ମହିମା ଧର୍ମାବଲମ୍ବୀମାନେ ଦୁଇଦଳରେ ବିଭକ୍ତ ହେବା ଓ ଦୁଇଟି ସ୍ୱତନ୍ତ ଗାଦି ପ୍ରତିଷ୍ଠା ହେବା କଥା ବର୍ଣ୍ଣିତ । ମହୁଲପଡା ମଠରେ ଚମତ୍କାର ବର୍ଣ୍ଣନା ଏହି ପତ୍ରର ମୁଖ୍ୟ ଅଂଶ । ମହିମାଧର୍ମ ସମ୍ପର୍କରେ ଏକ ପ୍ରାରମ୍ଭିକ ଦଲିଲ ରୂପେ ଏହିପତ୍ରକୁ ମାନ୍ୟତା ଦିଆଯାଇପାରେ ।

ଦାମୋଦର ପଟ୍ଟନାୟକ ଜଣେ ସୃଜନଶୀଳ ସ୍ରଷ୍ଟା । ତାଙ୍କର କାବ୍ୟଜୀବନର ଆଦ୍ୟସ୍ଫୁରଣ କପିଳାସ କ୍ଷେତ୍ର' କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ୧୮୮୫ରେ ପ୍ରକାଶିତ । ଏହି କାବ୍ୟରେ ପୌରାଣିକ ଆଖ୍ୟାନ ସହିତ ଇତିହାସ ଓ କିମ୍ବଦନ୍ତୀର ଅପୂର୍ବ ସମନ୍ୱୟ ସଂଘଟିତ। ପ୍ରକୃତି ବର୍ଣ୍ଣନାରେ ମଧ୍ୟ କବି ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ।

'' ସଦା ମଳୟ ତହିଁ କରେ ସଞ୍ଚାର
ସଦା ପଲ୍ଲବ ଶୋଭେ ବୃକ୍ଷନିକର
ସଦା ସର୍ବ କୁସୁମ ବୃନ୍ଦ ଶୋଭିତ
ସଦା ବିହଙ୍ଗ କୁଳ ସଙ୍ଗୀତେ ରତ ।
ନେତ୍ର ବିମୋହନ ଦୃଶ୍ୟନିକର
ଶ୍ରୁତିମଧୁର ସ୍ୱନ ବିନା ଆବର
କିଛି ନୁହେଁ ଗୋଚର ସେ ସୁଖ ବନେ
ସବୁ ଆନନ୍ଦମୟ ଦୁଃଖ ବିହୀନେ ।''(କପିଳାସ କ୍ଷେତ୍ର: ପୃ-୮)

ପ୍ରକୃତି ବର୍ଣ୍ଣାରେ କବିଙ୍କ ଲେଖନୀ ସ୍ୱଚ୍ଛନ୍ଦ ଓ ସାବଲୀଳ । ପାହାଡି ଝରଣା ପରି ଏହା ପବିତ୍ର ଓ ସତ୍ୟ-ଶିବ-ସୁନ୍ଦରର ପ୍ରକାଶକ । ପ୍ରକୃତିର ସରଳ ଚିତ୍ର ଅତି ସରଳ ଶବ୍ଦ ଶଜ୍ଜା ମଧ୍ୟରେ ମହୀୟାନ ହୋଇଛି । 'କପିଳାସ କ୍ଷେତ୍ର' ପ୍ରାକ୍- 'ଚିଲିକା' ଯୁଗୀୟ ଅନ୍ୟତମ ବିଶିଷ୍ଟ ଓ ଆଦ୍ୟ ପ୍ରକୃତିବର୍ଣ୍ଣନାମୂଳକ କାବ୍ୟ ।



Digitized by srujanika@gmail.com

ଆଧୁନିକ ଓଡ଼ିଆ ସମାଲୋଚକମାନେ ପ୍ରକୃତି ବର୍ଣ୍ଣନାମୂଳକ କାବ୍ୟ ଭାବେ 'ଚିଲିକା' ଓ 'ତପସ୍ୱିନୀ' ମଧ୍ୟରେ ନିଜର ଦୃଷ୍ଟିକୁ ସୀମିତ ରଖିଥିବା ଜଣାଯାଏ । 'ଚିଲିକା'ର ପୂର୍ବବର୍ତ୍ତୀ ଅନେକ କାବ୍ୟକବିତାରେ ଯେ ପ୍ରକୃତିବର୍ଣ୍ଣନାର ଦୃପ୍ତ ସ୍ୱର ଅଭିବ୍ୟଞ୍ଜିତ, ଏକଥା ଅନେକେ ବିସ୍ମରିଯାଆନ୍ତି । 'କପିଳାସ କ୍ଷେତ୍ର' ଓଡ଼ିଆ କବିତା କ୍ଷେତ୍ରରେ ଏକ ବିଲକ୍ଷଣ ସୃଷ୍ଟି । ଏହି କାବ୍ୟ ରଚନା ପୂର୍ବରୁ ପକୃତି ବର୍ଣ୍ଣନାର ଯେଉଁ କ୍ଷୀଣଝଲକ ଓଡ଼ିଆ କବିତାରାଜ୍ୟରେ ପ୍ରତିବିମ୍ବିତ ସେଗୁଡିକ ହେଲା, ଗୋବିନ୍ଦ ରଥଙ୍କ କବିତାକଳାପ (୧୮୭୮)ର କିଛି କବିତା ଓ ଉତ୍କଳ ଦର୍ପଣ (୧୦।୨୦, ୧୦-୫-୧୮୮୨)ରେ ପ୍ରକାଶିତ 'ଓଡ଼ିଶାର ନୈସର୍ଗିକ ଶୋଭା' । ଦାମୋଦରଙ୍କ ପୂର୍ବବର୍ତ୍ତୀ ତଥା 'ପ୍ରାକ୍ - କପିଳାସ କ୍ଷେତ୍ର' ପ୍ରକୃତି ବର୍ଣ୍ଣନାମୂଳକ କାବ୍ୟର ସ୍ୱରୂପ ବିଶ୍ଳେଷଣ ପାଇଁ ଉଲ୍ଲିଖିତ ସଂକଳନରୁ କିଛି ପଙ୍‌କ୍ତି ଉଦ୍ଧାର କରାଯାଇପାରେ ।

ଗୋବିନ୍ଦ ରଥଙ୍କ 'କବିତା କଳାପର'ର ପ୍ରଥମ ପଦରେ ହିଁ ପ୍ରକୃତିର ଆବାହନ ପାଇଁ କବି ପ୍ରସ୍ତୁତ-

''ଆହାକି ବିଚିତ୍ର ଗଗନ ସୁଚିତ୍ର
ଚାରୁ ତାରାବଳୀ ଦୀପ ରୂପେ ଜ୍ୱଳି
ଅପୂର୍ବ ସୁନ୍ଦର ପ୍ରକୃତି ରାଜ୍ୟେ ।
ନିସ୍ତବ୍ଧ ସକଳ ନାହିଁ ଗଣ୍ଡଗୋଳ
ସରିତର ଜଳ ହୁଏ କଳକଳ
ସୁନିର୍ମଳ ବିଧୁମଣ୍ଡଳ ରାଜେ ।''(ପୂର୍ଣ୍ଣମୀର ନିଶାକାଳ)

'ପ୍ରକୃତିର ଶୋଭା' କବିତାରେ ପ୍ରକୃତିର ବିଭିନ୍ନ ଅଙ୍ଗକୁ କବିଲେଖନୀ ସାର୍ଥକ ରୂପ ପ୍ରଦାନ କରିଛି ।

'' ପ୍ରକୃତିର ଶୋଭା କି ଚମତ୍କାର
ଦେଖିଲେ ଆନନ୍ଦ ହୁଏ ଅପାର
ପ୍ରକାଣ୍ଡ ଗଗନ କର ବିଲୋକନ
ଅସୀମ ଅନନ୍ତ ଅଟେ ଅମ୍ବର
ନୀଳ, ପୀତ, ବର୍ଣ୍ଣେ ତା' କଳେବର
ଧନ୍ୟ ଚିତ୍ରିଅଛି ସେ ଚିତ୍ରକର ।''



Digitized by srujanika@gmail.com

ପୁରାଣ ଯୁଗର କାବ୍ୟରେ ପ୍ରକୃତି ଏକ ଉଦ୍ଦୀପନ ବିଭାବ ରୂପେ ସ୍ଥାନ ପାଇଥିଲା । କାବ୍ୟଯୁଗୀୟ କବିତାରେ ମଧ୍ୟ ପ୍ରକୃତି ନାଗରିକମାନଙ୍କ ସମ୍ଭୋଗବର୍ଣ୍ଣନାର ଅଂଶରେ ସୀମିତ ଥିଲା । ଏହା ମାନବଚେତନାର ଅଙ୍ଗୀଭୂତ ନିର୍ଯାସ ରୂପେ ସ୍ଥାନ ପାଇନଥିଲା । ପ୍ରଥମକରି ଗୋବିନ୍ଦ ରଥଙ୍କ କବିତାରେ ପ୍ରକୃତିର ସୁରମ୍ୟ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ । ଉଦ୍ଧୃତ ପଂକ୍ତିସମୂହ ପ୍ରକୃତି ବର୍ଣ୍ଣନାରେ ଗୋବିନ୍ଦ ରଥଙ୍କ ଆଦ୍ୟପ୍ରୟାସକୁ ସଂଜୀବିତ କରେ । ଏହି ଧାରାକୁ ବଳିଷ୍ଠ ଓ କଳାତ୍ମକ ବ୍ୟାପ୍ତି ପ୍ରଦାନ କରେ ଦାମୋଦରଙ୍କ କପିଳାସ କ୍ଷେତ୍ର ।

'କପିଳାସ କ୍ଷେତ୍ର'- ପୂର୍ବବର୍ତ୍ତୀ 'ଓଡ଼ିଶାର ନୈସର୍ଗିକ ଶୋଭା' କବିତାଟି ମଧ୍ୟ ପ୍ରକୃତିର ମହନୀୟ ବର୍ଣ୍ଣନାରେ ଋଦ୍ଧିମନ୍ତ । କବିତାର ପ୍ରଥମାଂଶ ବାରଟି ପଦ ମାତ୍ର 'ଉତ୍କଳ ଦର୍ପଣ'ରେ ଦୃଷ୍ଟିଗୋଚର ହୋଇଥାଏ । କବିତାରେ ଓଡ଼ିଶାର ବିଭିନ୍ନ ପର୍ବତଶ୍ରେଣୀର ସୁଦୃଶ୍ୟ ବର୍ଣ୍ଣନା ପ୍ରଦତ୍ତ । ସୁନ୍ଦର ସାବଲୀଳ ଶବ୍ଦ ସଂଯୋଜନା ମାଧ୍ୟମରେ କବି ପ୍ରାକୃତିକ ଦୃଶ୍ୟ ଉପସ୍ଥାପନ କରିଛନ୍ତି । ମେଘାସନ ପର୍ବତ ବର୍ଣ୍ଣନାରେ କବିଙ୍କ ପ୍ରକୃତି ପ୍ରୀତି ପ୍ରତିଫଳିତ ।

'' ମେଘାସନ ମେଘାସନ ନାମେ ଗିରିବର
ଏହାଙ୍କ ମଧ୍ୟରେ ଦିଶେ ପରମ ସୁନ୍ଦର;
ତୁଷାର ମଣ୍ଡିତ ଦେହ ଅତି ମନୋହର
ବିଭୂତି ଭୂଷଣ ଅଙ୍ଗ ଯେହ୍ନେ ମହେଶ୍ୱର
କିବା ତରୁରାଜି ଶୋଭା ଶୈଳ ଦେହ ପରେ
ରୋମାବଳୀ ଶୋହେ ଯଥା ଶ୍ରୀହରିଙ୍କ ଉରେ
ସୁମନ୍ଦ ପବନେ ତାହା ହେଉଛି ଦୋଳିତ
ବିଭୁପ୍ରେମେ ପ୍ରେମିକ ଯେସନେ ରୋମାଞ୍ଚିତ ।''

ଏହି କବିତାରେ ଅନୁରୂପ ଭାବେ ନୀଳଗିରି', ପଞ୍ଚଲିଙ୍ଗ ଗିରି ଓ ଖଣ୍ଡଗିରି ପ୍ରକୃତିର ବର୍ଣ୍ଣନା ରହିଛି ।

ଉପରୋକ୍ତ କବିତା ତଥା ଗୋବିନ୍ଦ ରଥଙ୍କ କବିତା କଳାପର କତିପୟ କବିତାକୁ ବାଦ୍‌ଦେଲେ 'କପିଳାସ କ୍ଷେତ୍ର' ହିଁ ଓଡ଼ିଆ ସାହିତ୍ୟର ପ୍ରଥମ ବର୍ଣ୍ଣନାମୂଳକ ପ୍ରକୃତି - କାବ୍ୟ । ଏହି କାବ୍ୟରେ କବି ନିଜସ୍ୱ ଅନୁଭୂତିକୁ ପାଥେୟ କରି ବର୍ଣ୍ଣନା ମୁଖର । 'ଭୂମିକା'ରେ କବି ଘୋଷଣା କରନ୍ତି -

'' କପିଳାସ ଗୋଟିଏ ବହୁକାଳର ପବିତ୍ର ସ୍ଥାନ । ଏହି କଥା ପାଠକମାନଙ୍କ ହୃଦୟଙ୍ଗମ କରିବା ନିମନ୍ତେ ୧ମ ଓ ୨ୟ ଅଧ୍ୟାୟରେ କିଛି ପୌରାଣିକ ବିଷୟ ଉଲ୍ଲେଖ



Digitized by srujanika@gmail.com

ହୋଇଅଛି ସ୍ଥାନେସ୍ଥାନେ ଯେଉଁ ଐତିହାସିକ ବିବରଣୀ ଲେଖାଯାଇଅଛି ତାହା କୌଣସି ପୁସ୍ତିକାରେ ମିଳିନାହିଁ, ଏହେତୁ ପୁରୁଷାନୁକ୍ରମିକ ଗଳ୍ପକୁ ବାଧହୋଇ ଅବଲମ୍ବନ କରିବାକୁ ହୋଇଅଛି।'' (ଭୂମିକା: କପିଳାସକ୍ଷେତ୍ର)

କପିଳାସକ୍ଷେତ୍ର ତିନୋଟି ଅଧ୍ୟାୟ ବିଶିଷ୍ଟ । ତୃତୀୟ ଅଧ୍ୟାୟରେ କପିଳାସର ପ୍ରାକୃତିକ ବର୍ଣ୍ଣନା ସନ୍ନିବେଶିତ ହେବାକଥା କବି ଭୂମିକାରେ ସ୍ପଷ୍ଟ କରନ୍ତି । ତୃତୀୟ ଅଧ୍ୟାୟ ବ୍ୟତିରେକେ କାବ୍ୟର ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟରେ ମଧ୍ୟ ସ୍ଥାନେ ସ୍ଥାନେ ପ୍ରକୃତିର ସୁନ୍ଦର ବର୍ଣ୍ଣନା ଉଚ୍ଚାଙ୍ଗ ରସ ସୃଷ୍ଟିରେ ସଫଳ ହୋଇଛି ।

ବହେ ନିର୍ଝର ଝରଝର ଶବଦେ
ଶ୍ରବଣେନ୍ଦ୍ରିୟ ସୁଖ ଲଭେ ଆମୋଦେ ।
ପ୍ରୀୟୂଷ ସମବାରି ସ୍ୱାଦୁ ତାହାର
ଭାଗୀରଥ ପ୍ରକାଶ ନାହିଁ ବିକାର । (୧ମ ଅଧ୍ୟାୟ : ପୃ-୬)

ଏହି ସୂକ୍ଷ୍ମ ବର୍ଣ୍ଣନାଗୁଡିକ ମନରେ ଚିତ୍ରପ୍ରତୀତି ସୃଷ୍ଟି କରିବାକୁ ଯଥେଷ୍ଟ । ତୃତୀୟ ଅଧ୍ୟାୟରେ କପିଳାସର ସୁରମ୍ୟ ବର୍ଣ୍ଣନା ପ୍ରଦତ୍ତ ହୋଇଛି । ଏଥିରେ ପ୍ରକୃତିର ଅନବଦ୍ୟ ରୂପ ଯେତିକି ସରଳ, ସେତିକି ହୃଦୟଗ୍ରାହୀ । ଶବ୍ଦ ସଂଯୋଜନା ଆହ୍ଲାଦକର ।

'' କାନନ କୁଞ୍ଜେ ବସି ବିହଙ୍ଗ କୁଳ
ସୁରବେ ବନଦେଶ କରି ଆକୁଳ
ଝଙ୍କାରନ୍ତି ଯେ ଯାହା କଣ୍ଠ ଯନ୍ତ୍ରରେ
ବୀଣାଜିଣା ଭାରତୀ ହୋଏ ପଛରେ ।
ବହୁଛି ସୁଶୀତଳ ମନ୍ଦ ପବନ
ମନପୁଷ୍ପରୁ ହରି ସୁଗନ୍ଧ ଧନ ।
ନାହିଁ କେହି ଗ୍ରାହକ ତୋଳିବ ଫୁଲ
ଝଡି ସଢ଼ଇ ତେଣୁ ଅବନୀତଳ ।''(କପିଳାସ କ୍ଷେତ୍ର: ପୃ:୨୦)

ପ୍ରକୃତି ବର୍ଣ୍ଣନା ମଧ୍ୟରେ ଜାତୀୟ ଚେତନା ଉଦ୍ରେକ କରିବାର ସଫଳ ପ୍ରୟାସ କରିଛନ୍ତି କବି । କପିଳାସ ମନ୍ଦିରର ପ୍ରତିଷ୍ଠାତା ପ୍ରତାପରୁଦ୍ରଙ୍କ ବିଷୟ ବର୍ଣ୍ଣିତ ହେବା ସହିତ ତାଙ୍କର ପିତା ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନକୁ ସ୍ମରଣ କରିବାର ଅବକାଶ ସୃଷ୍ଟି ହୋଇଛି ଏହି କବିତାରେ । ଯାହାର କଳାତ୍ମକ ଚିତ୍ରଣ ରାଧାନାଥଙ୍କ ଚିଲିକାରେ ସୁସ୍ପଷ୍ଟ । ପୁରୁଷୋତ୍ତମଙ୍କ ବ୍ୟତୀତ ଢ଼େଙ୍କାନାଳ ଭୂପତି ଶ୍ରୀ ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କ



Digitized by srujanika@gmail.com

ଗୁଣକୀର୍ତ୍ତନ କରାଯାଇଛି । ଗଙ୍ଗାଧରଙ୍କ 'ତପସ୍ୱିନୀ' କାବ୍ୟରେ ଆଶ୍ରମେ ପ୍ରଭାତ ଦୃଶ୍ୟର ବହୁପୂର୍ବରୁ ଏହି କାବ୍ୟରେ ସନ୍ଧ୍ୟାଦେବୀଙ୍କୁ ପ୍ରକୃତି ଷୋଡ଼ଶ ଉପଚାରରେ ବନ୍ଦନା କରିଛି ।

ପିନ୍ଧି ଈଷତ୍ ଶୁଭ୍ର କୃଷ୍ଣରଙ୍ଗର
ଦୁକୂଳ ମନୋହର ନେତ୍ର ମଧୁର
ରମ୍ୟ ମୁକୁଟେ ଅଛ ତାରକା ଖଞ୍ଜି
ମୃଦୁହାସେ କଠିଣ ହୃଦୟ ରଞ୍ଜି ।
କରେ ସମୀର ଧୀରେ ଧୀରେ ଚାମର
ବିଞ୍ଚେ କୁସୁମ ବୃନ୍ଦ ଗନ୍ଧ ପ୍ରଖର
ବିହଙ୍ଗକୁଳ ପ୍ରୀତି ପ୍ରଫୁଲ୍ଲମନେ
ହୁଳହୁଳି ଦିଅନ୍ତି ଦେବୀ ବନ୍ଦନେ । (କପିଳାସ କ୍ଷେତ୍ର- ପୃ.୩୨)

ବିଜୁଳି- ଇନ୍ଦ୍ରଧନୁ କଳହ ପ୍ରେକ୍ଷାପଟରେ ରାମକୃଷ୍ଣ ସାହୁଙ୍କ 'ସମାଲୋଚକ ରାମନାରାୟଣ କବିତା' (ସମ୍ବଲପୁର ହିତୈଷିଣୀ' (୫।୪) ୨୮-୬-୧୮୯୩ରେ ପ୍ରକାଶ ପାଇଥିଲା । ଲାଲା ରାମନାରାୟଣ ବାସୁଦେବ ସୁଢ଼ଳଦେବଙ୍କ 'ଚିତ୍ରୋତ୍ପଳା' କାବ୍ୟର ସମାଲୋଚନା ( ସମ୍ବଲପୁର ହିତୈଷିଣୀ-୪।୨୬, ୩୦-୧୧-୧୮-୯୨) ଲେଖି 'ଇନ୍ଦ୍ରଧନୁ' ଗୋଷ୍ଠୀଙ୍କ ଦ୍ୱାରା ସମାଲୋଚିତ ହୋଇଥିବା କଥା ଏହି କବିତାରେ ବର୍ଣ୍ଣନା କରାଯାଇଛି । ରାମକୃଷ୍ଣ ଏହି କବିତାରେ ଲାଲାଙ୍କୁ ସମ୍ବେଦନା ଜଣାଇ 'ଇନ୍ଦ୍ରଧନୁ' ଦଳଙ୍କୁ ତୀକ୍ଷ୍ଣ ସମାଲୋଚନା କରିଛନ୍ତି । ସଂଶିତ କବିତାକୁ ବ୍ୟଙ୍ଗ କରି 'ଦାମୋଦର ପଟ୍ଟନାୟକ 'ଶ୍ରୀଜୁବରାଜ' ଛଦ୍ମନାମରେ 'ସମାଲୋଚକ କବିଭୂଷଣ' କବିତାଟି 'ଉତ୍କଳ ଦୀପିକା' ୧୫-୭-୧୮୯୩ ସଂଖ୍ୟାରେ ରଚନା କରିଥିଲେ । ଦୀପିକାର ସେହି ସଂଖ୍ୟାରେ 'ଗୋଲାକଧନ୍ଦା' ମଧ ରାମକୃଷ୍ଣଙ୍କ କବିତା ଉପରେ ଦେଇଥିବା ଟିପ୍ପଣୀ ଓ କବିତା ଉଲ୍ଲିଖିତ ପ୍ରସଙ୍ଗରେ ବିଚାରଯୋଗ୍ୟ । ଗୋଲକଧନ୍ଦାଙ୍କ ଟିପ୍ପଣୀ ପ୍ରେରିତ ପତ୍ର ସ୍ତମ୍ଭରେ ପ୍ରକାଶିତ ।

...ଏହି ଜୁଲାଇ ମାସ ତା ୧ରିଖର ଉତ୍କଳ ଦୀପିକା ସାହାଯ୍ୟରେ ଆମ୍ଭେ 'ଉତ୍କଳ ମହାଶ୍ମଶାନରେ' କବି ଉପେନ୍ଦ୍ରଭଞ୍ଜଙ୍କ ଶବ ସମ୍ବନ୍ଧରେ ଆମ୍ଭର ଯାହା କର୍ତ୍ତବ୍ୟ ତାହା କରି କିପରି ଉକ୍ତ ପ୍ରେତାତ୍ମାର ସତ୍କାର କରିବାକୁ ହେବ ସେଥିପାଇଁ ଉତ୍କଳୀୟ ସମ୍ବାଦପତ୍ରମାନଙ୍କର ସମ୍ପାଦକବୃନ୍ଦ ଅଧିପତିମାନଙ୍କର ଏବଂ ସକଳ ଉତ୍କଳବାସୀଙ୍କର ମତକୁ ଅପେକ୍ଷା କରୁଅଛୁଁ ମାତ୍ର ଇତିମଧ୍ୟରେ ଏ କାର୍ଯ୍ୟରେ ପ୍ରବୃତ୍ତି ହୋଇଥିବାରୁ ଏବଂ ଗତ



Digitized by srujanika@gmail.com

ଜୁନ୍‌ମାସ ତା ୨୮ରିଖ ସମ୍ବଲପୁର ହିତୈଷିଣୀରେ 'କବି ଭୂଷଣେ କଟକ' ସମାଲୋଚକବାବୁ ରାମନାରାୟଣ ଲାଲାଙ୍କୁ ସମ୍ବୋଧନ କରି ଯାହା କହିଅଛନ୍ତି ତାହା ପାଠକରି ଆମ୍ଭର ଏହି ହୃଦୟ ବିଦାରକ ଅନୁତାପ ହେଉଅଛି ଯେ,

" କି କଲି କି କଲି କି ବୁଦ୍ଧି ହୁଡିଲି
ବେନିନେତ୍ର ଥାଉଁ କଣା ମୁଁ ହୋଇଲି ।।
ମହାଜନ ଯିବା ପଥେ ନ ଚାଲିଲି
ଉପଇନ୍ଦ୍ର-ବାସୀ-ଫୁଲରେ ରସିଲି
କଳାପାହାଡକୁ ଅନୁକରି ଥରେ
ଖ୍ୟାତିରେ ପ୍ରୟାସୀ ନୋହିଲି ମହୀରେ
ପୂର୍ବ ପୁରୁଷଙ୍କ ଗୟାଶ୍ରାଦ୍ଧ ବାରେ
କରି ନ ରଖିଲି ନାମ ଏ ସଂସାରେ ।" ଇତ୍ୟାଦି ।

(ଉତ୍କଳ ଦୀପିକା- ୧୫-୭-୧୮୯୩)

ବିଜୁଳି -ଇନ୍ଦ୍ରଧନୁ ମସୀଯୁଦ୍ଧକୁ ଉପଲକ୍ଷ୍ୟକରି ରଚିତ ଦାମୋଦରଙ୍କ 'ସମାଲୋଚକ କବିଭୂଷଣ ' କବିତାଟି ମାତ୍ରାତିରିକ୍ତ ଭାବେ ରାମକୃଷ୍ଣଙ୍କୁ ସମାଲୋଚନା କରିବାକୁ ଅଭିପ୍ରେତ । ଭଞ୍ଜସାହିତ୍ୟରେ ଅଶ୍ଳୀଳତା ଦୋଷ ଦର୍ଶାଇ ରାମକୃଷ୍ଣ ପ୍ରମୁଖଙ୍କ ଆକ୍ଷେପକୁ ଖଣ୍ଡନ କରି କବିତାରେ ରାଧାନାଥଙ୍କ ପାର୍ବତୀ ପ୍ରଭୃତି କବିତାରେ ଥିବା ଅଶ୍ଳୀଳ ଆଖ୍ୟାନସମୂହକୁ ଇଙ୍ଗିତ କରାଯାଇଛି । କବିତା ମାଧ୍ୟମରେ ସାହିତ୍ୟର ସମାଲୋଚନା ଏକ ଅଭିନବ ବ୍ୟାପାର । ବିଜୁଳି - ଇନ୍ଦ୍ରଧନୁ ପ୍ରେକ୍ଷାରେ ରଚିତ କବିତା ସମୂହ ଏତେ ଅଶ୍ଳୀଳତାପୂର୍ଣ୍ଣ ଓ ବ୍ୟକ୍ତିଗତ କୁତ୍ସାରଟନାରେ ପରିପୂର୍ଣ୍ଣ ଯେ ତାଙ୍କର ନାନ୍ଦନିକଗୁଣ ସମୂହ ଲୁଚିଯାଇଛି । ମାତ୍ରାତିରିକ୍ତ ଅଶ୍ଳୀଳତାକୁ ପରିହାର କଲେ ସାହିତ୍ୟର ଦୋଷୋଦ୍ଘାଟନ କରିବାରେ ଏହି କବିତାଗୁଡିକ ସମର୍ଥ । ପୃଷ୍ଠଭୂମିର ପଙ୍କିଳତା ମଧ୍ୟରେ ମଧ୍ୟ ଏହି ବିରଳ କବିତାର ମାଧୁର୍ଯ୍ୟ ଆହରଣ କରାଯାଇପାରେ । ତେଣୁ ଅବିକଳ କବିତାଟି ପରିଶିଷ୍ଟରେ ପ୍ରଦତ୍ତ ହେଲା । 'ଉତ୍କଳ ଦୀପିକା' ପୃଷ୍ଠାରୁ ଉଦ୍ଧୃତ କରାଯାଇଛି ।

ବକ୍ଷ୍ୟମାଣ ପ୍ରସଙ୍ଗରେ ଦାମୋଦରଙ୍କ 'ବାଲିଯାତ୍ରା' କବିତା ଏକ ଉଲ୍ଲେଖନୀୟ କୃତ । ଇନ୍ଦ୍ରଧନୁ ୧/୮, ୧୫-୧୨-୧୮୯୩ରେ 'ବାଲିଯାତ୍ରା' କବିତାଟି ପ୍ରକାଶିତ । ଏଥିରେ 'ବାଲିଯାତ୍ରା'ର ସ୍ୱତଃସ୍ଫୂର୍ତ୍ତ ଭାବରେ ସ୍ୱର୍ଣ୍ଣୀଭ ବର୍ଣ୍ଣନା ପ୍ରଦତ୍ତ ହୋଇଛି । ସାମ୍ପ୍ରଦାୟିକ ସଦ୍‌ଭାବ ମଧ୍ୟରେ ବାଲିଯାତ୍ରାର ମହତ୍ତ୍ୱ ବିକଶିତ । ବାଲିଯାତ୍ରାର ବିଭିନ୍ନ ଅଂଶର ବର୍ଣ୍ଣନା



Digitized by srujanika@gmail.com

ସହିତ ଯାତ୍ରା ଉଦ୍ଦେଶ୍ୟରେ ବହିର୍ଗତ ନାରୀମାନଙ୍କର ରୂପବର୍ଣ୍ଣନା କବିତାଟିକୁ ଆକର୍ଷଣୀୟ କରିଛି ।

ତୋରା ଦିଶିଲାଣି ଗୋରା ଦେହମାନ
ସୂର୍ଯ୍ୟମୁଖୀ ଛିଡା ହୋଇଲେ ଯେବେ
ଛାଟିଦେଲେ କେଶ ନୁଆଇ ଶିରକୁ
ଲୋଟଣ ଭଙ୍ଗା କି ଉଡିବା ଭାବେ ।
କେଶକୁ ସାଉଁଳି ପୋଛି ଯତନରେ
ଗଣ୍ଠିକୁ ପକାଇ କେଶାଗ୍ର ଭାଗେ
ଝିନ (ଝୀନ) ବସନକୁ   ପିନ୍ଧି ନିତମ୍ବିନୀ
ଭଙ୍ଗୀରେ ଚାଲିଲେ ଅତି ସରାଗେ । (ବାଲିଯାତ୍ରା)

କବିତାରେ ପ୍ରକୃତିବର୍ଣ୍ଣନା, ଲୋକସଂସ୍କୃତି ଓ ଓଡ଼ିଆଚଳଣିର ଅପୂର୍ବ ସମନ୍ୱୟ ଘଟିଛି । କବିତାର ଶେଷାଂଶରେ 'ଇନ୍ଦ୍ରଜାଲିକ'ର ଆବିର୍ଭାବ ଘଟି ଇନ୍ଦ୍ରଧନୁ ଓ ବିଜୁଳି ସଭାର ଦୃଶ୍ୟପ୍ରକଟ କରିଛି । 'ଇନ୍ଦ୍ରଧନୁ' ଦଳଙ୍କୁ ସୁର ସଭାସମ ବର୍ଣ୍ଣନା କରାଗଲାବେଳେ 'ବିଜୁଳି' ଦଳଙ୍କୁ ଭୟଙ୍କର ଶ୍ମଶାନ ରୂପେ ଚିତ୍ରଣ କରାଯାଇଛି । କଳା ଓ ଧଳା ସ୍ତମ୍ଭର କଳ୍ପନା କରାଯାଇ ମାଣିକ୍ୟଖଚିତ ଧଳାସ୍ତମ୍ଭ ଶୀର୍ଷରେ ଉପେନ୍ଦ୍ର ଭଞ୍ଜଙ୍କ ନାମକୁ ଉପଧା ଅସ୍ତରେ ଘୁଞ୍ଚାଇ କଳାସ୍ତମ୍ଭରେ ଲେଖିବାର ପ୍ରଚେଷ୍ଟା ଚାଲିଛି । ବିଜୁଳି ଦଳଙ୍କ ପରିଚୟ ପ୍ରଦାନ କରି କବି କହନ୍ତି-

'' ଆନନ୍ଦରେ ଗଡ଼ାଗଡ଼ି ହେଉଛନ୍ତି
ମଢ଼ିଆ ଉପଧା କବି ସାଙ୍ଗିଆ
ଢ଼ଳା କବି, ଲାଲ ବତକ- କଡ( ? ) ଯେ
କଣାଭୂଷଣ, ଶିଖଣ୍ଡୀ ରଥିଆ ।''

କବିତାର ଶେଷରେ ନିଜ ଛଦ୍ମନାମର ଭଣିତାକରି ଦାମୋଦର କହନ୍ତି- '' ଯୁବରାଜ ବୋଲେ ବ୍ରଜରାଜ ପରି ଆଜି ମୁହିଁ ଇନ୍ଦ୍ରଜାଲିକ ପଣେ ।'' (ଇନ୍ଦ୍ରଧନୁ)

'ବାଲିଯାତ୍ରା' କବିତାକୁ ସ୍ୱତନ୍ତଭାବେ ପୁନର୍ଲିଖନକରି ଦାମୋଦର ୧୯୦୪ ମସିହାରେ କଟକ ପ୍ରିଣ୍ଟିଂକମ୍ପାନୀଦ୍ୱାରା ପୁସ୍ତକ ରୂପେ ପ୍ରକାଶ କରନ୍ତି । ଏଥିରେ ଅନେକ ଖଣ୍ଡନମଣ୍ଡନର କଳାତ୍ମକ  ବିନ୍ୟାସ ଦୃଷ୍ଟିଗୋଚର ହୁଏ । ଇନ୍ଦ୍ରଧନୁରେ ପ୍ରକାଶିତ କବିତାରେ 'ଇନ୍ଦ୍ରଧନୁ' 'ବିଜୁଳି' ଗୋଷ୍ଠୀଙ୍କ ସ୍ୱରୂପ ବିଶ୍ଳେଷଣ ହିଁ ମୁଖ୍ୟବିଷୟ ଥିଲାବେଳେ ପୁସ୍ତକରେ ସେ



Digitized by srujanika@gmail.com

ସବୁକୁ ବାଦଦିଆଯାଇଛି । ଏପରିକି ବ୍ୟଙ୍ଗାତ୍ମକ ଶୈଳୀରେ ଲିଖିତ କିଛି ପଦ ମଧ୍ୟ ସଂଶୋଧିତ ହୋଇ ନୂତନ ରୂପ ଧାରଣ କରିଛି ।

'' ସମ୍ବଲପୁରିଆ ନାଉରିଆ ଭାଇ ନୀଳମଣି ବସି ପାନଦୋକାନେ ଖିଲ କିଣିବାକୁ ରଙ୍ଗବଟୁଆରୁ ଭଙ୍ଗୀରେ ପଇସା କାଢ଼େ ଯତନେ ।''(ବାଲିଯାତ୍ରା ଇନ୍ଦ୍ରଧନୁ)

ଏହି ପଦଟି ପୁସ୍ତକରେ ନିମ୍ନରୂପ ଗ୍ରହଣ କରିଛି ।

'' କେ ମଫସଲିଆ ଗୋରା ନାଉରିଆ କଳାକାର ବସି ପାନଦୋକାନେ
ଖିଲ କିଣିବାକୁ ରଙ୍ଗବଟୁଆରୁ ଭଙ୍ଗୀରେ ପଇସାକାଢ଼େ ଯତନେ ।''
(ବାଲିଯାତ୍ରା- ୧୯୦୪, ପୃ-୧୦)

ବିଜୁଳି -ଇନ୍ଦ୍ରଧନୁ କଳହର ଢେଉ ଘୂର୍ଣ୍ଣିବାତ୍ୟା ପରି ଓଡ଼ିଆ ସାହିତ୍ୟକୁ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିଲା । ବ୍ୟକ୍ତିଗତ ଚରିତ୍ର ସଂହାରଦ୍ୱାରା କବିତାର ସୂକ୍ଷ୍ମ ଭାବସତ୍ତା ଖଣ୍ଡିତ ହୋଇଥିଲା । ଏହା ଥିଲା ସାମୟିକ ଉଦ୍ଦେଶ୍ୟପୂର୍ତ୍ତିର ମାଧ୍ୟମ । ସେହି ଉଦ୍ଦେଶ୍ୟପୂରଣ ପରେ କବି ସଜ୍ଞାନ ଚିତ୍ତରେ କବିତାକୁ ସ୍ୱତଃସ୍ଫୂର୍ତ୍ତ ବାଣୀ ଆରାଧନାର ମହନୀୟ ଆଧାର ରୂପେ ପରିବେଷଣ କରିଛନ୍ତି । ବାତ୍ୟା ପରର ପୃଥିବୀ ପରି ନବନିର୍ମାଣର ଧାରାରେ ସାମିଲ ହୋଇଛନ୍ତି କବି । କବିତା ଫେରିପାଇଛି ତା'ର ସାମର୍ଥ୍ୟ, ଫୁଟିଉଠିଛି ନୈସର୍ଗିକ ରଜତ କଳାବିଭବ । ବାଲିଯାତ୍ରା ('ଇନ୍ଦ୍ରଧନୁ'ରେ ପ୍ରକାଶିତ)ରେ ପ୍ରଦତ୍ତ ଇନ୍ଦ୍ରଜାଲିକର ଭୂମିକା ଏବଂ ବିଜୁଳି - ଇନ୍ଦ୍ରଧନୁ ଦୃଶ୍ୟପଟ ଅନ୍ତର୍ହିତ ହୋଇ ବାଲିଯାତ୍ରାର ସ୍ୱାଭାବିକ ଦୀପ୍ତି ଅପୂର୍ବ ବର୍ଣ୍ଣନା ମାଧ୍ୟମରେ ଫୁଟିଉଠିଛି । ଉଭୟ ପ୍ରକାଶନର ତୁଳନାତ୍ମକ ଅଧ୍ୟୟନ ମାଧ୍ୟମରେ କବିଦୃଷ୍ଟିର ଶାଶ୍ୱତ ବ୍ୟଞ୍ଜନା ଅନୁଭବ କରିହୁଏ । ବାଲିଯାତ୍ରାର ଏହି ଶାଶ୍ୱତ ଦୀପ୍ତିକୁ କୃତବିଦ୍ୟ ସାଧକଗଣ ମୁକ୍ତକଣ୍ଠରେ ପ୍ରଶଂସା କରନ୍ତି । ବ୍ୟାସକବି ଫକୀରମୋହନଙ୍କ ମତ ଏହି ପ୍ରସଙ୍ଗରେ ସ୍ମରଣଯୋଗ୍ୟ -'ବାଲିଯାତ୍ରା ପାଠକରି ଅତ୍ୟନ୍ତ ଆନନ୍ଦିତ ହେଲି । ମୋହର ବିଶ୍ୱାସ ଉତ୍କଳ ସାହିତ୍ୟ କାନନରେ ଏହା ଗୋଟିଏ କ୍ଷୁଦ୍ର ପୁଷ୍ପବତୀ ଲତାପରି ଚିରକାଳ ବିରାଜିତା ଥିବ । ନିଶ୍ଚୟ·ଜାଣନ୍ତୁ ଏହି କଥାଟି ମୋ ହୃଦୟର ସରଳଭାବ । ଦୟାମୟ ପ୍ରଭୁ ଆପଣଙ୍କୁ ଦୀର୍ଘଜୀବୀ କରନ୍ତୁ ।'' (ଫକୀରମୋହନ ସେନାପତି - କଟକ- ୧୦-୧୨-୧୯୦୪)

'ବାଲିଯାତ୍ରା' ସମ୍ପର୍କରେ ସୁଦାମ ଚନ୍ଦ୍ର ନାୟକ କହନ୍ତି-

'' x x x The Balijatra came to hand just in time and it was great pleasure to me, in fact it is very well written and there are lines which are not only original and realistic but to me they ap-



Digitized by srujanika@gmail.com

peared to be master-strokes. You have left nothing unsaid."
(Sudam ch. Naik- Nayagarh Camp-15-12-04)

ସମ୍ବଲପୁର ଅଞ୍ଚଳରେ ସରକାରୀ ସ୍ତରରେ ୧୮୯୫-୯୬ ବେଳକୁ ଓଡ଼ିଆ ଭାଷାର ଉଚ୍ଛେଦକୁ ନେଇ ଏକ ଗଣଆନ୍ଦୋଳନ ତେଜିଉଠିଥିଲା । ଏହି ଆନ୍ଦୋଳନକୁ ତୀବ୍ରତା ଓ ବ୍ୟାପ୍ତି ପ୍ରଦାନ କରିଥିଲା 'ସମ୍ବଲପୁର ହିତୈଷିଣୀ' ପତ୍ରିକା । ଆନ୍ଦୋଳନକୁ ସଫଳ ଓ ଗଣମୁଖୀ କରିବା ପାଇଁ ଦାମୋଦର ପଟ୍ଟନାୟକ, ଗଙ୍ଗାଧର ମେହେର, ଜଳନ୍ଧର ଦେବ, ଭାଗୀରଥି ରଥ, ନୀଳମଣି ବିଦ୍ୟାରତ୍ନ ପ୍ରମୁଖ 'ସମ୍ବଲପୁର ହିତୈଷିଣୀ' ପୃଷ୍ଠରେ ଲେଖନୀଚାଳନା କରିଥିଲେ । ଓଡ଼ିଆ ଭାଷାର ପୁନଃପ୍ରଚଳନ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ପାଇଁ ଦାମୋଦର ପ୍ରଥମେ ପାଞ୍ଚଟଙ୍କା ଚାନ୍ଦା ପ୍ରଦାନ କରିଥିଲେ । ସାଧାରଣଙ୍କ ମନରେ ଭାଷା ପ୍ରେମ ସୃଷ୍ଟି ପାଇଁ ନିମ୍ନ ଉଦ୍‌ବୋଧନମୂଳକ କବିତାଟି ସମ୍ବଲପୁର ହିତୈଷିଣୀ-୮-୪-୧୮୯୬ ସଂଖ୍ୟାରେ ପ୍ରକାଶ କରିଥିଲେ ।

'' ରାଗ-ଭୈରବ । ଆଦିତାଳ ।
('ମନା କରିଥିବ ରାଧେ' ବୃତ୍ତରେ)
ରହନା ରହନା ଆଉ ଅଚିନ୍ତାରେ ମନ
(ଅଚିନ୍ତାରେ ଆଉ ମନ ଅଚିନ୍ତାରେ ମନ)
ଦେଖୁ ଦେଖୁ ମାତୃଭାଷା ଅଙ୍ଗର ଛେଦନ (ଘୋଷା)
ସ୍ୱର୍ଗରୁ ବଳି ଜନନୀ ସଂସାରରେ ସୁଖମଣି
ତାର ଦୁରଦଶା ଶୁଣି ସହେ କି ଜୀବନ
(ଭାଇ ସହେ କି ଜୀବନ)।୧।
ସମ୍ବଲପୁର ଜନନୀ ହୁଏ ଆଜି ନିର୍ବାସନୀ
କାଲିକି ହେବ ନବୀନ ନକର ଭାବନ ?
(କିଛି ନକର ଭାବନ) ।୨।
ଯାଉ ଏ ଜୀବନ ଧନ ହେଉ ଏକ ପ୍ରାଣମନ
ହେଉ ଶରୀର ପତନ ରଖ ଏବେ ପଣ
(ସର୍ବେରଖ ଏବେ ପଣ) ।୩।
ଜନନୀ ରସନା ହିନ୍ଦୀ କାଟଇ ଜାତିକି ନିନ୍ଦି
ଉଠରେ ଉତ୍କଳ ଭାଇ ଘେନ ନିବେଦନ ।
(ଭାଇ ସହେ କି ଜୀବନ) ।୪।''



Digitized by srujanika@gmail.com

ଜାତୀୟ ଚେତନାଉଦ୍ରେକର ଏହି ସୂକ୍ଷ୍ମସ୍ଫୁରଣ 'ଜାତୀୟ ସଂଗୀତ' କବିତା ସଂକଳନରେ ପରିବ୍ୟାପ୍ତ ପୃଷ୍ଠଭୂମି ଲାଭ କରିଛି। ଓଡ଼ିଆଙ୍କ ପ୍ରାଣରେ ନବଚେତନା ଓ ନବଜାଗରଣ ସୃଷ୍ଟିର ଆଭିମୁଖ୍ୟ ହିଁ 'ଜାତୀୟ ସଂଗୀତ'ର ମୂଳଲକ୍ଷ୍ୟ । ଏହାର ଉଦ୍ଦେଶ୍ୟକୁ କବିଙ୍କ ଉଦ୍‌ଘୋଷଣା ସ୍ପଷ୍ଟ କରେ : -

'' x x x ଓଡ଼ିଆମାନେ ସ୍ୱପ୍ନପରି ପୂର୍ବଯଶମାନ ହରାଇ ମୁମୂର୍ଷୁଗ୍ରସ୍ତ କ୍ଷମତାଶୂନ୍ୟ ବୀର ଓ ଗୁଣୀ ଲୋକର କ୍ଷୀଣଭାଷା ସମ ପ୍ରକାଣ୍ଡ ଭୂମିଖଣ୍ଡରେ ଦୁର୍ବଳ ସ୍ୱରରେ ଭାଷା କହି ଆପଣାର ପୂର୍ବଗୌରବର ଅସ୍ତିତ୍ୱମାତ୍ର ପରିଚୟ ଦେଉଅଛନ୍ତି। ଏହାଠାରୁ ବଳି ଶୋଚନୀୟ ଅବସ୍ଥା କି ହୋଇପାରେ ? ପୂର୍ବଯଶ ଓ ଆତ୍ମମର୍ଯ୍ୟାଦା ସ୍ମରଣ କରାଇଦେଇ ବଙ୍ଗ, ମାନ୍ଦ୍ରାଜ ଓ ବୋମ୍ୱାଇ ଲୋକମାନଙ୍କ ପରି ଜାତୀୟ ଜୀବନର ଉତ୍କର୍ଷତା (ଉତ୍କର୍ଷ) ଲାଭ ନିମନ୍ତେ ଜାଗ୍ରତ କରାଇବା ଜାତୀୟ ସଙ୍ଗୀତର ପ୍ରଧାନ ଉଦ୍ଦେଶ୍ୟ ।''(ନିବେଦନ : ଜାତୀୟ ସଙ୍ଗୀତ - ୧୯୦୩)

ଜାତୀୟ ବୀରମାନଙ୍କର ବନ୍ଦନା, ପୂର୍ବ ଐତିହ୍ୟର ସ୍ମୃତିଚାରଣ ହିଁ ଜାତୀୟ ସଙ୍ଗୀତର ଉପଜୀବ୍ୟ । ଆଦର୍ଶ ରାଜନ୍ୟମଣ୍ଡଳୀ, କୃତବିଦ୍ୟ କବିମାନଙ୍କର କୃତିତ୍ୱ ପ୍ରଖ୍ୟାପନ ଛଳରେ ଜାତୀୟ -ଚେତନା ଉଦ୍ରେକ ହିଁ ଦାମୋଦରଙ୍କ ମାର୍ମିକ ଅଭିଳାଷ । ଉତ୍କଳୀୟ ଯୁବକ ଓ ଯୁବତୀଙ୍କୁ ଦେଶୀୟ କାର୍ଯ୍ୟରେ ଆତ୍ମବଳୀ ଦେବାକୁ କବି ଆହ୍ୱାନ କରିଛନ୍ତି । 'ଲଳନାଙ୍କ ପ୍ରତି ନିବେଦନ' ଶୀର୍ଷକ କବିତାରେ କବିଙ୍କ ଆହ୍ୱାନ ମହନୀୟ:

'ଯତନ ନକଲେ ଉତ୍କଳ ଲଳନା
ଉତ୍କଳର ଦୁଃଖ ଯିବନା ଯିବନା ।
ଅଳଙ୍କାର ସାର ସତୀତ୍ୱ ରତନ
ଦରିଦ୍ର ଉତ୍କଳେ ଥାଉ ଗୋ ଭୂଷଣ ।
କରି ବିସର୍ଜନ ଆନ ଆଭରଣେ
ନିଜ ପୁତ୍ର କନ୍ୟା ବିଦ୍ୟା ଉପାର୍ଜନେ ।
ହୁଅ ଜ୍ଞାନୀ ବୀର ପୁତ୍ର ସୁଶୋଭିନୀ
ଘୁଞ୍ଚିଯାଉ ଦୁଃଖ ତିମିର ଯାମିନୀ ।
ଆମୋଦେ ଆଳସ୍ୟେ ନକାଟ ଜୀବନ
ହୁଅ ଗୁଣବତୀ ଏହି ନିବେଦନ ।'' (ଜାତୀୟ ସଂଗୀତ - ପୃ-୬)

ଯୁବକମାନଙ୍କୁ ଉତ୍କଳଗଗନର ନବୀନ ତପନ ରୂପେ ଅଭିହିତ କରି ଚରିତ୍ରଗଠନ ଓ



Digitized by srujanika@gmail.com

ଜ୍ଞାନଉପାର୍ଜନ କରିବାକୁ କବି ଉପଦେଶ ଦେଇଛନ୍ତି । ଭାଗ୍ୟବାଦୀ ନହୋଇ କର୍ମର ଜୟଗାନ କରିବାକୁ କବି ଘୋଷଣା କରିଛନ୍ତି । ଜାତୀୟ ସଂଗୀତର ପ୍ରତିଟି କବିତା ଦେଶପ୍ରାଣ-ମନ୍ତ୍ରରେ ଅଭିମନ୍ତ୍ରିତ ।

ଓଡ଼ିଶାର ଭାଷା- ସଂସ୍କୃତିର ସୁରକ୍ଷା, ବୃହତ୍ତର ଓଡ଼ିଶା ଗଠନ ଦିଗରେ ପ୍ରାଣପାତ ଉଦ୍ୟମ କରିଥିବା ମହାପୁରୁଷମାନଙ୍କୁ ସାରସ୍ୱତ ସମ୍ମାନ ଦେବାରେ କବି କୁଣ୍ଠିତ ହୋଇନାହାନ୍ତି । ରାଜା ବାସୁଦେବ ସୁଢ଼ଳଦେବ, କୃଷ୍ଣଚନ୍ଦ୍ର ଭଞ୍ଜ, ଧନୁର୍ଜୟ ନାରାୟଣ ଭଞ୍ଜ, ପଦ୍ମନାଭ ନାରାୟଣ ଦେବ, ରାମଚନ୍ଦ୍ର ଭଞ୍ଜ, ରାମଚନ୍ଦ୍ର ବୀରବର ହରିଚନ୍ଦନ, ବିଶ୍ୱନାଥ ଦେବବର୍ମା, ବୈକୁଣ୍ଠନାଥ ଦେ, ସୁରପ୍ରତାପ ମହୀନ୍ଦ୍ର ବାହାଦୂର, ହରିହର ମର୍ଦ୍ଦରାଜ ପ୍ରମୁଖଙ୍କ ସହିତ ଗୌରୀଶଙ୍କର ରାୟ, ସାମନ୍ତ ଚନ୍ଦ୍ରଶେଖର, ଜୟନାରାୟଣ ତର୍କ ପଞ୍ଚାନନ, ନନ୍ଦକିଶୋର ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ, ଫକୀରମୋହନ, ରାଧାନାଥ, ମଧୁସୂଦନ ଦାସ, ମଧୁସୂଦନ ରାଓ, ରାମଶଙ୍କର ରାୟ, ବିଚିତ୍ରାନନ୍ଦ ଦାସ, ସୁଦାମ ଚନ୍ଦ୍ର ନାୟକ, ହରିହର ଦାସ ପ୍ରମୁଖଙ୍କ ବନ୍ଦନାରେ ଜାତୀୟ ସଂଗୀତ ମୁଖରିତ। ଦେଶୀୟ ମହାପୁରୁଷଙ୍କ ବ୍ୟତିରେକେ କେବଳ ରେଭେନ୍ସା ସାହେବଙ୍କ ଗୁଣଗାନ କରାଯାଇଛି । ରେଭେନ୍ସାଙ୍କୁ ଉତ୍କଳର ବନ୍ଧୁ ରୂପେ ଚିତ୍ରଣ କରାଯାଇଛି । ଏଥିପାଇଁ କବି 'ନିବେଦନ'ରେ ଏକ ସ୍ପଷ୍ଟୀକରଣ ଦେଇ କହନ୍ତି :-

'' ଜାତୀୟ ସଂଗୀତରେ ଭୂତପୂର୍ବ କମିଶନର ଶ୍ରୀଯୁକ୍ତ ରେଭେନ୍ସା ସାହେବଙ୍କ ନାମ ଦେଖି କେହି ଆପତ୍ତି କରି ପାରନ୍ତି ମାତ୍ର ସେ ଓଡ଼ିଶ୍ୟାରେ ପ୍ରକୃତ ବନ୍ଧୁଭାବେ ଯେ ଯେ ଦେଶହିତକର କାର୍ଯ୍ୟମାନ କରିଅଛନ୍ତି ତହିଁ ନିମନ୍ତେ ଓଡ଼ିଶା ତାଙ୍କଠାରେ ଚିରଋଣୀ । ବିଦେଶୀ ଓ ଭିନ୍ନ ଜାତିବିଶିଷ୍ଟ ଲୋକ ହେଲେ ସୁଦ୍ଧା ଯେଉଁ ଲୋକ ଉତ୍କଳର ହିତସକାଶେ ପ୍ରାଣମନ ବିକିବ ତାହାକୁ ପୂଜା କରିବା ପ୍ରଥମ କର୍ତ୍ତବ୍ୟ କର୍ମ ଓ ସେ ଓଡ଼ିଶ୍ୟାର ପ୍ରଧାନ ବନ୍ଧୁ ଏବଂ ବନ୍ଧୁବାନ୍ଧବମାନଙ୍କୁ ସଙ୍ଗେ ଘେନି ସଂସାରରେ ଚଳିବା ବଡ଼ ସୁଖ ଓ ଉତ୍ସାହଜନକ କାର୍ଯ୍ୟ ଅଟେ ।'' (ନିବେଦନ , ଜାତୀୟ ସଂଗୀତ)

ଜାତୀୟ ସଂଗୀତ ଓ ସଂଗୀତ ସାଗର ଦାମୋଦରଙ୍କୁ ଅପୂର୍ବ କବିକୀର୍ତ୍ତି ପ୍ରଦାନ କରିଥିଲା । ଜାତୀୟ ସଂଗୀତ ସମକାଳରେ ବହୁ ପ୍ରଚାରିତ ଓ ବହୁଳ ଆଦୃତ କବିତା ଗ୍ରନ୍ଥ। ଏହାକୁ ରାଧାନାଥ, ଫକୀରମୋହନ, ସୁଢ଼ଳଦେବ ପ୍ରମୁଖ ମୁକ୍ତ କଣ୍ଠରେ ପ୍ରଶଂସା କରିଥିଲେ । ଫକୀରମୋହନଙ୍କ ମତରେ '' ଜାତୀୟ ସଂଗୀତ ଉତ୍କଳମାତା କଣ୍ଠରେ ମାଣିକ୍ୟମାଳା'' (ଫକୀରମୋହନ-୨୬-୬-୧୯୦୩) ସୁଢ଼ଳଦେବଙ୍କ ମତରେ ଏହା



Digitized by srujanika@gmail.com

ଦାମୋଦରଙ୍କ 'ସଂଗୀତପ୍ରିୟତା'ର ପରିଚାୟକ । ରାଧାନାଥ ରାୟ ଏଥିରେ ଅନ୍ତର୍ନିବିଷ୍ଟ ହୋଇଥିବାରୁ କୌଣସି ମନ୍ତବ୍ୟ ଦେବାକୁ ସଙ୍ଗତବୋଧ କରିନାହାନ୍ତି । (ଦ୍ରଷ୍ଟବ୍ୟ: ଜାତୀୟ ସଂଗୀତ ସମ୍ବନ୍ଧରେ : ପଦ୍ମମୁଖ- ପୃ-୮୦, କଟକ ପ୍ରିଣ୍ଟିଂ କମ୍ପାନୀ ୧୯୦୮)

'ପଦ୍ମମୁଖ' କାବ୍ୟ ୧୯୦୮ରେ କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ପ୍ରକାଶିତ । ଏହା କବି ପଦ୍ମମୁଖ ବିରଚିତ ଓ ଦାମୋଦରଙ୍କ ଦ୍ୱାରା ପ୍ରକାଶିତ । କାବ୍ୟର ଶୈଳୀ, ପଦସଂଯୋଜନା ଓ ସାଂଗୀତିକ ଉପସ୍ଥାପନାରୁ ଏହା ଦାମୋଦରଙ୍କ ନିଜସ୍ୱ ରଚନା ବୋଲି ଅନୁମାନ ହୁଏ । 'ପଦ୍ମମୁଖ' ଛଦ୍ମନାମରେ କବି ଏହି କାବ୍ୟଟି ରଚନା କରିଛନ୍ତି । ପତିପତ୍ନୀର ସ୍ୱର୍ଗୀୟ ପ୍ରେମର ବର୍ଣ୍ଣନାହିଁ କାବ୍ୟର ବିଷୟବସ୍ତୁ । ଏଥିରେ ପତି ସୂର୍ଯ୍ୟ ରୂପେ ଓ ପତ୍ନୀ ଚନ୍ଦ୍ର ରୂପେ ବର୍ଣ୍ଣିତ । ପତିପତ୍ନୀଙ୍କୁ ପଦ୍ମମୁଖ ରୂପେ କବି ସଂବୋଧନ କରିଛନ୍ତି । ଏହା ଦାମ୍ପତ୍ୟ ପ୍ରେମଲୀଳାମୃତ କାବ୍ୟ । କବିଙ୍କ ଭାଷାରେ- ''ପଦ୍ମମୁଖ ଶବ୍ଦର ଜନ୍ମ ବିବରଣୀ ଏବଂ ତାହା ପତି ଓ ପତ୍ନୀ ଭାବରେ ବ୍ୟବହୃତ ହୋଇଥିବା ବିଷୟ କାବ୍ୟ ମଧ୍ୟରେ ଉଲ୍ଲେଖ ହୋଇଅଛି । ପତିପତ୍ନୀ ପରସ୍ପରକୁ ପଦ୍ମମୁଖ ବୋଲି ଡାକିବା ଅତିସୁଖ ଓ ପ୍ରୀତିପୂର୍ଣ୍ଣ ସମ୍ବୋଧନ ଅଟେ । ଏ ସଂସାରର ଗଗନ ମଧ୍ୟରେ ସୂର୍ଯ୍ୟ ଓ ଚନ୍ଦ୍ର ଦିନରେ ଓ ଯାମିନୀରେ କ୍ରମରେ ସ୍ୱସ୍ୱ ପ୍ରଭାଦ୍ୱାରା ଜଗତକୁ ପାଳନ କଲାପରି ଗୃହ ଗଗନରେ ସୂର୍ଯ୍ୟତୁଲ୍ୟ ପତି ଓ ରଜନୀକାଳରେ ଚନ୍ଦ୍ରମାତୁଲ୍ୟ ପତ୍ନୀ ବିରାଜିତ ଓ ସୁଶୋଭିତ ହୋଇ ଆପଣା ଆପଣା ସାଂସାରିକ କର୍ମ ନିର୍ବାହ କରୁଅଛନ୍ତି ଏବଂ ଚନ୍ଦ୍ରମାଙ୍କ ସାଙ୍ଗରେ ତାରାମାନଙ୍କ ପରି ପତ୍ନୀ ସଙ୍ଗରେ (ଅର୍ଥାତ୍ ଆପଣା ଜନନୀ ସହିତ) ସନ୍ତାନମାନେ ଥାଇ ପରମ ରମଣୀୟ ଶୋଭାବର୍ଦ୍ଧନ କରୁଅଛନ୍ତି । (ଭୂମିକା: ଦାମୋଦର ପଟ୍ଟନାୟକ, ପଦ୍ମମୁଖ -୧୯୦୮)

''ପତି ଏ ଭବ ଭବନେ
ରାଜାଇ ଯେସନ ସୂର୍ଯ୍ୟ ଗଗନେ
ପତ୍ନୀ ଚନ୍ଦ୍ରମା ପରି ତେସନ। ସଜନିରେ ।୧।
ଦିବସେ ସୂର୍ଯ୍ୟ ଶାସାଇ
ଯାମନୀ ହୋଇଲେ ଚନ୍ଦ୍ରପାଳଇ
ସୂର୍ଯ୍ୟ ଚନ୍ଦ୍ରମା କ୍ରମେ ଭ୍ରମଇ । ସଜନିରେ।୨।
ଦମ୍ପତି ଚନ୍ଦ୍ର ତପନ
ପରାଏ ଶୋଭନ୍ତି ରଜନୀ ଦିନ
ଶିଶୁ ତାରା ତହିଁ ଶୋଭାବନା ସଜନିରେ ।୩। (ପଦ୍ମମୁଖ- ପୃ-୧-୨)



Digitized by srujanika@gmail.com

ଶିଶୁମାନଙ୍କୁ ଆଦର୍ଶ ମଣିଷ ରୂପେ  ଗଢ଼ିତୋଳିବାକୁ କବିଙ୍କର 'ଭଲପିଲା' ପୁସ୍ତକ ଅଭିପ୍ରେତ । ଏହି ସଂକଳନରେ ସ୍ଥାନିତ ଶିଶୁ କବିତା ସମୂହ ସରଳ, ସାବଲୀଳ ଶବ୍ଦ ସମ୍ଭାଦ୍ୱାରା ଶିଶୁମନକୁ ଆକର୍ଷିତ କରେ । ନିଜର ପୁତ୍ର ସୂର୍ଯ୍ୟନାରାୟଣର ସୁଶିକ୍ଷାକଳ୍ପେ ତଥା ଉତ୍କଳର ଶିଶୁମାନଙ୍କର ନୈତିକ ଉନ୍ନତି ପାଇଁ ଦାମୋଦର ଏହି ପୁସ୍ତକଟି ପ୍ରକାଶ କରିବା କଥା ଉତ୍ସର୍ଗପତ୍ରରେ ଘୋଷଣା କରନ୍ତି ।

'' ପ୍ରଥମରୁ ମୋ ଆତ୍ମଜ ସୂର୍ଯ୍ୟନାରାୟଣ
ସୁଶିକ୍ଷା ଦାନ ଆଶାରେ ତା' ଛାତ୍ର ଜୀବନେ
କରିବାକୁ ତାକୁ ଭଲପିଲା କୌଶଳରେ
ରଚିଲି ଏ 'ଭଲପିଲା' ଢ଼ାଳି ଯତନରେ
ଛଣାନୀତି ସୁଧା ତହିଁ, ଯାହାର ପାଳନେ
ପ୍ରକୃତ ମନୁଷ୍ୟପଣ ଜନମି ହୃଦରେ
ପ୍ରସରିଣ ଭବିଷ୍ୟତ ଜୀବନେ ତାହାର
ଦେବ ଅମୃତର ଫଳ ଜୀବନ ସଂଗ୍ରାମେ
ତେଣୁ ଏହି 'ଭଲପିଲା' ସଙ୍ଗୀ ଯେ ହୋଇବ
ନିଶ୍ଚେ ଭଲପିଲାହେବ ଏହି ଭରସାରେ
ଜନ୍ମଭୂମି ଉତ୍କଳର ପୁତ୍ର କନ୍ୟାଗଣ
ମଙ୍ଗଳକାରଣ ପ୍ରକାଶିଲି ଏ ପୁସ୍ତକ ।''(ଉତ୍ସର୍ଗପତ୍ର: ଭଲପିଲା-୧୯୧୧)

ଶିଶୁମନସ୍ତତ୍ତ୍ୱକୁ ଦୃଷ୍ଟିରେ ରଖି କବି ଏହି ପୁସ୍ତକ ରଚନା କରିଛନ୍ତି । ଗୁରୁଜନଙ୍କ ସେବା, ଈଶ୍ୱର ଆରାଧନା, ସ୍ୱକର୍ମସାଧନ, ସ୍ୱଦେଶପ୍ରେମ, ବିଦ୍ୟା ଆହରଣ ସମ୍ପର୍କରେ କବିଙ୍କ ଉପଦେଶ ସ୍ୱାଭାବିକ ଓ ଶିଶୁ ଉପଯୋଗୀ । ଏହି ସଂକଳନସ୍ଥ ଈଶ୍ୱରସ୍ତୁତି, ଜନକଜନନୀ, ଭାଇଭଉଣୀ, ଶିକ୍ଷାଗୁରୁ, ସ୍କୁଲ ରୂପ ବଗିଚା, ନିଶ୍ଚେ ଏକା ଭଲପିଲା ମୁଁ ହେବି, ସକାଳୁ ଉଠି ମୁଁ ପାଠପଢ଼ିବି, କର୍ମକର ବୋଲି ସଦା ବାଜୁଛି ବାଜଣା, ସଙ୍ଗମେଳ ହିତ ଉପଦେଶ, ଚରିତ୍ର, ସତ୍ୟବାଣୀ, ଜନ୍ମଭୂମି, ବିଦ୍ୟାଦେବୀ ପ୍ରଭୃତି କବିତା ଉଲ୍ଲିଖିତ ଭାବପ୍ରକାଶରେ ସଫଳ ହୋଇଛି । କବିଙ୍କ ଶିଶୁକବିତା ରଚନାର ଅନବଦ୍ୟ ସାମର୍ଥ୍ୟକୁ ଏହି ପୁସ୍ତକ ପ୍ରମାଣିତ କରେ ।

ଦାମୋଦରଙ୍କ ସମ୍ମୁଖରେ କବିତାର ରସଚର୍ଯ୍ୟା ଅପେକ୍ଷା ଦେଶ, ଭାଷା ଓ ସାହିତ୍ୟ ମହତ୍ତର । ସେ କବିଖ୍ୟାତି ଅପେକ୍ଷା କବିତାର ପ୍ରତିଷ୍ଠା ଆଶା କରିଛନ୍ତି । ଆଶୁସମ୍ମାନର



Digitized by srujanika@gmail.com

ବଶବର୍ତ୍ତୀ ନ ହୋଇ ଉତ୍କଳୀୟ ସଂସ୍କୃତିର ଭିତ୍ତିଭୂମିକୁ ସୁଦୃଢ଼ କରିବା ହିଁ ତାଙ୍କ ସାହିତ୍ୟର ଆଭିମୁଖ୍ୟ । ତେଣୁ ସେ ଭଞ୍ଜବିବାଦରେ ଲମ୍ଫପ୍ରଦାନ କରିଛନ୍ତି, ଛଦ୍ମନାମରେ ଲେଖିଛନ୍ତି ଓ ଭାଷା ଆନ୍ଦୋଳନରେ ନେତୃତ୍ୱ ନେଇଛନ୍ତି । ତାଙ୍କ ପ୍ରତିଭାର ଏହି ବିବିଧତା ଫଳରେ ଅନେକ ପୁସ୍ତକ ସମ୍ଭବ ହୋଇଛି । ଲୋକଙ୍କ ହୃଦୟକୁ ଉଦ୍ଦୀପିତ କରିଛି । ଏହି ପ୍ରସଙ୍ଗରେ ଜୀବନ ଚମ୍ପୂ, ଜଗନ୍ନାଥ ସଂକୀର୍ତ୍ତନ,The newly risen sun ପ୍ରଭୃତି ପୁସ୍ତକ କବିଙ୍କ ସାରସ୍ୱତ ପ୍ରତିଭାର ସ୍ୱାକ୍ଷର ବହନ କରେ । ପ୍ରଥମ ଦୁଇଟି ପୁସ୍ତକ ଧର୍ମାନୁରାଗର ପରିଚୟ ଦେଲାବେଳେ The newly risen sunଉଦ୍‌ବୋଧନମୂଳକ ପୁସ୍ତକ । 'ଜଗନ୍ନାଥ ସଂକୀର୍ତ୍ତନ' ମାଧ୍ୟମରେ ଦାମୋଦର ଗ୍ରାମଗ୍ରାମ ଭ୍ରମଣ କରି ଲୋକଙ୍କ ସ୍ୱଭାବ ପରିବର୍ତ୍ତନରେ ସହାୟକ ହୋଇଥିଲେ । ସଂକୀର୍ତ୍ତନ ସମୟରେ ଦାମୋଦର ଆତ୍ମବିସ୍ମୃତ ହେଉଥିଲେ ଏବଂ ପୁରୀ ଜଗନ୍ନାଥ ମନ୍ଦିରରେ ସଂକୀର୍ତ୍ତନ କରି ଲୋକମାନଙ୍କ ପ୍ରୀତି ସମ୍ପାଦନ କରୁଥିଲେ । ତାଙ୍କଦ୍ୱାରା ଅନୁପ୍ରାଣିତ ହେବା ଦ୍ୱାରା ଅନେକ ଦୁରାଚାରୀ ସତ୍‌ମାର୍ଗକୁ ଆସିବା କଥା ତାଙ୍କର ସ୍ମୃତିଚାରଣ ଛଳରେ ନୀଳମଣି ବିଦ୍ୟାରତ୍ନ ପ୍ରକାଶ କରନ୍ତି । ବିଦ୍ୟାରତ୍ନଙ୍କୁ ତା ୨୪-୬-୧୯୧୫ରେ ନରସିଂହପୁରର ଅଢ଼େଇଗୁଣ୍ଠିରୁ ଲେଖିଥିବା ପତ୍ରରେ ଏହାର ପ୍ରମାଣ ମିଳେ ।

''ଆଜି ମୁଁ ମୋଫସଲରେ ଅଛି ଏବଂ ସନ୍ଧ୍ୟା ସମୟରେ ଏଠାରେ ସଂକୀର୍ତ୍ତନ ହେବ । ଆପଣ ଏଠାର ବନ୍ଧୁ ରଥ ନାମକ ବ୍ୟକ୍ତିର ସ୍ୱଭାବ ପରିବର୍ତ୍ତନ କଥା ଦୀପିକା କ୍ରୋଡପତ୍ରରେ ଦେଖିଥିବେ। ଗାୟକରତ୍ନ ଜାଣିଅଛନ୍ତି । ତାଙ୍କପତ୍ରରୁ ଉକ୍ତ ଛାପାକଥା ଜାଣି 'ଦୀପିକା' ଅଣାଇ ପଢ଼ିଲି । ତାହାରି ଗ୍ରାମ ଅଢ଼େଇଗୁଣ୍ଠିକୁ ଆସିଅଛି, ଏହି ଗ୍ରାମର ବାଙ୍କ ଅଧିକାରୀ ନାମକ ଏକ ଲୋକର ମନ ପରିବର୍ତ୍ତନ ହେବାରୁ ତାହାର ତିନିମାଣ ଜମି ବିକ୍ରିକରି ତିନିଶ ଟଙ୍କା ବ୍ୟୟରେ ଏକ ପୁଷ୍କରିଣୀ ମରାମତି କାର୍ଯ୍ୟ ଆଜି ଆରମ୍ଭ କରିଅଛି । ଶ୍ରୀଜଗନ୍ନାଥ ସଂକୀର୍ତ୍ତନ ଦ୍ୱାରା ପ୍ରଭୁ ଏହିପରି ସତ୍କର୍ମମାନ କରାନ୍ତୁ । ''ଭାରତବାସୀଙ୍କର ମହୌଷଧି'' ବୋଲି ଆପଣ ଯେଉଁ ବାଣୀ ଉଚ୍ଚାରଣ କରିଥିଲେ, ତାହା ସଫଳ ହେଉ ।''

(ସୁକବି ଦାମୋଦର ପଟ୍ଟନାୟକ; ନୀଳମଣି ବିଦ୍ୟାରତ୍ନ - ସମ୍ବଲପୁର ହିତୈଷିଣୀ (୨୭।୯) ୧-୧-୧୯୧୬)

ସଂଗୀତ ସମ୍ପର୍କରେ ଦୀପିକାରେ ପ୍ରକାଶିତ ସମ୍ବାଦକୁ ଦାମୋଦର ପଟ୍ଟନାୟକ '' ସଂଗୀତ ସାଗର'' ପୁସ୍ତକର ଶିରୋଭୂଷଣ ରୂପେ ସ୍ଥାନିତ କରିଥିଲେ ।



Digitized by srujanika@gmail.com

" ଇଟାଲି ଦେଶରେ କେତେକ ବର୍ଷ ତଳେ କେଉଁ ଲୋକ କେତେ ବର୍ଷ ବଞ୍ଚନ୍ତି, ତହିଁର ଏକ ତାଲିକା ପ୍ରସ୍ତୁତ ହୋଇଥିଲା । ସେ ତାଲିକାରୁ ଦେଖାଗଲା ଯେ ଯେଉଁମାନେ ଗୀତ ଗାଆନ୍ତି, ସେମାନେ ସୁସ୍ଥ ଶରୀରରେ ଅନେକ ଦିନ ବଞ୍ଚନ୍ତି । ଯେଉଁମାନଙ୍କର ଅନ୍ୟପ୍ରକାର ବ୍ୟାୟାମ କରିବାର ଅଭ୍ୟାସ ନାହିଁ, ସେମାନଙ୍କର ଗୀତ ଗାଇବା ଅଭ୍ୟାସ ପରିଚାଳିତ ହେଲେ ଅନେକ ରୋଗ ବି ଯାହା ଔଷଧିରେ ସହଜରେ ଆରୋଗ୍ୟ ନ ହୁଏ ତହିଁର ଉପଶମ ହୋଇପାରେ । (ଉତ୍କଳ ଦୀପିକା-୯-୮-୧୮୯୦)

ପ୍ରାଚୀନ ସଂଗୀତର ପୁନରୁଦ୍ଧାର ପାଇଁ ଲୋକପ୍ରିୟ ସଂଗୀତଗୁଡିକର ସଂକଳନ କରିଥିଲେ ଦାମୋଦର । ସେ ଏହି ଅନନ୍ୟ ସଂକଳନକୁ 'ସଂଗୀତ ସାଗର' ଶୀର୍ଷକରେ ପ୍ରକାଶ କରିଥିଲେ । ଏହାର ଅନେକ ସଂସ୍କରଣ ପ୍ରକାଶ ହୋଇଥିବାର ଜଣାପଡେ। ବିଭିନ୍ନ କବିଙ୍କ ଉତ୍କୃଷ୍ଟ ସଂଗୀତ ହିଁ ଏଥିରେ ସ୍ଥାନିତ । ଅନେକ ଦୁଷ୍ପ୍ରାପ୍ୟ ରଚନାକୁ କାଳଗର୍ଭରୁ ସେ ଉଦ୍ଧାର କରିଛନ୍ତି । ଏହି ଜାତୀୟ କର୍ତ୍ତବ୍ୟ ତାଙ୍କୁ ଜଣେ ସଂଗୀତ ପ୍ରେମୀ ରୂପେ ପ୍ରତିଷ୍ଠା ଆଣି ଦେଇଥିଲା । ସଂଗୀତ ସାଗରର ପ୍ରତିଟି ଭାଗକୁ ତରଙ୍ଗ ରୂପେ ଅଭିହିତ କରାଯାଇଛି। ପ୍ରତିଟି ତରଙ୍ଗ ସ୍ୱତନ୍ତ୍ର ପୁସ୍ତକ ରୂପେ ପ୍ରକାଶିତ । ସଂଗୀତ ସାଗରର ସପ୍ତମ ତରଙ୍ଗ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିବାର ଜଣାଯାଏ । ଓଡ଼ିଶା ସାହିତ୍ୟ ଏକାଡେମୀ ପରବର୍ତ୍ତୀ ପର୍ଯ୍ୟାୟରେ "ସଂଗୀତ ସାଗର"ର ଏକ ସୁଦୃଶ୍ୟ ସଂକଳନ ପ୍ରକାଶ କରିଛି । ଏଥିରେ ପ୍ରଥମ ତରଙ୍ଗରୁ ଷଷ୍ଠ ତରଙ୍ଗ ପର୍ଯ୍ୟନ୍ତ ଅନ୍ତର୍ଭୁକ୍ତ ।

'ସଂଗୀତ ସାଗର' ନିଜ ନାମକୁ ସାର୍ଥକ କରିଛି । ଓଡ଼ିଶୀ ସଂଗୀତ ଓ ସଂସ୍କୃତିର ଏହା ମିଳନ କ୍ଷେତ୍ର । ପ୍ରାଚୀନ ଦୁଷ୍ପ୍ରାପ୍ୟ ଗୀତ ସମୂହକୁ କୀଟଦ୍ରଷ୍ଟ ତାଳପତ୍ର ପୋଥିରୁ ଉଦ୍ଧାର କରି ଚିରନ୍ତନ ବ୍ୟାପ୍ତି ପ୍ରଦାନ କରିଛନ୍ତି ଦାମୋଦର ପଟ୍ଟନାୟକ । ସଂଗୀତ ସାଗର ତାଙ୍କର ସୃଜନଶୀଳତା ସହିତ ଅନୁସନ୍ଧିତ୍ସୁ ପ୍ରତିଭାର ପରିଚୟ ପ୍ରଦାନ କରେ । ପୂର୍ବଭାରତୀୟ ରାଗରାଗିଣୀରେ ରଚିତ ଅନେକ ସଂଗୀତ ଏହି ସଂକଳନର ଶୋଭାବୃଦ୍ଧି କରିଛି ।

ଆଶାତୀତ ଲୋକପ୍ରିୟତା ଯୋଗୁ ଦାମୋଦର ପ୍ରତ୍ୟେକ ତରଙ୍ଗର ମୂଲ୍ୟ ଅର୍ଦ୍ଧେକ କରିଥିଲେ । ଏହି ସଂକଳନର ଭୂୟସୀ ପ୍ରଶଂସା କରନ୍ତି ରାଧାନାଥ ରାୟ-

" The compilation does great credit to your taste and discrimination, and I heartily congratulate you upon the success which had attained your efforts in rendering this very acceptable service to the cause of oriya musical and poetical literature.



Digitized by srujanika@gmail.com

Your 'Kapilas Keshetra' and 'Sangit Sagar', do indeed a good position amongst the few work which affords an agreable relief from the dry common place of the so called literary effusions of the day.(ରାଧାନାଥ ରାୟଙ୍କ ମତ: ସଂଗୀତସାଗର)

ସଙ୍ଗୀତ ଦୁନିଆରେ ବିସ୍ଫୋରଣ ସୃଷ୍ଟି କରିଥିଲା ସଂଗୀତ ସାଗର । ଏହା ଦାମୋଦରଙ୍କ ଜୀବନବ୍ୟାପୀ ସାଧନାର ଫଳ । ଅନେକ କବି ଦାମୋଦରଙ୍କ ଅନୁରୋଧ ରକ୍ଷାକରି ତାଙ୍କ ରଚିତ ସଂଗୀତକୁ ପ୍ରକାଶ ପାଇଁ ପ୍ରେରଣ କରୁଥିଲେ । ସଂଗୀତ ସାଗର ଥିଲା ଓଡ଼ିଆ ସଂଗୀତର ଏକ ପ୍ରବହମାନ ଧାରା । 'ସଂଗୀତ ସର୍ବସାର' ମଧ ଦାମୋଦରଙ୍କର ଅନ୍ୟ ଏକ ଅନୁପମ ସଂକଳନ । ଏଥିରେ ଅତିଉତ୍କୃଷ୍ଟ ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ସଂଗୀତ ସନ୍ନିବେଶିତ ।

ଓଡ଼ିଶାରେ ସଂଗୀତସମୂହର ସଂକଳନ ଦିଗରେ କିଛି କିଛି ବ୍ୟକ୍ତିଗତ ଉଦ୍ୟମ ହୋଇଥିଲା। ଗୋପାଳବଲ୍ଲଭ ଦାସ, ଗୌରୀଶଙ୍କର ରାୟ, ବନମାଳୀ ସିଂହ ପ୍ରମୁଖଙ୍କ ଉଦ୍ୟମକୁ ଏ ପ୍ରସଙ୍ଗରେ ସ୍ମରଣ କରାଯାଇପାରେ । ଯେଉଁ ସମୟରେ ସାହିତ୍ୟ ସାଧକଗଣ ନିଜ ସୃଷ୍ଟିର ପ୍ରକାଶନ ପାଇଁ ବ୍ୟସ୍ତ, ଯେଉଁ ସମୟରେ ସମ୍ପାଦନାର ଗୁରୁତ୍ୱ ସେତେଟା ଉପଲବ୍ଧି କରାଯାଇନଥିଲା, ସେହି ସମୟରେ ଦାମୋଦର ଓଡ଼ିଶା ସଂଗୀତର ବୈଶିଷ୍ଟ୍ୟ ପ୍ରତିପାଦନ ପାଇଁ ଏକ କାଳଜୟୀ ଉଦ୍ୟମ କରିଥିଲେ । ଉଚ୍ଚକୋଟୀର ଗୀତି କବିତାକୁ ସଂଗ୍ରହ କରି ସେ ନିଜ ଖର୍ଚ୍ଚରେ ପ୍ରକାଶ କରୁଥିଲେ । ଏହାଥିଲା ନିଛକ ଦେଶପ୍ରେମୀ ଓ ଭାଷାପ୍ରେମର ଉଜ୍ଜ୍ୱଳ ନିଦର୍ଶନ ।

ଦାମୋଦର ପଟ୍ଟନାୟକ ଜଣେ ମର୍ମଜ୍ଞ ଆଲୋଚକ । ଇନ୍ଦ୍ରଧନୁ ବିଜୁଳି ପ୍ରେକ୍ଷାରେ ରଚିତ ତାଙ୍କର ଅନେକ ରଚନାରେ ତତ୍ତ୍ୱାନ୍ୱେଷୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ। ତାଙ୍କର ଏହି ପ୍ରତିଭାର କ୍ରାନ୍ତିକାରୀ ସୃଷ୍ଟି 'ଉତ୍କଳ ଭ୍ରମଣଂ'ର ଆଲୋଚନା ଓ 'ଚିତ୍ରୋତ୍ପଳା ଓ ସମାଲୋଚକ' । ଏହି ରଚନା ଦୁଇଟି ଓଡ଼ିଆ ସାହିତ୍ୟରେ ଅଭିନବ । ସେ କବିତା ମାଧ୍ୟମରେ ଫକୀର ମୋହନଙ୍କ 'ଉତ୍କଳ ଭ୍ରମଣଂ' କବିତାର ଆଲୋଚନା କଲାବେଳେ ସୁଢ଼ଳଦେବଙ୍କ ଚିତ୍ରୋତ୍ପଳା କାବ୍ୟର ସମାଲୋଚନା ନାଟକାକାରେ କରିଛନ୍ତି। ଏହି ବିରଳ ସମାଲୋଚନାର ଧାରା ତାଙ୍କୁ ଜଣେ ଅନୁପମ ସମାଲୋଚକର ଆଖ୍ୟା ପ୍ରଦାନ କରେ । 'ଚିତ୍ରୋତ୍ପଳା ଓ ସମାଲୋଚକ' ଆଲୋଚନାଟି 'ଉତ୍କଳ ସାହିତ୍ୟ'- (୧/୩) ଚୈତ୍ର- ୧୩୦୪ ସଂଖ୍ୟାରେ ପ୍ରକାଶିତ । ସମାଲୋଚକ ଓ ଚିତ୍ରୋତ୍ପଳାଙ୍କ ମଧ୍ୟରେ କଥୋପକଥନ ଛଳରେ ଦାମୋଦର ନିଜର ବକ୍ତବ୍ୟ ପ୍ରଦାନ କରିଛନ୍ତି । ସମାଲୋଚକର



Digitized by srujanika@gmail.com

କର୍ତ୍ତବ୍ୟ କେତେ ଦୁରୂହ, ତାହା ସେ ସମାଲୋଚକଙ୍କ ବକ୍ତବ୍ୟ ମାଧ୍ୟମରେ ସୂଚାଇଛନ୍ତି ।

''ସମାଲୋଚକ: କି ଗୋ ଚିତ୍ରୋତ୍ପଳା । କୁଆଡେ ଆସିବା ହେଲେ ?

ଚିତ୍ରୋତ୍ପଳା : ଆପଣଙ୍କ ଛାମୁକୁ ।

ସମାଲୋଚକ: ଆପଣଙ୍କ ପରି ଲୋକ ଆମ୍ଭ ନିକଟକୁ ଆସିବା ଉଚିତ ନ ଥିଲା ।

ଚିତ୍ରୋତ୍ପଳା: କାହିଁକି ?

ସମାଲୋଚକ: କାଳେ ମନଦୁଃଖ କରିବ। ଆମର କାର୍ଯ୍ୟ ବଡ ଅପ୍ରୀତିକର । କାହାକୁ ବଢ଼େଇକରି କହିଲେ ଲୋକେ ଆମକୁ ନିନ୍ଦା କରନ୍ତି ଏବଂ ନିନ୍ଦାକରି କହିଲେ ଲୋକେ ତ ନିନ୍ଦା କରିବା କଥା ସୁତରାଂ ମଧ୍ୟପଥ ଅବଲମ୍ବନ କରି ଯାହା ପ୍ରକୃତ ସତ, ତାହା କହିଥାଉଁ । ମାତ୍ର ସେଥିରେ ସୁଦ୍ଧା କେହି କେହି ଆମକୁ ଅପ୍ରିୟ ସତ୍ୟ କହିଲୁଁ ବୋଲି ନିନ୍ଦା କରିଥାନ୍ତି ।''(ଉତ୍କଳଦୀପିକା ୧।୩, ପୃ. ୫୩)

ଏହି ଆଲୋଚନାରେ ଦାମୋଦରଙ୍କ ନିରପେକ୍ଷ ଦୃଷ୍ଟି ପ୍ରକାଶ ପାଇଛି । 'ଚିତ୍ରୋତ୍ପଳା'ରେ ଅନେକ ସଂସ୍କୃତ ଶବ୍ଦର ସମାବେଶକୁ ସମାଲୋଚନା କରାଯାଇଛି ଏବଂ ସରଳ ଓ ସୁଲଳିତ ବର୍ଣ୍ଣନାଥିବା ଅଂଶକୁ ପ୍ରଶଂସା କରାଯାଇଛି ।

ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ' କେନୋପି ଉତ୍କଳ ପୁତ୍ରେଣ ଦ୍ୱାରା ବିରଚିତ' ଛଦ୍ମନାମରେ ପ୍ରକାଶ ପାଇଥିଲା । ଉତ୍କଳ ଭ୍ରମଣଂରେ ଫକୀରମୋହନଙ୍କ ସମ୍ପର୍କରେ କୌଣସି ପଙ୍କ୍ତି ନ ଥିଲା । ଏଣୁ ବୁଦ୍ଧିଜୀବୀ ଗୋଷ୍ଠୀ ଏହା ଫକୀରମୋହନଙ୍କ ରଚନା ବୋଲି ସନ୍ଦେହ କରିଥିଲେ । ଏହି ସନ୍ଦେହକୁ ପ୍ରଥମ କରି ଏକ ପ୍ରେରିତ ପତ୍ର ମାଧ୍ୟମରେ ଉତ୍କଳଦୀପିକା-୨୭-୮-୧୮୯୨ରେ ଦାମୋଦର ପଟ୍ଟନାୟକ ସ୍ପଷ୍ଟ କରିଥିଲେ । ଏହି କବିତାଟି ' ଶ୍ରୀ..... ଢେଙ୍କାନାଳଗଡ' ଛଦ୍ମନାମରେ ପ୍ରକାଶ ପାଇଥିଲା । କବିତାଟିରେ ନିଜ ନାମ ଥିବା କଥା କବି ସ୍ୱୀକାର କରନ୍ତି । ('ମୋ ପରି ଅନେକ ନାମ ଦେଖିଲି ତହିଁରେ') । ଉତ୍କଳ ଭ୍ରମଣରେ ଫକୀର ମୋହନ ଦାମୋଦରଙ୍କୁ ଓଡ଼ିଆ ସଂଗୀତର ତ୍ରାଣକର୍ତ୍ତା ଓ କପିଳାସ କ୍ଷେତ୍ରର ରଚକରୂପେ ସ୍ମରଣ କରିଛନ୍ତି ।

'' ଆହେ ଦାମୋଦର କାହିଁ ଲୁଚାଇଛ ମଥା
ଗାଅ ଶୁଣେ କପିଳାସ ପୁଣ୍ୟକ୍ଷେତ୍ର କଥା
ଆସି ଲେଖ ଗାଅ ଆଉ ଦୁଇଚାରି ଗୀତ
ମାଟି ହୋଇଯାଉଅଛି ଓଡ଼ିଆ ସଂଗୀତ ।'' (ଉତ୍କଳ ଭ୍ରମଣ- ପୃ. ୨୦)

ଦାମୋଦର ପଟ୍ଟନାୟକ ଗୌରୀଶଙ୍କରଙ୍କ ନିକଟତମ ବ୍ୟକ୍ତି । ସେ ବିଭିନ୍ନ ଛଦ୍ମନାମରେ



Digitized by srujanika@gmail.com

'ଉତ୍କଳ ଦୀପିକା'ରେ  ଲେଖିବାର ସୁଯୋଗ ପାଇଥିଲେ । ଢେଙ୍କାନାଳ ଛଦ୍ମ ନାମରେ 'କପିଳାସ ଶିବଯାତ୍ରା', ପ୍ରେରିତ ପତ୍ର ( ବଣେଇ ମଙ୍ଗଳକୃତ୍ୟ), ପ୍ରେରିତ ପତ୍ର (ବ୍ରାହ୍ମଣଙ୍କୁ ସମାଲୋଚନା) The Darzling of Orissa ସ୍ୱନାମରେ ଦୀପିକା ପ୍ରକାଶିତ । ଏହି ରଚନାରେ କପିଳାସକୁ [illegible] ରୂପେ ଦାମୋଦର ବର୍ଣ୍ଣନା କରିଛନ୍ତି । ଉତ୍କଳ ଭ୍ରମଣରେ ଢେଙ୍କାନାଳର କବି ଦମୋଦର ପଟ୍ଟନାୟକଙ୍କ ସମ୍ପର୍କରେ କେବଳ ଉଲ୍ଲେଖ ଅଛି ।  ଏହି ବିଷୟକୁ  ବିଚାର କଲେ 'ଶ୍ରୀ ... ଢେଙ୍କାନାଳ ଗଡ଼' ଯେ, ଦାମୋଦର ପଟ୍ଟନାୟକଙ୍କ  ଭିନ୍ନ ଅନ୍ୟ କେହି ନୁହେଁ, ଏହା ପ୍ରମାଣିତ ହୁଏ ।

ଉତ୍କଳ ଭ୍ରମଣରେ ଫକୀର ମୋହନଙ୍କ ନାମ ନ ଥିବାରୁ ଦାମୋଦର ଲେଖନ୍ତି -

'' ଉତ୍ତରରୁ  ଗସ୍ତ ଯାଇ ଦକ୍ଷିଣେ ସଇଲା
ଫକୀରମୋହନଙ୍କୁ ତ କେହି ନ ଦେଖିଲା ।
କହକହ ଗ୍ରନ୍ଥକର୍ତ୍ତା ଫକୀରର କଥା
କେଉଁଠାରେ ଲୁଚିଅଛି ଏବେ ଟାର୍କି ମଥା ।
ଅବଧାନ ଅବିଧାନ ଫକୀରମୋହନ
ଆହେ ତୁମ୍ଭଙ୍କୁ ଯେ ଛାଡିଗଲା ଉତ୍କଳ ଭ୍ରମଣ ।
ଅଧା ତାଳଗଛ ମେରି ଫକୀରମୋହନ
ଲୁଚିବାର ଲୋକ ନୁହଁ ଲୁଚି [illegible]
ଯେଉଁ କିଲ୍ଲା କଲୁ [illegible]
ଥାଆନ୍ତି ନାହିଁ ଫାଙ୍କ କେନେ ବିଧିବିଡମ୍ବନ
ଅନେକ ସୁଗୁଣ  ଅଛି [illegible]
ଦେଶ ହିତ ବିଷୟରେ ତୁମ୍ଭେ ମଧ୍ୟ ଜଣେ ।

(ଉତ୍କଳ ଦୀପିକା ୨୭-୨୮-୧୮୯୨)

ଉତ୍କଳର ସମକାଳୀନ [illegible] ଫକୀରମୋହନଙ୍କ ଚରିତ୍ର ଅଧ୍ୟୟନର ନିରପେକ୍ଷତା ଓ ସରସ ଲେଖନ [illegible] ପ୍ରଶଂସା କରିଛନ୍ତି ।

'' ପଢ଼ିଲି ପଢ଼ିଲି ମୁହିଁ ଉତ୍କଳ ଭ୍ରମଣ
ଓଡ଼ିଆରେ  ବହି ଖଣ୍ଡେ ଏକା ଏକୁଶିଣୀ
ଥାଆନ୍ତି ଦିଅ ଭାଇ ତାର ଲେଖିବା ଶୈଳୀକୁ
ଯାହେଉ ଦେଇଛି ମାରି ଯା ତାହା କଥାକୁ ।



Digitized by srujanika@gmail.com

କବିତା ସରସ ଲୋକ ଏଥିନାହିଁ ଭୁଲ
କ୍ୟାରେକ୍ଟର ଷ୍ଟଡି କିରି ଅଛି ଯେ ଅଭୁଲ ।
ଠାଏ ଠାଏ ଥାନ ଦେଖି ଦେଇଅଛି ଲାଛି
ଦେବଲୋକ ହୋଇ କିଏ ମର୍ତ୍ତ୍ୟେ ଓହ୍ଲାଇଛି ।
ଯାହାକୁ ଲେଖିଛି ଦେଇ ଫିନିସିଙ୍ଗ ଟଚ୍
ସାଧ କା'ର କହି ଦେବ ଏଥି ଅଛି ଖଚ ।
ଭଲା ଭଲା ଆଜିଯାଏ ନ ଥିଲାତ ଦେଖା ।
ଓଡ଼ିୟା ଭାଷାରେ ଏହାପରି ଖଣ୍ଡେ ଲେଖା ।''(ଉତ୍କଳ ଦୀପିକା)

ଏହି କବିତାର ବ୍ୟଞ୍ଜନାତ୍ମକ ଆଲୋଡନ ସାହିତ୍ୟରସିକମାନଙ୍କୁ ଆକର୍ଷିତ କରିଥିଲା ।

ଆଧୁନିକ ଓଡ଼ିଆ ଭାଷାସାହିତ୍ୟର ସୃଷ୍ଟି ପ୍ରେକ୍ଷାପଟରେ ଦାମୋଦର ପଟ୍ଟନାୟକଙ୍କ କୃତିତ୍ୱ ସ୍ମରଣଯୋଗ୍ୟ । ପ୍ରାଚୀନତାର ପୁନରାବିଷ୍କାର ସହିତ ଆଧୁନିକତାର ସୁଦୃଢ଼ ଭିତ୍ତିସ୍ଥାପନରେ ତାଙ୍କର ଭୂମିକା କାଳଜୟୀ ମନେହୁଏ। ପ୍ରାଚୀନ ସଂଗୀତକୁ ନୂତନ ବ୍ୟାପ୍ତି ପ୍ରଦାନ, ଭଞ୍ଜୀୟକାବ୍ୟ କଳାର ନବନିର୍ମାଣ, କବିତାରେ ଜାତୀୟବାଦୀ ଚିନ୍ତାଧାରା ଓ ପ୍ରକୃତି ବର୍ଣ୍ଣନା, ସମାଲୋଚନାରେ ଗଭୀର ଅନ୍ତର୍ଦୃଷ୍ଟିର ପ୍ରତିଫଳନ ମାଧ୍ୟମରେ ତାଙ୍କ ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିଫଳିତ । ସାମ୍ପ୍ରତିକ ସାରସ୍ୱତ ଭିତ୍ତିକୁ ସୁଦୃଢ଼ କରିବାରେ ଦାମୋଦରଙ୍କ ଉତ୍ସର୍ଗିତ ସୃଷ୍ଟିକର୍ମ ପ୍ରଣିଧାନଯୋଗ୍ୟ । ତାଙ୍କର କୃତିସକଳ ଲୋକଲୋଚନ ଅଗୋଚରରେ ରହିଯାଇଛି । ନାରୀକବି ସୁଲକ୍ଷଣା ଦେବୀଙ୍କ ପୁତ୍ର ତଥା ପରିଜାତମାଳାର ପ୍ରକାଶକ ଭାବରେ ଦାମୋଦରଙ୍କ ସାରସ୍ୱତ ପରିଚୟ ସୀମିତ । ଏହାରି ଉର୍ଦ୍ଧ୍ୱରେ ଦାମୋଦରଙ୍କ ନିରପେକ୍ଷ ମୂଲ୍ୟାୟନର ସ୍ମାରକୀରୂପେ ବକ୍ଷ୍ୟମାଣ ଆଲୋଚନା ଅଭିପ୍ରେତ । ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଅଭିନବ ସଂଯୋଗ ସେତୁ ରୂପେ ସେ ଏବେ ବି ସ୍ମରଣୀୟ ।□□□

## ପରିଶିଷ୍ଟ : ସମାଲୋଚକ କବିଭୂଷଣ

ଶତବାର ଚୁମ୍ବେ ତବ ମୁଖ ଆନନ୍ଦରେ
ହେ କବିଭୂଷଣ ! ଆଧୁନିକ ଉତ୍କଳର
କବିଙ୍କ ମୁକୁଟଧାରୀ ! କରେ କର ମର୍ଦ୍ଦେ
ପୁନଶ୍ଚ ଆଦରେ ଦେଖି ତବ ଲେଖାଛଟା



Digitized by srujanika@gmail.com

ଏ ମହାଶ୍ମଶାନେ ଉତ୍କଳ ସାହିତ୍ୟର ।
କି ରଙ୍ଗେ ନିନ୍ଦିଲ ଆହା ! ରାମ ନାରାୟଣେ,
ବାମଣ୍ଡା- ଧରା- ମୁକୁଟେ ଚିତ୍ରୋତ୍ପଳା ଲାଗି
ଟେକ କବି ଭଞ୍ଜେ, ବସି ସଙ୍ଗସୁଖ ମେଳେ
ଚିତ୍ରୋତ୍ପଳା ଲାଗି ତଟବାସୀ କଟକ, ହର୍ମ୍ୟରେ,
ତୋଷି 'ନବ୍ୟ ସଭ୍ୟ ଯୁବାଦଳ'କୁ ଆକଣ୍ଠେ
'ଲାବଣ୍ୟବତୀ'ର ମଧୁଶଯ୍ୟା ପର୍ଯ୍ୟଙ୍କରୁ
ସେ 'ରସେ' ସେ ରସହୀନ ହୁଅଇ- ତୁଳନେ,
ଅଦ୍ୟପ୍ରାନ୍ତ ରସ ଚଖା ତବ ମୁଖଦ୍ୱାରା
ବାମଣ୍ଡା- ପୂର୍ବ ପୁରୁଷ- ବଂଶ-ଅବତଂସ
ଗଙ୍ଗେଶ୍ୱର କୌଶଲ୍ୟାଙ୍କ ଜନକ କନ୍ୟାର
'ହୁଁକୃତି' 'ଈଷି ଭାଷଣ' ପର୍ଯ୍ୟଙ୍କ ରଞ୍ଜନ
ଶବଦ ବିହୀନ ଧୀର ପ୍ରଣୟ ନିଃସୃତ
ଗୁପ୍ତଲୀଳା -ରସସୁଦ୍ଧା ଭକ୍ଷଣ ସଙ୍ଗତେ।
ଯେଉଁ ସୁଧା ରସବଳେ ବିସ୍ତାରିତ ବକ୍ଷେ
ଖେଳୁଛ ଆନନ୍ଦେ ତୁମ୍ଭେ ଗୁରୁ ଗରବରେ
ଛୁଇଁବାକୁ ସିଂହାସନେ - ଯାହା ଉପଇନ୍ଦ୍ର
ଭଞ୍ଜକବି 'ଚକ୍ରବର୍ତ୍ତୀ' ନେଇଛନ୍ତି ଆଦ୍ୟୁ
'ଚିରସ୍ଥାୟୀ ପଟ୍ଟା' ବରିନେବ କି ଛାମୁରୁ
କିସୁନ୍ଦର ରୁଚି ଆହା କି ସୁନ୍ଦର ଭାବ ।
ତବ ସେ ଉପଢ଼ୌକନ 'ତୃଷାର୍ତ୍ତ' ଯୁବକେ ।
କଣା ମେଘ ପରି , ଏକା ବରଷିଲ ଭବେ
ହେ କଣାଭୂଷଣ ଏଥୁଁ ଚିହ୍ନିଲି ମୁଁ ମନେ
ଯଦିବା କବିଭୂଷଣ ରଚନା କୌଶଳେ
ଧନ୍ୟ ସେ ସମ୍ବଲପୁର ହିତୈଷିଣୀ ସ୍ତମ୍ଭ
ଯହିଁରେ ଗାବନ୍ତି ଚଢ଼ି ଏ କବିଭୂଷଣ
ପରଭୃତ ଆନନ୍ଦରେ ଲାଲା ରଙ୍ଗ ସଙ୍ଗେ
ଯଥା କଟକ ନଗ୍ରସ୍ଥ ମ୍ୟୁନିସିପାଲିଟି
ନିଷାଦ ବସି ଗରବେ ଗାଏ କୁତୁହଳେ
ପୁରିଷ-ପୁରିତ ଲୌହ-ଶକଟ ଉପରେ ।
ବଧୂଃ ଶୟନେ ବସି ଦିବ୍ୟଲୋଚନରେ
ଦେଖୁଛି ମୁଁ ତବଲୀଳା ହେ କବିଭୂଷଣ ।
ହାତ ଟେକ କିପାଁ ଭଞ୍ଜ-ମୁକୁଟ- ରତନେ
ଜାଣନା କି ଭଞ୍ଜବୀର ଉତ୍କଳ ଭାଷାର
ଯଶସ୍ୱୀ ଜନକ ! ଯାର ଲାଗି ତୁମ୍ଭ ପ୍ରାଣ
ଶୋଭଇ କି ରଙ୍ଗେ ଆଜି ଏହି ଉତ୍କଳରେ
ସୁଖ ସମ୍ମାନ, ପ୍ରଭୁତ୍ୱ, ଧନ ଅର୍ଜନରେ
ହେ ଉପେନ୍ଦ୍ରଭଞ୍ଜ ! ଖେଦ ନ କର କିଞ୍ଚିତେ
ଶୁଣି ଏ କବିଭୂଷଣ ଗୁଣ-କ୍ଷମତାକୁ
ତବ କ୍ଷମାଗୁଣେ, ସେ ଗୁଣେ ତ୍ୟାଗିଲ ହେଲେ
ରାଜନ୍ୟ ଜାତକ - ଉଚ୍ଚ ଆଶା ବେଗବତୀ-
ତଟ- ସମୁଜ୍ଜ୍ୱଳ- ମହାକାଳ ଫଳ ସମ-
ସୁଖ- ରତନ- ବିଭୂଷିତ ନବ୍ୟ ସିଂହାସନେ
ପୂଜି ଦେବୀଙ୍କ ଚରଣେ ଉଲ୍ଲାସ ହୃଦୟେ;
ଉପଦେଶୀ ଆଜି ଯେହ୍ନେ ସେ କବିଭୂଷଣ
ଏପରି କବିତା ଆଦ୍ଧୁଁ ନ ଲେଖିବ କେବେ।
ପାଏ ମାନ ସିନା ! ଯଦି ଉତ୍କୃଷ୍ଟ ଲେଖନୀ
ହୁଏ ନବ ଭାବ ଯୁକ୍ତ ! ଛାଡ ସେ କଥାକୁ -
ଯେଣୁ ରାଧାନାଥ ବିରଚିତ ସୁମନରେ
ପ୍ରଶଂସା ସୁମନ ମାଳେ ତୋଷଇ ତୁମ୍ଭଙ୍କୁ
ମୁର୍ଖେ, ଏ ବିଚାର ଭଣ୍ଡ କବିଭୂଷଣଙ୍କୁ ।

ଶ୍ରୀ ଜୁବରାଜ



Digitized by srujanika@gmail.com

# ସାରସ୍ୱତ ମୁକୁରରେ ସମୁଜ୍ଜ୍ୱଳ ବିନ୍ଦୁ: ଉତ୍କଳବନ୍ଧୁ ବ୍ରଜବନ୍ଧୁ

**ପ୍ରାଗ୍‌ଭାଷା:** ଏକାଧିକ ପତ୍ରିକାର ସମ୍ପାଦକ ଅର୍ଦ୍ଧଶତାଧିକ ପୁସ୍ତକର ରଚୟିତା ପଣ୍ଡିତ ବ୍ରଜବନ୍ଧୁ ମିଶ୍ର ଶର୍ମା ଏକ ଅନାଲୋଚିତ ପ୍ରତିଭା । ଉତ୍କଳବନ୍ଧୁ, ସମ୍ବଲପୁର ହିତୈଷିଣୀ, ଉତ୍କଳ ସେବକ, ଗଡଜାତ ବାସିନୀ ପ୍ରଭୃତି ପତ୍ରିକାର ସମ୍ପାଦନାରେ ସେ ନିଜକୁ ଉତ୍ସର୍ଗ କରିଥିଲେ । ବିଭିନ୍ନ ସମୟରେ କବିତା, ପ୍ରବନ୍ଧ, ଭ୍ରମଣକାହାଣୀ, ନାଟକ ପ୍ରଭୃତି ରଚନା କରି ସେ ନିଜର ସାରସ୍ୱତ ମର୍ଯ୍ୟାଦାକୁ ବହୁଗୁଣିତ କରିଥିଲେ । ୧୮୫୪ ମ.ରେ ସେ ତାଳଚେର ନିଜଗଡ ବ୍ରାହ୍ମଣ ଶାସନରେ ଜନ୍ମଗ୍ରହଣ କରିଥିଲେ । ସେ ଅବିବାହିତ ତାଙ୍କ ବଡଭାଇ ମୀନକେତନ ମିଶ୍ର ବିଦ୍ୟାରତ୍ନଙ୍କ ବଂଶଧର ତାଳଚେରଠାରେ ଅବସ୍ଥାନ କରୁଛନ୍ତି । କିନ୍ତୁ ତାଙ୍କର ବାମଣ୍ଡା ଅବସ୍ଥାନ (୧୮୯୯ ଠାରୁ) ହିଁ ତାଙ୍କ ପ୍ରତିଭାକୁ ବିକଶିତ କରିଥିଲା । ଉତ୍କଳବନ୍ଧୁ ପତ୍ରିକାର ସମ୍ପାଦନା ପରିତ୍ୟାଗ କରି ସେ ୧୮୯୯ ସେପ୍ଟେମ୍ବର ମାସରେ ଦେବଗଡ ଓଡ଼ିଆ ସ୍କୁଲରେ ଶିକ୍ଷକ ରୂପେ ନିଯୁକ୍ତ ହୁଅନ୍ତି । (୧) ବିଦ୍ୟାରତ୍ନଙ୍କ ବାମଣ୍ଡା ପରିତ୍ୟାଗ ପରେ ବ୍ରଜବନ୍ଧୁ 'ସମ୍ବଲପୁର ହିତୈଷିଣୀ'ର ସମ୍ପାଦନା ଦାୟିତ୍ୱ ଗ୍ରହଣ କରନ୍ତି । ସମ୍ବଲପୁର ହିତୈଷିଣୀର ସମ୍ପାଦନା କାର୍ଯ୍ୟ ନିର୍ବାହ ପରିପ୍ରେକ୍ଷୀରେ ସେ ଯେଉଁ ବକ୍ତବ୍ୟ ପ୍ରଦାନ କରନ୍ତି ତାହା ତାଙ୍କର ସାହିତ୍ୟିକ ପ୍ରତିଭାର ଅପୂର୍ବ ଦୃଷ୍ଟାନ୍ତ ବହନ କରେ - '' ପୃଥିବୀର କାର୍ଯ୍ୟକଳାପର ଉନ୍ନତି ନିମନ୍ତେ ମନୁଷ୍ୟର ସୃଷ୍ଟି, ସେହି ସବୁ ଉନ୍ନତିର ପ୍ରଧାନ ସହାୟତା ସାହାସ ଓ ଉତ୍ସାହ। ଈଶ୍ୱର ଆମ୍ଭମାନଙ୍କୁ ଏହି ଉଭୟ ଶକ୍ତିଦାନ କରିଅଛନ୍ତି । ପରମେଶ୍ୱରଙ୍କ ଅନୁଗ୍ରହ ସ୍ମରଣ ରଖି ଆମ୍ଭେମାନେ ଏହି ଶକ୍ତି ଯୁଗଳକୁ ଅପଚୟ ନ କଲେ ଅବଶ୍ୟ କର୍ତ୍ତବ୍ୟ ପାଳନ କରିପାରିବୁ । କର୍ତ୍ତବ୍ୟ ପାଳନ ନିମନ୍ତେ ଶ୍ରମ ସ୍ୱୀକାର କରିବା ପ୍ରତ୍ୟେକ ବ୍ୟକ୍ତିର ଆବଶ୍ୟକ । ଏହି ଆବଶ୍ୟକ ବିଷୟଟି କେବଳ ସ୍ୱକାର୍ଯ୍ୟର ବଶବର୍ତ୍ତୀ ନୁହେଁ, ତାହା ସ୍ୱକାର୍ଯ୍ୟ ଓ ପରକାର୍ଯ୍ୟର ମଧ୍ୟସ୍ଥ ଅଟେ । ସୁତରାଂ ହିତୈଷିଣୀ ପତ୍ରିକାର ଯାବତୀୟ କାର୍ଯ୍ୟକଳାପର ଉନ୍ନତି କେବଳ ଯେ ସମ୍ପାଦକର କର୍ତ୍ତବ୍ୟ କାର୍ଯ୍ୟ ଏମନ୍ତ ନୁହେ । ଏହା ସହଯୋଗୀ ଲେଖକ, ଗ୍ରାହକ ଓ ଅନୁଗ୍ରାହକମାନଙ୍କର କର୍ତ୍ତବ୍ୟ ମଧ୍ୟରେ ଗ୍ରହଣ କରିବାକୁ ହେବ । ସୁତରାଂ କର୍ତ୍ତବ୍ୟାଧିନ ବ୍ୟକ୍ତିମାନଙ୍କର ସାହାସ ଓ ଉତ୍ସାହ ସ୍ମରଣ କରି ମୁଁ ସକଳ ଦୁର୍ଭାବନା ତ୍ୟାଗ କରିଅଛି ।'' (୨)



Digitized by srujanika@gmail.com

ସମ୍ବଲପୁର ହିତୈଷିଣୀର ୮-୧-୧୯୦୨ ସଂଖ୍ୟା ଠାରୁ ତା-୩୦-୩-୧୯୦୪ ପର୍ଯ୍ୟନ୍ତ ସମ୍ପାଦନା ବ୍ରଜବନ୍ଧୁ ନିର୍ବାହ କରିଥିଲେ (୩) ଏ ଅଢ଼େଇ ବର୍ଷର ସଂଖ୍ୟାଗୁଡିକ ଅନୁଧ୍ୟାନ କଲେ ବ୍ରଜବନ୍ଧୁଙ୍କର ସମ୍ପାଦନାର ବଳିଷ୍ଠତା ପ୍ରମାଣିତ ହୁଏ । ଏହି ସଂଖ୍ୟାଗୁଡିକରେ ସାହିତ୍ୟ ପ୍ରତି ଅଧିକ ଗୁରୁତ୍ୱ ଦିଆଯାଇଛି ।

୧୯୧୩ ବେଳକୁ ସମ୍ବଲପୁର ଫ୍ରେଜର ପ୍ରେସରେ ପଣ୍ଡିତ ଧରଣୀଧର ମିଶ୍ର ପ୍ରମୁଖଙ୍କ ପୃଷ୍ଠପୋଷକତାରେ 'ଉତ୍କଳ ସେବକ' ସାପ୍ତାହିକ ପତ୍ରିକା ପ୍ରକାଶ ଲଭେ ।(୪) ଏ ପତ୍ରିକାର ସମ୍ପାଦନା ବ୍ରଜବନ୍ଧୁ ଗ୍ରହଣ କରନ୍ତି ।'' ଉତ୍କଳ ସେବକ'' ବ୍ରଜବନ୍ଧୁଙ୍କ ସମ୍ପାଦନାରେ ସମ୍ବାଦପତ୍ର କ୍ଷେତ୍ରରେ ଉତ୍କର୍ଷତାକୁ ସ୍ପର୍ଶ କରେ । ସମ୍ବଲପୁର ଭାଷା ଆନ୍ଦୋଳନ ପ୍ରଭୃତିରେ ଏ ପତ୍ରିକା ନିଜର ରୁଚିପୂର୍ଣ୍ଣ ଦିଗ୍‌ଦର୍ଶନ ଦେଇଛି । (୫) ପରେ ପରେ ସ୍ୱପ୍ନେଶ୍ୱର ଦାସ, ଶଙ୍କର ପ୍ରସାଦ ପାଢ଼ି ପ୍ରମୁଖ ଏହାର ସମ୍ପାଦନା ଗ୍ରହଣ କରନ୍ତି । (୬)

୧୯୩୩-୩୪ ବେଳକୁ ବ୍ରଜବନ୍ଧୁ ''ଗଡଜାତ ବାସିନୀ''ର ସମ୍ପାଦନା ଗ୍ରହଣ କରନ୍ତି । (୭) ଏ ପତ୍ରିକା ତାଳଚେର ମହାରାଜାଙ୍କ ଅର୍ଥାନୁକୂଲ୍ୟରେ 'କିଶୋର ପ୍ରେସ୍'ରେ ମୁଦ୍ରିତ ହେଉଥିଲା । (୮) ଏ ପତ୍ରିକାରେ ସାହିତ୍ୟ ପ୍ରତି ସମ୍ବାଦ ସହିତ ସମଧିକ ସମ୍ମାନ ଦିଆଯାଉଥିଲା । କବିତା, ଗଳ୍ପ, ପୁସ୍ତକ ସମାଲୋଚନା ପ୍ରଭୃତି ଏ ପତ୍ରିକାରେ ନିୟମିତ ପ୍ରକାଶ ପାଉଥିଲା । ଗଡଜାତର ସମ୍ବାଦ ସହ, ଭାରତର ତଥା ପୃଥିବୀର ବିଭିନ୍ନ ସମ୍ବାଦ ଗଡଜାତ ବାସିନୀ ପରିବେଷଣ କରୁଥିଲା । ବିଭିନ୍ନ ରୋଗ ଚିକିତ୍ସା, ଅନ୍ୟ ପତ୍ରପତ୍ରିକାରୁ ଜ୍ଞାତବ୍ୟ ବିଷୟ ପ୍ରଭୃତି ସଂଗୃହୀତ ହୋଇ ପ୍ରକାଶ ପାଉଥିଲା । (୯) ଗଡଜାତ ବାସିନୀ ୧୯୩୦-୩୪ ମଧ୍ୟରେ ଗଡଜାତର ଏକମାତ୍ର ସମ୍ବାଦପତ୍ର ଥିଲା । (୧୦) କାରଣ 'ସମ୍ବଲପୁର ହିତୈଷିଣୀ', 'ଉତ୍କଳ ସେବକ' ପରେ 'ଗଡଜାତବାସିନୀ' ହିଁ ଏକମାତ୍ର ପ୍ରକାଶ ପାଉଥିବା ପତ୍ରିକା । ଗଡଜାତ ବାସିନୀର ପ୍ରତି ଛତ୍ରେ ଛତ୍ରେ ବ୍ରଜବନ୍ଧୁଙ୍କର ସମ୍ପାଦନାର ବଳିଷ୍ଠତା ପ୍ରତିଫଳିତ । ଏହାର ପ୍ରତି ସଂଖ୍ୟାରେ ବିଭିନ୍ନ ସାରସ୍ୱତ କୃତିର ସଫଳ ସମାବେଶ ସହିତ ସମ୍ପାଦକ ଏକ ପଦ ବିଶିଷ୍ଟ ଏକ ପଦ୍ୟ ପ୍ରକାଶ କରୁଥିଲେ । ଯାହାକି ବେଶ୍ ରସସ୍ନିଗ୍ଧ ହୋଇପାରୁଥିଲା ।

କେତେଥର ଥର ଗାଇବି ମୋହର
ଦୁଃଖ ଅବା କିଏ ଶୁଣିବ
ଯେ ଅବା ଶୁଣନ୍ତା କଷଣ ହରନ୍ତା
ତାକୁ କାଳା କଲା ଦଇବ । (୧୧)



Digitized by srujanika@gmail.com

ଉଲ୍ଲିଖିତ ପତ୍ରିକା ସମୂହର ସମ୍ପାଦନା ଅନ୍ତରାଳରେ ବିଭିନ୍ନ କବି, ସାହିତ୍ୟିକଙ୍କ ସଂସ୍ପର୍ଶରେ ଆସି ବ୍ରଜବନ୍ଧୁଙ୍କ ସାରସ୍ୱତ ସାଧନା ବହୁଗୁଣିତ ହୁଏ । ସମ୍ବେଦନଶୀଳ କବି ହୃଦୟ ତାଙ୍କର ବିଭିନ୍ନ ପରିବେଶରେ ଅନୁରୂପ ପ୍ରତିକ୍ରିୟା ପ୍ରକାଶ କରିଛି । ସୃଷ୍ଟି ଓ ଦୃଷ୍ଟିର ବ୍ୟାପକତା ମଧ୍ୟରେ ଆଙ୍କି ଯାଇଛି ଜୀବନର ଅନୁପମ ହରରଂଗୀ ବିଭାବ ସବୁକୁ। ଏ ଉଦ୍ୟମରେ ବ୍ରଜବନ୍ଧୁ କେତେଦୂର ସଫଳ ହୋଇଛନ୍ତି, କେତେଦୂର ଧରି ପାରିଛନ୍ତି ଜୀବନର ବ୍ୟାପ୍ତିକୁ, ତା'ର ଅନୁଶୀଳନ କରିବା ହିଁ ଏ ପ୍ରବନ୍ଧର ଆଭିମୁଖ୍ୟ ।

**ସୃଷ୍ଟିଶୀଳ ପ୍ରତିଭାର ଭିତ୍ତି :**

ଦୁଃଖ କୁ ନିଜର କରି ପାରିଥିବା, ଦୁଃଖକୁ ଫୁଟ୍‌କିଟିଏ ମାରି ସୁଖର ଚଉତିଶା ଗାଇ ପାରୁଥିବା ଏକ ଦୁର୍ଲଭ ପ୍ରତିଭା ପଣ୍ଡିତ ବ୍ରଜବନ୍ଧୁ ମିଶ୍ର । ଏ ସୃଷ୍ଟିଶୀଳ ପ୍ରତିଭାର ଭିତ୍ତି ଓ ବିଭୂତି ବାମଣ୍ଡାର ସାରସ୍ୱତ ପୃଷ୍ଠଭୂମି ଦ୍ୱାରା ସୁନିୟନ୍ତ୍ରିତ । ବାମଣ୍ଡାର ସୁଯୋଗ୍ୟ ନରପତି ବାସୁଦେବ ସୁଢ଼ଳଦେବ ଏବଂ ସଚ୍ଚିଦାନନ୍ଦଙ୍କ ସାରସ୍ୱତ ପ୍ରେମ ଅନ୍ତରାଳରେ ବ୍ରଜବନ୍ଧୁଙ୍କ କାବ୍ୟ ଜୀବନ ସୁରକ୍ଷିତ । ତାଙ୍କର ସାହିତ୍ୟିକ ପ୍ରତିଭାରେ ମୁଗ୍ଧ ହୋଇ ସୁଢ଼ଳଦେବ ତାଙ୍କୁ ବାମଣ୍ଡାରେ ଶିକ୍ଷକତା କରିବା ପାଇଁ ନିମନ୍ତ୍ରଣ କରି ଆଣନ୍ତି । ତାଙ୍କୁ ବାମଣ୍ଡା ପଣ୍ଡିତ ସଭାର ଅନ୍ୟତମ ସଦସ୍ୟ ରୂପେ ବରଣ କରାଯାଏ । ବାମଣ୍ଡା ଆଲୋଚନା ସଭାର ବିଭିନ୍ନ ଅଧିବେଶନରେ ସେ ସକ୍ରିୟ ଭାଗ ନିଅନ୍ତି ।

ବାମଣ୍ଡା ବ୍ରାହ୍ମଣ ସମାଜ ବାଲ୍ୟ ବିବାହ ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । ଏଥିରେ ବ୍ରଜବନ୍ଧୁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । (୧୨) ୧୦-୮-୧୮୯୯ ଦିନ ଆଲୋଚନା ସଭାରେ ବ୍ରଜବନ୍ଧୁ ହିନ୍ଦୁମାନଙ୍କ ଯାବତୀୟ କାର୍ଯ୍ୟ ପବିତ୍ରତା ମୂଳକ ଥିବା ଏବଂ ବିଶ୍ୱାସର ସହିତ ତାହା ଆଚରଣ କରିବା ସମ୍ବନ୍ଧେ ଗୋଟିଏ ବକ୍ତୃତା ଦେଇଥିଲେ ।(୧୩) ୧୭-୧୦-୧୯୦୯ ଦିନ ବାମଣ୍ଡାର କ୍ଲବ ଉଦ୍‌ଘାଟନ ଅବସରରେ କ୍ଲବର ଗୁରୁତ୍ୱ ଉପରେ ବ୍ରଜବନ୍ଧୁ ଏକ ବକ୍ତୃତା ଦେଇଥିଲେ । (୧୪) ୭-୧-୧୯୧୩ ଭକ୍ତ କବି ମଧୁ ରାଓଙ୍କ ତିରୋଧାନରେ ଅନୁଷ୍ଠିତ ସ୍ମୃତି ସଭାରେ '' ମଧୁରାଓଙ୍କ ସାହିତ୍ୟସେବା ଓ ଉତ୍କଳ ସାହିତ୍ୟର ପୁଷ୍ଟି'' ଶୀର୍ଷକରେ ଆଲୋଚନା କରିଥିଲେ । (୧୫) ଏପରି ଅନେକ ସମୟରେ ବ୍ରଜବନ୍ଧୁ ବିଭିନ୍ନ ବିଷୟରେ ନିଜର ସୁଚିନ୍ତିତ ବକ୍ତବ୍ୟ ପେଶ୍ କରିଛନ୍ତି ।

ଦେବଗଡର ଆଲୋଚନା ସଭା ଏକ ମାସିକ ସାହିତ୍ୟ ପତ୍ରିକା ' ଆଲୋଚନା' ପ୍ରକାଶ କରିବାର ସ୍ଥିର କରେ । ଏହି ପତ୍ରିକାର ସମ୍ପାଦକତ୍ୱ ଜଳନ୍ଧର ଦେବ ଗ୍ରହଣ



Digitized by srujanika@gmail.com

କରନ୍ତି । 'ଆଲୋଚନା' ପ୍ରକାଶ ପାଇଁ ପଣ୍ଡିତ ବ୍ରଜବନ୍ଧୁ ଏକ କାଳୀନ ପାଞ୍ଚଟଙ୍କା ଉକ୍ତ ସଭାରେ ସାହାଯ୍ୟ ରୂପେ ପ୍ରଦାନ କରନ୍ତି। (୧୬) ଏ ପତ୍ରିକା ନିଜର ସ୍ୱଳ୍ପ ଜୀବନ କାଳ ମଧ୍ୟରେ ଓଡ଼ିଆ ସାହିତ୍ୟର ଆଲୋଚନା କ୍ଷେତ୍ରରେ ଯୁଗାନ୍ତର ଆଣିପାରିଥିଲା । ଏମିତି ବାମଣ୍ଡାର ପ୍ରତ୍ୟେକ ସାଂସ୍କୃତିକ ଓ ସାହିତ୍ୟିକ କାର୍ଯ୍ୟକ୍ରମରେ ପଣ୍ଡିତ ବ୍ରଜବନ୍ଧୁଙ୍କର ମୁଖ୍ୟ ଭୂମିକା ରହିଥିଲା । ଉଲ୍ଲିଖିତ ପୃଷ୍ଠଭୂମି ମଧ୍ୟ ଦେଇ ଗଢ଼ି ଉଠିଥିଲା ବ୍ରଜବନ୍ଧୁଙ୍କ ସାହିତ୍ୟିକ ପ୍ରତିଭା ।

**ସୃଷ୍ଟି କର୍ମର ପର୍ଯ୍ୟାଲୋଚନା:**

ପଣ୍ଡିତ ବ୍ରଜବନ୍ଧୁ ମିଶ୍ର ଏକାଧାରରେ କବି, ଗାଳ୍ପିକ, ସମାଲୋଚକ ଓ ନାଟ୍ୟକାର । ସେ ସାହିତ୍ୟର ସମସ୍ତ ବିଭାଗରେ ଯଥାସାଧ୍ୟ ଲେଖନୀ ଚାଳନା କରିଛନ୍ତି । ସେ ଅନେକ କାବ୍ୟ କବିତା ପ୍ରଣୟନ କରିଛନ୍ତି । କିଛି ପ୍ରକାଶିତ ଅନେକ ଅପ୍ରକାଶିତ ହୋଇ ଲୋକଲୋଚନ ଅଗୋଚରରେ ରହିଯାଇଛି । ତାଙ୍କର ସୃଷ୍ଟିକୁ ନିମ୍ନ ପ୍ରକାରେ ଆଲୋଚନା କରାଯାଇପାରେ ।

(କ) କାବ୍ୟ କବିତା

(ଖ) ଯାତ୍ରା ନାଟକ

(ଗ) ଆଲୋଚନା

**କ: କାବ୍ୟ କବିତା:**

ବ୍ରଜବନ୍ଧୁ ଅଜସ୍ର କାବ୍ୟ କବିତା ରଚନା କରି ଯାଇଛନ୍ତି । କବିତା ମଧ୍ୟରେ ଜୀବନକୁ, ଜଗତକୁ, ସେ ପ୍ରଦକ୍ଷିଣ କରିଛନ୍ତି । ଇତିହାସଠାରୁ ପୁରାଣ, ଧର୍ମଠାରୁ ଜୀବନକୁ ସେ ଅଙ୍ଗିଆର କରିଛନ୍ତି କବିତାର କଳାରେ, ତାଙ୍କ କବିତା ପୁସ୍ତକର ଲମ୍ବା ତାଲିକା ରହିଛି । କେତେ ପୁସ୍ତକ ସଂପ୍ରତି ଦୁଷ୍ପ୍ରାପ୍ୟ ସେ ସମୟର ପ୍ରକାଶିତ ଅନେକ ପତ୍ରପତ୍ରିକାରେ ସେ ଲେଖୁଥିଲେ । ବିଭିନ୍ନ ରାଜା ରାଜୁଡାଙ୍କ ପୃଷ୍ଠପୋଷକତାରେ ଅନେକ ବହି ପ୍ରକାଶ ଲଭିଛି । ଏ ପ୍ରସଙ୍ଗରେ ଲେଖକର ଦୃଷ୍ଟିରେ ଆସିଥିବା ବ୍ରଜବନ୍ଧୁଙ୍କ କବିତାଗୁଡିକର ଏକ ସୂକ୍ଷ୍ମ ଅନୁଧ୍ୟାନ ମାତ୍ର କରାଯାଇଛି ।

ସେ ତାଙ୍କର ଛାତ୍ର ଜୀବନରେ ପ୍ରଥମେ 'ସଦ୍ୟୋଜାତ ସ୍ତବ', 'ଦୁର୍ଗାସ୍ତବ' ଓ ଛାନ୍ଦମନାସ ନାମକ ତିନିଖଣ୍ଡ କବିତା ପୁସ୍ତକ ଲେଖିଥିଲେ । ସେଥିରେ ରାଧାନାଥ ବାବୁଙ୍କର ଦୃଷ୍ଟି ପଡିଥିଲା । ସେ ମଧ୍ୟ ତାଙ୍କୁ ଧନ୍ୟବାଦ ଦେଇଥିଲେ । ତାହାପରେ ତାଙ୍କର 'ଉତ୍କଳ ଦୀପିକା'ରେ ଗୋଟିଏ ପଦ୍ୟ ପ୍ରକାଶିତ ହୋଇଥିଲା । ପଦ୍ୟଟିର ପ୍ରଥମ



Digitized by srujanika@gmail.com

ପାଦ ଥିଲା -

'' ପୂତ ଯଶସ୍ୱିନୀ ଉତ୍କଳ ଜନନୀ

କହ ମାତଃ, କିପାଁ ବିରସ ବଦନୀ ?''

ଏହି ପଦ୍ୟରେ ସେ ଉତ୍କଳର ବହୁ ସମ୍ମାନସ୍ପଦ ବ୍ୟକ୍ତିଙ୍କ ଦ୍ୱାରା ଅଭିନନ୍ଦିତ ହୋଇଥିଲେ । ଏହିଠାରୁ ତାଙ୍କର କବି ଜୀବନର ଆରମ୍ଭ ହୋଇଥିଲା । (୧୭)

ବଉଦର ରାମଗଡ଼ଠାରେ ଶିକ୍ଷକତା କରୁଥିଲାବେଳେ ତାଙ୍କର ପ୍ରେମବାଣୀ (୧୮୯୩), ଶ୍ରୀକୃଷ୍ଣ ସ୍ତବ ପ୍ରଭୃତି ପୁସ୍ତକ ପ୍ରକାଶିତ । ପ୍ରେମବାଣୀ ପୁସ୍ତିକାଟି କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରେସରେ ୧୮୯୩ରେ ମୁଦ୍ରିତ। ଏହି କ୍ଷୁଦ୍ର କବିତାଟି 'କାମୋଦୀ' ରାଗରେ ରଚିତ ଏବଂ ପନ୍ଦର ପଦ ବିଶିଷ୍ଟ । ରୀତି ଯୁଗୀୟ କାବ୍ୟ ଲକ୍ଷଣ ଏଠାରେ ସୁପ୍ରକାଶିତ ଏହା ନିର୍ଦ୍ଦିଷ୍ଟ ବର୍ଗ୍ୟ ବର୍ଣ୍ଣାଦ୍ୟ କବିତା । କଚଟତପ ଗଜଡଦବ ବର୍ଣ୍ଣ କ୍ରମରେ ପ୍ରତିଟି ପଂକ୍ତି ଅଳଙ୍କୃତ । ନୀଳୋତ୍ପଳ ମାଳତୀ, ଚଂପାଦି ଜୁଇ ଜାତି, ଉଦ୍ୟାନେ ବିକଶିଲେ ଅତି, ନଆସଇ ଭାରତୀ, ଶୋଭା ବର୍ଣ୍ଣନେ ସତି, ଅନାଥ ଉପବନ ପ୍ରତିରେ , ନବାଙ୍ଗନା । ନିରନ୍ତରେ ସେବା ସକତି, ନିତ୍ୟ ଯେ ମଧୁପର ମତି ନବସୁମନା ପ୍ରତି, ପ୍ରକାଶେ ନାନା ସ୍ତୁତି, ରଚିବ ବୋଲି ତାରେ ପ୍ରୀତିରେ । (ପୃ-୬)

ଶ୍ରୀକୃଷ୍ଣ ସ୍ତବ କାବ୍ୟଟି ୧୨ ପଦର ଏକ ସ୍ତବ । କଚଟତପ ଗଜଡଦବ ମ ଓ କ୍ଷ ବର୍ଗ ବର୍ଣ୍ଣାଦ୍ୟରେ ଏହି କବିତାଗୁଡିକ ରଚିତ । ଏହା ମୁଖ୍ୟତଃ ସ୍ତବ ହୋଇଥିବାରୁ କଳାତ୍ମକ ମୂଲ୍ୟବୋଧ ଅପେକ୍ଷା କାବ୍ୟଶୈଳୀ ଓ ବର୍ଣ୍ଣନାରେ ଅଧିକ ଗୁରୁତ୍ୱାରୋପ କରାଯାଇଛି । ରସକୋଇଲା ରାଗରେ ପଦ୍ୟଗୁଡିକ ରଚିତ । ପ୍ରାଚୀନ କାବ୍ୟ ପରଂପରା ଏହି କବିତାରେ ନିବିଡ ଭାବେ ଅନୁସୃତ । ଯମକ ଓ ଶ୍ଳେଷ ପୂର୍ଣ୍ଣ ଏ କବିତା ପ୍ରାଚୀନ କାବ୍ୟ ଗ୍ରାହକଙ୍କର ମନୋହରଣ କରିପାରିଥିଲା । ଫଳରେ ଏହା ଏକାଧିକ ସଂସ୍କରଣରେ ମୁଦ୍ରିତ ହୋଇଛି । ପ୍ରଥମପାଦରୁ କାବ୍ୟର ଉତ୍କର୍ଷତା ସୁସ୍ପଷ୍ଟ -

''କଳାପ ଚୂଳୀୟା ମୁରଲୀଧର

କଳାପ ଘନୀୟା ରାଧିକା ବର

କମଳ ଚରଣ ଯୁଗଳ ସ୍ମରି

କମଳ ବୁହାଇ ନେତ୍ରୁଁ ଗୁହାରି ସେ ।

କରେ କର ଯୁଗ ଯୋଡିଯେ

କମଳା-ସୁରତ ଲଂପଟ ଦୁରିତ



Digitized by srujanika@gmail.com

ସାଗରେ ମୁଁ ଗଲି ବୁଡିହେ । ୧। (ପୃ-୧)

ବଉଦର ରାମଗଡଠାରେ ଶିକ୍ଷକ ଥିଲାବେଳେ ସେ 'ପ୍ରେମବାଣୀ' ପୁସ୍ତକ ରଚନା କରିଥିଲେ । (୧୮) କିନ୍ତୁ ସମ୍ବଲପୁର ହିତୈଷିଣୀରେ 'ଆଠମଲ୍ଲିକର ପଞ୍ଚଧାରା ପର୍ବତ କବିତା ପ୍ରକାଶ ଲଭିବା ପରେ ସେ ସୁଡ଼ଳଦେବଙ୍କ ଆଦରଣୀୟ ହୋଇଥିଲେ । (୧୯) ଫଳରେ ସେ ବାମଣ୍ଡା ଆସି ଶିକ୍ଷକତା କାର୍ଯ୍ୟରେ ଯୋଗ ଦେଇଥିଲେ ।

ବାମଣ୍ଡା ରହଣୀ ମଧ୍ୟରେ ତାଙ୍କର 'ପଞ୍ଚ ଧାରା ବୀଣାପାଣି, ଦୁଃଖିନୀ, ବିଷାଦିନୀ, କୁସୁମଲତା, ଜୀବନ ଦର୍ପଣ, ଉପଦେଶ ସୁଧାନିଧି, ନବସଙ୍ଗୀତ, ନୂଆ ରାଣୀ ଜଣାଣ, ଭୀଷ୍ମ ଶରଶଯ୍ୟା, ସୁଡ଼ଳ କୋଇଲି , ଚିତ୍ର ସମନ୍ୱୟ, ଜହ୍ନ ମାମୁଁ, ବାଳୀବଧ, ଆଲେଖ୍ୟଗୀତି ବାଲ୍ମୀକି ପ୍ରଭୃତି କବିତା ପୁସ୍ତକ ପ୍ରକାଶ ଲଭି ଓଡ଼ିଆ କାବ୍ୟ ସାହିତ୍ୟରେ ତାଙ୍କୁ ପ୍ରତିଷ୍ଠା ଆଣି ଦେଇଥିଲା ।

ତାଳଚେର ରହଣୀ ସମୟରେ ପ୍ରାର୍ଥନା, ତାଳଚେର ପ୍ରଶସ୍ତି, ବସନ୍ତ କାନନ, କୌତୁକ ଗୀତି ପ୍ରଭୃତି କାବ୍ୟ କବିତା ପ୍ରକାଶ ଲଭିଥିଲା ।

ବ୍ରଜବନ୍ଧୁ ନିରବଚ୍ଛିନ୍ନ ଭାବେ କାବ୍ୟ ରଚନା କରୁଥିଲେ । ଯେକୌଣସି ବିଷୟ ହେଉ ତା' ଉପରେ ସଫଳ କବିତାଟିଏ ରଚନା କରିବାର ଶକ୍ତି ତାଙ୍କର ଥିଲା । ମୁଖ୍ୟତଃ ସେ ଥିଲେ ପ୍ରାଚୀନ ପଂଥି । ବାମଣ୍ଡା ଦରବାରରେ ରାଧାନାଥ - ମଧୁସୂଦନ ପ୍ରଭୃତିଙ୍କ ସଂସ୍ପର୍ଶରେ ଆସି ଆଧୁନିକ ଭାବ ସମ୍ବଳିତ କବିତା ରଚନା କରୁଥିଲେ । ପୌରାଣିକ ବିଷୟ ଗର୍ଭିତ 'ବାଳୀବଧ', ବାଲ୍ମୀକି, ଦୁର୍ଗାସ୍ତବ, କୀଚକବଧ, ଭୀଷ୍ମ ଶରଶଯ୍ୟା ପ୍ରଭୃତି ତାଙ୍କର ଅଭିନବ ସୃଷ୍ଟି, ଭୀଷ୍ମ ଶରଶଯ୍ୟା ତାଙ୍କର ସର୍ବଶ୍ରେଷ୍ଠ କୃତି । ଏହାକୁ ସେ ୧୦୦ ଶଯ୍ୟାରେ ସମାପ୍ତ କରିବାର ଯୋଜନା କରିଥିଲେ । କିନ୍ତୁ ଏହାର ୧ ଠାରୁ ୩ ଶଯ୍ୟା ସଂପୂର୍ଣ୍ଣ ଏବଂ ୪ର୍ଥ ଶଯ୍ୟା ଅସଂପୂର୍ଣ୍ଣ ଭାବେ ୧୬ ପୃଷ୍ଠାର ଏକ ପୁସ୍ତକ ବାମଣ୍ଡା ପ୍ରେସରୁ ପ୍ରକାଶିତ ।(୨୦)

ପାରମ୍ପରିକ ଉଚ୍ଚାରଣ ବ୍ୟତୀତ ପ୍ରକୃତି ବର୍ଣ୍ଣନା ମୂଳକ କାବ୍ୟ ରଚନାରେ ସେ ସିଦ୍ଧହସ୍ତ ଥିଲେ । ଏ ପର୍ଯ୍ୟାୟରେ ପଞ୍ଚଧାରା, କୁସୁମ ଲତା, ବସନ୍ତ କାନନ, ଶିଶିର ପଲ୍ଲୀ ପ୍ରଭୃତି କାବ୍ୟକୁ ଗ୍ରହଣ କରାଯାଇପାରେ ।

**ବୀଣାପାଣି (୧୮୯୭):** ଓଡ଼ିଆ ସାହିତ୍ୟରେ ଏହା ଏକ ଅନନ୍ୟ ଏବଂ ଦୁଃସାହାସିକ ପଦକ୍ଷେପ । ଏ କ୍ଷୁଦ୍ର କବିତାଟି ମୁଖ୍ୟତଃ ରାଧାନାଥଙ୍କ ଚିଲିକା କାବ୍ୟର ଯୁଗାନ୍ତକାରୀ ଶୋକଚ୍ଛ୍ୱାସ-



Digitized by srujanika@gmail.com

'' ଦେବି ବୀଣାପାଣି କେଉଁ ପାପ ଫଳେ

କରୁଣା ତୋହରା ଊଣାଏ ଉତ୍କଳେ '' ଉପରେ ପର୍ଯ୍ୟବେସିତ । ଏ କରୁଣାତ୍ମକ ଭାବଧାରାକୁ ଆହୁରି ତୀବ୍ର ଆହୁରି ପରିବ୍ୟାପ୍ତ କରିବା ପାଇଁ ପଣ୍ଡିତ ବ୍ରଜବନ୍ଧୁ ''ବୀଣାପାଣି'' ସମନ୍ୱୟ ରଚନା କରିଛନ୍ତି । ଏ ସମନ୍ୱୟ ରଚନାର ଧାରା ଓଡ଼ିଆ ସାହିତ୍ୟରେ ସେହିଁ ସୃଷ୍ଟି କରିଥିଲେ । ଏ ଧାରା ଆହୁରି ରସଘନ ଓ ସୁଦୂର ପ୍ରସାରୀ ହୋଇଛି ତାଙ୍କର ଚିତ୍ର ସମନ୍ୱୟ ପୁସ୍ତକରେ । ଚିଲିକାର ଉଲ୍ଲିଖିତ ପଦଟିର ଦଶଟି ସମନ୍ୱୟ ସେ ରଚନା କରିଛନ୍ତି । ପ୍ରଥମ ସମନ୍ୱୟ ନିମ୍ନରେ ଉଦ୍ଧୃତ ହେଲା ।

(୧)

ପବିତ୍ର ହୃଦୟା ପ୍ରସନ୍ନ ବଦନା
ନିତି ପୂଜନୀୟା ସୁଶୁକ୍ଳବସନା
ମାନବ ଜୀବନେ ଉଲ୍ଲାସ ଦାୟିନି
''ଚିଦାନନ୍ଦମୟି'' କୃପାସ୍ୱରୂପିଣି
ଅଖିଳ ଅବନୀ ଜାଗ୍ରତ କାରିଣି
କୁମୁଦ ହାସିନି ମଧୁର ଭାଷିଣି
ଜ୍ୟୋତ୍ସ୍ନାମୟି, ଜ୍ୟୋତ୍ସ୍ନା ଆସନ ମଣ୍ଡନା
''ବିଧାତାର ବାଣୀ'' ତ୍ରିଲୋକ ବନ୍ଦନା
ଦେବି ବୀଣାପାଣି ! କେଉଁ ପାପ ଫଳେ

କରୁଣା ତୋହର ଊଣା ଏ ଉତ୍କଳେ ।'' ପ୍ରତିଟି ପଦରେ ଉତ୍କଳର ପ୍ରାକୃତିକ ବିଭବର ଜୟଗାନ କରାଯାଇଛି । ମାଳ୍ୟଗିରି, ମେଘସନ, ମହାନଦୀ, କପିଳାଶ, ପଞ୍ଚଧାରା ପ୍ରଭୃତି ପ୍ରକୃତି ଆଲେଖ୍ୟ ଲୋକଲୋଚନ ଅଗୋଚରରେ ରହିଯାଇଥିବା ବେଳେ ଗୋବର୍ଦ୍ଧନ, ଶିପ୍ରା ପ୍ରଭୃତି ବିଖ୍ୟାତ ହୋଇଛି । ଉତ୍କଳର ଏ ଅଭାଗ୍ୟ ଦୂରୀଭୂତ ହେଉ । ଉତ୍କଳ ସନ୍ତାନ ମୋର ପୂଜାରେ ଉନ୍ମୁଖ ହୋଇଉଠନ୍ତୁ । କବି ମୁଖରୁ ଅସହାୟତାର ବାଣୀ ଗୁଞ୍ଜରି ନ ଉଠୁ ଏହାହିଁ ବ୍ରଜବନ୍ଧୁଙ୍କ କାମନା ।

'ଉଲ୍ଲସି ଉତ୍କଳ ଦେଖାଉ ବଦନ
ଲାଗୁଲେ। ଉତ୍ସବେ ମାନବ ଜୀବନ
ନବ ନବ ପୁଷ୍ପେ ଗୁନ୍ଥି ନାନାହାର
ଆନନ୍ଦେ ଭାବୁକେ ଅର୍ପନ୍ତୁ ଗଳାର



Digitized by srujanika@gmail.com

ଚରଣେ ପଡି ମୁଁ କରୁଛି ବିନତି
ନ କୁହାଅ କବି ମୁଖେ ଏ ଭାରତୀ
'' ଦେବି ବୀଣାପାଣି କେଉଁ ପାପ ଫଳେ
କରୁଣା ତୋହର ଊଣାଏ ଉତ୍କଳେ ।'' (ପୃ-୮)

**ବସନ୍ତ କାନନ:** ଏହି କ୍ଷୁଦ୍ର ପୁସ୍ତିକାଟି ଢ଼େଙ୍କାନାଳ ସୁରପ୍ରତାପ ପ୍ରେସରେ ୧୯୨୦ରେ ପ୍ରକାଶିତ । ବସନ୍ତ ଋତୁରେ ଅରଣ୍ୟର ନୈସର୍ଗିକ ଶୋଭା ଭାବ ଆବେଦନକ୍ଷମ ଭାଷାରେ କବି ବର୍ଣ୍ଣନା କରିଛନ୍ତି । ପୁଷ୍ପଫଳ ଶୋଭିତ ବୃକ୍ଷରାଜିର ଅନବଦ୍ୟ ବର୍ଣ୍ଣନାରେ କବିତା ହୋଇଛି ଶୁଚିଶୁଭ୍ର । କିଛି ଅତି ପରିଚିତ ଗଛର ବର୍ଣ୍ଣନା କାବ୍ୟ କବିତାରେ ଦୃଷ୍ଟିଗୋଚର ହୋଇଥାଏ କିନ୍ତୁ କବିଙ୍କ ଏହି କାବ୍ୟରେ ଅନେକ ପ୍ରକାର ଜଣାଅଜଣା ବୃକ୍ଷଲତାର ସବିଶେଷ ବର୍ଣ୍ଣନା ରହିଛି ।

ବନଦେବୀଙ୍କର ବସନ୍ତ କାଳୀନ ସିଙ୍ଗାର କରିବା ପାଇଁ
ସୁନାରୀ ସୁନାରୀ ଟାହିଆ ଧଇଲା ବନାନ୍ତେ ବନାନ୍ତେ ଥାଇ
ଗିରି ପାଦଦେଶେ ଫୁଟିଲା ଧାତୁକୀ ନିନ୍ଦି ନବ ରବିକର
ପାଟଳି କଳିକା ଝଳି ଉପହାସ କଲା ତାକୁ ନିରନ୍ତର ।
ଫୁଟିଲା ପିଆଳ ଫୁଲ ବଉଳକୁ ଧଇଲା ଶାଳ ସୁନ୍ଦରେ
ଅନାର୍ଯ୍ୟ କୁମାରୀ ଝରାକେରା ପରି ଖୋସିଲେ ଖୋସା ତଳରେ । (ବସନ୍ତ କାନନ - ପୃ-୯)

''ମଧୁରେ ମଧୁରେ ଋତୁ ରାଜ ମଧୁ
କାନନେ କାନନେ ଚରି,
ପାଦପେ ପାଦପେ କି ମନ୍ତ୍ର ନିହିଲା
''ସୁର ସୁର'' ନାଦ କରି ।
ଖସିଲା ପୁରାଣ- ପଲ୍ଲବ ରାଜିଲା
ନବୀନ ପ୍ରବାଳ ଜିଣା,
ଋତୁରାଜଙ୍କର ଶୁଭ ଆଗମନେ
ସୁରଙ୍ଗ କେତନ ସିନା ।
ମନ୍ଦ ମନ୍ଦ ଗନ୍ଧ - ବହ ବହିଲାଣି
ଦକ୍ଷିଣୁ ମଳୟା ନିଳ,


Digitized by srujanika@gmail.com

ବିହରି ବିହରି ନେଲାଣି ଜୀବନୁଁ
ଜୀବନୁ ପୂର୍ବ ଆବିଳ ।'' (ବସନ୍ତ କାନନ ) (୨୧)

ପ୍ରକୃତି ପ୍ରତି ଏକ ତୀବ୍ରତମ ନିଷ୍ଠାରେ ଏହି କାବ୍ୟର ପ୍ରତିଟି ସ୍ତର ଗୁଞ୍ଜରିତ ।

**ଜୀବନ ଦର୍ପଣ**(୨୨) ଏକ ଉପଦେଶ ଧର୍ମୀ ଅନନ୍ୟ ସୃଷ୍ଟି । ଏ ପୁସ୍ତକ ମଧ୍ୟପ୍ରଦେଶର ଶିକ୍ଷା ବିଭାଗ ଦ୍ୱାରା ଲାଇବ୍ରେରୀ ଓ ପ୍ରାଇଜ ପୁସ୍ତକ ରୂପେ ମନୋନୀତ ହୋଇଥିଲା । ଜୀବନ ଦର୍ପଣ ସେ ସମୟର ସମସ୍ତ ଶିକ୍ଷିତ ବ୍ୟକ୍ତିଙ୍କର ପ୍ରଶଂସା ଲାଭ କରିଥିଲା । (୨୩) ସଂସ୍କୃତ ଭାଷାରେ 'ଚାରୁଚର୍ଚ୍ଚା'' ନାମକ ଉତ୍କୃଷ୍ଟ ଗ୍ରନ୍ଥପଢ଼ି ବାମଣ୍ଡାଧିପତି ସୁଢ଼ଳଦେବ ସେହିପରି ଏକ ଦୃଷ୍ଟାନ୍ତ ଧର୍ମୀ କବିତା ପୁସ୍ତକ ପ୍ରଣୟନ ପାଇଁ ବ୍ରଜବନ୍ଧୁଙ୍କୁ ଅନୁରୋଧ କରନ୍ତି । ସେହିଗ୍ରନ୍ଥ ଲକ୍ଷ୍ୟରେ କବି 'ଜୀବନ ଦର୍ପଣ'କୁ ପାଞ୍ଚୋଟି ଦର୍ପଣର ସମାହାର ରୂପେ ଗଢ଼ି ତୋଳନ୍ତି। ଏପରି ଉତ୍କୃଷ୍ଟ ଉପକାରୀ ପୁସ୍ତକ ଓଡ଼ିଆ ଭାଷାରେ ଏଇ ପ୍ରଥମ ବୋଲି ସୁଢ଼ଳ ଦେବ ସ୍ୱୀକାର କରନ୍ତି । (୨୪) ଓଡ଼ିଆ ଭାଷା କେବଳ ନୁହେଁ ବଙ୍ଗ ଭାଷାରେ ମଧ୍ୟ ଏ ରୂପ ପୁସ୍ତକ ନ ଥିବାର ଯୋଗେଶଚନ୍ଦ୍ର ଦାସ ସ୍ୱୀକାର କରନ୍ତି । ''ଜୀବନ ଦର୍ପଣ ଗ୍ରନ୍ଥଖାନି ନୂତନ ଧରନେ ଲିଖିତ ଏଇ ରୂପ ଧରନେର ପୁସ୍ତକ ଉଡ଼ିଶା ଭାଷାର ଆଛେ କି ନା, ବଲିତେ ପାରିନା ତବେ ଏଇ ପର୍ଯ୍ୟନ୍ତ ବଲିତେ ପାରି ଯେ ଏଇ ରୂପ ଦୃଷ୍ଟାନ୍ତ ଛଲେ ଉପଦେଶ ପୂର୍ଣ୍ଣ ଉଡିଆ ପୁସ୍ତକ ଆମାର ଦୃଷ୍ଟିପଥେ ପତିତ ହଇନାହିଁ । ଉଡ଼ିଶା ପୁସ୍ତକ ଦୂରେର କଥା ବଙ୍ଗଳା ଭାଷାୟ ଓ ଏ ରୂପ ଧରନେର ପୁସ୍ତକ ଆମି ଦେଖିନାଇ ।'' (୨୫)

ଜୀବନ ଦର୍ପଣ ପାଞ୍ଚୋଟି ଦର୍ପଣ କଥା ଅବତାରଣାରେ କବି ବର୍ଣ୍ଣନା କରିଛନ୍ତି ।

''ତେବେ ଏହି ଜୀବନ ଦର୍ପଣ ମାନବରେ
ଉପଦେଶ ରୂପରେ ରାଜିବ ଘରେ ଘରେ
ପାଞ୍ଚୋଟି ଦର୍ପଣରେ ବିଭକ୍ତ ଏହି ଗୀତ
ବାଳକ ଉପଦେଶ ରୂପରେ ରଚିତ ।''(୨୬)

ପୌରାଣିକ ଦର୍ପଣ, ଐତିହାସିକ, ଭୌଗୋଳିକ , ବୈଜ୍ଞାନିକ ଓ ନୈତିକ ଦର୍ପଣ ରୂପେ ପାଞ୍ଚୋଟି ଦର୍ପଣରେ ଏ କବିତା ରଚିତ । ଏଠି ଦୃଷ୍ଟାନ୍ତ ରୂପେ ପ୍ରତି ଦର୍ପଣର ଏକ ଏକ ପଦ ଉଦ୍ଧୃତ କରାଗଲା ।

**(୧) ପୌରାଣିକ ଦର୍ପଣ:**

'' କର୍ତ୍ତବ୍ୟେ ହେଳା କରି ବିଷମ ବିଡମ୍ବନା



Digitized by srujanika@gmail.com

ଲଭିଲେ ଶକୁନ୍ତଳା ଦୁଷ୍ମନ୍ତ ଲଳନା
ଜ୍ଞାନଶୂନ୍ୟ ନ ହେବ ଅତ୍ୟନ୍ତ କ୍ରୋଧରେ
ନଦେବ ଅପମାନ କଦାଚ ପୂଜ୍ୟ ନରେ
କ୍ରୋଧେ ମୃତସର୍ପ ଲମ୍ୱାଇ ଋଷିଗଲେ
ପରୀକ୍ଷିତ ନୃପତି ତକ୍ଷକ ମୁଖେ ଗଲେ । '' (୨୭)

**୨ : ଐତିହାସିକ ଦର୍ପଣ :**

'' ଭବିଷ୍ୟତ ସୁଦୂର- ବୀକ୍ଷଣ ଜୀବନର
ଇତିହାସ ଗ୍ରନ୍ଥକୁ ବୋଲନ୍ତି ଜ୍ଞାନି ନର
ଅଶିକ୍ଷିତ ମାନବ ଶିକ୍ଷିତ ପଦାନତ
ହେବାର ବିଧି ଦେଖା ଯାଉଛି ନିୟତ
ଅନାର୍ଯ୍ୟ ମାନେ ହେଲେ ଆର୍ଯ୍ୟଙ୍କ ଅନୁଗତ
ସକଳ ଇତିହାସେ ହୋଇଛି ବ୍ୟକତ ।''(୨୮)

ଚନ୍ଦ୍ରଗୁପ୍ତ, ପୁରୁରାଜ, ବିକ୍ରମାଦିତ୍ୟ, ମହମ୍ମଦ ଘୋରି, ରାଣାପ୍ରତାପ ପ୍ରଭୃତି ଅନେକ ଐତିହାସିକ ବ୍ୟକ୍ତିଙ୍କ ସମ୍ପର୍କରେ ଦୃଷ୍ଟାନ୍ତ ପ୍ରଦାନ କରାଯାଇଛି ।

**୩: ଭୌଗୋଳିକ ଦର୍ପଣ:**

''ଶୁଣ ଆହେ ବାଳକେ ! ସହନଶୀଳ ଲୋକ
ସମସ୍ତରେ ସେବ୍ୟ ସେ ନ ପାଏ କାଳେ ଶୋକ
ଥିବାରୁ ସହି 'ସର୍ବ-ସଂହା' ନାମ ବହି
ହୋଇଛି ସକଳରେ ସେବ୍ୟ ଏହି ମହି'' ।(୨୯)

ଶାନ୍ତଗୁଣ ଯୋଗୁ ପ୍ରଶାନ୍ତ ସାଗର, ପ୍ରବାଳକୀଟ ଯୋଗୁଁ ଲାକ୍ଷାଦ୍ୱୀପ, ବିସୁଭିୟସ ଅଗ୍ନ୍ୟୁଦ୍‌ଗୀରଣ ଯୋଗୁ-ହର୍କଲେନିୟମ ଓ ପଂପେଇ ନଗର ଦ୍ୱୟ ଧ୍ୱଂସ ପ୍ରଭୃତି ଭୌଗୋଳିକ ବିଷୟଗୁଡିକ ଏଥିରେ ସନ୍ନିବେଶିତ ।

**୪ : ବୈଜ୍ଞାନିକ ଦର୍ପଣ:**

''ପରୀକ୍ଷା ପରିଦର୍ଶନ ପୁଣି ବିଚାରରେ
ଲାଭହୁଏ ବିଶୁଦ୍ଧ ଜ୍ଞାନ ହୃଦୟରେ
ଭ୍ରମଶୂନ୍ୟ ସେ ଜ୍ଞାନ ବୋଲାଏ ବିଜ୍ଞାନ
ସଂଗ୍ରହିବା ତହିଁରୁ ଉପଦେଶ ମାନ ।'' (୩୦)



Digitized by srujanika@gmail.com

ମାଧ୍ୟାକର୍ଷଣ ଶକ୍ତି, ଗତି, ବଳ, ପଦାର୍ଥ ପ୍ରଭୃତି ବିଭିନ୍ନ ବୈଜ୍ଞାନିକ ବିଷୟ ଏ ଦର୍ପଣରେ ପ୍ରତିଫଳିତ ।

**୫: ନୈତିକ ଦର୍ପଣ:**

ଏ ଦର୍ପଣରେ ବିଭିନ୍ନ ଶାସ୍ତ୍ରୀୟ ଉପଦେଶ ପ୍ରଦତ୍ତ ହୋଇଛି ।

'' ବାଳକମାନେ ଶୁଣ କହିବା ଏତିକି
ସଂଗ୍ରହ ସଂସାରରୁ ସୁନୀତି ବାଣୀକି
ମାନବର ଅନିଷ୍ଟ ପ୍ରବୃତ୍ତି ପ୍ରହରୀ
ନଇତିକ ଶାସ୍ତ୍ରକୁ ଥିବ ମନେ କରି ।
ଉପକାର କରିବା ଗୁଣ ଯାର ଥିବ
ନୀଚ ଜାତି ହେଲେ ହେଁ ଆଦର ଲଭିବ ।'' (୩୧)

**ଚିତ୍ରସମନ୍ୱୟ:** ବାମଣ୍ଡା ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ରବିବର୍ମାଙ୍କ ପାଞ୍ଚୋଟି ଆଲେଖ୍ୟ ଅବଲମ୍ବନରେ ଚିତ୍ର କବିତା ରଚନା କରିଥିଲେ । (୩୨) ଏହି ଚିତ୍ର କାବ୍ୟ ସମନ୍ୱୟରେ କବିତା ରଚନା ପାଇଁ ଦରବାରର ସମସ୍ତ ପଣ୍ଡିତଙ୍କୁ ଅନୁରୋଧ କରାଯାଇଥିଲା ଏବଂ ଶ୍ରେଷ୍ଠ ସମନ୍ୱୟ ରଚକଙ୍କୁ ସ୍ୱର୍ଣ୍ଣ ପଦକ ଦେବାର ଘୋଷଣା ସଚ୍ଚିଦାନନ୍ଦ କରିଥିଲେ । ବ୍ରଜବନ୍ଧୁଙ୍କ ଚିତ୍ର ସମନ୍ୱୟ ସଚ୍ଚିଦାନନ୍ଦଙ୍କ ସ୍ୱର୍ଣ୍ଣପଦକ ବିଜେତା ହୋଇ ପାରିଥିଲା ।(୩୩) ଏ 'ଚିତ୍ର ସମନ୍ୱୟ' ମଧ୍ୟ ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟ ସୃଷ୍ଟି । ଏପରି ଦ୍ୱିତୀୟ ଉଦାହରଣ ଆମ ସାହିତ୍ୟରେ ଆଉ ନାହିଁ ବୋଲି ମୁଁ  ବିବେଚନା କରେ । ଏହି ପ୍ରବନ୍ଧର ସୀମିତ ସୁଯୋଗ ଦୃଷ୍ଟିରୁ । ଚିତ୍ର ସମନ୍ୱୟର ପ୍ରଥମ ପଂକ୍ତିଟି ମାତ୍ର ଉଦ୍ଧୃତ କରାଗଲା । ସଚ୍ଚିଦାନନ୍ଦଙ୍କ 'ଶକୁନ୍ତଳା ପତ୍ର ଲିଖନ'ର ସମନ୍ୱୟ

୧ମ ସମନ୍ୱୟ

'' କି ସୁଖେ ସୁନ୍ଦରୀ ମଣି ବିସିନୀ ପତ୍ରରେ,
ରାଜର୍ଷି -ପ୍ରଣୟ ଚିନ୍ତା ହୃଦୟେ ସୁମରି,
ଏକାଗ୍ରେ ନିବେଶି ମନ ପୁଲକ ଅନ୍ତରେ
ଚିନ୍ତୁଅଛି କାନ୍ତ- ମୁଖ- ଭାବ ଅନୁସରି '' (ସଚ୍ଚିଦାନନ୍ଦଙ୍କ ୧ମ ଚିତ୍ର ୧ମ ପଦ)
୧ )
ଦେଶକାଳ ଉପଯୋଗୀ- ଲେଖନୀ କରରେ
ନବପ୍ରେମେ ବିହ୍ୱଳିତା  ନବଭାବ ଧରି



Digitized by srujanika@gmail.com

ମାଳିନୀ ତଟିନୀ ତୀର କାନନ ମଧ୍ୟରେ
ବୃକ୍ଷ ତଳେ ସୁଶ୍ୟାମଳ ଦୁର୍ବାଦଳୋପରି-
'' କି ସୁଖେ ସୁନ୍ଦରୀମଣି ବିସିନୀ ପତ୍ରରେ
ରାଜର୍ଷି ପ୍ରଣୟ ଚିନ୍ତା ହୃଦୟେ ସୁମରି
ଏକାଗ୍ରେ ନିବେଶି ମନ ପୁଲକ ଅନ୍ତରେ
ଚିନ୍ତୁଅଛି କାନ୍ତ ମୁଖ ଭାବ ଅନୁସରି ।'' (୩୪)

ଏପରି ପ୍ରତି ଚିତ୍ରର ପ୍ରତିପଦର ପାଞ୍ଚଟି ଲେଖାଏଁ ସମନ୍ୱୟ ରଚନା କରି ନିଜର ବଳିଷ୍ଠ କବି ପ୍ରତିଭାର ସୂଚନା ଦେଇଛନ୍ତି ବ୍ରଜବନ୍ଧୁ ।

ସୁଢ଼ଳଦେବଙ୍କ ସମୟରେ ବାମଣ୍ଡା ଆଲୋଚନା ସଭାରେ ''ଜହ୍ନମାମୁଁ'' ଶୀର୍ଷକ କବିତା ରଚନା କରିବାକୁ ଆହ୍ୱାନ କରାଯାଇଥିଲା । (୩୫) ଏଥିରେ ବ୍ରଜବନ୍ଧୁଙ୍କର ତିନୋଟି ପଦ ସଂଯୋଜିତ ହୋଇଥିଲା ।

ଶିଶୁକୋଳେ ଘେନି ମାମୁକୁ ମାଆ ।
ଡାକେ ଜହ୍ନମାମୁ ଆ ଆରେ ଆ ଆ ମୋ କାହ୍ନୁ ହାତରେ ପଡ ବହନ ।
କପାଳରେ ଦେବୁ ଟୋପି ଚନ୍ଦନ । ହସିବ ମୋ ଧନ ।
ତୋଷେ ମାମୁଁ ସିନା ବାଳକ ମନ ।
କଳଙ୍କ ବୋଲିବା ମାମୁଁ ଚିହ୍ନକୁ । କଥାଟି ନ ଆସେ ମୋର ମନକୁ
ମାମୁତ ଅଟଇ ସୁଧା ସଦନ । ଫୁଟି ଦିଶୁଅଛି ଝରକାଗଣ ।
କଳଙ୍କ ନୁହେଟି
କାଳିଆ ରଙ୍ଗର କବାଟି ସେଟି । ଇତ୍ୟାଦି । (୩୬)

**କୌତୁକ ଗୀତି:** ତାଙ୍କର ଏକ ବ୍ୟଙ୍ଗାତ୍ମକ ସୃଷ୍ଟି । ଏଠି ରାଜା ଏବଂ କବିଙ୍କ ମଧ୍ୟରେ ତୁଳନା କରାଯାଇଛି । ଏହା ଯେତିକି ହାସ୍ୟଉଦ୍ରେକକାରୀ ତା'ର ମର୍ମବେଦନା ସେତିକି ହାହାକାରମୟ । ଭିନ୍ନାର୍ଥବୋଧକ ଏକ ପ୍ରକାର ଶବ୍ଦ ବ୍ୟବହାର କରି କବି ସଂପୂର୍ଣ୍ଣ କାବ୍ୟଟିକୁ ଯମକମୟ କରିଛନ୍ତି ।

ହୀରା ଅସର୍ଫିରେ ପୁରି ରହିଅଛି
ଶ୍ରୀଛାମୁ ମହାଭଣ୍ଡାର
ହୀରା ଅସର୍ଫିରେ ରହିଅଛି ପୁରି
ସର୍ବଦା ମୋର ଆଗାର । (୩୭)



Digitized by srujanika@gmail.com

ପ୍ରଥମ ପଦରେ ରାଜାଙ୍କ ଭଣ୍ଡାରରେ ହୀରା ଏବଂ ସ୍ୱର୍ଣ୍ଣମୋହର ପୂର୍ଣ୍ଣଥିବା କଥା କୁହାଗଲାବେଳେ ଦ୍ୱିତୀୟ ପଦରେ କବିଙ୍କ ଘରେ ହୀରା= ଉଈ ଏବଂ ଅସର୍ପି = ଅସରପା ପୂର୍ଣ୍ଣ ବୋଲି ଦର୍ଶାଯାଇଛି ।

ପ୍ରକାଶିତ ପୁସ୍ତକ ବ୍ୟତିରେକେ ବ୍ରଜବନ୍ଧୁ ଅଜସ୍ର କ୍ଷୁଦ୍ର କବିତା ରଚନା କରିଛନ୍ତି । କବିତାଗୁଡ଼ିକ ବିଭିନ୍ନ ପରିବେଶକୁ ଆଧାର କରି ଗଢ଼ି ଉଠିଛି । ଜାତୀୟତାବାଦ ପ୍ରଖ୍ୟାପନ ଛଳରେ କବିଙ୍କ ଉକ୍ତି-

''ଜାଗି ଉଠିଛନ୍ତି ଉତ୍କଳ ସନ୍ତତି
କରିବେ ଜନନି ତବ ଆଳତି
ନୂତନ ବରଷେ ନୂତନ ହରଷେ
ବସ ଦିବ୍ୟାସନେ ମାତଃ ଭାରତୀ ।'' (ପ୍ରାର୍ଥନା) (୩୮)

ସୌନ୍ଦର୍ଯ୍ୟବାଦୀ କବି ପଦ୍ମର ନୈସ୍ୱର୍ଗୀୟ ଶୋଭାରେ ଆତ୍ମହରା ହୋଇ ଉଠନ୍ତି ।

''ସ୍ୱର୍ଗୀୟ ସୁଷମା ବହି ସରୋବର ଜଳେ ରହି
କି ମୋହିନୀ ଶକ୍ତିବଳେ ପଙ୍କଜ ସୁମନ ?
କରୁ ମହା ଅଧିକାର ଜଗତରେ ଅନିବାର
ବର୍ଣ୍ଣନେ ତୋ ଗୁଣରାଶି ବଳଇ ବଚନ । '' (୩୯)

ବ୍ରଜବନ୍ଧୁ ମୁଖ୍ୟତଃ ସୌନ୍ଦର୍ଯ୍ୟର କବି । ପ୍ରକୃତିକୁ, ମଣିଷକୁ, ହସକୁ ଦୁଃଖକୁ ସେ ସୌନ୍ଦର୍ଯ୍ୟମୟ ଚକ୍ଷୁରେ ଦେଖିଛନ୍ତି ଏବଂ ଅନୁରୂପ ଭାବେ ଚିତ୍ରିଛନ୍ତି । ଅଦଭୂତ ସ୍ୱପ୍ନ କବିତା (୪୦) କୁ ନିରୀକ୍ଷଣ କଲେ ଏ ଉକ୍ତିର ସତ୍ୟତା ପ୍ରମାଣିତ ହୋଇଥାଏ । ଭ୍ରାନ୍ତ ପଥିକ (୪୧) ବିଦାୟ ଗୀତିକା (୪୨) ପ୍ରଭୃତି କବିତା ଜୀବନର ତୀବ୍ରତମ ଦୁଃଖ ମଧରେ ବଞ୍ଚିବାର କ୍ଷୀଣ ଆଶ୍ୱାସନା ପ୍ରଦାନ କରିଛି । ପତ୍ନୀର ମୃତ୍ୟୁ ଦୁଃଖକୁ ସମ୍ଭାଳି ନେଲାବେଳେ ଆଠବର୍ଷର ପୁତ୍ର ମୃତ୍ୟୁ ମୁଖକୁ ଚାଲି ଯାଇଛି । (୪୨) ଅଥଚ କବି ଭକ୍ତକବି ମଧୁ ରାଓଙ୍କ ସୃଷ୍ଟିରେ ଅମୃତମୟ ବାଣୀ ଉପରେ ବକ୍ତୃତା ଦେଉଛି । (୪୩) ବିଦାୟୀ ସମ୍ୱତ୍ସରକୁ ଦୁର୍ବତ୍ସର ବୋଲି ଅଭିସମ୍ପାତ ବର୍ଷିଛି କବି

'' ବିଷମ ଯାତନାନଳେ ଜାଳିଏ ଜୀବନ
ନିରାଶ ସଂସାର ନିରାଶ ଆଗାର
କରାଇ ନିରାଶ ମୁହୁଃ ବିବେକ ପ୍ରସନ୍ନ
ବିଭୀଷଣ ବିପାକ ବିପଣୀ



Digitized by srujanika@gmail.com

ଦୁର୍ବିସ୍ୱର ! ଘେନରେ ମେଲାଣି । '' (୪୪)

ବ୍ରଜବନ୍ଧୁ କେତେଦୂର ଜୀବନର ଅନ୍ତରତମ ପ୍ରଦେଶକୁ ଛୁଇଁଥିଲେ, ଅନୁଭୂତିର ଗଭୀରତାରେ କେତେଦୂର ବୁଡିଥିଲେ, କେତେଦୂର ସୃଜନଶୀଳତାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିପାରିଥିଲେ ଯେ କେହି ନିରପେକ୍ଷ ସମାଲୋଚକ ଉପରୋକ୍ତ କବିତା ପୁସ୍ତକ ସମୂହକୁ ଅନୁଧ୍ୟାନ କରି କହିପାରିବ ।

**ଖ: ଯାତ୍ରା ଓ ନାଟକ:**

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ଯାତ୍ରା ଏବଂ ନାଟକର ପ୍ରଭୂତ ସଂସ୍କାର ସାଧିତ ହୋଇଥିଲା । ଲୀଳା ସୁଆଙ୍ଗ ପ୍ରଭୃତିରୁ ଟିକିଏ ମାର୍ଜିତ ନାଟ୍ୟାନୁଷ୍ଠାନ ପାଇଁ ପ୍ରତିଷ୍ଠିତ କବିମାନଙ୍କ କାବ୍ୟ ଅନୁକରଣରେ ଯାତ୍ରା ପ୍ରସ୍ତୁତ କରାଯାଉଥିଲା । ଚନ୍ଦ୍ରଭାଗା,ଉଷା, ନନ୍ଦିକେଶ୍ୱରୀ, ମାୟାଶବରୀ, ଭୀଷ୍ମ ପ୍ରଭୃତି କାବ୍ୟର ଯାତ୍ରା ରୂପ ସେତେବେଳେ ବେଶ୍ ଲୋକପ୍ରିୟ ହୋଇ ପାରିଥିଲା । (୪୫) ବାମଣ୍ଡା ରାଜକୁମାର ସଚ୍ଚିଦାନନ୍ଦଙ୍କ ଆଗ୍ରହ ତଥା ବାମଣ୍ଡା ଯାତ୍ରାଦଳର ଅନୁରୋଧକ୍ରମେ ବ୍ରଜବନ୍ଧୁ ସଚ୍ଚିଦାନନ୍ଦଙ୍କ ମାୟାଶବରୀ ଓ ଭୀଷ୍ମ କାବ୍ୟକୁ ଯାତ୍ରା ରୂପ ପ୍ରଦାନ କରିଥିଲେ । (୪୬) ଏ ଯାତ୍ରା ଦ୍ୱୟ ସେତେବେଳେ ଏତେ ଲୋକପ୍ରିୟ ହୋଇ ଉଠିଥିଲା ଯେ ବାଲିଅନ୍ତା, ମାହାଙ୍ଗା, କୁଜଙ୍ଗ ପ୍ରଭୃତି ଦୂରବର୍ତ୍ତୀ ଯାତ୍ରା ଦଳ, ବାମଣ୍ଡା ଆସି ଏହା ଶିକ୍ଷା କରିଯାଇଥିଲେ । (୪୭)

''ମାୟା ଶବରୀ''ର କାହାଣୀ ହେଲା ଦିନେ ପାର୍ବତୀ କୈଳାସ ଛାଡି ଶବରୁଣୀ ବେଶରେ ଶବରୀମାନଙ୍କ ସହିତ ବନରେ ଭ୍ରମଣ କରୁଥିଲେ । ଶ୍ରୀକୃଷ୍ଣ ପାର୍ବତୀଙ୍କୁ ଦେଖି କାମବିକାର ଗ୍ରସ୍ତ ହେଲେ । ପାର୍ବତୀ ଶ୍ରୀକୃଷ୍ଣଙ୍କ ମନକଥା ଜାଣି ବଣ ଭିତରେ ଲୁଚିବାକୁ ଲାଗିଲେ । ଶ୍ରୀକୃଷ୍ଣ ପ୍ରୀତି ଯାଚଞ୍ଚା କରି ତାଙ୍କ ପଛେ ପଛେ ଅନୁଶରଣ କରୁଥାନ୍ତି । ଶ୍ରୀକୃଷ୍ଣଙ୍କ ଡାକ ନ ଶୁଣିଲା ପ୍ରାୟେ ପାର୍ବତୀ ଏଣେତେଣେ ଯାଉଥାନ୍ତି । ଏପରି ଯାଉ ଯାଉ ପାର୍ବତୀଙ୍କ ପାଦରେ କଣ୍ଟା ଫୁଟିଯାଏ । ସେ ବ୍ୟଥା ପାଇ ରହିଯାନ୍ତି । ବ୍ୟଥା ପାଇଲ କି ସୁନ୍ଦରୀ କହି ଶ୍ରୀକୃଷ୍ଣ ପାଦ ଧରି କଣ୍ଟା କାଢ଼ିଲାବେଳେ, ଶିବ ଉପସ୍ଥିତ ହୁଅନ୍ତି । ଶବରୀ ପାର୍ବତୀ ରୂପ ଧାରଣ କରନ୍ତି । ଲଜ୍ଜିତ ହୁଅନ୍ତି ଶ୍ରୀକୃଷ୍ଣ । ପାର୍ବତୀ କୁହନ୍ତି ଅମୃତ ବଣ୍ଟନ ବେଳେ ମୋହିନୀ ହୋଇ ତୁମେ ଶିବଙ୍କୁ ପ୍ରଲୁବ୍ଧ କରିଥିଲ । ଆଜି ତା'ର ପ୍ରତିଶୋଧ ନିଆଗଲା ।

ଏ କାହାଣୀକୁ ଅବଲମ୍ବନ କରି ସୂତ୍ରଧର ନଟନଟୀ, ନର୍ତ୍ତକୀ ଦଳ, ଶବରୀ ଦଳ ସଂଯୋଜିତ କରି ବ୍ରଜବନ୍ଧୁ ଯାତ୍ରାରୂପ ପ୍ରଦାନ କରିଛନ୍ତି ।



Digitized by srujanika@gmail.com

'' ନଟୀ= ଆର୍ଯ୍ୟପୁତ୍ର, ଆମ୍ଭଙ୍କୁ ସ୍ମରଣ କରିବାର କାରଣ କଣ ?

ନଟ = ପ୍ରିୟେ ! ଆଜି ଏହି ପଣ୍ଡିତ ସଭ୍ୟ ମଣ୍ଡଳି ସମ୍ମୁଖରେ ବାମଣ୍ଡା ଯୁବରାଜ ଉତ୍କଳ ବିଖ୍ୟାତ କବି ସଚ୍ଚିଦାନନ୍ଦ ଦେବଙ୍କ ମାୟାଶବରୀ କାବ୍ୟ ଯାହାକୁ କି ପଣ୍ଡିତ ବ୍ରଜବନ୍ଧୁ ମିଶ୍ର ଯାତ୍ରା ରୂପ ଦେଇଛନ୍ତି ତାକୁ ଏଠି ଅଭିନୟ କରବା ଅଭିପ୍ରାୟରେ ତୁମ୍ଭଙ୍କୁ ଡକାଇଲି । ଏ ଦୁରୂହ କାର୍ଯ୍ୟରେ ତୁମ୍ଭେ ସାହାଯ୍ୟ ନ କଲେ ହୋଇ ନପାରେ ।''

ବ୍ରଜବନ୍ଧୁଙ୍କ ଭୀଷ୍ମଯାତ୍ରା ମଧ୍ୟ ଅନୁରୂପ ଲୋକପ୍ରିୟତା ଅର୍ଜନ କରିପାରିଥିଲା ।

**ଗ: ପ୍ରବନ୍ଧ, ଆଲୋଚନା ଓ ଗଦ୍ୟ ରଚନା:** ଉତ୍କଳ ଇତିବୃତ୍ତିର ସାଲ ଓ ପ୍ରସିଦ୍ଧ ଘଟଣା (୪୯), ବଲମ ଖମାର (୫୦), ବସନ୍ତ ମାଳତୀ (୫୧), ଉପଧାବିଚାର(୫୨) ଉପଧା ଅନିଷ୍ଟ ଚିନ୍ତା (୫୩) ପ୍ରଭୃତି ଗଦ୍ୟ ରଚନା ତାଙ୍କ ସୃଷ୍ଟିର ଉଜ୍ଜ୍ୱଳ ଦୃଷ୍ଟାନ୍ତ ବହନ କରେ ।

ବଲମ ଖମାର ଏକ ଭ୍ରମଣ କାହାଣୀ । ବାମଣ୍ଡା ରାଜାଙ୍କ ଖମାର ବଲମର ଦୃଶ୍ୟ ଏଥିରେ ବର୍ଣ୍ଣିତ । ବିଭିନ୍ନ କୃଷିକର୍ମ ଉପରେ ପରୀକ୍ଷା ନିରୀକ୍ଷା, ଆଖୁଚାଷ ଚିନି କାରଖାନା ପ୍ରଭୃତି ସମ୍ପର୍କରେ ଏଥିରେ ବର୍ଣ୍ଣିତ ହୋଇଛି । ସମ୍ବଲପୁର ହିତୈଷିଣୀରେ ଏହା '' ସେହି ସେହି ଉତ୍କଳ ବନ୍ଧୁ'' ଛଦ୍ମ ନାମରେ ଧାରାବାହିକ ପ୍ରକାଶ ଲଭିଥିଲା ।

'ବସନ୍ତମାଳତୀ' ଏକ କ୍ଷୁଦ୍ର ଉପନ୍ୟାସ । ଏଥିରେ ବସନ୍ତ ଏବଂ ମାଳତୀର ପ୍ରେମ, ବିଚ୍ଛେଦ ଓ ମିଳନର ଚିତ୍ର ପ୍ରଦର୍ଶିତ । ଏହା ସେ ସମୟରେ ବେଶ୍ ଲୋକପ୍ରିୟ ହୋଇପାରିଥିଲା । କୋଡିଏ ପରିଚ୍ଛେଦ ବିଶିଷ୍ଟ ଏ ଉପନ୍ୟାସ ବାମଣ୍ଡା ସୁଡ଼ଲପ୍ରେସରେ ୧୯୦୨ରେ ପ୍ରକାଶିତ ।

'ଉପଧା ବିଚାର' ବ୍ରଜବନ୍ଧୁଙ୍କର ଏକ ଶ୍ରେଷ୍ଠ ଆଲୋଚନା ପୁସ୍ତକ । ଏଠି 'ଉପଧା' ଉପରେ ତାତ୍ତ୍ୱିକ ଆଲୋଚନା କରାଯାଇଛି । ଓଡ଼ିଆ କବିତାରେ ଉପଧା ମିଳନ ଏକ ଅର୍ବାଚୀନ ବ୍ୟାପାର । ରାଧାନାଥ ଯୁଗୀୟ କାବ୍ୟ କବିତାରେ ଏହା ପ୍ରାୟତଃ ଦେଖିବାକୁ ମିଳେ । ଏହା ବଙ୍ଗ ସାହିତ୍ୟ ଅନୁକରଣର ଫଳ । ଓଡ଼ିଆ ସାହିତ୍ୟର ନିଜସ୍ୱ ନୁହେଁ। ରାଧାନାଥ ପୂର୍ବ ଓଡ଼ିଆ କାବ୍ୟ କବିତାରେ ଉପଧା ମିଳନର ଦୃଷ୍ଟାନ୍ତ ନାହିଁ। ରାଧାନାଥ ପରବର୍ତ୍ତୀ ଯୁଗରେ ନୀଳକଣ୍ଠ, ମାନସିଂ ପ୍ରଭୃତି ମଧ୍ୟ ଉପଧା ମିଳନର ଘୋର ବିରୋଧ କରିଛନ୍ତି । ''ଉପଧା-ମିଳନ ପରି କୃତ୍ରିମ ସୌଷ୍ଠବକୁ ପ୍ରଶ୍ରୟ ଦେବା ଦ୍ୱାରା ଓଡ଼ିଆ ସାହିତ୍ୟର ଅନିଷ୍ଟଇ ହୋଇଚି । ଭାଷା ତା'ର ସ୍ୱଚ୍ଛଂଦତା ହରେଇଚି, କବିତା ଅଙ୍ଗୁଠିରେ ସୁନାର ଶୃଙ୍ଖଳ ଦେଇଛି ।'' (୫୪) ମାନସିଂଙ୍କ ଉଲ୍ଲିଖିତ ସ୍ୱୀକାରୋକ୍ତିର ବହୁ ପୂର୍ବରୁ



Digitized by srujanika@gmail.com

ବାମଣ୍ଡା ଦରବାରରେ ଉପଧାମିଳନ ଅଯଥା ପରିଶ୍ରମ ଓ ସୁନ୍ଦର ରଚନାର ବିରୋଧୀ ବୋଲି ଆଲୋଚିତ ହୋଇସାରିଛି । (୫୫) ଏ ଆଲୋଚନାର ଫଳପ୍ରସୂ ବ୍ରଜବନ୍ଧୁଙ୍କ '' ଉପଧା ବିଚାର'' ।

''ମିତ୍ରାକ୍ଷର ପଦ୍ୟ ସମୂହରେ ପଦାନ୍ତର୍ଗତ ପ୍ରତ୍ୟେକ ପାଦ ଶେଷ ବର୍ଣ୍ଣର ପୂର୍ବବର୍ତ୍ତୀ ସ୍ୱରବର୍ଣ୍ଣଯୁକ୍ତ ବା ଅଯୁକ୍ତ ଭାବରେ କିମ୍ବା କୌଣସି ପାଦର ଶେଷ ବର୍ଣ୍ଣର ପୂର୍ବବର୍ତ୍ତୀ ଯୁକ୍ତ ସ୍ୱର ଅପରପାଦର ଅଯୁକ୍ତ ସ୍ୱରର ସହିତ ସମତା ରକ୍ଷା ହେଲେ ତାହାକୁ ଉପଧା ବୋଲାଯାଏ । '' (୫୬)

ଉପଧା ଦ୍ୱାରା ଓଡ଼ିଆ ସାହିତ୍ୟର ଉନ୍ନତି ହୋଇଛି କି ? ଉପଧା କବିତାର ଶୁଭଲକ୍ଷଣ ନା ଅନିଷ୍ଟକାରକ ? ଏହାରି ଉପରେ ବାମଣ୍ଡା ପଣ୍ଡିତ ସଭାର ବିତର୍କ ଉପରେ 'ଉପଧା ବିଚାର' ରଚିତ । ଏହି ପୁସ୍ତକରେ ବ୍ରଜବନ୍ଧୁ ଉପଧା ସମ୍ପର୍କରେ ବୈଜ୍ଞାନିକ ଅନୁଶୀଳନ କରିଛନ୍ତି । (କ) କେଉଁ ସମୟରେ ଓଡ଼ିଆ ସାହିତ୍ୟରେ କେଉଁ କବିଙ୍କ ଦ୍ୱାରା ଉପଧା ପ୍ରଚଳିତ ହେଲା (ଖ) ଉପଧା କଣ ଓ ତାହା ଓଡ଼ିଆ ବ୍ୟାକରଣ ଗତ କି ? (ଗ) ଉପଧାର ପ୍ରାମାଣିକ ଲକ୍ଷଣ ଏବଂ ଓଡ଼ିଆ କବିତାରେ ଉପଧା ଅଛି କି (ଘ) ବର୍ଣ୍ଣ ବିଶ୍ଳେଷଣରେ ଉପଧାର ପରିଚୟ କିପରି ? (ଙ) ଉପଧା ରଚନାରେ ପଦ୍ୟର ଭାବ, ମାଧୁରୀ ଓ ବର୍ଣ୍ଣବିଭାଗରେ ପ୍ରମାଦ ଲକ୍ଷିତ ହୁଏ କି ନାହିଁ ? (ଚ) ଉପଧା ପ୍ରୟୋଜନର ଭ୍ରମ ଶୂନ୍ୟ ପ୍ରମାଣ ସିଦ୍ଧାନ୍ତ ଯୁକ୍ତି କି ? (ଛ) ଉପଧା ପଦ୍ୟାବଳୀର ସୌନ୍ଦର୍ଯ୍ୟ ବା ଅସୌନ୍ଦର୍ଯ୍ୟର କାରକ ଅଟେ (ଜ) ଉପଧା ପ୍ରୟୋଗର ବିଚାର ଇତ୍ୟାଦି (୫୭) ପ୍ରସଙ୍ଗର ଯଥାଯଥ ବିଶ୍ଳେଷଣ କରିଛନ୍ତି ।

ଓଡ଼ିଆ ସାହିତ୍ୟର ପ୍ରତିନିଧି ସ୍ଥାନୀୟ କାବ୍ୟ କବିତାରୁ ଦୃଷ୍ଟାନ୍ତ ଗ୍ରହଣ କରି ଉପଧା ମିଳନ ଯୋଗୁ ଅଙ୍ଗ ବିକୃତିର ପରିଚୟ ସେ ଦେଇଛନ୍ତି । ରାଧାନାଥଙ୍କ କାବ୍ୟରେ ଉପଧାମିଳନ ଯୋଗୁ କିପରି କବିତାର ସାଧାରଣ ସୌନ୍ଦର୍ଯ୍ୟହାନୀ ହୋଇଛି ତାହା ବ୍ରଜବନ୍ଧୁ ବିଚାର କରି ଦେଖାଇ ଦେଇଛନ୍ତି । ଉପଧା ମିଳନ ଅନୁରୋଧରେ କେତେକ ଶବ୍ଦର ସ୍ୱାଭାବିକ ରୂପ ବିକୃତ ହୋଇଅଛି । ନିମ୍ନ ଦୃଷ୍ଟାନ୍ତରେ ବୌଦ ଶବ୍ଦଟି ବୋଦରେ ପରିଣତ ହୋଇଛି ।

'' ଅଙ୍ଗ ଲାଗି ପାଇଁ କନ୍ଧ ପଲ୍ଲୀ ଜାତ ହରିଦ୍ରା ଯୋଗାଏ ବୋଦ
ଅନୁଗୋଳ ଶାଳ କ୍ଷୀରେ ହେଉଅଛି ନଅର ଧୂପ ଆମୋଦ ।''(୫୮)

ଏପରିକି ଅନେକ ପ୍ରକାର ଦୋଷକୁ ତାତ୍ତ୍ୱିକ ଅବତାରଣା କରିଛନ୍ତି ବ୍ରଜବନ୍ଧୁ । ଉପଧା ପ୍ରଚଳିତ ଯୁଗରେ (ରାଧାନାଥ ଯୁଗ) ଏ ପୁସ୍ତକ ଏକ ବଳିଷ୍ଠ ପଦକ୍ଷେପ ।



Digitized by srujanika@gmail.com

ଛାତ୍ରମାନଙ୍କୁ ଉପଧା ସମ୍ପର୍କରେ ଶିକ୍ଷାଦେବା ପ୍ରସଙ୍ଗରେ ଗୁରୁଶିଷ୍ୟ ସମ୍ବାଦରୂପେ ପ୍ରଶ୍ନୋତ୍ତର ଛଳରେ 'ଉପଧା ଅନିଷ୍ଟ ଚିନ୍ତା '' (୫୯) ପୁସ୍ତକ ରଚିତ । ଶିଷ୍ୟ ଉପଧା ସମ୍ପର୍କରେ ଯାବତୀୟ ପ୍ରଶ୍ନ ପଚାରିଛି । ଗୁରୁ ପ୍ରଶ୍ନର ଯଥାଯଥ ଉତ୍ତର ଦେଇଛନ୍ତି । ଏ ପୁସ୍ତକରେ ବ୍ରଜବନ୍ଧୁଙ୍କ ତୀବ୍ର ଯୁକ୍ତି ଏବଂ ଉପଧା ଜାତୀୟ ସାହିତ୍ୟର ଉନ୍ନତି ପଥର ପରମ ଅନ୍ତରାୟ ବୋଲି ପ୍ରମାଣିତ କରିଛି । ଏ ପୁସ୍ତକ ସେ ସମୟର ସାରସ୍ୱତ ପରିବେଶ ପରିପ୍ରେକ୍ଷୀରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ଦାବି କରେ ।

ନ୍ୟାୟାଳୟ କାର୍ଯ୍ୟ ପତ୍ର ସଂଗ୍ରହ ସମ୍ପର୍କରେ ସେ ଏକ ପୁସ୍ତକ ପ୍ରଣୟନ କରିଥିଲେ । ଯାହାକି ବିଭିନ୍ନ ଆଇନକାନୁନ ପ୍ରଭୃତି ଉପରେ ଏକ ଅଭିନବ ସଂଗ୍ରହ । (୬୦)

ଉଲ୍ଲିଖିତ ଗଦ୍ୟ ରଚନା ଅପେକ୍ଷା ଆହୁରି ଅନେକ ବିଷୟରେ ସେ ଲେଖନୀ ଚାଳନା କରିଛନ୍ତି । ଯାହାକି ସମ୍ପ୍ରତି ଦୁଷ୍ପ୍ରାପ୍ୟ ।

**ପୃଷ୍ଠଭାଷ:** ଏ ଆଲୋଚନାରେ ପ୍ରଦତ୍ତ ବ୍ରଜବନ୍ଧୁଙ୍କ ରଚନା ବ୍ୟତୀତ ସେ ଆହୁରି ଅନେକ ଲେଖିଯାଇଛନ୍ତି । ଆଲୋଚିତ ପୁସ୍ତକଗୁଡ଼ିକ ଲେଖକର ସଂଗୃହୀତ ପୁସ୍ତକର ଏକ ସୂକ୍ଷ୍ମ ଆକଳନ ମାତ୍ର । 'ଭୀଷ୍ମ ଶରଶଯ୍ୟା' କବିଙ୍କର ସର୍ବଶ୍ରେଷ୍ଠ କାବ୍ୟକୃତି । 'ମଦୁଆର ବିଳାପ' ତାଙ୍କର ଶେଷତମ କୃତି । ଭୀଷ୍ମ ଶରଶଯ୍ୟାର ନୈତିକ ଶିଖରୀରୁ 'ମଦୁଆର ବିଳାପ' ପରି ଦୁର୍ଭାଗ୍ୟତମ ଅନ୍ଧ ମୁହାଣୀ ଦେଇ କବିଙ୍କ ଜୀବନ ଗତିଶୀଳ । ସୁଢ଼ଳଦେବ ସଚ୍ଚିଦାନନ୍ଦ ଦେବଙ୍କ ସମୟରେ ମହାପଣ୍ଡିତ ରୂପେ ଭୋଗର ପ୍ରାଚୁର୍ଯ୍ୟ ଓ ସମ୍ମାନର ତୁଙ୍ଗିମାରେ ଅଧିଷ୍ଠିତ ବ୍ରଜବନ୍ଧୁ ମିଶ୍ର ଜୀବନର ଉତ୍ତର ମାର୍ଗରେ ଏକ ବିକୃତ ଅସହାୟ ଜୀବନଚର୍ଯ୍ୟାକୁ ଆଦରି ନେଇଛନ୍ତି । ଏ ଉକ୍ତିର ସତ୍ୟତାର ସାକ୍ଷ୍ୟ ବାମଣ୍ଡାର ଅଶୀତିପର ଅନେକ ବୃଦ୍ଧ ପ୍ରଦାନ କରନ୍ତି । ଏଣୁ କବି ଲେଖନୀରୁ ପ୍ରସୂତ '' ମଦୁଆର ବିଳାପ'' ଜୀବନ ପ୍ରତି ତାଙ୍କର ଶ୍ରେଷ୍ଠତମ ନିଷ୍ଠୁର ବ୍ୟଙ୍ଗ ।

ପ୍ରତିଭାର ଶ୍ରେଷ୍ଠତମ ସଫଳ ବିନିଯୋଗ ସତ୍ତ୍ୱେ ଏ ପ୍ରତିଭା ଓଡ଼ିଆ ସାହିତ୍ୟରେ ଅବହେଳିତ , ଅପରିଜ୍ଞାତ ହୋଇ ରହିଯାଇଛନ୍ତି । ଏ ଆଲୋଚନା ଅନ୍ତରାଳରେ ବ୍ରଜବନ୍ଧୁ ମିଶ୍ର ଶର୍ମାଙ୍କ ପ୍ରତି ଓଡ଼ିଆ ପାଠକ, ଗବେଷକଙ୍କ ସମ୍ବେଦନଶୀଳ ଦୃଷ୍ଟି ଆକର୍ଷିତ ହେଲେ ଲେଖକର ଶ୍ରମ ସାର୍ଥକ ହେବ । ତାଙ୍କ କୃତି ସମୂହର ସଙ୍କଳନ ଏବଂ ତାଙ୍କର ସାରସ୍ୱତ ପ୍ରତିଭାର ସାମଗ୍ରିକ ମୂଲ୍ୟାୟନ ଦିଗରେ ସରକାରୀ ଏବଂ ବେସରକାରୀ ସ୍ତରର ଉଦ୍ୟମ ହିଁ ଏ ଆଲୋଚକର କାମ୍ୟ ।

ଶେଷରେ ସେହି ବଳିଷ୍ଠ ପ୍ରତିଭାର ସ୍ମୃତିଚାରଣ ଉଦ୍ଦେଶ୍ୟରେ ଏ ଆଲୋଚନା ଉତ୍ସର୍ଗୀକୃତ ।❑❑❑

ବନ୍ଦେ ଉତ୍କଳ ଜନନୀ



Digitized by srujanika@gmail.com

## ସହାୟକ ପଞ୍ଜିକା


୧)ସମ୍ବଲପୁର ହିତୈଷିଣୀ (ବାମଣ୍ଡା ସମ୍ବାଦ) ତା.୨୦.୯.୧୮୯୯ ।

୨) ବକ୍ତବ୍ୟ : ବ୍ରଜବନ୍ଧୁ ମିଶ୍ର: ସମ୍ବଲପୁର ହିତୈଷିଣୀ-୧୩/୩୫ ତା ୮.୧.୧୯୦୨ ।

୩) ବିଦାୟ: ବ୍ରଜବନ୍ଧୁ ମିଶ୍ର : ସମ୍ବଲପୁର ହିତୈଷିଣୀ ତା ୩୦.୩.୧୯୦୪।

୪) ମୋର ଜଣା ଲୋକ (ଗଙ୍ଗାଧର): ବୃନ୍ଦାବନ ନାଥ ଶର୍ମା: ଉକ୍ରଳ ସାହିତ୍ୟ ପୃ-୫୬୫-୩୯/ ୧୧ଫାଲ୍‌ଗୁନ-୧୩୪୩।

୫) ନୂତନ ପତ୍ରିକା : ସମ୍ବଲପୁର ହିତୈଷିଣୀ ୨୫।୧ ତା ୨୫।୧୦।୧୯୧୩

୬) ଉକ୍ରଳ ସେବକ : ୧୩।୨୧ ତା ୩।୬।୧୯୨୬ ।

୭) ଗଡ଼ଜାତ ବାସିନୀ: ୩୩।୨୫- ୭।୭।୧୯୩୪ ପୂର୍ବ ସଂଖ୍ୟା ମଧ୍ୟ ଦେଖାଯାଇପାରେ ।

୮) ତତୈବ, ଶେଷ ପୃଷ୍ଠା ଦ୍ରଷ୍ଟବ୍ୟ ।

୯) ତତୈବ (ଯେକୌଣସି ସଂଖ୍ୟା ଦ୍ରଷ୍ଟବ୍ୟ)

୧୦) ଗଡଜାତ ବାସିନୀ- ୩୩/୩୮ ତା-୬।୧୦।୧୯୩୪

୧୧) ଏକପଦୀ: ଗଡ଼ଜାତବାସିନୀ- ୩୩/୩୫-ତା୧୫।୯।୧୯୩୪

୧୨) ବିବାହ ବ୍ୟବସ୍ଥା : ସ.ହି. -୧୧।୪୯ ତା ୧୧।୪।୧୯୦୦ ।

୧୩) ସ.ହି. (ବାମଣ୍ଡା ସମ୍ବାଦ) ତା ୧୬।୮।୧୮୯୯ ।

୧୪) ବାମଣ୍ଡା କ୍ଲବ: ସ.ହି. ୨୧।୨- ୩୦।୧୦।୧୯୦୯ ।

୧୫) ମଧୁ ରାଓଙ୍କ ବିୟୋଗରେ ଶୋକସଭା: ସ.ହି.୧୧।୧।୧୯୧୩ ।

୧୬) ବାମଣ୍ଡା ସମ୍ବାଦ: ସ.ହି. ୧୧।୩୯ ତା ୩୧।୧।୧୯୦୦ ।

୧୭) ପଣ୍ଡିତ ବ୍ରଜବନ୍ଧୁ ମିଶ୍ର ଶର୍ମା : ସହକାର ୧୪।୮- ମାର୍ଗଶିର -୧୩୪୧ପୃ- ୭୧୨-୭୧୩ ।

୧୮) ତତୈବ - ପୃ-୭୧୩ ।

୧୯) ସ.ହି.: ୧୪।୭।୧୮୯୪ ।

୨୦) ଭୀଷ୍ମ ଶରଶଯ୍ୟା (ପୁସ୍ତକ ପ୍ରାପ୍ତି): ସ.ହି.: ୨୫।୪ ତା ୧୫।୧୧।୧୯୧୩ ।

୨୧) ବସନ୍ତ କାନନ : ବ୍ରଜବନ୍ଧୁ ମିଶ୍ର: ପୃ ୧ ଓ ୨ : ସୁରପ୍ରତାପ ପ୍ରେସ, ୧୯୨୦, ଢେଙ୍କାନାଳ

୨୨) ଜୀବନ ଦର୍ପଣ : ବ୍ରଜବନ୍ଧୁ ମିଶ୍ର: ସୁଢ଼ଲପ୍ରେସ, ବାମଣ୍ଡା-୧୯୦୧ ।

୨୩) ଜୀବନ ଦର୍ପଣ: ସ.ହି. ୧୩/୪୦ ତା ୧୨।୨।୧୯୦୨ ।

୨୪) ଜୀବନ ଦର୍ପଣ : ମୁଖବନ୍ଧ: ସୁଢ଼ଲଦେବ ।

୨୫) ତତ୍ରୈବ - ଶ୍ରୀଯୋଗେଶ ଚନ୍ଦ୍ର ଦାସ: ବାମଣ୍ଡା ସ୍କୁଲ ସୁପରିଣ୍ଟେଣ୍ଡେଣ୍ଟ

୨୬) ତତ୍ରୈବ - ପୃ-୧ (ଅବତାରଣା)

୨୭) ତତ୍ରୈବ - ପୃ-୨-୩ ।

୨୮) ତତ୍ରୈବ- ପୃ-୧୮ ।

୨୯) ତତ୍ରୈବ- ପୃ-୩୫ ।

୩୦) ତତ୍ରୈବ- ପୃ-୫୧।

୩୧) ତତ୍ରୈବ- ପୃ-୬୩ ।





Digitized by srujanika@gmail.com

୩୨) ଚିତ୍ର: ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ- ୩ୟ ସଂସ୍କରଣ - ୧୯୫୫ ପୃ୨୦୧ରୁ ୨୦୬ ଏ କବିତାଗୁଡିକ ସ.ହି.ର ୧୯୦୯ର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ।

୩୩) ଅଭିମତ- ଚିତ୍ର ସମନ୍ୱୟ: ବ୍ରଜବନ୍ଧୁ ମିଶ୍ର: ହିତୈଷିଣୀ ପ୍ରେସ-୧୯୧୩ ।

୩୪) ଚିତ୍ର ସମନ୍ୱୟ-ପୃ-୧ ।

୩୫) ଇନ୍ଦୁମାମୁଁ:ସଙ୍କଳନ -ସାର୍ ବାସୁଦେବ ସୁଢ଼ଳଦେବ ।

୩୬) ତତ୍ରୈବ- ୯୧ତମ ପଦ ପୃ-୧୯ ।

୩୭) କୌତୁକ ଗୀତି- ବ୍ରଜବନ୍ଧୁ ମିଶ୍ର- ସୁରପ୍ରତାପ ପ୍ରେସ, ଢେଙ୍କାନାଳ-୧୯୨୦ ।

୩୮) ପ୍ରାର୍ଥନା: ବ୍ରଜବନ୍ଧୁ ମିଶ୍ର: ସ.ହି. ୧୩।୩୬ ତା ୧୫।୧।୧୯୦୨ ।

୩୯) ପଦ୍ମ: ବ୍ରଜବନ୍ଧୁ ମିଶ୍ର: ସ: ହି: ୧୩।୩୭ ତା ୨୨।୧।୧୯୦୨ ।

୪୦) ଅଦଭୁତ ସ୍ୱପ୍ନ - ସ.ହି. ୭।୪୫, ୭।୪୫, ୭।୪୬, ୭।୪୭ (୮।୪।୧୮୯୬) ରୁ ୨୨।୪।୧୮୯୬ ସଂଖ୍ୟାମାନଙ୍କରେ ପ୍ରକାଶିତ ।

୪୧) ସ.ହି. ୧୪।୪୭ ତା ୧୦।୬।୧୯୦୩ ।

୪୨) ୧୯୧୨ ସାଲର ବିଦାୟ ଗୀତି: ବ୍ରଜବନ୍ଧୁ ମିଶ୍ର: ସି.ହି. ୧୧।୧।୧୯୧୩ ।

୪୩) ସ.ହି.: ୧୧।୧।୧୯୧୩

୪୪) ତତ୍ରୈବ ।

୪୫) ଉତ୍କଳେ ଯାତ୍ରା ଦଳ: ପଣ୍ଡିତ ମଧୁସୂଦନ ମିଶ୍ର: ସ.ହି. ୧୪।୧୨ ତା ୧୬।୯। ୧୯୦୨ ।

୪୬) ବାମଣ୍ଡା ସମ୍ବାଦ: ସ.ହି.୧୩।୪୫- ୧୯।୩।୧୯୦୨ ।

୪୭) ତତ୍ରୈବ ଏବଂ ସ.ହି. ୧୪।୧୦ - ୩।୯।୧୯୦୨ ବାଳିଅନ୍ତା ଦଳ ଭାଷ୍କନାଟକେ ଶିକ୍ଷା କରିଛନ୍ତି... ଇତ୍ୟାଦି ।

୪୮) ଲେଖକ ଦ୍ୱାରା ସଂଗୃହୀତ ପାଣ୍ଡୁଲିପି ।

୪୯) ପଣ୍ଡିତ ବ୍ରଜବନ୍ଧୁ ମିଶ୍ର - ଚକ୍ରଧର ମହାପାତ୍ର, ସହକାର ୧୪।୮ ।

୫୦) ସ.ହି. ୩୦।୮।୧୮୯୯ରୁ ୨୦।୯।୧୮୯୯ ।

୫୧) ବସନ୍ତ ମାଳତୀ : ବ୍ରଜବନ୍ଧୁ : ମିଶ୍ର: ସୁଢ଼ଳ ପ୍ରେସ୍, ବାମଣ୍ଡା-୧୯୦୨ ।

୫୨) ଉପଧା ବିଚାର: ବ୍ରଜବନ୍ଧୁ : ମିଶ୍ର: ହିତୈଷିଣୀ ପ୍ରେସ- ବାମଣ୍ଡା-୧୯୧୩ ।

୫୩) ଉପଧା ଅନିଷ୍ଟ ଚିନ୍ତା: ବ୍ରଜବନ୍ଧୁ : ମିଶ୍ର: ହିତୈଷିଣୀ ପ୍ରେସ - ବାମଣ୍ଡା ୧୯୧୪ ।

୫୪) ଭୂମିକା: କୋଣାର୍କେ: ମାୟାଧର ମାନସିଂହ ।

୫୫) ଭୂମିକା: ଉପଧା ବିଚାର- ବ୍ରଜବନ୍ଧୁ ମିଶ୍ର ।

୫୬) ଉପଧାବିଚାର- ପୃ-୧୩ ।

୫୭) ତତ୍ରୈବ - ପୃ-୨-୩ ।

୫୮) ଉପଧା ବିଚାର - ପୃ-୭୯ରେ ଉଦ୍ଧୃତ ।

୫୯) ଉପଧା ଅନିଷ୍ଟ ଚିନ୍ତା - ଦ୍ରଷ୍ଟବ୍ୟ ।

୬୦) ସ.ହି. ୧୩।୧୩ ତା ୧୬।୮।୧୯୦୧ରେ ଆଲୋଚିତ ।

**ସ.ହି.: ସମ୍ବଲପୁର ହିତୈଷିଣୀ**



*Digitized by srujanika@gmail.com*

# କବିତ୍ୱ ଓ ପାଣ୍ଡିତ୍ୱର ନୈସର୍ଗିକ ପଥ : କବି ଭାଗୀରଥି ରଥ

ବୁଦ୍ଧିଦୀପ୍ତ ଆବେଗର ସତ୍ୟଶୀଳ ପରିପ୍ରକାଶ ହିଁ ସୃଜନଶୀଳତା। ଏହା ସ୍ୱତଃସ୍ଫୁର୍ତ, ଅନ୍ତସ୍ଥ ଏବଂ ସ୍ୱାଧୀନ । ପ୍ରତି ସମୟର ଉଦ୍‌ବର୍ତ୍ତିତ ସୃଷ୍ଟିଶୀଳ ସୃଜନକର୍ମୀଙ୍କ ବିବର୍ତ୍ତିତ ରୂପରେଖ ଦେଇ ସାହିତ୍ୟ ଏବଂ କଳା ବିକଶିତ ହୁଏ । ରାଧାନାଥ ଯୁଗୀୟ ଭାବମୁଦ୍ରାରେ ଓଡ଼ିଆ କବିତାକୁ ପରଖିଲେ ଏକ ସାମର୍ଥ୍ୟପୂର୍ଣ୍ଣ ଅନୁଭବି କବିତ୍ୱର ଉଦ୍ଭାସନ ଆମକୁ ବିସ୍ମିତ କରିଦିଏ । ରାଧାନାଥ କବିତା ମାର୍ତ୍ତଣ୍ଡର ଅନତିଦୂରରେ ନିଜସ୍ୱ କ୍ଷୀଣ ଦୀପ୍ତି ଓ ଦ୍ୟୁତିରେ ଉଷ୍ଣ ଓ ପ୍ରାଣବାନ୍ କବିତାର କ୍ଷୁଦ୍ର ସାମ୍ରାଜ୍ୟଟିଏ ଠିଆକରି ମାର୍ତ୍ତଣ୍ଡର ଦୀପଶିଖା ଆଢୁଆଳରେ ସମ୍ଭ୍ରମତାର ସହିତ ନିଜର ଅନନ୍ୟ ଦୀପ୍ତି ପ୍ରକଟିତ କରନ୍ତି ସମକାଳୀନ ଅନେକ କାବ୍ୟଶିଳ୍ପୀ । ଏପରି ଏକ ଶୁଦ୍ଧ ପ୍ରାଣମୟ କାବ୍ୟଶିଳ୍ପୀ ଭାଗିରଥି ରଥ । ତାଙ୍କର ସୀମିତ ସୃଷ୍ଟି ମଧ୍ୟରେ ସୃଜନଶୀଳତାର ଭାବପକ୍ଷ ସୁରକ୍ଷିତ ।

ଭାଗିରଥି ରଥଙ୍କ ସୃଷ୍ଟିକାଳ ୧୮୯୦ରୁ ୧୯୨୫ । ସେ କେବଳ ସଂସ୍କୃତଜ୍ଞ ପଣ୍ଡିତ ନ ଥିଲେ ବରଂ ଜଣେ ଆଦର୍ଶ ଓ ଉଚ୍ଚକୋଟୀର ଶିକ୍ଷକ, କବି, ସମାଲୋଚକ ଓ ସମାଜ ସଂସ୍କାରକ ଥିଲେ । ପୁରୀରେ ଜନ୍ମିତ ଏହି ପ୍ରତିଭା ଶିକ୍ଷକତା ଆଳରେ ବାମଣ୍ଡାକୁ କର୍ମଭୂମି ରୂପେ ଆଦରି  ନେଇଥିଲା । ବାମଣ୍ଡା ରାଜକୁମାର ସ୍କୁଲରେ ପଣ୍ଡିତ ରୂପେ ୫ ଟଙ୍କା ବେତନରେ ୧୮୯୩ ମସିହାରେ ନିଯୁକ୍ତି ପାଇଥିଲେ । ୧୯୧୩ ବେଳକୁ ହେଡ୍‌ପଣ୍ଡିତ ରୂପେ ୨୫ ଟଙ୍କା ବେତନ ପାଉଥିଲେ । (୧) ସେ ୧୯୨୦ ପର୍ଯ୍ୟନ୍ତ ବାମଣ୍ଡାରେ ଅବସ୍ଥାନ କରି ଓଡ଼ିଆ ସାହିତ୍ୟକୁ ନିଜସ୍ୱ ଅବଦାନରେ ଋଦ୍ଧିମନ୍ତ କରିବାର ସୁଯୋଗ ଲଭିଥିଲେ ।

୧୮୯୩ରେ ସଂଘଟିତ ଇନ୍ଦ୍ରଧନୁ- ବିଜୁଳି ସାରସ୍ୱତ କଳହରେ ସେ ଆଧୁନିକ ସାହିତ୍ୟର ପକ୍ଷପାତି ଥିଲେ । ଇନ୍ଦ୍ରଧନୁ ପ୍ରଥମ ଭାଗ ତ୍ରୟୋଦଶ ଓ ପଞ୍ଚଦଶ ସଂଖ୍ୟାରେ ପ୍ରକାଶିତ 'ବକଚରିତ' କବିତା ପ୍ରତ୍ୟକ୍ଷ ଭାବେ ରାଧାନାଥଙ୍କୁ ଆକ୍ଷେପ କରିଥିଲା । ଏ କବିତା ପ୍ରକାଶରେ ଓଡ଼ିଶାର ବୁଦ୍ଧିଜୀବୀ ଗୋଷ୍ଠୀ ବିବ୍ରତ ଓ ସନ୍ତ୍ରସ୍ତ ହୋଇ ଉଠିଥିଲେ । ଏ ଚାଞ୍ଚଲ୍ୟକାରୀ କବିତା ବିରୁଦ୍ଧରେ ରାଧାନାଥ ପକ୍ଷବାଦୀ ଲେଖକମାନେ ଚଞ୍ଚଳ ହୋଇ ଉଠିଥିଲେ । ବକ ଚରିତର ପ୍ରତିଟି ପଦରୁ ଏହା ଯେ  ରାଧାନାଥ ବିରୁଦ୍ଧରେ କିରୂପ ବିଷୋଦ୍‌ଗାର କରିଥିଲା ସ୍ପଷ୍ଟ ହୁଏ ।



Digitized by srujanika@gmail.com

'' ଉତ୍ସର୍ଗ ପତ୍ରେ ତିନିଚାରି ଭୂପ
ବାଂଧି ସ୍ୱାର୍ଥସିଦ୍ଧି କଲା ଅମାପ
ନୀଚ ବୃତ୍ତି ଭଜି
ବ୍ୟାଜସ୍ତବେ ବୁଦ୍ଧି ଯିବାରୁ ହଜି ।
X X X X X X X X X
ଦସ୍ୟୁତା ଚାତୁରୀ କରି ଆଶ୍ରୟ
ବିଲାତକୁ ଯାଇ ନ କରି ଭୟ
ଆଣି ଗୁପତରେ ରତ୍ନ ଉଠାଇ
ତାଳ ବାହୁଙ୍ଗାରେ ଦେଲା ଲମ୍ବାଇ
X X X X X X X X X
ଦେଖାଯିବ ଥିଲେ ପିଣ୍ଡେ ପରାଣ
ଲୋଡ଼ା ହେବ ନାହିଁ ସାର ପ୍ରମାଣ
ଧରମ ଛଡାର ହୀନ କରମ
ସ୍ୱଭାବେ ତାହାର ନଷ୍ଟ ମରମ
ବକ ଧର୍ମ ନୀତି
ଦେଖିବା କିପରି ଯିବ ବରତି ।
ଧନୁଷ୍କ ମଣ୍ଡଳୀ ଅଛନ୍ତି ବେଢ଼ି
ବେନିପାଦେ ଦେବେ ଲଗାଇ ବେଡି
ଦେଖୁନାହିଁ କିଛି ବକ ବାଳୀଶ
ପୋଡିଯାଉ ତା'ର ଢୋଆଳି ନିଶ
ଆଉ କେତେ ଦିନ
କାଳିମାରେ ମୁଖ ହେବ ମଳିନ ।'' (୨)

ଏ 'ବକ ଚରିତ'ର ବୈଜ୍ଞାନିକସିଦ୍ଧ ସମାଲୋଚନା କରି କବି ଭାଗିରଥୀ ରଥ ରାଧାନାଥଙ୍କ ପ୍ରତି ଆକ୍ଷେପକୁ ଅମୂଳକ ପ୍ରତିପାଦନ ସହିତ ରାଧାନାଥ ସାହିତ୍ୟର ଉତ୍କର୍ଷତା ପ୍ରତିଷ୍ଠିତ କରିଛନ୍ତି । (୩)

ବିଭିନ୍ନ ସମୟରେ ସେ ଅନେକ କବିତା, ସାହିତ୍ୟାଲୋଚନା ପ୍ରଭୃତି ରଚନା କରି ସମ୍ବଲପୁର ହିତୈଷିଣୀ ପୃଷ୍ଠା ମଣ୍ଡନ କରିଛନ୍ତି । ୧୮୯୫ରେ ସାର୍ ସୁଢ଼ଳଦେବଙ୍କ K.C.I.E. ଉପାଧି ପ୍ରାପ୍ତି ଅବସରରେ ସଂଘଠିତ ସମ୍ବର୍ଦ୍ଧନା ସଭାରେ ତାଙ୍କର କବିତା ପାଠ ବେଶ ହୃଦୟସ୍ପର୍ଶୀ । (୪) ସେହିବର୍ଷ ସମ୍ବଲପୁର ଅଞ୍ଚଳରୁ ଓଡ଼ିଆ ଭାଷା ଉଚ୍ଛେଦ



Digitized by srujanika@gmail.com

ବିରୁଦ୍ଧରେ ଜନମତ ସୃଷ୍ଟି ହୋଇଥିଲା । ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ତାଙ୍କର 'ଭାଷା ବିଭ୍ରାଟ' କବିତା କରୁଣାତ୍ମକ ପୃଷ୍ଠଭୂମିରେ ଓଡ଼ିଆମାନଙ୍କୁ ଜାଗ୍ରତ ହେବାକୁ ଆହ୍ୱାନ ଦେଇଥିଲା । (୫) ଏ କବିତାରେ ଭାଷା ଉଚ୍ଛେଦ ଜନିତ ଦୁଃଖ ଏବଂ ଓଡ଼ିଆ ଭାଷାର ପ୍ରସାର ପାଇଁ ରାଜା, ମହାରାଜା, ଲେଖକ କବି ଏବଂ ବ୍ରିଟିଶ୍ ଶାସକମାନଙ୍କୁ କବି ଅନୁରୋଧ କରିଛନ୍ତି । ଚାରୁଚର୍ଯ୍ୟା, ସୁହୃଦ ସ୍ମରଣେ, ଲାଲା ରାମନାରାୟଣଙ୍କ ମୃତ୍ୟୁରେ କବିତା ତାଙ୍କର କ୍ଷୁଦ୍ର କବିତା ରଚନାର ସାମର୍ଥ୍ୟ ପ୍ରକାଶ କରେ । ବିଜୁଳି-ଇନ୍ଦ୍ରଧନୁ କଳହର ସୂତ୍ରଧର ଲାଲା ରାମନାରାୟଣଙ୍କ ମୃତ୍ୟୁରେ (୧୮୯୬) ଜଣେ ସମଧର୍ମା ସତୀର୍ଥ ଭାବେ କବି ଶୋକ ପ୍ରକାଶ କରିଥିଲେ ।

'' କି କୁଯୋଗେ ଉତ୍କଳର ଘୋଟିଲା ରଜନୀ
ଲାଲା ରାମନାରାୟଣ ତେଜିଲେ ଅବନୀ
ଅକାଳେ ଉତ୍କଳ ସରୁଁ ଲେଖକ କମଳ
ନିର୍ବିବେକ-କାଳ-କରୀ କଳାରେ କବଳ ।''(୬)

ବାମଣ୍ଡା ଆଲୋଚନା ସଭା, ପଣ୍ଡିତ ସଭା ଏବଂ ବ୍ରାହ୍ମଣ ସମିତିର ସକ୍ରୀୟ ସଭ୍ୟଥିଲେ ଭାଗିରଥି ରଥ, ପଣ୍ଡିତ ସଭା ଆନୁକୂଲ୍ୟରେ ବିଭିନ୍ନ ସିଦ୍ଧାନ୍ତ ନିର୍ଦ୍ଧାରଣ ପାଇଁ ସେ ବାମଣ୍ଡା ତରଫରୁ ପୁରୀ ମୁକ୍ତିମଣ୍ଡପରେ ପ୍ରତିନିଧିତ୍ୱ କରୁଥିଲେ । ବାମଣ୍ଡା ବ୍ରାହ୍ମଣ ସମିତି ୧୯୦୦ରେ ବିବାହ ବ୍ୟବସ୍ଥା ପ୍ରକରଣରେ ବାଲ୍ୟବିବାହ ନିଷିଦ୍ଧ ଏବଂ ଅକ୍ଷତ ଯୋନି ବିଧବା ବିବାହ ପ୍ରଚଳନ ଦିଗରେ ଯୁଗାନ୍ତକାରୀ ଭୂମିକା ସମ୍ପାଦନ କରିଥିଲା । (୭) ଆଲୋଚନା ସଭାର ବିଭିନ୍ନ ସାହିତ୍ୟିକ ଉତ୍ସବରେ ଭାଗିରଥି ରଥ ସକ୍ରିୟ ଅଂଶଗ୍ରହଣ କରୁଥିଲେ । ଏ ପର୍ଯ୍ୟାୟରେ ପଦପୂରଣ, ଧନ୍ଦା, ପ୍ରବନ୍ଧ ରଚନା ପ୍ରଭୃତି ହେଉଥିଲା । କବି ବଳଭଦ୍ରଦେବଙ୍କ ପ୍ରଦତ୍ତ 'ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ'ଶୀର୍ଷକ ପାଦପୂରଣରେ କବି ନିଜର କଳ୍ପନା ପ୍ରବଣତାର ଗଭୀରତା ପ୍ରକାଶ କରିଛନ୍ତି ।

'' ତାପସୀ ରଜନୀ ରାଣୀ ମଧୁମକ୍ଷି ମଧୁ ଆଣି
ରଖି ଢ଼ାଙ୍କିଥିଲା ମଧୁ ଚକ୍ରର ବକ୍ଷ
ଜ୍ୟୋତ୍ସ୍ନା ରୂପୀ ଦସ୍ୟୁପତ୍ନୀ ଜାଳିବାରୁ ଜ୍ୟୋତ୍ସ୍ନା ବହ୍ନି
ପିଇ ପକାଉଛି ମଧୁ କୋଷ ଚଷକ
ଦିଶେ ରନ୍ଧ୍ର ଅନ୍ଧାର ଯାକ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।''(୮)

ସମ୍ବଲପୁର ହିତୈଷିଣୀର ସମ୍ପାଦନା ସହିତ ଭାଗୀରଥି ରଥ ସମ୍ପୃକ୍ତ ଥିଲେ । (୯) ହିତୈଷିଣୀ ପୃଷ୍ଠାରେ ଅନେକ ସାହିତ୍ୟ ଧର୍ମୀ ଆଲୋଚନା ପ୍ରକାଶ କରି ପାଣ୍ଡିତ୍ୟର ପରିଚୟ



Digitized by srujanika@gmail.com

ଦେଇଥିଲେ । ସଚ୍ଚିଦାନନ୍ଦ ଦେବଙ୍କ ରାସରହସ୍ୟ ରଚନାକୁ ଯୁକ୍ତିସିଦ୍ଧ ସମର୍ଥନ ଜଣାଇ ରଚନା କରିଥିଲେ 'ରାସ ରହସ୍ୟ ସମର୍ଥନ' । (୧୦) ରାଧାନାଥଙ୍କ ମହାଯାତ୍ରାର ଆଲୋଚନାରେ ତାଙ୍କର କାବ୍ୟ ବିଶ୍ଳେଷଣ ଶକ୍ତିର ପରିଚୟ ମିଳେ । (୧୧)'' ରାଜନୀତି ଓ ରାଜଧର୍ମ'' ପ୍ରବନ୍ଧରେ ପ୍ରାଚୀନ ଓ ପୌରାଣିକ ସମୟଠାରୁ ସାମ୍ପ୍ରତିକ ରାଜନୀତିର ବ୍ୟାଖ୍ୟା କରାଯାଇଛି । (୧୨) ମଧୁ ରାଓଙ୍କ 'ସଙ୍ଗୀତମାଳାର ସମାଲୋଚନା' (୧୩) ଏବଂ 'ସାହିତ୍ୟ ସମ୍ବନ୍ଧେ' (୧୪) ପ୍ରଭୃତି ସାରସ୍ୱତ କୃତି ତାଙ୍କର ସାରସ୍ୱତ କୃତିତ୍ୱର ପ୍ରମାଣ ଦିଏ ।

ଇତସ୍ତତଃ ପ୍ରକାଶିତ କିଛି ଦୁଷ୍ପ୍ରାପ୍ୟ ରଚନା ବ୍ୟତିରେକେ ଯେଉଁ କେତୋଟି କୃତି ତାଙ୍କର ପ୍ରତିଭାକୁ ପରିପୁଷ୍ଟ କରେ ସେଗୁଡିକ ହେଲା-

୧. ଶରତ ସୁନ୍ଦରୀ (କାବ୍ୟ) ୧୮୯୪

୨. ପଦ୍ମାବତୀ ପରିଣୟ (କାବ୍ୟ) ୧୯୦୬

୩. ଉତ୍କଳ ଚରିତ (କାବ୍ୟ) ୧୯୧୧

ଏଥି ସହିତ ୪. ମାନସ ପ୍ରସାଦିନୀ ଓ ୫. ଅଳଙ୍କାର ମୀମାଂସା ତାଙ୍କର ସଂସ୍କୃତ ଜ୍ଞାନର ପରିଚୟ ପ୍ରଦାନ କରେ । ଏ ଆଲୋଚନାରେ ତାଙ୍କର ଉପରୋକ୍ତ ତିନୋଟି କାବ୍ୟ ପ୍ରତି ପାଠକୀୟ ସଂମ୍ବେଦନା ଆକର୍ଷଣର ଉଦ୍ୟମ ମାତ୍ର କରାଯାଇଛି ।

❖ **ଶରତ ସୁନ୍ଦରୀ:** ଶରତ ସୁନ୍ଦରୀ କାବ୍ୟ ୧୮୯୪ ମସିହାରେ ବାମଣ୍ଡା ସୁଢ଼ଳ ପ୍ରେସରେ ମୁଦ୍ରିତ ହୋଇ ଅପୂର୍ବ ପାଠକୀୟତା ହାସଲ କରିଥିଲା । ଏ କାବ୍ୟରେ ଶରତ ଋତୁର ପଲ୍ଲୀ ଦୃଶ୍ୟ କବିଙ୍କ ଲେଖନୀରେ ଜୀବନ୍ତ ହୋଇଛି ।

ସ୍ୱର୍ଣ୍ଣକାନ୍ତି ଜୀର୍ଣ୍ଣା ସୁପକ୍ୱ ଅଶୀଣା
ଲୋଭି କୃଷକ କୁମାରୀ
ଅଠାକାଠି ଛଳେ ଶୁକ ପକ୍ଷୀ ଧରି
ନାଚନ୍ତି ମାନସ ହରି
କୁମାରୀ ନୃତ୍ୟରେ ଅତି ପ୍ରଲୋଭିତ
ହୋଇ ଶରଦ ସୁନ୍ଦରୀ
ଅଗସ୍ତି କୁସୁମ କଳିକା ବଙ୍କିମ
ଶଶାଙ୍କ କଳା ବିସ୍ତାରି । (ଶରତ ସୁନ୍ଦରୀ, ପୃ-୩-୪)

କବିଙ୍କ ପ୍ରକୃତି ନିଜ ଜୀବନ ପରିଧି ଭିତରେ ପରିଶୀଳିତ । ଅନୁଭବର ଉଚ୍ଚତର ମାନସିକ ସ୍ଥିତିରେ ସାଧାରଣ ଚିତ୍ରକୁ ପ୍ରତିଷ୍ଠିତ କରିବାରେ ହିଁ ଏ କାବ୍ୟର ପାରଦର୍ଶିତା । ପ୍ରକୃତି ମାନବୀୟ ମୂଲ୍ୟବୋଧରେ ନୈସ୍ୱର୍ଗୀକ ହୋଇ ଉଠିଛି । କବିଙ୍କ କଳ୍ପନା ଶକ୍ତିକୁ



Digitized by srujanika@gmail.com

ବହୁମୁଖୀ ପ୍ରକୃତି ଉଦ୍ଦୀପିତ କରିଛି ଏବଂ ଆବେଗଦୀପ୍ତ ମାନସ ଭୂମିରେ ସୌନ୍ଦର୍ଯ୍ୟାନୁଭୂତିକୁ ଯୋଡି ଦେଇଛି । ତେଣୁ ପ୍ରକୃତି ଓ ନାରୀ ଏକାତ୍ମ ହୋଇ ଉଠିଛନ୍ତି । କବିଙ୍କ କଳାବୋଧରେ ଶୃଙ୍ଗାରିକତାର ପ୍ରଭାବ ଅପ୍ରତିହତ ରହିଛି । ପ୍ରକୃତି ବର୍ଣ୍ଣନାର ମୌଳିକ ବ୍ୟଞ୍ଜନା ଭୂମିସଂଲଗ୍ନ । ମାନବ କୈନ୍ଦ୍ରିକ ପ୍ରକୃତି ବ୍ୟଞ୍ଜନା ହିଁ କାବ୍ୟକୁ ଉଷ୍ମ ଓ ଆବେଦନଯୁକ୍ତ କରିଛି ।

''ଝଟ ଝଟ କରି ବସିଣ ବାଳାଏ
ଚାଳିଲେ ଜାନୁ ଯୁଗଳ
ଜାଙ୍ଗଳିକା ପରି ଖେଳିଲେ ବାହାରି
ବାହୁ ଭୁଜଙ୍ଗମ କୁଳ ।
ଖସାଇ ଚରଣ ଲହସି ଗମିଲେ
ଆଗକୁ ଯିବାକୁ ବଳି
ସରୋବରକୁ କି ବରଟା ଗମନ୍ତି
ପନ୍ତି ବାନ୍ଧି ଢ଼ଳି ଢ଼ଳି ।'' (ଶରତ ସୁନ୍ଦରୀ- ପୃ-୯)

ପ୍ରକୃତି ଭିତରେ ମଣିଷ ନିଜର ଅନୁଭବର ଗଭୀରତାକୁ ମାପେ । ପ୍ରକୃତି ଭିତରେ ନିଜର ସତ୍ୟାନୁଭବ ଓ ଇନ୍ଦ୍ରିୟପରାୟଣତାକୁ ଆରୋପ କରି ବୌଦ୍ଧିକତା ସହିତ ନାନ୍ଦନିକତାକୁ ସଂଯୋଗ କରେ । କଇଁ ଫୁଲ ଏବଂ ଚନ୍ଦ୍ରର ନିବିଡ ସମ୍ପର୍କକୁ ପତି ପତ୍ନୀର ଶାଶ୍ୱତ ସମ୍ପର୍କ ସହିତ ଯୋଡି କବି କାବ୍ୟ ଭାବକୁ ଶବଳିତ କରିଛନ୍ତି ।

''ପ୍ରକୃତି ରୂପିଣୀ କୈରବ ରମଣୀ
ଦଳ-ଦୋଳାପରେ ବସି
ଢ଼ଳିବା ଛଳରେ ନାହିଁ କରୁଛି କି
ଛୁଁଅନା ହେ ପ୍ରିୟ ଶଶି
ପ୍ରତିବିମ୍ବ କଂପ ଛଳେ କି ଶଶାଙ୍କ
ଯାଉଛି ଯାଉଛି କହି
କାର୍ତ୍ତିକ ସ୍ନାହାନ କ୍ଷୀର ସାଗରରେ
ବଢ଼ାଇବି ରାତ୍ରି ଥାଇ ।'' (ଶରତ ସୁନ୍ଦରୀ- ପୃ-୧୬)

କୁମାରୀ କନ୍ୟା ଏବଂ ନବବଧୂମାନଙ୍କ ସୌନ୍ଦର୍ଯ୍ୟପୂର୍ଣ୍ଣ ସରୋବରରେ ସ୍ନାନ ସହିତ କଇଁ ପଦ୍ମ ପ୍ରଭୃତି ଫୁଲର ତୁଳନା କାବ୍ୟ ମହତ୍ତ୍ୱ ପ୍ରତିପାଦନ କରିଛି । ଜୀବନ, ପ୍ରକୃତି ଏକାକାର ହୋଇଛନ୍ତି । ଜୀବନ ବନସ୍ଥ କବି ପ୍ରକୃତିର ବର୍ଣ୍ଣବିଭା ଭିତରେ ଜୀବନର ମୂଳସୂତ୍ରକୁ ଗୁନ୍ଥି କାବ୍ୟକୁ କରିଛନ୍ତି ପାଟବତା ପୂର୍ଣ୍ଣ । ପ୍ରକୃତି ବର୍ଣ୍ଣନା ଛଳରେ ଜୀବନର ଅନୁପମ ବିଭାବ



Digitized by srujanika@gmail.com

କବିପ୍ରାଣର ସୃଜନଶୀଳତାକୁ କରିଛି ପୁଷ୍ଟ ଓ ପରିବ୍ୟାପ୍ତ । 'ଶରତ୍ ସୁନ୍ଦରୀ' କାବ୍ୟ ଅନ୍ତରାଳରେ କବିଙ୍କ ସୌନ୍ଦର୍ଯ୍ୟଚେତନା ମହତ୍ତର ଜୀବନର ତନ୍ମୟତାକୁ ନିୟନ୍ତ୍ରଣ କରିଛି ।

❖ **ପଦ୍ମାବତୀ ପରିଣୟ :** ୧୯୦୬ରେ ପ୍ରକାଶିତ ଏ କାବ୍ୟକୁ କବି ମଧୁରାଓଙ୍କୁ ଉତ୍ସର୍ଗ କରିଛନ୍ତି । ମଧୁରାଓଙ୍କ ଉତ୍ସାହ ବାଣୀ କବିଙ୍କ କାବ୍ୟ ଜୀବନକୁ ଋଦ୍ଧିମନ୍ତ କରିବା କଥା ସେ ସ୍ୱୀକାର କରନ୍ତି । '' ଆପଣ ସାଧୁ-କାବ୍ୟ ପ୍ରଣୟନ, ଟାଉନ୍ ଭିକ୍ଟୋରିଆ ବିଦ୍ୟାଳୟ ସ୍ଥାପନ, ଛାତ୍ରବୃତ୍ତି ପ୍ରଦାନ ଏବଂ ଅଧ୍ୟାପନ ପ୍ରଭୃତି ସଦନୁଷ୍ଠାନ ଦ୍ୱାରା ଉତ୍କଳ ସାହିତ୍ୟ କ୍ଷେତ୍ରରେ ଅନେକଗୁଡିଏ ସୁମନାବାଟୀ ସୃଷ୍ଟି କରିଛନ୍ତି । ମୁଁ ସେମାନଙ୍କ ମଧ୍ୟରେ ନୀଚତମ ଶିବମଲ୍ଲୀ । କାରଣ ମୋ'ର ଜୀବନର ପୂର୍ବାହ୍ନ ପ୍ରାଚ୍ୟ ଲୋକରେ ପ୍ରଦୀପ୍ତ ହୋଇଥିଲେ ହେଁ ଅପରାହ୍ନ ପାଶ୍ଚାତ୍ୟ ଆଲୋକର ଅଭାବ ବଶତଃ ଦୁର୍ଦ୍ଦିନ ହୋଇ ଯାଉଥିଲା । କିନ୍ତୁ ଆପଣଙ୍କର ସାହାଯ୍ୟ ଓ ସହାନୁଭୂତି ଯୋଗେ ସେହି ଅଭାବ ଦୂରୀକୃତ ହେଲା ।'' (ଉତ୍ସର୍ଗ ପତ୍ର : ପଦ୍ମାବତୀ ପରିଣୟ-୧୯୦୬)

ରାଧାନାଥ ଯୁଗୀୟ ଏକ ଉତ୍କର୍ଷ କାବ୍ୟ ରୂପେ 'ପଦ୍ମାବତୀ ପରିଣୟ'କୁ ଗ୍ରହଣ କରାଯାଇପାରେ । ଭାବ ଓ ବର୍ଣ୍ଣନା କ୍ରମରେ ରାଧାନାଥଙ୍କ ଦ୍ୱାରା ପ୍ରଭାବିତ ଏ କବି ଆଙ୍ଗିକରେ ଭକ୍ତକବି ମଧୁରାଓଙ୍କ ଅନୁକାରୀ । ମଧୁରାଓଙ୍କ ପରି ଭାଗିରଥି ରଥଙ୍କ କାବ୍ୟ ଶୈଳୀ ସଂସ୍କୃତ ସାହିତ୍ୟର ଅନୁବ୍ରତୀ- ସମାସ ନିଷ୍ପନ୍ନ କ୍ଲିଷ୍ଟ ତତ୍ସମ ଶବ୍ଦ ସମାରୋହରେ ତାଙ୍କର କବିତା ନିଜର ଦୀପ୍ତି ପ୍ରକାଶ କରିଛି । ସ୍ଥଳ ବିଶେଷରେ ଶବ୍ଦ କାଠିନ୍ୟକୁ ଆଦରି ନେବାରେ କାବ୍ୟ ଦୁର୍ବଳତା ପ୍ରକାଶ ପାଇଛି । ରାଧାନାଥ କାବ୍ୟ ବିଭବ ରୂପେ ସୁସ୍ପଷ୍ଟ ପ୍ରକୃତି ବର୍ଣ୍ଣନା, ବିଭିନ୍ନ ସ୍ଥାନର ଭୌଗଳିକ ବର୍ଣ୍ଣନା, ଯୁଦ୍ଧ ସମୟରେ ଉତ୍କଳୀୟ ରାଜନ୍ୟ ବର୍ଗଙ୍କ ବୀରତ୍ୱର ପରିଚୟ ପ୍ରଦାନକୁ କବି ଗ୍ରହଣ କରିଛନ୍ତି । ଶରତ, ହେମନ୍ତ ଋତୁ ବର୍ଣ୍ଣନାରେ କବିଙ୍କ ଦୃଷ୍ଟି ଭକ୍ତକବିଙ୍କ ଆଦର୍ଶରେ ଅନୁପ୍ରାଣିତ ।

ଗତାନୁଗତିକ କାହାଣୀକୁ ବିଭିନ୍ନ ରାଗରାଗିଣୀ ମାଧ୍ୟମରେ ପରିବେଷଣ କରିଛନ୍ତି କବି । ପ୍ରାକୃତିକ ଦୃଶ୍ୟ ଓ ଯୁଦ୍ଧ ବର୍ଣ୍ଣନାରେ କବିଙ୍କର ମୌଳିକତା ସୁସ୍ପଷ୍ଟ । ପ୍ରଥମ ସର୍ଗରେ କପିଳେନ୍ଦ୍ରଦେବ ନିଜ ସିଂହାସନର ପ୍ରକୃତ ଉତ୍ତରାଧିକାରୀ ଚିନ୍ତାରେ ସ୍ୱପ୍ନ ଦେଖୁଛନ୍ତି। ସ୍ୱପ୍ନରେ ଦେବାଦେବୀଙ୍କ କଥାଛଳରେ ଭାରତ ଯବନ କବଳିତ ହେବା, ମନ୍ଦିର ଧ୍ୱଂସ ପାଇବାର ବିବରଣୀ ପ୍ରଦତ୍ତ । ବିଭିନ୍ନ ପ୍ରାନ୍ତୀୟ ରାଜନ୍ୟ ବର୍ଗଙ୍କ ଅଭ୍ୟୁତ୍‌ଥାନ ଫଳରେ ଉତ୍କଳର ମର୍ଯ୍ୟାଦା ରକ୍ଷା ସମ୍ଭବ, ସ୍ୱପ୍ନକ୍ରମରେ ଭବିଷ୍ୟତ ଦର୍ଶନର ରାଧାନାଥୀ ସୂତ୍ର କବି ଯଥାଯଥ ପ୍ରୟୋଗ କରିଛନ୍ତି ।

'' ଏ କାଳେ ପ୍ରଧାନପାଟର ପୂତ ପ୍ରପାତ ନୀରେ
ଫୁଟିବ ତୋ କୁଳ କମଳ ଦେବଦୂର୍ଗ ମହୀରେ



Digitized by srujanika@gmail.com

ଏ ଅମଳ ପଦ୍ମେ କମଳା ବାଣୀ ବସିବେ ବେନି
ଶିତାଶିତ ଭେଦ ସପତ୍ନୀ- ବାଦ ମନେ ନ ଘେନି
ଏ ମହାମେଳନୁ ସମ୍ଭୂତ ହେବ ଉତ୍କଳ ଭାଷା
ଉତ୍କଳ ଭାରତୀ ପ୍ରକାଶ ପ୍ରତି ମଣ ତା ଉଷା ।
ଉପାଧି-ଦୀଧିତି ପ୍ରଦୀପ୍ତ ଏହି ବଂଶ ସୁଧାଂଶୁ ।
ଦୀପିବ ଓଡ଼ିଶା ଶର୍ବରୀ ବିନା ସାମ୍ରାଜ୍ୟେ ପ୍ରାଂଶୁ'' । (ପଦ୍ମାବତୀ ପରିଣୟ, ପୃ-୮)

ଏହି ପଦ୍ୟ ଖଣ୍ଡଟି ଚିଲିକାର ବହୁଚର୍ଚ୍ଚିତ ନିମ୍ନୋକ୍ତ ପଦ୍ୟାଂଶରୁ ରସ ସଂଗ୍ରହ କରିଥିବା ଅନୁମିତ ହୁଏ ।

''ପାହିଲାଣି ଘୋର ତାମସୀ ଯାମିନୀ
ଫୁଟିବ ଉତ୍କଳ ଭାଷା କମଳିନୀ
ଏ ଘୋର ଯାମିନୀ ଅବସାନ ଶଂସି
କାବ୍ୟତାର ରୂପେ ବୀର ଗଙ୍ଗବଂଶୀ
ଉଦିଲେ ପ୍ରଥମେ ବାମଣ୍ଡା ରାଜନ
ବାସୁଦେବ ବିଶ୍ୱ-କଲ୍ୟାଣ - ଭାଜନ ।'' (ଚିଲିକା)

ପ୍ରକୃତି ବର୍ଣ୍ଣନାର ଯେଉଁ ପ୍ରାଣବନ୍ତ ଐଶ୍ୱର୍ଯ୍ୟ କବି 'ଶରତ୍ ସୁନ୍ଦରୀ'ରେ ପ୍ରଦାନ କରିଥିଲେ ତାହା ଆହୁରି ବର୍ଣ୍ଣାଢ଼୍ୟ ହୋଇଛି ଏ କାବ୍ୟରେ। ୨ୟ ସର୍ଗରେ ଶରତ ବର୍ଣ୍ଣନା, ୩ୟ ସର୍ଗରେ ହେମନ୍ତ ବର୍ଣ୍ଣନା, ୭ମ ସର୍ଗରେ ପୂର୍ବଘାଟ କବି ବର୍ଣ୍ଣନାରେ ପ୍ରକୃତିର ଅପରୂପ ଦୃଶ୍ୟ ମହୀୟାନ ।

''ଦିନକର କର ପାଇ ପଙ୍କଜିନୀ
ଆନନ୍ଦେ ନୀଳ ସଳିଳେ
କାଇଁସ କୁସୁମ ଶ୍ୟାମା ଶାଳି ସହ
ଦୋଳଇ ମୃଦୁ୍ୟଳାନିଳେ।'' (ପଦ୍ମାବତୀ ପରିଣୟ, ପୃ-୧୨)

XXX XXX XXX

''ଶାରଦ ଚନ୍ଦ୍ରମା ବଣିକ କି ଅବା
କୌମୁଦୀ ଟାଙ୍ଗଣା ପାଣି
ଦେଇ ଝାଳି ଅଛି ଜଗତ ଗହଣା
ଦ୍ୱିଗୁଣେ ରାଜେ ଯା ଠାଣି ।'' (ପଦ୍ମାବତୀ ପରିଣୟ, ପୃ-୧୫,୧୬)

'' ପଦ୍ମାବତୀ ପରିଣୟ''ରେ ସନ୍ନିବେଶିତ ସୁନ୍ଦର ଉପମା, ଅଳଙ୍କାର , ସାବଲୀଳ ଶବ୍ଦ ସଂଯୋଜନା, ବର୍ଣ୍ଣନା କ୍ରମର ଅପୂର୍ବ ଦୃଶ୍ୟ ସଜ୍ଜା ଏହାକୁ ଏକ ଉତ୍କୃଷ୍ଟ କାବ୍ୟର



Digitized by srujanika@gmail.com

ମର୍ଯ୍ୟାଦା ପ୍ରଦାନ କରେ । ଏ ପ୍ରସଙ୍ଗରେ ରାଧାନାଥଙ୍କ ବକ୍ତବ୍ୟ ପ୍ରଣିଧାନ ଯୋଗ୍ୟ - '' ମୋହର କ୍ଷୁଦ୍ର ମତରେ 'ପଦ୍ମାବତୀ ପରିଣୟ' ଉତ୍କଳ ଭାଷାରେ ଖଣ୍ଡିଏ ଉତ୍କୃଷ୍ଟ ଏବଂ ଉପାଦେୟ କାବ୍ୟ । କି ଭାଷା, କି ଭାବ, କି ବର୍ଣ୍ଣନାଛଟା, ପ୍ରତ୍ୟେକ ବିଷୟରେ ଏହି କାବ୍ୟର ଉତ୍କର୍ଷ ଦେଖି ମୁଁ ଅତ୍ୟନ୍ତ ଆହ୍ଲାଦିତ ହୋଇଅଛି । X X X'' (ସ.ହି. ୨୫।୨।୧୯୦୫) ଏ କାବ୍ୟର ମହନୀୟତା ଯୋଗୁ ଏହାକୁ ମଧ୍ୟପ୍ରଦେଶ ଓଡ଼ିଆ ସ୍କୁଲ ଲାଇବ୍ରେରୀ ପୁସ୍ତକ ରୂପେ ସ୍ୱୀକୃତି ମିଳିଥିଲା । (ସ.ହି. ୩.୬.୧୯୦୫) ' ସମ୍ବଲପୁର ହିତୈଷିଣୀ'ପୃଷ୍ଠାରେ ଏହି କାବ୍ୟର ଭୂୟସୀ ପ୍ରଶଂସା କରାଯାଇଛି । (ସ.ହି. ୧୭.୩.୧୯୦୬) ଏ କାବ୍ୟରେ ପ୍ରକୃତି ବର୍ଣ୍ଣନା, ବୀରରସର ଯଥାର୍ଥ ପ୍ରୟୋଗ ସହିତ ଐତିହାସିକ ସତ୍ୟ ସହିତ କିମ୍ବଦନ୍ତୀ ଓ ଲୋକକଥାକୁ ଯଥାଯଥ ସମ୍ମାନ ଦିଆଯାଇଛି । ଏଥିସହିତ କଳାତ୍ମକ ଭାବେ ଗୁନ୍ଥା ଯାଇଛି ଉତ୍କଳୀୟ ସଂସ୍କୃତିକୁ । ସଂସ୍କୃତିର ରୋମନ୍ଥନ ଆଳରେ କାବ୍ୟାଭିମୁଖ୍ୟ ସଫଳକାମ ହୋଇଛି ।

❖ **ଉତ୍କଳ ଚରିତ :** ବାମଣ୍ଡା ହିତୈଷିଣୀ ଇଲେକ୍ଟ୍ରିକ୍ ମେଶିନ୍ ପ୍ରେସ୍‌ରେ ୧୯୧୧ ମସିହାରେ ଏହି କାବ୍ୟ ପ୍ରକାଶିତ । ବିଂଶ ଶତାବ୍ଦୀର ପ୍ରଥମ ତିନି ଦଶକରେ ସୃଷ୍ଟ ଜାତୀୟ ଚେତନାର ଅଭିନବ ରୂପ ଉତ୍କଳ ଚରିତ । ଦେଶୀୟ ବୀର ଚରିତର ଆବାହନ ଫଳରେ ଜାତୀୟତାବୋଧ ଉଦ୍ରେକ ହିଁ ଏ କାବ୍ୟର ଆଭିମୁଖ୍ୟ । ଉତ୍କଳୀୟ ସଂସ୍କୃତିର ଚରମତମ ଅଭ୍ୟୁତ୍‌ଥାନ ଜଗନ୍ନାଥ ଚେତନାକୁ ବୌଦ୍ଧ ଧର୍ମ ସହିତ ସମ୍ପର୍କିତ କରି କବି ନିଜସ୍ୱ ପ୍ରାପ୍ତ ସୁଯୋଗର ସୁବ୍ୟବହାରରେ ଏପରି ଏକ ଐତିହାସିକ କାବ୍ୟ ସୃଷ୍ଟିରେ ସଫଳ ହୋଇଛନ୍ତି ।

ଉନବିଂଶ ଶତାବ୍ଦୀର ଶେଷ ଭାଗକୁ ଓଡ଼ିଶା ମୁଖ୍ୟତଃ ଉତ୍କଳ ନାମରେ ପରିଚିତ ହୋଇଛି । ୧୫୬୮ରେ ଓଡ଼ିଶାର ସ୍ୱାଧୀନତା ଲୋପ ସହିତ ଓଡ଼ିଶା ଖଣ୍ଡବିଖଣ୍ଡିତ ହୋଇଛି । ମହିମା ଲୋପ ପାଇଛି। ଉନବିଂଶ ଶତାବ୍ଦୀର ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାର ଜାତୀୟତାବୋଧ ତୀବ୍ର ରୂପ ଧାରଣ କରିଛି ଏବଂ ଏହାର ମାଧ୍ୟମ ହୋଇଛି ଉତ୍କଳ । ଏ ନାମର ପ୍ରାଧାନ୍ୟ ବିଭିନ୍ନ ସ୍ତରରେ ପ୍ରକାଶ ପାଇଛି । ପତ୍ରପତ୍ରିକା, କାବ୍ୟ, କବିତା ଅନୁଷ୍ଠାନାଦିର ନାମକରଣରେ ଉତ୍କଳ ଶବ୍ଦକୁ ପ୍ରାଧାନ୍ୟ ଦିଆଯାଇଛି । ଉତ୍କଳଦୀପିକା, ଉତ୍କଳ ହିତୈଷିଣୀ, ଉତ୍କଳ କମଳା, ଉତ୍କଳ ସଭା, ଉତ୍କଳ ଲକ୍ଷ୍ମୀ... ପ୍ରଭୃତି ପ୍ରୟୋଗ ଜନମନ ଆକର୍ଷଣରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଏ ପ୍ରେକ୍ଷାପଟରେ କବି ଭାଗିରଥି ରଥ ' ଉତ୍କଳ ଚରିତ' ରଚନା କରି ସମୟର ଆହ୍ୱାନକୁ ମାନି ନେଇଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟର ସଂଧିକ୍ଷଣରେ ଜାତୀୟତାବୋଧ ଏକ ସମ୍ମାନାସ୍ପଦ ସ୍ଥାନ ଅଧିକାର କରିଥିଲା । ଜାତୀୟ ସ୍ୱାଭିମାନ ପ୍ରତିଷ୍ଠା ସହିତ ବିଦେଶୀ ଶାସନରୁ ମୁକ୍ତିଲାଭର ଉପାୟ ନିର୍ଦ୍ଧାରଣ ସର୍ବୋପରି ଜନସାଧାରଣଙ୍କ ଅବରୁଦ୍ଧ ମାନସିକତାକୁ ବ୍ୟାପ୍ତ ଓ ଉତ୍ତୀର୍ଣ୍ଣ



Digitized by srujanika@gmail.com

କରିବା ଦିଗରେ ଜାତୀୟତା ଉଦ୍ଦିଷ୍ଟ ଥିଲା । ମାତୃଭୂମି ଓ ମାତୃଭାଷାର ଉନ୍ନତି କଳ୍ପେ ସାରସ୍ୱତ କର୍ମ ଅଭିପ୍ରେତ । ଜାତୀୟ ଦାୟିତ୍ୱବୋଧ ପ୍ରେକ୍ଷାପଟରେ ଲେଖକର ସମୁଚିତ କର୍ତ୍ତବ୍ୟ ରୂପେ ଦେଖାଦେଇଥିଲା ଐତିହାସିକ ବୀର ଚରିତ ମାଳା । ଜାତୀୟଭାବ ପ୍ରକାଶ କରୁଥିବା ଚରିତ୍ର ଓ ଭିତ୍ତିଭୂମିକୁ ସଜ୍ଞାନ ଚିତ୍ତରେ ଉତ୍ତୋଳନ କରି ବିଦଗ୍ଧ କବି ଭାଗିରଥି ରଥ ସୃଷ୍ଟି କରିଛନ୍ତି 'ଉତ୍କଳ ଚରିତ' । ମହନୀୟ ଉତ୍କଳୀୟ ସଂସ୍କୃତିର ପ୍ରତ୍ନ ଉଦ୍ଧାର କରିଛନ୍ତି କବି ।

ନୀଳମଣି ମୟ ମାଧବ   ବସି ଯାହାର ଶିରେ
ବିହିଲେ ଉତ୍କଳ ବକ୍ଷକୁ   ମୋକ୍ଷ ଧାମ ମହୀରେ
ଅହମିକା ତାପ ଉତ୍ତପ୍ତ   ନର ତରଳ ମତି
ସାଗର ସଲିଳ ଦର୍ଶନେ   ଯାଏ ସଙ୍କୋଚି ଅତି
ଏଥିପାଇଁ ପୂତ ଭାରତୁଁ   ଆସି କେତେ ତପସ୍ୱୀ
ଆଶ୍ରିଥିଲେ ଯାର ଶିଖର   ତାପତ୍ରୟ ବିଧ୍ୱଂସୀ ।(ଉତ୍କଳ ଚରିତ, ପୃ-୧)

ଦଶସର୍ଗ ବିଶିଷ୍ଟ ଏ କବିତା ପୁସ୍ତକରେ କବି ବିଭିନ୍ନ ରାଗରାଗିଣୀକୁ ଗ୍ରହଣ କରିଛନ୍ତି । ଉତ୍କଳୀୟ ପରମ୍ପରା ଓ ଐତିହ୍ୟକୁ ସମ୍ମାନ ଜଣାଇ ବୀରପୁରୁଷଗଣଙ୍କ ଜୀବନ ଚରିତ ପ୍ରଦାନରେ କବି ନିଜର ସାମର୍ଥ୍ୟ ପ୍ରକାଶ କରିଛନ୍ତି। ବୌଦ୍ଧ ଧର୍ମ, ବ୍ରାହ୍ମଣ୍ୟ ଧର୍ମ ତଥା ବିଭିନ୍ନ ରାଜବଂଶର ଉତ୍‌ଥାନ ପତନ ଦେଇ ଐତିହାସିକ ତଥ୍ୟକୁ ସତ୍ୟଶୀଳ ଭାବେ ପ୍ରକାଶ କରିବାର ଚେଷ୍ଟା କରିଛନ୍ତି । ଶିଳାଲିପି, ପୁରାତତ୍ତ୍ୱ, ଇତିହାସ ଓ ପୁରାଣରୁ ତଥ୍ୟ ସଂଗ୍ରହ ଦ୍ୱାରା କାବ୍ୟବସ୍ତୁ ପୁଷ୍ଟ ହୋଇଛି ।

ରାଧାନାଥଙ୍କ ଦୃଷ୍ଟିରେ ଉତ୍କଳର ଶୋଚନୀୟ ଦୂରବସ୍ଥା ଝଂକୃତ । ବୀଣାପାଣିଙ୍କ କରୁଣା ଅଭାବରୁ ଉତ୍କଳ ଅରଣ୍ୟ ପ୍ରସୂନର ଦଶା ଲଭିଛି ।(ଚିଲିକା)

ମାତ୍ର କବି ଭାଗିରଥି ରଥ ଆଶାବାଦର ସୂଚନା ଦେଇଛନ୍ତି । ପରମ୍ପରା ଓ ଐତିହ୍ୟର ମହିମାଗାନ ମାଧ୍ୟମରେ ସେ ପ୍ରତିଷ୍ଠିତ କରିଛନ୍ତି ସୁଭଗା ମହୀୟାନ ଉତ୍କଳକୁ । ମାତୃପୂଜାର ମହନୀୟ ପରାକାଷ୍ଠା, ମାତୃଭୂମି ପ୍ରତି ଦୁର୍ବାର ଆକର୍ଷଣ ଉତ୍କଳ ଜନନୀର ଦିବ୍ୟ ରୂପ ପ୍ରଦାନରେ କବିଙ୍କୁ ସାହାଯ୍ୟ କରିଛି । ଏ ଦୃଷ୍ଟିରୁ 'ଉତ୍କଳ ଚରିତ' ଏକ ସଫଳ କାବ୍ୟକୃତି ।

ଭାଗିରଥି ରଥ କେବଳ ଆଧୁନିକ ଓଡ଼ିଆ କବିତାର ଜଣେ କୃତବିଦ୍ୟ ସାଧକ ନୁହନ୍ତି ବରଂ ଜଣେ ସଂସ୍କୃତଜ୍ଞ ପଣ୍ଡିତ । ସେ ସଂସ୍କୃତରେ ଅନେକ କାବ୍ୟକବିତା ଓ ଅଳଙ୍କାର ଶାସ୍ତ୍ର ପ୍ରଣୟନ କରିଛନ୍ତି । 'ମାନସ ପ୍ରସାଦିନୀ ଟୀକା' ଓ 'ଅଳଙ୍କାର ମୀମାଂସା' ତାଙ୍କର ଦୁଇଟି ଉତ୍କୃଷ୍ଟ ସଂସ୍କୃତ ଗ୍ରନ୍ଥ । ପ୍ରଥମୋକ୍ତ ପୁସ୍ତକଟି ଦୁଷ୍ପ୍ରାପ୍ୟ ଥିଲାବେଳେ ଦ୍ୱିତୀୟ ପୁସ୍ତକଟି ବାମଣ୍ଡା ସୁଦ୍ଦଳ ପ୍ରେସ୍‌ରେ ୧୯୦୫ ଖ୍ରୀଷ୍ଟାବ୍ଦ (୧୮୨୭ ଶକାବ୍ଦ)ରେ ପ୍ରକାଶ ପାଇଥିଲା ।



Digitized by srujanika@gmail.com

ଏହି ଅଳଙ୍କାର ମୀମାଂସା ପୁସ୍ତକରେ ସଂସ୍କୃତ ସାହିତ୍ୟର ବିଭିନ୍ନ ଅଳଙ୍କାରର ପ୍ରଶ୍ନୋତ୍ତର ଛଳରେ ସୁନ୍ଦର ବର୍ଣ୍ଣନା ରହିଛି । ଏହି ପୁସ୍ତକଟି ସମକାଳୀନ ମଧ୍ୟପ୍ରଦେଶର ପାଠ୍ୟପୁସ୍ତକ ରୂପେ ଗୃହୀତ ହୋଇଥିଲା । ଏହି ପୁସ୍ତକରେ ପ୍ରାଚୀନ କାବ୍ୟତତ୍ତ୍ୱର ମତକୁ ଅବିକଳ ଭାବରେ ଗ୍ରହଣ କରିବା ସହିତ ଭାଗିରଥି ନିଜର ମୌଳିକତା ପ୍ରକାଶ କରିଛନ୍ତି । ପୁସ୍ତକରେ ବିଭିନ୍ନ ଅଳଙ୍କାର ସମ୍ପର୍କିତ ପ୍ରଶ୍ନ କରି ତା'ର ଯଥାଯଥ ଉତ୍ତର ମାଧ୍ୟମରେ ଛାତ୍ରମାନଙ୍କର ସନ୍ଦେହକୁ ମୋଚନ କରିବାର ସୁନ୍ଦର ପ୍ରଚେଷ୍ଟା କରାଯାଇଛି । ସମକାଳୀନ ମଧ୍ୟପ୍ରଦେଶ ଅନ୍ତର୍ଗତ ଗଡ଼ଜାତ ସମୂହ ଓ ଓଡ଼ିଶାର ଅନେକ ବିଦ୍ୟାଳୟରେ ଏହି ପୁସ୍ତକଟି ପାଠ୍ୟପୁସ୍ତକର ମାନ୍ୟତା ଲଭିଥିଲା ।

ଊନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜଣେ ସୃଜନଶୀଳ ସତ୍ ସାହିତ୍ୟିକ ରୂପେ ଭାଗିରଥି ରଥ ପ୍ରତିଭାତ ହୁଅନ୍ତି । ଉଭୟ ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ଅନେକ କାବ୍ୟ କବିତା ରଚନା କରି ଉତ୍କଳୀୟ ବାଣୀ ମନ୍ଦିରକୁ ସେ ପରିପୁଷ୍ଟ କରିଛନ୍ତି । ଏହି ଆଲୋଚନାର ସୀମିତ ସୁଯୋଗ ଦୃଷ୍ଟିରୁ ଲେଖକ ଦ୍ୱାରା ସଂଗୃହୀତ ତାଙ୍କ କୃତିର ଏକ ସୂକ୍ଷ୍ମ ଆକଳନ ମାତ୍ର କରାଯାଇଛି । ସଂଶିତ ଆଲୋଚନା ମଧ୍ୟଦେଇ ପାଠକେ ସେଇ ଦିବଂଗତ କୃତବିଦ୍ୟ ସ୍ରଷ୍ଟା ପୁରୁଷଙ୍କୁ ଅବଲୋକନ କରନ୍ତୁ; ସେଇ ଅନାଲୋଚିତ ପ୍ରତିଭାକୁ ସମୁଚିତ ସମ୍ମାନ ପ୍ରଦାନ କରନ୍ତୁ, ଏତିକି ହିଁ କାମନା ।□□□

## ସହାୟକ ପଞ୍ଜିକା:

୧. ରାଜା ବାସୁଦେବ ଉଚ୍ଚବିଦ୍ୟାଳୟ, ଦେବଗଡ, ଶତବାର୍ଷିକ ସ୍ମରଣିକା ୧୯୮୩-ପୃ-୫ ଓ ୬ ।

୨. ଶତ୍ପଥୀ;ଆର୍ତ୍ତତ୍ରାଣ: ''ନବ୍ୟ ଉତ୍କଳ ମହାକାବ୍ୟର ଟୀକା''- ସମ୍ବଲପୁର ହିତୈଷିଣୀ: ୫/୪୨ ତା. ୨୧.୩.୧୮୯୪ ।

୩. ରଥ, ଭାଗିରଥି : ଇନ୍ଦ୍ରଧନୁର ବକଚରିତର ସମାଲୋଚନା: ସମ୍ବଲପୁର ହିତୈଷିଣୀ ୧୬.୫.୧୮୯୪ ।

୪. ସମ୍ବଲପୁର ହିତୈଷିଣୀ. : ୬/୩୪ -୨୩.୧.୧୮୯୫

୫. ସମ୍ବଲପୁର ହିତୈଷିଣୀ: ୬/୩୫- -୧୩.୨.୧୮୯୫

୬. ସମ୍ବଲପୁର ହିତୈଷିଣୀ: ୨୨.୨.୧୮୯୬ ।

୭. ସମ୍ବଲପୁର ହିତୈଷିଣୀ :୧୧/୪୯-୧୧.୪.୧୯୦୦ ।

୮. ସମ୍ବଲପୁର ହିତୈଷିଣୀ: ୧୧/୩୮-୨୪.୧.୧୯୦୦ ।

୯. ସମ୍ବଲପୁର ହିତୈଷିଣୀ: ୨୭.୪.୧୯୦୪ ଦ୍ରଷ୍ଟବ୍ୟ ।

୧୦. ସମ୍ବଲପୁର ହିତୈଷିଣୀ: ୨୭.୫.୧୮୯୬ ।

୧୧. ମହାଯାତ୍ରା ଆଲୋଚନା : ସମ୍ବଲପୁର ହିତୈଷିଣୀ: ୨.୯.୧୮୯୬

୧୨. ସମ୍ବଲପୁର ହିତୈଷିଣୀ: ୨୮.୧୦.୧୮୯୬ ।

୧୩. ସମ୍ବଲପୁର ହିତୈଷିଣୀ:୨୨.୭.୧୮୯୬ ।

୧୪. ସମ୍ବଲପୁର ହିତୈଷିଣୀ:୮.୪.୧୯୦୩ ।



Digitized by srujanika@gmail.com

# ବିପ୍ଳବର ମନ୍ତ୍ରଦାତା:ବାଳକୃଷ୍ଣ କର

ସହକାର ତଳେ ପ୍ରିୟାର ପ୍ରଣୟ ଲିପ୍‌ସାର ମହନୀୟ ସଙ୍ଗୀତର ଝଙ୍କାର ଶୁଭେନା ବରଂ ଏକ ଦିବଂଗତ ଶୌର୍ଯ୍ୟପୂର୍ଣ୍ଣ ଜାତିର ଅପୂର୍ବ ମର୍ମବୀଣାର ସୁଗଭୀର ବ୍ୟଞ୍ଜନା ପ୍ରତିଧ୍ୱନିତ ହୁଏ । ସେହି ସହକାର ତଳେ ତ୍ୟାଗପୂତ ଉତ୍କଳର ନବନିର୍ମାଣର ଶପଥ ନେଇ ଯିଏ ଏକାଧାରରେ ଭାଷା ସାହିତ୍ୟ ଏବଂ ଜନଜୀବନର ଆଶୁସଂସ୍କାର କାମନାରେ 'ସହକାର' ରୂପୀ ମହାର୍ଘ ସାରସ୍ୱତ ଅନୁଷ୍ଠାନ ପ୍ରତିଷ୍ଠାକରି ସମଗ୍ର ଓଡ଼ିଶାର ଆଦ୍ର ସମ୍ବେଦନାକୁ ସ୍ପର୍ଶ କରିଯାଏ; ପ୍ରତିଟି ପ୍ରାଣରେ ପୁଣିଥରେ ଜାତୀୟ ଭାବଧାରାର ଉଷ୍ଣପ୍ରସବଣ ପ୍ରବାହିତ କରେ- ସେ ସାଧକର ସାଧକ, ଲେଖକର ଭାଗ୍ୟ ନିର୍ଦ୍ଧାରକ ମହାନ୍ ପରମ୍ପରାପୂତ ପୁରୁଷ ବିପ୍ଳବର ମନ୍ତ୍ରଦାତା, ପ୍ରଗତିର ସ୍ମାରକ ବାଳକୃଷ୍ଣ କର ।

ବାଳକୃଷ୍ଣଙ୍କ ସ୍ମୃତିଚାରଣ ପ୍ରସଙ୍ଗରେ ଆଜିର ଜଣେ ଆଧୁନିକ କବିଙ୍କ ଖେଦୋକ୍ତି ମନେପଡେ ' ପ୍ରତିଭାର ବଧ୍ୟଭୂମି ଉତ୍କଳରେ ପ୍ରତିଭା ପୂଜାର ପ୍ରକୃଷ୍ଟ ଅବକାଶ ନାହିଁ । ତେଣୁ ତ ଆମର ଯୁଗ ପୁରୁଷଗଣ ଏତେ ଅବହେଳିତ ଏବଂ ତାଙ୍କର ଉତ୍ତର ଦାୟାଦ ଆମେ ସମସ୍ତେ ତାଙ୍କ ସମ୍ପର୍କରେ ଚିର ଉଦାସୀନ । ଅଥଚ ଏ ସାମୂହିକ ଅବହେଳାର ବହୁ ଉର୍ଦ୍ଧ୍ୱରେ ବାଳକୃଷ୍ଣଙ୍କର ଆସନ ସଂରକ୍ଷିତ।

କୌଣସି ଜାତିର ଘୋର ନୈରାଶ୍ୟମୟ ମୁହୂର୍ତ୍ତରେ ଯୁଗଜନ୍ମା ପୁରୁଷଗଣଙ୍କ ଆବିର୍ଭାବ ଘଟିଥାଏ । ଭାରତୀୟ ଆଦର୍ଶ ଏ ଉକ୍ତିକୁ ସମର୍ଥନ କରେ । ଏ ପରିପ୍ରେକ୍ଷୀରେ ଓଡ଼ିଆ ଭାଷା ସାହିତ୍ୟର ଚିର ଅନ୍ଧକାରମୟ ମୁହୂର୍ତ୍ତ ଉନବିଂଶ ଶତାବ୍ଦୀରେ ଅନେକ ପ୍ରବୀଣ ସାହିତ୍ୟିକ, ସଂସ୍କାରକଙ୍କର ଆବିର୍ଭାବ ହୋଇଛି ଏବଂ ସେମାନଙ୍କ ମଧ୍ୟରେ ବାଳକୃଷ୍ଣ କର ଅନ୍ୟତମ ।

ବାଳକୃଷ୍ଣଙ୍କର ପ୍ରତିଭା କତିପୟ ଶିଶୁ ସାହିତ୍ୟ ସୃଷ୍ଟି ' ନୀତି ମଞ୍ଜରୀ' 'ସପନ ପୁରୀ' 'ଫୁଲ ଚାଙ୍ଗୁଡ଼ି' ବ୍ୟତୀତ 'ଚନ୍ଦ୍ରଗୁପ୍ତ' ନାଟକ ଏବଂ କେତେକ ପାଠ୍ୟପୁସ୍ତକ ରଚନା ମଧ୍ୟରେ ସୀମିତ ନୁହେଁ । ଏ ପ୍ରତିଭାର ବୃହତ୍ତର ଓ ସମୃଦ୍ଧତର ପରିପ୍ରକାଶ ଘଟିଛି ସମ୍ପାଦକତ୍ୱରେ । ବିଶ୍ୱନାଥ କରଙ୍କ ପରି ବାଳକୃଷ୍ଣଙ୍କ ପ୍ରତିଭା ଓଡ଼ିଆ ସାହିତ୍ୟ ତଥା ସାହିତ୍ୟିକଙ୍କୁ ସୁମାର୍ଗ ପ୍ରଦର୍ଶନରେ ସହାୟତା ହୋଇଛି । ଏ ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟରେ ତାଙ୍କ ସମ୍ପାଦିତ ସାହିତ୍ୟ ପତ୍ରିକା ' ସହକାର' ଶିଶୁ ପତ୍ରିକା 'ଜହ୍ନମାମୁଁ' (୧୯୩୦) ବିଜ୍ଞାନ ପତ୍ରିକା 'ମଧୁକୋଷ' (୧୯୪୭) ସମ୍ବାଦପତ୍ର 'ମାତୃଭୂମି' (୧୯୪୭) ପ୍ରଭୃତି ତାଙ୍କର ସମୁଜ୍ଜ୍ୱଳ କୀର୍ତ୍ତିର ନିଦର୍ଶନ । ବାଳକୃଷ୍ଣଙ୍କ ଦ୍ୱାରା ସୁସମ୍ପାଦିତ ' ଶିଶୁସଙ୍ଖାଳି' (୧୯୪୯) ଓଡ଼ିଆ ଜ୍ଞାନକୋଷ ପ୍ରଣୟନ କ୍ଷେତ୍ରରେ ସର୍ବପ୍ରଥମ ଉଦ୍ୟମ ।



Digitized by srujanika@gmail.com

ଏହାକୁ ଆଠଖଣ୍ଡରେ ପ୍ରକାଶ କରିବାର ଅଭିପ୍ରାୟ ପୋଷଣ କରିଥିଲେ ହେଁ ଦ୍ୱିତୀୟ ବିଶ୍ୱଯୁଦ୍ଧର ବିପର୍ଯ୍ୟୟ ଓ ଦୁର୍ମୂଲ୍ୟ ପରିସ୍ଥିତି ଏବଂ ତାଙ୍କର ଅକାଳ ତିରୋଧାନ ଜନିତ ଦୁର୍ବିପାକ ମଧ୍ୟରେ 'ଶିଶୁସଂଖାଳି' ତିନିଖଣ୍ଡ ମାତ୍ର ପ୍ରକାଶିତ ହୋଇପାରିଥିଲା । ଶିଶୁ ଉପଯୋଗୀ ଏକ ଓଡ଼ିଆ ଜ୍ଞାନକୋଷ ପ୍ରଣୟନର ମହିମ୍ନ ଅଭିଳାଷ ହିଁ 'ଶିଶୁସଂଖାଳି' ରଚନା ପାଇଁ ତାଙ୍କୁ ଉତ୍ସାହିତ କରିଥିଲା । ଏହାର ପ୍ରମାଣ 'ଶିଶୁ ସଂଖାଳି' ମୁଖବନ୍ଧରୁ ସ୍ପଷ୍ଟ ହୋଇଥାଏ ଓ ବୟସ୍କମାନଙ୍କ ସକାଶେ ଇଂରେଜୀରେ ଅନେକ ଏନ୍‌ସାଇକ୍ଲୋପେଡିଆ ପ୍ରକାଶ ପାଇଛି । ଇଂରେଜୀର ଅନୁକରଣରେ କେତେକ ଭାରତୀୟ ଭାଷାରେ ମଧ୍ୟ ଏନ୍‌ସାଇକ୍ଲୋପେଡିଆ ପ୍ରକାଶ ପାଇଛି । କିନ୍ତୁ ସେଗୁଡିକ ଠାରୁ 'ଶିଶୁ ସଂଖାଳି'ର ବ୍ୟବସ୍ଥା ସମ୍ପୂର୍ଣ୍ଣ ନୂତନ । ଗୋଟିଏ ବିଷୟ ଜାଣିବାକୁ ହେଲେ ଅନ୍ୟ ଏନ୍‌ସାଇକ୍ଲୋପେଡିଆର ସବୁଖଣ୍ଡ ନଦେଖିଲେ ଜ୍ଞାତବ୍ୟ ବିଷୟ ମିଳିବ ନାହିଁ । କିନ୍ତୁ 'ଶିଶୁ ସଂଖାଳି'ର ପ୍ରତ୍ୟେକ ଖଣ୍ଡ ସ୍ୱୟଂ ସଂପୂର୍ଣ୍ଣ ହୋଇଥିବାରୁ ଶିଶୁମାନଙ୍କ ପକ୍ଷରେ କୌଣସି ବିଷୟ ଖୋଜିବା କଷ୍ଟକର ହେବ ନାହିଁ ।

(ବିଚିତ୍ର ବିଶ୍ୱ - ଶିଶୁ ସଂଖାଳି - ୧୯୫୭)

ଲକ୍ଷ୍ମୀନାରାୟଣ ସାହୁଙ୍କଠାରୁ ୧୯୨୯ ମାର୍ଚ୍ଚ ୩୦ ତାରିଖରେ 'ସହକାର' ଦାୟିତ୍ୱ ଗ୍ରହଣ କରିବା ପରେ ବାଳକୃଷ୍ଣ ମୌଳିକ ରଚନା ଅପେକ୍ଷା 'ସହକାର'ର ସମ୍ପାଦନା ଏବଂ ଏହାର ଆଭିମୁଖ୍ୟ ରକ୍ଷା ଦିଗରେ ଯତ୍ନବାନ ହୋଇଥିଲେ । ଓଡ଼ିଆ ଭାଷାର ଦୈନ୍ୟଦୂର କରବାରେ ଭାଷା ଭିତ୍ତିକ ସ୍ୱତନ୍ତ ଉତ୍କଳ ପ୍ରଦେଶ ଗଠନର ଆନ୍ଦୋଳନ ପ୍ରତି ଆତ୍ମିକ ସମର୍ଥନ ଜଣାଇବାରେ 'ସହକାର'ର ଭୂମିକା ଅନନ୍ୟ । ତତ୍‌କାଳୀନ ଓଡ଼ିଶାର ନେତୃବର୍ଗଙ୍କ କାର୍ଯ୍ୟାବଳୀ ଓଡ଼ିଶାର ଶତ ଶତ ଆବେଦନ ପ୍ରତି ଇଂରେଜ ସରକାରଙ୍କ ଉଦାସୀନତା ପ୍ରତି ବାଳକୃଷ୍ଣ ନିଜର ସୁଚିନ୍ତିତ ପରାମର୍ଶ 'ସହକାର'ରେ ପ୍ରକାଶ କରି ଏକ ଅଭିନବ ଜନଜାଗରଣ ସୃଷ୍ଟି କରିପାରିଥିଲେ । ଏ ପରିପ୍ରେକ୍ଷୀରେ ୧୯୩୧ ସାଲ 'ସହକାର'ର ପ୍ରତିଟି ପୃଷ୍ଠା ପ୍ରଣିଧାନଯୋଗ୍ୟ । ସ୍ୱତନ୍ତ ଉତ୍କଳ ପ୍ରଦେଶ ଗଠନ ଶୀର୍ଷକରେ ଅନେକ ଆଲୋଚନାକୁ ସେ ସହକାର ପୃଷ୍ଠାରେ ଅକୁଣ୍ଠିତ ଚିତ୍ତରେ ପ୍ରକାଶ କରି ଜନଚେତନାକୁ ଉଜ୍ଜୀବିତ କରିଥିଲେ। ଏତଦ୍‌ବ୍ୟତୀତ 'ପଦେ ଅଧେ' ଶୀର୍ଷକ ସ୍ତମ୍ଭରେ ଏ ସମ୍ପର୍କିତ ନିଜର ନିର୍ଭୀକ ମତ ପ୍ରଦାନ କରିବାରେ ସେ କୁଣ୍ଠିତ ନ ଥିଲେ । ଜାତୀୟ କର୍ତ୍ତବ୍ୟ କ୍ଷେତ୍ରରେ ନିଜର କ୍ଷୁଦ୍ର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଏକପ୍ରାଣ ଏକମନ ହୋଇ ମହାଜାତୀୟ ଅନୁଷ୍ଠାନକୁ ସାଫଲ୍ୟମଣ୍ଡିତ କରିବା ହିଁ ଥିଲା ବାଳକୃଷ୍ଣଙ୍କର ମର୍ମବାଣୀ । ଏ ପର୍ଯ୍ୟାୟରେ 'କଂଗ୍ରେସ ଅଭ୍ୟର୍ଥନା ସମିତି' ଶୀର୍ଷକ ମନ୍ତବ୍ୟ ପଦେ ଅଧେ - ସହକାର - ୧୨ଶ ଭାଗ ୫ମ ସଂଖ୍ୟାରୁ ଉଦ୍ଧୃତ କରାଯାଇପାରେ, ''କଂଗ୍ରେସ ଅଧିବେଶନକୁ ସାଫଲ୍ୟମଣ୍ଡିତ କରି ଜାତିର ସମ୍ମାନ ସ୍ଥାପନ କରିବା ପୂର୍ବରୁ ନାନା ପ୍ରକାର ଅଜ୍ଞାନ ଓ ଅଭାବ ବିରୁଦ୍ଧରେ ଯୁଦ୍ଧ କରିବାକୁ ହେବ । ଏପରି ଅବସ୍ଥାରେ କ୍ଷୁଦ୍ର ସ୍ୱାର୍ଥରକ୍ଷା ଯେବେ



Digitized by srujanika@gmail.com

ବିବାଦର କାରଣ ହୁଏ । ବ୍ୟକ୍ତିଗତ ମନୋମାଳିନ୍ୟ ଯେବେ ସାଧାରଣ କାର୍ଯ୍ୟରେ ପ୍ରତିବନ୍ଧକ ହୁଏ, କ୍ଷୁଦ୍ର ଦଳଗତ ଭେଦ ସୃଷ୍ଟି ଯେବେ ମହାଜାତୀୟ କର୍ତ୍ତବ୍ୟର ଅନ୍ତରାୟ ହୁଏ, ବ୍ୟକ୍ତିବିଶେଷଙ୍କର ଆସନ ବା ସମ୍ମାନ ମୋହ ଯେବେ ଗୁରୁଦାୟିତ୍ୱ ଉପଲବ୍ଧି କରିବାରେ ଅସମର୍ଥ ହୁଏ, ତେବେ ବୁଝିବାକୁ ହେବ ଉତ୍କଳ କଂଗ୍ରେସକୁ ନିମନ୍ତ୍ରଣ କରିନାହିଁ- କଳଙ୍କ ଓ ଅପମାନକୁ ନିମନ୍ତ୍ରଣ କରିଅଛି । x x x ଯେଉଁମାନେ ଅନ୍ୟକୁ ପଥପ୍ରଦର୍ଶନ କରିବେ, ସେମାନେ ଯେବେ ନିଜେ ପଥ ହୁଡନ୍ତି, ତେବେତ ରକ୍ଷା ନାହିଁ ।'' ଭାରତ ଇତିହାସରେ ୧୯୩୧ ଏକ କ୍ରାନ୍ତିକାରୀ ଅଧ୍ୟାୟ । ଏହି ନବ ଜାଗୃତିର ପୃଷ୍ଠଭୂମିରେ ଭାରତବ୍ୟାପୀ ସ୍ୱାଧୀନତା ସଂଗ୍ରାମରେ ଉନ୍ନତ୍ତ ଜନଚେତନା ଉତ୍କଳର ଖଣ୍ଡିତ କଙ୍କାଳରେ ଜାତୀୟ କଂଗ୍ରେସର ଅଧିବେଶନର ମହାର୍ଘ ଭିତ୍ତି ସ୍ଥାପନ କରେ । ଏ ଭିତ୍ତିର ସୁଦୃଢ଼ ଗଠନ ନିମନ୍ତେ ବ୍ୟାକୁଳ ବାଳକୃଷ୍ଣଙ୍କ ମାନସ ଉଲ୍ଲିଖିତ ରୂପେ ନିଜର ପ୍ରତିକ୍ରିୟା ପ୍ରକାଶ କରେ । ନେତୃବର୍ଗଙ୍କୁ ଜାତୀୟ ସ୍ରୋତରେ ଏକାତ୍ମ ହେବା ପୂର୍ବରୁ ନିଜର କ୍ଷୁଦ୍ର ସ୍ୱାର୍ଥର ନିର୍ମୋକକୁ ପରିତ୍ୟାଗ କରିବାକୁ ନିର୍ଦ୍ଦେଶ ଦିଏ ।

କୌଣସି ପରିବର୍ତ୍ତନର ସୂଚନା ଯୁଗଜନ୍ମା ମହାପୁରୁଷଙ୍କ ବୁଦ୍ଧିଦୀପ୍ତ ଚେତନାକୁ ପ୍ରଥମେ ଆନ୍ଦୋଳିତ କରିଥାଏ । ତେଣୁ ପ୍ରଥମେ ଯାହାର ପ୍ରତିକାର ନିମନ୍ତେ ସଚେତନ ବିଜ୍ଞ ବ୍ୟକ୍ତିମାନେ ହିଁ ଆଗଭର ହୋଇଥାନ୍ତି । ରାଧାନାଥଙ୍କ ଭାଷାରେ-

' ସବୁଠାରୁ ମୁହିଁ ଜଳୁଛି ଅଧିକ
ସବୁଠାରୁ ଯେଣୁ ହଲୁଛି ଅଧିକ ।
ତେଣୁ ଆର୍ତ୍ତେ ସିନା ପକାଉଛି ହୁରି
ନୋହେ ଏହା ଜ୍ଞାନ ଗୁମାନ ଚାତୁରୀ ।'(ଦରବାର)

ଉତ୍କଳ ଖଣ୍ଡର ଦୁର୍ଦ୍ଦଶା ବର୍ଣ୍ଣନା କରିବାକୁ ଯାଇ ବାଳକୃଷ୍ଣ ଗଡଜାତ ଅଞ୍ଚଳର ଅନ୍ଧାରି ରାଜତ୍ୱକୁ ମର୍ମେ ମର୍ମେ ଉପଲବ୍ଧି କରିଛନ୍ତି । ବିପର୍ଯ୍ୟସ୍ତ ଗଡଜାତ ଅଞ୍ଚଳ ଉତ୍କଳର ଏକ ବୃହଦାଂଶ । ଏହି ଅଂଶ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇ କିପରି ଦାରିଦ୍ର୍ୟତା ଶିକାର ହୋଇଛି ତାହା ସହକାରର ୧୨ଶ ଭାଗ ଚତୁର୍ଥ ସଂଖ୍ୟାରେ 'ପଦେ ଅଧେ' କରଦ ରାଜ୍ୟ ପ୍ରଜା ସମ୍ମିଳନୀ ଶୀର୍ଷକରେ ସେ ବ୍ୟକ୍ତି କରିଛନ୍ତି 'ଉତ୍କଳରେ ଗଡଜାତ କହିଲେ ଉତ୍କଳ ଖଣ୍ଡର ଅଧିକରୁ ବେଶୀ । ଗଡଜାତର ଅବସ୍ଥା ପରିବର୍ତ୍ତନ ନ ହେଲେ ଉତ୍କଳର ଅବସ୍ଥା ବିଶେଷ ପରିମାଣରେ ପରିବର୍ତ୍ତିତ ହେବ ନାହିଁ। ବ୍ରିଟିଶ ଶାସିତ ଭାରତର ଅନ୍ୟାନ୍ୟ ପ୍ରଦେଶର ଅଧିବାସୀଙ୍କ ସହିତ ଉତ୍କଳର ଅଧିବାସୀ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଅଛନ୍ତି; ମାତ୍ର ବଡ ପରିତାପର ବିଷୟ, ଆମ ଗଡଜାତର ପ୍ରଜାମାନଙ୍କର ମା' ବାପ କେହି ନାହିଁ । ସେମାନେ ନିଜ ନିଜ ଅନ୍ଧାରି ରାଜ୍ୟର ଅନ୍ଧାର କୋଣରେ ବହୁକାଳୁ ପଡିଛନ୍ତି। ସେମାନଙ୍କର ଅବସ୍ଥା ଉନ୍ନତ ନ ହେଲେ ଓଡ଼ିଶାର ସମୂହ କଲ୍ୟାଣ ସମ୍ଭବପର ନୁହେଁ । x x x ଆମ ବ୍ରିଟିଶ ସରକାର ଭାରତର ସ୍ୱାୟତ୍ତ ଶାସନର ଦାବୀକୁ



Digitized by srujanika@gmail.com

ଏକ ସମୟରେ ଉପେକ୍ଷା କରୁଥିଲେ, ମାତ୍ର ସେ ବେଳ ଯାଇଛି । ଏବେ ସେ ଭାରତବାସୀଙ୍କ ସହିତ ଏକାସନରେ ବସି ଭାରତର ଶାସନପ୍ରଣାଳୀ ସ୍ଥିର କରବାକୁ ବସିଛନ୍ତି । ସେହିପରି ଆମ ଦେଶୀୟ ରାଜାମାନଙ୍କ ମଧ୍ୟରୁ ଯେଉଁମାନେ ଏ ଯୁଗରେ ସୁଦ୍ଧା ନିଜ ନିଜ ରାଜ୍ୟର ପ୍ରଜାମାନଙ୍କୁ ଶାସନରେ ଅଧିକାର ଦେବା ତ ଦୂରର କଥା, ବଣ ମଧ୍ୟରେ ବଣଜନ୍ତୁପରି ରଖିବାକୁ ଚାହାନ୍ତି । ସେମାନଙ୍କର ଏ ଆସ୍ପର୍ଦ୍ଧା ଅଚିରେ ଭାଙ୍ଗିଯିବ । ପ୍ରଜା ଶକ୍ତିର ବଳ ଦିନକୁ ଦିନ ଯେପରି ପୃଥୁଳ ଆକାର ଧାରଣ କରୁଛି ସେଥିରେ ରାଜଶକ୍ତିର ବଳ ଯଥେଚ୍ଛାଚାର ଶାସନର ବଳ ଅଳ୍ପଦିନ ମଧ୍ୟରେ ଭାଙ୍ଗିଯିବ ।''

ବାଳକୃଷ୍ଣଙ୍କର ସ୍ପଷ୍ଟୋକ୍ତି ବେଳେ ବେଳେ ପ୍ରତିଧ୍ୱନିତ ହୁଏ ବିପ୍ଳବର ସାଂଧ୍ର ନିନାଦରେ । ଅଥଚ ଏ ପ୍ରତିଧ୍ୱନି ମଧ ସ୍ୱପ୍ନ ଦେଖେ ନୂଆ ଏକ ସୃଷ୍ଟିର, ନୂଆ ଏକ ପରମ୍ପରାର ବିଦଗ୍ଧ ରୂପ ନିର୍ମାଣର । ସୃଜନର ସ୍ମାରକୀ ରୂପେ ତାଙ୍କର ପ୍ରତିଟି ବୈପ୍ଳବିକ ଉଚ୍ଚାରଣ ଲିପିବଦ୍ଧ ହୋଇଯାଏ ଓଡ଼ିଆ ପ୍ରାଣରେ ।

ଉତ୍କଳ ଦେଶ ମିଶ୍ରଣର ପ୍ରେକ୍ଷାପଟରେ ଅଭିନୀତ ଆତ୍ମୋତ୍ସର୍ଗର ମହାନ୍ ଆଲେଖ୍ୟକୁ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଇ ବାଳକୃଷ୍ଣ ସହକାର ଦ୍ୱାଦଶଭାଗ ଷଷ୍ଠ ସଂଖ୍ୟା ( ୧୯୩୧ )ରେ ଏହି ଆନ୍ଦୋଳନର ଇତିହାସକୁ ମହାର୍ଘ ଅକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି । 'ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି । କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି ।' ସେହି ପ୍ରାଚୀନ ଉତ୍କଳର ଭଗ୍ନ ଶରୀର ଦେଖି ଦୁଃଖାଭିଭୂତ ହୋଇ ଉଠିଛି ତାଙ୍କର ଉତ୍କଳଗତ ପ୍ରାଣ । ଅତୀତର ମହାନ୍ ଐତିହ୍ୟକୁ ସାଂପ୍ରତିକ ସଂକୀର୍ଣ୍ଣ ପରିସରକୁ ଅବଲୋକନ କରି ଶିହରୀ ଉଠିଛି ଲେଖନୀ। ଫଳରେ ବ୍ରିଟିଶ ଶାସନର ଅସ୍ୱାଭାବିକ ଶାସନ ନୀତି ପ୍ରତି ନିଜ ଜନନୀର ଦାୟରେ ଅଭିସଂପାତ ବର୍ଷଣ କରିଛି ତାଙ୍କର ହୃଦୟ । 'ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ଓଡ଼ିଆ ଯୁଗ ଯୁଗ ଧରି ସରକାରଙ୍କଠାରେ କେତେ କାକୁତିମିନତି, କେତେ ଆବେଦନ ନିବେଦନ କରିଆସିଛି । କିନ୍ତୁ ହାୟ ! ସରକାର ସେଥିରେ କର୍ଣ୍ଣପାତ କରି ନାହାଁନ୍ତି । ରାଜଶକ୍ତିର ଏହି ଉଦାସୀନତା ଫଳରେ ବିଚ୍ଛିନ୍ନ ଓଡ଼ିଆ ଭାଇମାନେ ବିଭିନ୍ନ ପ୍ରାଦେଶିକ ସରକାରଙ୍କ ଶାସନାଧୀନରେ ରହି ସେମାନଙ୍କର ଜାତୀୟତା ଅନେକ ପରିମାଣରେ ହରାଇଛନ୍ତି। ବଡ କରୁଣ ତାର ଇତିହାସ, ବଡ ମର୍ମସ୍ପର୍ଶୀ ତାର ଅତୀତ ! ଶାସକ ସଂପ୍ରଦାୟର ଅନ୍ୟାୟ ଓ ଅବହେଳା ଏ ଜାତିଟାକୁ କିପରି ରସାତଳକୁ ପକାଇ ଦେଇଛି, ତାହାର ଇତିହାସ ଥରେ ଆଲୋଚନା କଲେ ପ୍ରକୃତରେ ହୃଦୟରେ ଗଭୀର ଦୁଃଖର ଉଦୟ ହୁଏ ।'

ଓଡ଼ିଆ ଭାଷା ଆନ୍ଦୋଳନର ଉଗ୍ରଚେତନା ଯେତେବେଳେ ବିରାଟ ରୂପ ଧାରଣ କଲା । ଦୀର୍ଘ ସାର୍ଦ୍ଧ ଶତାବ୍ଦୀର ଆନ୍ଦୋଳନର ଓଡ଼ିଆଭାଷୀ ଏକତ୍ରୀକରଣର ପ୍ରସ୍ତାବକୁ ବ୍ରିଟିଶ ସରକାରଙ୍କ ଦ୍ୱାରା ନିଯୁକ୍ତ ଲର୍ଡକର୍ଜନ ଠାରୁ ଆରମ୍ଭ କରି ମିଷ୍ଟର-ମାକଡୋନାଲ୍ଡ, ଫିଲିପ୍-ଡଫ୍ ଠାରୁ ଆରମ୍ଭ କରି ସାଇମନ କମିଟି ଯେ ରୂପ ବାରମ୍ବାର ବିଚାର ଆଳରେ



Digitized by srujanika@gmail.com

ତିଳ ତିଳ କରି ଅବହେଳିତ କରିଛନ୍ତି ତାର ଚରମ ନିଷ୍ପତ୍ତି ନିମନ୍ତେ ଭାରତ ସରକାର କର୍ତ୍ତୃକ ଓଡେନାଲ୍ ସୀମା ନିର୍ଦ୍ଧାରକ କମିଟି ବସାଯାଇଥିଲା । ଏହି ଘଡିସନ୍ଧି ମୁହୂର୍ତ୍ତରେ ଓଡ଼ିଶାର ଜନଗଣଙ୍କୁ ନିଶ୍ଚେଷ୍ଟ ହୋଇ ବସି ନ ରହି ନିଜର ଶେଷ ପ୍ରଚେଷ୍ଟାକୁ ଫଳପ୍ରଦ କରିବାକୁ ସେ ଆହ୍ୱାନ ଦେଇଥିଲେ । ଏ ପ୍ରସଙ୍ଗରେ ସହକାର-୧୨ଶ ଭାଗ ୬ଷ୍ଠ ସଂଖ୍ୟା ପଦେଅଧେ ସ୍ତମ୍ଭର 'ଏବେ ନୁହେଁ ତ କେବେ ନୁହେଁ' ଶୀର୍ଷକ ମନ୍ତବ୍ୟ ଅତି ଗୁରୁତ୍ୱପୂର୍ଣ୍ଣ ମନେହୁଏ । ତାଙ୍କ ଭାଷାରେ - 'ଓଡିଆ ଜାତି ବ୍ରିଟିଶ ଶାସନର ନିୟମ ଦ୍ୱାରା ଏପର୍ଯ୍ୟନ୍ତ ଅବହେଳିତ, ନିଷ୍ପୀଡିତ ହୋଇ ଖଣ୍ଡ ବିଖଣ୍ଡ, ବିକଳାଙ୍ଗ ଅବସ୍ଥାରେ ପଡିଅଛି ଆଜି ତାର ସେ ଦୂରବସ୍ଥାର ପ୍ରତିକାର ପାଇଁ, ଭାରତ ସରକାରଙ୍କ ପୂର୍ବକୃତ ଅବିଚାରର ବିଚାର ପାଇଁ, ବିକଳାଙ୍ଗ ଓଡ଼ିଶା କ୍ଷତର ଉପଶମ ପାଇଁ ଏହି ଯେଉଁ ଆୟୋଜନ ହୋଇଛି ତାହାକୁ ଶେଷ ଆୟୋଜନ ବୋଲି ବୁଝିବାକୁ ହେବ । ଏତେ କାକୁତି ମିନତି ପରେ, ଏତେ ଯୁକ୍ତିଯୁକ୍ତ ପ୍ରମାଣର ଉପସ୍ଥାପନ ପରେ ଏତେ କାଳର ଦାରୁଣ ଯନ୍ତ୍ରଣା ଭୋଗ କାଳରେ ଯେବେ ଓଡ଼ିଶାର ଏ ଅବସ୍ଥାର ପ୍ରତିକାର ନ ହୁଏ, ତାହାହେଲେ ଓଡ଼ିଆ ଜାତିର ଭାଗ୍ୟ ଚିରଦିନ ପାଇଁ ଅସ୍ତମିତ ହେବ । ଏହାର ସାଫଲ୍ୟ ନିର୍ଭର କରେ ପ୍ରଧାନତଃ ତିନୋଟି ବିଷୟ ଉପରେ (୧) ସୀମା ନିର୍ଦ୍ଦେଶକ କମିଟିର ନିରପେକ୍ଷ ବିଚାର (୨) ପ୍ରତିବେଶୀ ଜାତିମାନଙ୍କ ଅନୁଦାର ପ୍ରତିକୂଳ ମତର ପ୍ରତ୍ୟାହାର ଏବଂ (୩) ସର୍ବୋପରି ଓଡ଼ିଶାର କର୍ମୀମାନଙ୍କର ପ୍ରାଣପଣ ଉଦ୍ୟମ । x x x ବର୍ତ୍ତମାନ ଏ ସନ୍ଧି ସମୟରେ ଓଡ଼ିଆ ଜାତି ଅଣ୍ଟା ଭିଡି ନ ବାହାରିଲେ ତାକୁ ଚିରକାଳ ପାଇଁ ଝୁରିବାକୁ ପଡିବ । x x x ମନେରଖିବାକୁ ହେବ ସମଗ୍ର ଓଡ଼ିଆ ଜାତିର ସମ୍ମିଳିତ ପ୍ରବଳ ଚେଷ୍ଟା ବ୍ୟତିରେକେ ଏ କାର୍ଯ୍ୟ କଦାପି ସମ୍ଭବପର ନୁହେଁ । ଏ ସମସ୍ୟାର ସମାଧାନ ଯେବେ ଏବେ ହେବ ନାହିଁ । ତେବେ ମନେ ରଖିବାକୁ ହେବ ଏହା ଆଉ କେବେ ହେବ ନାହିଁ ।'

ପରାଧୀନ ଦେଶରେ ଏ ରୂପ ନିର୍ଭୀକଭାବେ ସ୍ୱାଧୀନ ମତ ପ୍ରଦାନ ତଥା ସରକାରୀ କଳର ଅବିଚାର ବିରୁଦ୍ଧରେ ଦୃଢ଼ ଅଭିଯୋଗ ବାଢ଼ିବାର ଦାମ୍ଭିକତା ବାଳକୃଷ୍ଣଙ୍କ ଚରିତ୍ରକୁ ମହୀୟାନ କରି ଗଢ଼ିଛି ।

ଓଡ଼ିଆ ଦେଶ ମିଶ୍ରଣ ଆନ୍ଦୋଳନକୁ ସମର୍ଥନ କରି 'ସହକାର' ଏକନିଷ୍ଠ ଭୂମିକା ସମ୍ପାଦନ କରିପାରିଛି । ସହକାର ବିଭିନ୍ନ ସଂଖ୍ୟାରେ ଏ ସମ୍ପର୍କରେ ଅନେକ ଲେଖା ପ୍ରକାଶ ପାଇଥିଲେ ହେଁ ୧୨ଶ ଭାଗ ଷଷ୍ଠ ସଂଖ୍ୟା ' ଦେଶମିଶ୍ରଣ' ସମ୍ପର୍କିତ ଅନେକ ମୂଲ୍ୟବାନ ଲେଖାରେ ବିମଣ୍ଡିତ । ଗୋଦାବରୀଶଙ୍କ 'ସିଂହଭୂମୀ ଓ ମେଦିନୀପୁର' ସତ୍ୟନାରାୟଣ ରାଜଗୁରୁଙ୍କ 'ଓଡ଼ିଶାର ଦକ୍ଷିଣ ସୀମା' କୁନ୍ତଳା କୁମାରୀଙ୍କ 'ଦିଲ୍ଲୀ ଚିଠି' ଭାଗବତ ଚନ୍ଦ୍ର ଦାଶଙ୍କ 'ଦକ୍ଷିଣ ପଶ୍ଚିମ ମେଦିନୀପୁର' ତାରାପଦ ଷଡଙ୍ଗୀଙ୍କ 'ଦେଶମିଶ୍ରଣ ଓ ସିଂହଭୂମି' ଲକ୍ଷ୍ମୀନାରାୟଣ ସାହୁଙ୍କ 'ମେଦିନୀପୁରରେ ଓଡ଼ିଆ' ଜଗବନ୍ଧୁ ସିଂହଙ୍କ 'ଓଡ଼ିଶା



Digitized by srujanika@gmail.com

ଦେଶ ମିଶ୍ରଣ' ନୃସିଂହ ଚରଣ ମହାନ୍ତିଙ୍କ 'ଦେଶ ଅର୍ଥଚିନ୍ତା, 'ବଳଭଦ୍ର ବହିଦାରଙ୍କ ଓଡ଼ିଆ ଦେଶ ମିଶ୍ରଣ' ରାଧା ଚରଣ ପଣ୍ଡାଙ୍କ 'ଆମେ କାହିଁକି ଦେଶ ମିଶ୍ରଣ ଲୋଡୁ ?' ଚିନ୍ତାମଣି ଦାସଙ୍କ' ଛିନ୍ନମସ୍ତା ଉତ୍କଳ ଜନନୀ' ଦେବେନ୍ଦ୍ର କୁମାର ସିଂହଙ୍କ 'ଛିନ୍ନମସ୍ତା' (ନାଟିକା) , ଯଦୁମଣି ମଙ୍ଗରାଜଙ୍କ 'ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ' କାଳିନ୍ଦୀ ପାଣିଗ୍ରାହୀଙ୍କ ' ଦେଶାତ୍ମବୋଧ' ପ୍ରଭୃତି ଲେଖା ବ୍ୟତୀତ ବାଳକୃଷ୍ଣଙ୍କର ଶ୍ରୀ ଓ ଚାତକ ଛଦ୍ମନାମରେ ବର୍ତ୍ତମାନ ଓଡ଼ିଶା' ଏବଂ ପୃଥକ ଓଡ଼ିଶା ଓ ସୀମା ନିର୍ଦ୍ଦେଶକ ସମିତି' ପ୍ରଭୃତି ଲେଖା ପ୍ରକାଶନ ବାଳକୃଷ୍ଣଙ୍କର ଜାତୀୟବାଦୀ ଚିନ୍ତାଧାରାର ପରିଚୟ ପ୍ରଦାନ କରେ । ନିଜର ବହୁମୂଲ୍ୟ ମତ ସହିତ ଅନ୍ୟାନ୍ୟ ଦେଶପ୍ରେମୀ ସୁଧୀ ସାହିତ୍ୟିକଙ୍କ ମହାର୍ଘ ମତକୁ ମଧ୍ୟ ସେ ସମ୍ମାନ ଜଣାଉଥିଲେ । ସହକାରର ପରବର୍ତ୍ତୀ ସଂଖ୍ୟାମାନଙ୍କରେ ମଧ୍ୟ ଏ ସମ୍ପର୍କିତ ଲେଖାଗୁଡିକୁ ସେ ଆଗ୍ରହ ସହକାରେ ପ୍ରକାଶର ସୁଯୋଗ ଦେଉଥିଲେ । ଅନ୍ୟ ଭାଷାରେ କହିବାକୁ ଗଲେ ଦେଶ ମିଶ୍ରଣର ବାର୍ତ୍ତାବହ ଥିଲା ସହକାର ଏବଂ ଏହାର ବାର୍ତ୍ତା ଥିଲା, 'ଦେଶ ମିଶ୍ରଣ ଆମର ହକ୍ ଦାବି ।' ଆମକୁ ସେଥିରୁ ବଞ୍ଚିତ କରିବା ଯାକେ ଭାରତବର୍ଷ ରାଷ୍ଟ୍ର ଜଗତରେ ଯେ କଲ୍ୟାଣ ହେବ, ଏହା କେବେ ସମ୍ଭବ ନୁହେଁ । ଗୋଟିଏ ଜାତିକୁ ହୀନ ବଞ୍ଚିତ କରି ରଖିଲେ ତା'ର ଆଖପାଖ ଅନ୍ୟାନ୍ୟ ଜାତିମାନଙ୍କର ସୁଦ୍ଧା ଅମଙ୍ଗଳ ହୁଏ- ଏତ ଐତିହାସିକ ସତ୍ୟ । x x x ଓଡ଼ିଆ ! ଯେ କି ତୁମ ଭିତରେ ଦେଶପ୍ରେମ ଅଛି । ଯା' ଦେହରେ କଳିଙ୍ଗ ରକ୍ତର ତାତି ଅଛି, ସେ ଯେଉଁ ପରିସ୍ଥିତିରେ ଥାଉନା କାହିଁକି କଂଗ୍ରେସୀ ହେଉ, ବେକଂଗ୍ରେସୀ ହେଉ, ଖଦଡ଼ଧାରୀ ହେଉ କି ବିଲାତି ଭକ୍ତ ହେଉ, ସେ ମୂଲିଆ ମଜୁରିଆ ହେଉ କି ବାବୁଭାୟା ସରକାରୀ ଚାକିରିଆ ହେଉ ତା'ର ଉଚିତ ଦେଶମିଶ୍ରଣ ମହା ସମସ୍ୟାରେ ମନେପ୍ରାଣେ ଯୋଗଦେବା ।ଏଇଟା ଆମ ଜୀବନ ମରଣ ସମସ୍ୟା- ଆମ ମାନ ଅପମାନ ସବୁ ଏଇଥିରେ- ଏଇଟା ଆମ ଜାତିର Vital problem ଜୀବନ ଗଣ୍ଠି ।' ( ଦିଲ୍ଲୀ ଚିଠି - କୁନ୍ତଳା କୁମାରୀ, ସହକାର ୧୨ଶ ଭାଗ ୬ଷ୍ଠ ସଂଖ୍ୟା ପୃ- ୫୧୫-୫୧୬)

ଓଡ଼ିଆ ସାହିତ୍ୟ ତଥା ଜନଜୀବନ ପରିପ୍ରେକ୍ଷୀରେ ସହକାରର ପଦକ୍ଷେପ ଅନନ୍ୟ ସାଧାରଣ । 'ସହକାର ଓଡ଼ିଆ ସାହିତ୍ୟର ବିକାଶରେ ସୃଷ୍ଟି କଲା ନୂତନ କ୍ରାନ୍ତି । ଏହି ପତ୍ରିକାରେ କେବଳ ଓଡ଼ିଆ ସାହିତ୍ୟ ନୁହେଁ; ଆନ୍ତର୍ଜାତିକ ସାହିତ୍ୟ, ରାଜନୀତି ଓ ବିଜ୍ଞାନ ବିଷୟକ ନାନା ପ୍ରସଙ୍ଗ ପ୍ରକାଶିତ ହେଉଥିଲା। ବସ୍ତୁତଃ 'ଉତ୍କଳ ସାହିତ୍ୟ' ଓଡ଼ିଆ ପତ୍ରିକାର ଇତିହାସରେ ପ୍ରଥମ କ୍ରାନ୍ତି ହୋଇଥିଲାବେଳେ ଦ୍ୱିତୀୟ କ୍ରାନ୍ତି ଭାବେ 'ନବଭାରତ' ଓ 'ସହକାର' ପ୍ରତିଷ୍ଠା ଅର୍ଜନ କଲେ । ୧୯୩୦ ମସିହା ପରବର୍ତ୍ତୀ ବହୁ ସାହିତ୍ୟିକଙ୍କୁ ସାହିତ୍ୟର ଏହି ଦୁଇଟି ପତ୍ରିକା ହିଁ ପ୍ରତିଷ୍ଠା ଦେଇଥିଲେ ଓ ବିଭିନ୍ନ ବିଭାଗରେ ଗୁରୁତ୍ୱପୂର୍ଣ୍ଣ ବିକାଶର ଭୂମିକା ନେଇଥିଲେ ।' (ଓଡ଼ିଆ ସାହିତ୍ୟର ବିକାଶରେ ପତ୍ରପତ୍ରିକାର ଅବଦାନ



Digitized by srujanika@gmail.com

- ବୈଷ୍ଣବ ଚରଣ ସାମଲ : ଝଙ୍କାର - ଜୁନ୍ -୧୯୯୬)

ବାଳକୃଷ୍ଣ କର ସହକାର ମାଧ୍ୟମରେ କେବଳ ଯେ ଓଡ଼ିଆ ଦେଶ ମିଶ୍ରଣ ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ତା' ନୁହେଁ, ବରଂ ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ଯୁଗ ପରିବର୍ତ୍ତନର ପରିବେଶକୁ । ତେଣୁ ସେ ସର୍ବତୋଭାବେ ଏକ ସ୍ୱଚ୍ଛ ସୁନ୍ଦର ଭବିଷ୍ୟତ ଗଠନ ଉଦ୍ଦେଶ୍ୟରେ ଉଦ୍ଦାମ ସ୍ରୋତରେ ମାଡି ଆସୁଥିବା ଯୁବ-ଚେତନାକୁ ସ୍ୱାଗତ କରି ନେଲେ ନୁହେଁ, ବରଂ ତାଙ୍କୁ ଯଥୋଚିତ ମର୍ଯ୍ୟାଦା ଏବଂ ସ୍ଥଳ ବିଶେଷର ସମୟାନୁଯାୟୀ ଉପଦେଶ ପ୍ରଦାନ ମଧ୍ୟ କଲେ । ଆଧୁନିକ ସାହିତ୍ୟକୁ ଅନେକ ପ୍ରତିଷ୍ଠିତ ସାହିତ୍ୟିକ କଟୁ ସମାଲୋଚନା କରୁଥିବା ସ୍ଥଳେ ସେ ଅନେକ ନବୀନ ସାହିତ୍ୟକଙ୍କୁ ଏବଂ ତାଙ୍କ ଚିନ୍ତା ଧାରାକୁ ପ୍ରକାଶ କରିବା ପାଇଁ ସହକାରର ପୃଷ୍ଠା ଉନ୍ମୁକ୍ତ ରଖିଥିଲେ। ଏ ବକ୍ତବ୍ୟର ପ୍ରମାଣ ସ୍ୱରୂପ ' ସହକାର' ୧୨ଶ ଭାଗ ୫ମ ସଂଖ୍ୟାର 'ପଦେଅଧେ'ରୁ ଉଦ୍ଧୃତ କରାଯାଇପାରେ- '' ସମାଜର ନୀରସ ପ୍ରାଣକୁ ସରସ କରିବା ପାଇଁ, ପ୍ରାଚୀନ ପଦ୍ଧତିକୁ ଭାଙ୍ଗି ନୂତନ ପ୍ରଣାଳୀ ପ୍ରୟୋଗ କରିବା ପାଇଁ, ନିର୍ମମ ଉଦାସୀନତା ପରିବର୍ତ୍ତରେ ଉଦ୍ଦାମ ଆବେଗର ସଞ୍ଚାର ପାଇଁ ଶଂସିତ ବର୍ଷରେ କେତେଗୁଡିଏ ଯୁବସାହିତ୍ୟିକ ସମାଜର କେତେକ ବିଶିଷ୍ଟ ପୁରାତନ ସଭ୍ୟଙ୍କ ଇଚ୍ଛା ବିରୁଦ୍ଧରେ ସମାଜର ସଭ୍ୟ ଶ୍ରେଣୀଭୁକ୍ତ ହେବା ଦ୍ୱାରା ସେମାନଙ୍କଠାରେ ଯେଉଁ ଅମାର୍ଜନୀୟ ଅପରାଧ କରିଛନ୍ତି, ତାହା ଶଂସିତ ବର୍ଷର ଏକ ଉଲ୍ଲେଖଯୋଗ୍ୟ ଘଟନା । x x x ମାତ୍ର ସୁଖର ବିଷୟ ହେଉ ବା ଦୁଃଖର ବିଷୟ ହେଉ, ଯୁବକ ଉଦ୍ଧତ, ଚପଳ, ଅତି ଉଦ୍ଦାମ, ଅତି ଉତ୍ସାହୀ, ଅତି ଅମାନିଆ , ଅତି ବଡିମାଗ୍ରସ୍ତ- ଯୁବକ ପ୍ରୌଢ଼ର ସେ ସତର୍କବାଣୀରେ କର୍ଣ୍ଣପାତ ନ କରି ସାହିତ୍ୟର ଶାନ୍ତି ରାଜ୍ୟରେ ବିପ୍ଳବ ସୃଷ୍ଟି କରିବାକୁ ବଦ୍ଧ ପରିକର । x x x ତରୁଣ ସାହିତ୍ୟିକମାନେ ଯେତେବେଳେ ନିଜ କାର୍ଯ୍ୟକଳାପରେ ଦେଖାଇଦେବେ- ଉଦ୍ଦେଶ୍ୟ ସେମାନଙ୍କର ଭାଙ୍ଗିବା ନୁହେଁ, ଗଢ଼ିବା, ଭାଙ୍ଗି ଫୋପାଡିବା ନୁହେଁ, ଭାଙ୍ଗିଚୁରି ଗଢ଼ିବା ସେତେବେଳେ ଯେଉଁମାନେ ଏକ୍ଷଣି ତ୍ରାହି ତ୍ରାହି ଚିତ୍କାର କରି ଅଥୟ ହେଉଅଛନ୍ତି ସେମାନେ ଅକାରଣ ଭୟରୁ ରକ୍ଷା ପାଇବେ ଏବଂ ନିଜର ଅନ୍ଧ ମୋହ ଅହେତୁକ ଅବିଶ୍ୱାସ, ମୂଢ଼ ଆଶଙ୍କା ଓ ସଂକୀର୍ଣ୍ଣ ଭାବ ପାଇଁ ଅନୁତପ୍ତ ହେବେ ।'

ବାଳକୃଷ୍ଣ ଅତି ଉଦାର ଭାବେ ସବୁଜ ତଥା ପ୍ରଗତୀବାଦୀ ଚେତନଶୀଳ ଲେଖକଙ୍କୁ ନିଜର ପତ୍ରିକାରେ ସ୍ଥାନ ଦେଇ ଓଡ଼ିଆ ସାହିତ୍ୟର ବିକାଶଧାରାକୁ ତ୍ୱରାନ୍ୱିତ କରିଛନ୍ତି । ନବୀନ ସାହିତ୍ୟିକଙ୍କ ସୃଷ୍ଟିକୁ ସେ ଅତି ଅନ୍ତରଙ୍ଗ ଭାବେ ବିଚାର କରିଛନ୍ତି। 'ପୁସ୍ତକ ପରିଚୟ' ସ୍ତମ୍ଭରେ ଅନେକ ନୂତନ ସୃଷ୍ଟିକୁ ତା'ର ଦୋଷ ଦୁର୍ବଳତା ପ୍ରତି ସଚେତନ କରାଇ ଅନୁକୂଳ ଆଲୋଚନା କରି ଉତ୍ସାହିତ କରିଛନ୍ତି । ଏ ପର୍ଯ୍ୟାୟରେ କାଳିନ୍ଦୀ ଚରଣ, ସଚ୍ଚିଦାନନ୍ଦ, ବୈକୁଣ୍ଠନାଥ, ମାନସିଂ ପ୍ରମୁଖଙ୍କ ଅନେକ କୃତିର ସମାଲୋଚନାକୁ



Digitized by srujanika@gmail.com

ସ୍ମରଣ କରାଯାଇପାରେ । ୧୯୩୫ ବେଳକୁ ଓଡ଼ିଆ ସାହିତ୍ୟରେ ଯେଉଁ ପ୍ରଗତିବାଦୀ ଚେତନାର ଫଲ୍‌ଗୁ ଭଗବତୀ ପାଣିଗ୍ରାହୀଙ୍କ ଆଧୁନିକ ସାହିତ୍ୟ ସଂସଦ ଆନୁକୂଲ୍ୟରେ ପ୍ରବାହିତ ହେଲା, ତାର ମୁଖପତ୍ର 'ଆଧୁନିକ' ସମ୍ପର୍କରେ ବାଳକୃଷ୍ଣଙ୍କର ମତ ଉପର୍ଯ୍ୟୁକ୍ତ ସାହିତ୍ୟଧାରା ପ୍ରତି ମାର୍ମିକ ଶ୍ରଦ୍ଧା ପ୍ରକାଶ କରେ । ' ଏକ ନୂତନ ଭାବ ବା ନୂତନ ନୀତି ପୃଥିବୀରେ ଜନ୍ମ ଲାଭ କଲେ, ତାହା ସଙ୍ଗେ ସଙ୍ଗେ ନୂତନ ସାହିତ୍ୟର ମଧ୍ୟ ସୃଷ୍ଟି ହୋଇଥାଏ। ଏକ ନୂତନ ଓ ଅଗ୍ରଗାମୀ ନୀତିବାଦର ଆଲୋଚନା ନିମିତ୍ତ କ୍ଷେତ୍ର ଯୋଗାଇଦେବା ଉଦ୍ଦେଶ୍ୟରେ ' ଆଧୁନିକ'ର ଜନ୍ମ । 'ନିଜ କଥା'ରେ ସମ୍ପାଦକ ଲେଖିଛନ୍ତି 'ଆଧୁନିକ' ଏପରି ଲେଖାର ପୋଷକତା କରିବ, ଯାହା ମାନବର ମନକୁ କର୍ମ ତତ୍‌ପର ହେବା ପାଇଁ ଚଞ୍ଚଳ କରିବ। ପ୍ରବନ୍ଧ ହେଉ, କବିତା ହେଉ, ଗଳ୍ପ, ଉପନ୍ୟାସ, ନାଟକ ହେଉ, ଯାହା ମାନବକୁ କର୍ମ କ୍ଷେତ୍ରକୁ ପ୍ରଭାବିତ କରିବ, ଯାହା କର୍ମର ଉଦ୍ଦୀପନା ମାନବ ମନରେ ଆଣିଦେବ, ସେପରି ଲେଖା ବସ୍ତୁତଃ 'ଆଧୁନିକ'ରେ ପ୍ରକାଶ ପାଇବ। ଆରାମ ଚୌକିରେ ବସି ପଢ଼ିବା ଯୋଗ୍ୟ ସୂକ୍ଷ୍ମ ସୌଖୀନ ସାହିତ୍ୟ ପାଇଁ ଆଧୁନିକରେ ସ୍ଥାନ ପ୍ରଶସ୍ତ ନୁହେଁ । ଏ ଉଦ୍ଦେଶ୍ୟ ପୂର୍ଣ୍ଣ ଭାବରେ ପରିପାଳନ କରି ' ଆଧୁନିକ' ଦୀର୍ଘଜୀବୀ ହେଉ, ଏହାହିଁ ଆମ୍ଭମାନଙ୍କ କାମନା ।'' (ସହକାର ସପ୍ତଦଶ ଭାଗ - ଦ୍ୱିତୀୟ ସଂଖ୍ୟା -୧୯୩୬ ପୃ-୧୯୦)

ବାଳକୃଷ୍ଣଙ୍କର ସହକାର ଆଶ୍ରୟରେ ଗଢ଼ି ଉଠିଥିଲା ଓଡ଼ିଆ ସାହିତ୍ୟର ତିନିପିଢ଼ିର ସାରସ୍ୱତ ପ୍ରସାଦ । ସତ୍ୟବାଦୀଠାରୁ ସବୁଜ, ପ୍ରଗତିବାଦୀ ଦେଇ ଅତ୍ୟାଧୁନିକ ଯୁଗର ସାହିତ୍ୟିକଗଣ ନିଜର ସୃଷ୍ଟିକୁ ସହକାର ପୃଷ୍ଠାରେ ପରିବେଷଣ କରି ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଯାଇଛନ୍ତି । ଏ ପରିପ୍ରେକ୍ଷୀରେ ଜଳନ୍ଧର ଦେବ, ଲକ୍ଷ୍ମୀନାରାୟଣ ସାହୁ, ପରମାନନ୍ଦ ଆଚାର୍ଯ୍ୟ, ଚକ୍ରଧର ମହାପାତ୍ର, ସତ୍ୟନାରାୟଣ ରାଜଗୁରୁ, ଗୋଦାବରୀଶ ମିଶ୍ର, ମାନସିଂ, କାଳିନ୍ଦୀ ପାଣିଗ୍ରାହୀ, ସଚ୍ଚିରାଉତରାୟ, ହରିଶ୍ଚନ୍ଦ୍ର, ବଡାଲ, ବୈକୁଣ୍ଠ ନାଥ ଅନନ୍ତ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର, ଗୋପୀନାଥ ମହାନ୍ତି, ଭଗବତୀ ପାଣିଗ୍ରାହୀ, ଅନନ୍ତ ପଣ୍ଡା, ରାମ ପ୍ରସାଦ ସିଂ, ପ୍ରମୁଖ ପ୍ରବନ୍ଧ କବିତା ଏବଂ ଗଳ୍ପ ଲେଖକଙ୍କୁ ସହକାର ପୃଷ୍ଠାରେ ଦେଖିବାର ସୁଯୋଗ ମିଳେ । ଏତଦ୍‌ବ୍ୟତୀତ ଆହୁରି ଅନେକ ପ୍ରବୀଣ ଏବଂ ନବୀନ ଲେଖକଙ୍କ ସମାବେଶ ସହକାରକୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ଅର୍ପଣ କରେ । ଏତଦ୍‌ବ୍ୟତୀତ ଅନେକ ଉଦୀୟମାନ ସାହିତ୍ୟିକ ସହକାର ଯୋଗୁ ହିଁ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ ହୋଇପାରିଛନ୍ତି ।

ବାଳକୃଷ୍ଣ କର ଏକ ବହୁମୁଖୀ ପ୍ରତିଭା । ସାହିତ୍ୟ ଚାଷଠାରୁ ସାହିତ୍ୟ ସମ୍ପାଦନା, ସାମ୍ୟାଦିକତା, ଭାଷା ସଂସ୍କାରଠାରୁ ସମାଜ ସଂସ୍କାର ଯାଏ ଅନେକ କ୍ଷେତ୍ରରେ ତାଙ୍କର ବହୁମୁଖୀ ଅବଦାନ ତଥା ଦ୍ରଷ୍ଟା ସୁଲଭ ଅଭିନବ କାର୍ଯ୍ୟପନ୍ଥାର ନିଦର୍ଶନ ଦୃଷ୍ଟିଗୋଚର ହୋଇଥାଏ ।



Digitized by srujanika@gmail.com

ଗ୍ରାମାଞ୍ଚଳର ଶିକ୍ଷା ପ୍ରସାର କଳ୍ପେ ସାଲେପୁରଠାରେ ଇଂରେଜୀ ବିଦ୍ୟାଳୟ ସ୍ଥାପନ, ଓଡ଼ିଆ ଭାଷାର ସୁରକ୍ଷା ଓ ଉନ୍ନତି କାମନାରେ ସହକାର, ଜହ୍ନମାମୁଁ ପତ୍ରିକା ପ୍ରଚଳନ, ଉତ୍କୃଷ୍ଟ ସାମ୍ବାଦିକତାର ପ୍ରସାର ପାଇଁ ନିର୍ଭୀକ, ସ୍ୱାଧୀନ ଚେତନାଶୀଳ ଦୈନିକ 'ମାତୃଭୂମି' ପ୍ରକାଶନ ଅନ୍ତରାଳରେ ଏକ ଦେଶପ୍ରାଣ ପୁଣ୍ୟାତ୍ମା ଯୁଗପୁରୁଷର ନିରବଚ୍ଛିନ୍ନ ଶୁଭେଚ୍ଛା ପ୍ରଚ୍ଛନ୍ନ । ଏ ଯୁଗ ପୁରୁଷ ସମାଜର ଜାତୀୟ କଳଙ୍କ ମୋଚନାର୍ଥେ ଏକ ଦୀର୍ଘସ୍ଥାୟୀ କର୍ମପନ୍ଥା, ନିର୍ଦ୍ଧାରଣର ପକ୍ଷପାତି ଥିଲେ । ତେଣୁ ସେ ଏକ ନିର୍ମଳ ନିଷ୍କଳଙ୍କ ଉତ୍ତରଦାୟାଦ ଗଠନ ନିମନ୍ତେ ନିଜର ସକଳ ଚିନ୍ତା ଓ ଚେତନାକୁ ଉତ୍ସର୍ଗ କରି ଦେଇଥିଲେ । କାରଣ ସେ ଜାଣିଥିଲେ, 'ଯୁଗ ଯୁଗ ଧରି ଆମ ସମାଜ ଜୀବନ ଧାରାରେ ଆବର୍ଜନା ରାଶି ସ୍ତୁପୀକୃତ ହୋଇ ତାହାର ସ୍ୱଚ୍ଛନ୍ଦ ଅବାଧ ଗତି ରୁଦ୍ଧ କରିଛି, ନିର୍ମଳ ପ୍ରବାହକୁ ପୂତିଗନ୍ଧମୟ କରିଛି; ସେହି ସମାଜର ଜଡ ବକ୍ଷରେ କେତେ ଅନୀତି ରାକ୍ଷସ କେତେ ପ୍ରକାରେ ତାହାର ମୁଣ୍ଡ ଟୋକାଉ ଅଛନ୍ତି, ଏ ସବୁରୁ ତାକୁ ରକ୍ଷା କରିବା ଦିନକର ବା ଜଣକର କାର୍ଯ୍ୟ ନୁହେଁ, ଅଥବା ଗୋଟିଏ ବା ଦିଓଟି ଉପାୟ ଅବଲମ୍ବନ ଦ୍ୱାରା ତାହା ସମ୍ଭବପର ନୁହେଁ ।  ସେଥିପାଇଁ ବର୍ଷ ବର୍ଷ ଧରି ଆନ୍ଦୋଳନ ଆବଶ୍ୟକ । ବିଭିନ୍ନ ସଂଘବଦ୍ଧ  ଉଦ୍ୟମ ଆବଶ୍ୟକ । ଆଇନ ପ୍ରଣୟନ ଦ୍ୱାରା , ବକ୍ତୃତା ଦ୍ୱାରା,  ଆନ୍ଦୋଳନ ଦ୍ୱାରା, ସଭା ସମିତି ଦ୍ୱାରା ପ୍ରଚାରକ ନିଯୁକ୍ତି ଦ୍ୱାରା, ଉଦାହରଣ ଦ୍ୱାରା, ଶିକ୍ଷା ଦ୍ୱାରା, ସାହିତ୍ୟ ଦ୍ୱାରା, ଉପଦେଶ ଦ୍ୱାରା, ବିପ୍ଳବ ଦ୍ୱାରା ଏହିପରି ନାନା ଦିଗରେ ନାନା ଉପାୟ ଅବଲମ୍ବନ ଦ୍ୱାରା ତାହାର ପ୍ରତିକାର କରଣୀୟ । ଅଜ୍ଞାନ ହିଁ ସକଳ ପ୍ରକାର ସାମାଜିକ ରୋଗର ନିଦାନ, ସର୍ବପ୍ରକାର କୁସଂସ୍କାର, କୁନୀତି, କୁରୀତି ଅନାଚାର, ଅତ୍ୟାଚାର ମୂଳରେ ଅଛି ଗତାନୁଗତିକ ପନ୍ଥାର ଅନୁସରଣ କାର୍ଯ୍ୟ ସହିତ କାରଣର ସମ୍ବନ୍ଧ ଉଚ୍ଛେଦ, ଅନ୍ଧ ଭାବରେ ଜୀବନ ଯାପନ ।

'ଯେଉଁ ସ୍ରୋତ ଯେତିକି କ୍ଷିପ୍ର ତାର ଆବିଳ ହେବାର ସମ୍ଭାବନା ତେତିକି ଅଳ୍ପ । ଯେଉଁ ଜାତି ଯେତିକି କର୍ମଠ ତାର କୁସଂସ୍କାର ଗ୍ରସ୍ତ ହେବାର ସମ୍ଭାବନା ତେତିକି ଅଳ୍ପ । ଆମ ସମାଜ ମଧ୍ୟରେ ସଂସ୍କାରର ପ୍ରୟୋଜନ କର୍ମଠତାର ଅଭାବ ଯୋଗୁ । ସମାଜ କର୍ମଠ ହେଲେ, ତାର ସ୍ୱାଧୀନ ଚିନ୍ତା ବଢ଼େ ଓ ସେ ସ୍ୱାଧୀନ ଭାବରେ ଚିନ୍ତା କରି ପାରିଲେ ସକଳ କୁସଂସ୍କାର ତାର ହୃଦୟରୁ ଦୂର ହୁଏ ।' 'ପଦେ ଅଧେ', କଟକରେ ସଂସ୍କାର ସମ୍ମିଳନୀ - ସହକାର- ୧୨ଶ ଭାଗ - ୪ର୍ଥ ସଂଖ୍ୟା)

ଏଣୁ ଅତି ନିର୍ଭୀକ ଭାବେ ପୁଣ୍ୟାତ୍ମା ବାଳକୃଷ୍ଣ କର ତାଙ୍କର ଆଗ୍ନେୟ ନିର୍ଦ୍ଦେଶ ଦେଇ ଯାଇଛନ୍ତି ଏକ କର୍ମଠ ଜାତି, ଏକ ଅଖଣ୍ଡ ଉତ୍କଳ, ଏକ ବଳିଷ୍ଠ ଭାଷା ଗଠନ ପାଇଁ ।  ତାଙ୍କର ପ୍ରତ୍ୟେକଟି ବୈପ୍ଳବିକ ଉଚ୍ଚାରଣ ନୈପଥ୍ୟରେ ଏକ ନୂତନ ସୃଜନର ଅଭିନବ ପ୍ରଗତିର ଚେତନା ପ୍ରଚ୍ଛନ୍ନ ଥାଏ ।  ଆଜି ତାଙ୍କରି ଶ୍ରାଦ୍ଧ ବାସରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ବୈପ୍ଳବିକ ଭୂମିକା ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ସହିତ ତାଙ୍କର ମାର୍ମିକ ଅଭିଳାଷ ପୂରଣରେ କର୍ତ୍ତବ୍ୟ ଆମ ସମ୍ମୁଖରେ ରହିଛି ।❑❑❑

(୧୯୮୪ ଦେବଗଡଠାରେ ବାଳକୃଷ୍ଣ କରଙ୍କ ଶ୍ରାଦ୍ଧଉତ୍ସବରେ ପଠିତ ।)



Digitized by srujanika@gmail.com

# କବି ପଦ୍ମଚରଣ ନାୟକଙ୍କ 'ଜୟଦ୍ରଥ ବଧ': ଏକ ସୂକ୍ଷ୍ମ ନିରୀକ୍ଷଣ

ବଟ ବୃକ୍ଷ ପ୍ରକୃତିର ଅନନ୍ୟ ଦାନ । ବେଳେ ବେଳେ ବଟ ଚାରାଟିଏ ଅନ୍ୟ ଗଛର ଆଶ୍ରାରେ ବଢ଼େ କାଳକ୍ରମେ ତାକୁ କବଳିତ କରିଯାଏ । ମୂଳ ଗଛର ଅସ୍ତିତ୍ୱ ଜଣାପଡେ ନାହିଁ । ଏହା ପ୍ରକୃତିର ନିୟମ । ବଟବୃକ୍ଷଟି ନିଜ ଇଚ୍ଛାରେ ଆସିନଥାଏ ବରଂ କୌଣସି ପକ୍ଷୀର ମଳଦ୍ୱାରା ବୀଜଟି ଆଶ୍ରୟଦାତା ଗଛରେ ପଡିଥାଏ । ସେହି ବୀଜଟି ବିରାଟ ଦ୍ରୁମରେ ପରିଣତ ହୋଇ ଆଶ୍ରୟଦାତାର ପରିଚୟ ନିଶ୍ଚିହ୍ନ କରିଦିଏ । ଠିକ୍ ସେମିତି ସାରସ୍ୱତ ଜଗତରେ କିଛି କାମଳଗବେଷକ ଅନେକ ଅନାଲୋଚିତ ବା ସ୍ୱଳ୍ପାଲୋଚିତ ଲେଖକଙ୍କ କୃତିକୁ କୃତବିଦ୍ୟ ସାହିତ୍ୟ ରଥୀଙ୍କ କୃତିରୂପେ ବିଜ୍ଞାପିତ କରି ସେହି ମୌଳିକ ସ୍ରଷ୍ଟାଙ୍କ ଅଦୃଷ୍ଟକୁ ବିଡମ୍ବିତ କରିଥାନ୍ତି । ଏମିତି ଏକ ବିଡମ୍ବିତ ଗବେଷଣାର ଶୀକାର ସାରସ୍ୱତ ସାଧକ ପଦ୍ମଚରଣ ନାୟକ । ନାମର ସାମଞ୍ଜସ୍ୟ ଦୃଷ୍ଟିରୁ ଏହି ଅଗ୍ରସାଧକଙ୍କ ଅନେକ କୃତିକୁ ଓଡ଼ିଶାର କିଛି ନାମକରା ଗବେଷକ ଧଉଳୀ ପାହାଡର କବି ପଦ୍ମଚରଣ ପଟ୍ଟନାୟକଙ୍କ କୃତିରୂପେ ଚିହ୍ନିତ କରନ୍ତି । ଫଳରେ ପଦ୍ମଚରଣ ପଟ୍ଟନାୟକ ରୂପୀ ବଟବୃକ୍ଷ ତଳେ ପଦ୍ମଚରଣ ନାୟକ ରୂପକ ସୁଦୃଶ୍ୟ ବୃକ୍ଷଟି ହଜିଯାଏ। ଏହି ପରିପ୍ରେକ୍ଷୀରେ ସେହି କୃତବିଦ୍ୟ ତଥା ଅନାଲୋଚିତ ସାଧକ ପଦ୍ମଚରଣ ନାୟକଙ୍କୁ ସାରସ୍ୱତ ସ୍ୱୀକୃତି ପ୍ରଦାନ ସହିତ ତାଙ୍କର କୃତିର ଏକ ସୂଚନାତ୍ମକ ବିବରଣୀ ତଥା ଶ୍ରେଷ୍ଠ କାବ୍ୟ 'ଜୟଦ୍ରଥ ବଧ'ର ଆକଳନର ପ୍ରଚେଷ୍ଟା କରାଗଲା ।

କବି ପଦ୍ମଚରଣ ନାୟକ ଓଡ଼ିଆ ସାହିତ୍ୟରେ ଜଣେ ଅନାଲୋଚିତ ପ୍ରତିଭା । ଭଦ୍ରକଠାରୁ ଏଗାର କିଲୋମିଟର ଦୂର ଏକ କ୍ଷୁଦ୍ର ଗ୍ରାମ ହଳଧରବିନ୍ଧାରେ ୧୮୮୬ରେ କବି ପଦ୍ମଚରଣ ନାୟକଙ୍କ ଜନ୍ମ । ପିତା ରତ୍ନାକର ନାୟକ ଏବଂ ମାତା ହୀରାଦେବୀଙ୍କର ସେ ଥିଲେ କନିଷ୍ଠ ପୁତ୍ର । ସେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ଶିକ୍ଷକତା ଜୀବନକୁ ଆଦରି ନେଇଥିଲେ । ୧୯୧୧-୧୯୧୪ ପର୍ଯ୍ୟନ୍ତ ସେ ଦୋଳସାହି ସ୍କୁଲର ପ୍ରଧାନଶିକ୍ଷକ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ । ଏହି ସମୟ ଥିଲା ପଦ୍ମଚରଣଙ୍କ ସାରସ୍ୱତ ଜୀବନର ସୃଷ୍ଟିଶୀଳ ଅଧ୍ୟାୟ । ତାଙ୍କର ଜ୍ୟେଷ୍ଠ ଭ୍ରାତା ଭାବଗ୍ରାହୀ ନାୟକ ତତ୍କାଳୀନ ସ୍କୁଲ ସମୂହର ସବ୍‌ଇନ୍ସପେକ୍ଟର ଥିଲେ । ତାଙ୍କ ମାଧ୍ୟମରେ ଓଡ଼ିଆ ସାରସ୍ୱତ ଜଗତର ଦୁଇ ଜ୍ୟୋତିଷ୍କ ରାଧାନାଥ ଓ ମଧୁସୂଦନଙ୍କ ସହିତ ପଦ୍ମଚରଣ ପରିଚିତ ହୋଇଥିଲେ ଏବଂ ସେମାନଙ୍କ



Digitized by srujanika@gmail.com

ଅନୁପ୍ରେରଣାରେ କାବ୍ୟ ଜୀବନକୁ ଋଦ୍ଧିମନ୍ତ କରିପାରିଥିଲେ । ସମକାଳରେ ସମ୍ବାଦବାହିକା, ସମ୍ବଲପୁର ହିତୈଷିଣୀ, ଉତ୍କଳସାହିତ୍ୟ, ମୁକୁର,ସୁଧା, ଗଡଜାତ ବାସିନୀ ପ୍ରଭୃତି ପତ୍ରିକା ପୃଷ୍ଠାରେ ତାଙ୍କର ଅନେକ କାବ୍ୟ କବିତା ପ୍ରକାଶିତ। ଜୟଦ୍ରଥବଧ ପୂର୍ବରୁ କବି ଉମା, ଅଭିମନ୍ୟୁ ବଧ, ସାବିତ୍ରୀ ଏବଂ କୁସୁମ ସ୍ତବକ ପ୍ରଭୃତି କେତେଖଣ୍ଡି କ୍ଷୁଦ୍ରକାବ୍ୟ ପ୍ରଣୟନ କରିଥିଲେ। (ମୁଖବନ୍ଧ- ସଦାନନ୍ଦ ପତିଶର୍ମା: ଜୟଦ୍ରଥ ବଧ)

ଗଙ୍ଗାଧର ମେହେରଙ୍କ କିଛି ଦୁର୍ଲ୍ଲଭ ଗଦ୍ୟ ରଚନା ସଂକଳନ କଲାବେଳେ ଜୟଦ୍ରଥ ବଧ କାବ୍ୟର ସଂକ୍ଷିପ୍ତ ସମାଲୋଚନା ଏହି ଲେଖକର ଦୃଷ୍ଟିକୁ ଆସେ । ଆଲୋଚନାଟି ସମ୍ବଲପୁର ହିତୈଷିଣୀ ୩୧.୮.୧୯୦୭ ସଂଖ୍ୟାରେ ପ୍ରକାଶିତ । ଆଲୋଚନା ମାଧ୍ୟମରେ ଗଙ୍ଗାଧର ଏହାକୁ କବିଙ୍କ ପ୍ରଥମ କୃତି ବୋଲି ଗ୍ରହଣ କରି ସମାଲୋଚନାରେ ପ୍ରୟାସୀ ହୋଇଛନ୍ତି । ଗଙ୍ଗାଧର କବିଙ୍କ ଏହି ନବୋଦ୍ୟମକୁ ପ୍ରଶଂସାକରି କହନ୍ତି- "କବିଙ୍କର ରଚନା ଶକ୍ତି ଅତି ପ୍ରଶଂସନୀୟ। ସେ ଅର୍ଥଲାଭର ଆଶା ନ ରଖି ନିଜର ନୈସର୍ଗିକ ପ୍ରତିଭା ପ୍ରସ୍ଫୁଟ କରି ଧୀର ଗଂଭୀର ଭାବରେ ସମ୍ୟକ ଆଲୋଚନା ଓ କାବ୍ୟରଚନାରେ ପ୍ରବୃତ୍ତ ହେଲେ ଉତ୍କଳ ଭାଗ୍ୟରେ ତାହାଙ୍କର ଯଶଃ ସୌରଭ ଅବଶ୍ୟ ଦିଗନ୍ତ ବ୍ୟାପୀ ହୋଇପାରିବ । 'ଜୟଦ୍ରଥବଧ' ତାହାଙ୍କର ପ୍ରଥମୋଦ୍ୟମ ସମ୍ଭୂତ । ତହିଁରେ ସ୍ଥାନେ ସ୍ଥାନେ ଅତି ମନୋହର ଭାବ, ଭାଷା ଓ ଉପମାଦି ଦେଖି ହୃଦୟ ଆନନ୍ଦ ନୀରରେ ପ୍ଲାବିତ ହୋଇଯାଏ । "

କିଏ ଏହି ପଦ୍ମଚରଣ ନାୟକ ? ଯାହାଙ୍କ 'ଜୟଦ୍ରଥବଧ'ର ସମାଲୋଚନା ଗଙ୍ଗାଧର ମେହେରଙ୍କ ଲେଖନୀରୁ ନିର୍ଗତ ହୋଇଥିଲା । ଗଦ୍ୟ ରଚନାରେ ବିଶେଷକରି ପୁସ୍ତକ ସମାଲୋଚନାରେ କୁଣ୍ଠିତ ଗଙ୍ଗାଧର କିପରି ପଦ୍ମଚରଣଙ୍କ କାବ୍ୟର ସମାଲୋଚନା ଲେଖିବାକୁ ତତ୍ପର ହେଲେ । ସେହି କବିଙ୍କର ପରିଚୟ କଣ ? ସଂଶିତ କବିଙ୍କର ପରିଚୟ ଫକୀରମୋହନ ସେନାପତିଙ୍କ 'ସମ୍ବାଦବାହିକା' (୨୯-୭-୧୯୦୯) ସମ୍ପାଦକଙ୍କୁ ପତ୍ରରୁ ମିଳିଥାଏ ।

ମାନ୍ୟବର ଶ୍ରୀଯୁକ୍ତ ସମ୍ବାଦବାହିକା ସମ୍ପାଦକ ମହାଶୟେଷୁ !

ଶ୍ରୀଯୁକ୍ତ ବାବୁ ପଦ୍ମଚରଣ ନାୟକ ଏହି ଉତ୍କଳ ଧରିତ୍ରୀ ଗଗନରେ ଗୋଟିଏ ଉଦୀୟମାନ କବିଚନ୍ଦ୍ର । ତେଣୁ ସେ ସାହିତ୍ୟସେବିଙ୍କ ନିକଟରେ ଅପରିଚିତ ନୁହଁନ୍ତି । ସୁତରାଂ ସେମାନଙ୍କ ନିକଟରେ ତାହାଙ୍କର ଅଧିକରେ ପରିଚୟ ଦେବା ବାତୁଳତା ମାତ୍ର ।

ନବକବି ନବୋଦ୍ୟମରେ ଅମିତ୍ରାକ୍ଷର ଛନ୍ଦରେ ଯାହା ରଚନାର ଚିତ୍ର ପ୍ରଦର୍ଶନ କରାଉଅଛନ୍ତି ତାହା ଅତୀବ ପ୍ରଶଂସାର ବିଷୟ । ଯାହାହେଉ ତାହାଙ୍କୁ ଉତ୍ତରରୋତ୍ତର ପ୍ରଶଂସା ପଥରେ ପଥିକ ହେବାର ଦେଖି ଆଶା କରୁଅଛୁଁ ଯେ ସେ ଦିନେ ଅବଶ୍ୟ କବିର



Digitized by srujanika@gmail.com

ପବିତ୍ର ଉଚ୍ଚତର ମଞ୍ଚର ଅଧିକାରୀ ହୋଇପାରିବେ । ଅର୍ଥାଭାବରୁ କବିଙ୍କର ଉମା, ସ୍ୱର୍ଗଯାତ୍ରା, ଅଦ୍ଭୁତସ୍ୱପ୍ନ, ଭାନୁମତୀ ନାଟକ ଓ ଚତୁର୍ଦ୍ଦଶପଦୀ କବିତା କଳିକା ପ୍ରଭୃତି କେତେକ ଖଣ୍ଡି ପୁସ୍ତକ ମୁଦ୍ରିତ ହୋଇ ନ ପାରି ପାଣ୍ଡୁଲିପିରେ ରହିଥିଲା ଓ ସଂପ୍ରତି ରହିଅଛି । ତନ୍ମଧ୍ୟରୁ ନବକବି 'ସ୍ୱର୍ଗଯାତ୍ରା' ନାମକ ଦୁଃଖୋଦ୍ଦୀପକ ପୁସ୍ତକ ଖଣ୍ଡି ଉତ୍କଳ ଜନନନୀଙ୍କର ଆଜ୍ଞାଗତ ଯୋଗ୍ୟତମ ସୁତ, କବିତା କାନନ ଷଟ୍‌ପଦ କବି କୁଳୋତ୍ତମ ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୂରଙ୍କର ସ୍ୱର୍ଗଯାତ୍ରା ଶ୍ରବଣରେ ଶୋକାନ୍ୱିତ ହୋଇ ତାହାଙ୍କର ପବିତ୍ର ନାମରେ ଉତ୍ସର୍ଗକରି ତାହାର ମୁଦ୍ରାଙ୍କନ କାର୍ଯ୍ୟ ସ୍ୱବ୍ୟୟରେ ସମାପନ କରିଅଛନ୍ତି । ସାହିତ୍ୟର ମୌଳିକତା ଦୃଷ୍ଟିରେ ଉକ୍ତ କାବ୍ୟ ଖଣ୍ଡିକରେ କୌଣସି କୌଣସି ସ୍ଥାନରେ ଅନ୍ୱୟ ଓ ବ୍ୟାକରଣ ଦୋଷ ପରିଲକ୍ଷିତ ହେଉଅଛି । ତାହା ଯତ୍ ସାମାନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏତଦ୍ ବ୍ୟତୀତ କାବ୍ୟରେ ଶବ୍ଦ ବିନ୍ୟାସ ଚାତୁରୀ ଓ ଭାବ ଲାଳିତ୍ୟର ବିଶେଷ ପରିଚୟ ମିଳୁଅଛି । ସ୍ଥୂଳତଃ ଖଣ୍ଡକାବ୍ୟ ଖଣ୍ଡି ସର୍ବଦା ଚିତ୍ତାକର୍ଷକ ହୋଇଅଛି । ତେଣୁ ଭରସା କରୁଁ ଏଣିକି କବି ମହୋଦୟ ଆମ୍ଭମାନଙ୍କୁ ଇଦୃଶ ନବନବ କବିତା ଓ କାବ୍ୟର ଚିତ୍ର ଦେଖାଇ ନୟନ ମନର ପ୍ରୀତିସାଧନ କରିବାକୁ କୁଣ୍ଠିତ ହେବେ ନାହିଁ । ଇତି ।

ବଶମ୍ବଦ

ଶ୍ରୀ ଫକୀରମୋହନ ସେନାପତି

ଏହି ଲେଖକର ଦୃଷ୍ଟିକୁ ଆସିଥିବା ପଦ୍ମଚରଣ ନାୟକଙ୍କର କେତୋଟି ରଚନାର ସଂକ୍ଷିପ୍ତ ଆଲୋଚନା ନିମ୍ନରେ କରାଗଲା ।

ସମ୍ବଲପୁର ହିତୈଷିଣୀ୧-୧-୧୯୦୨ ପୃଷ୍ଠାରେ ସୀତା ଅନ୍ୱେଷଣ ଓ ଶ୍ରୀରାମ ବିଳାପ (କବିତା) ୧୫-୧-୧୯୦୨ ପୃଷ୍ଠାରେ ଅଭିମନ୍ୟୁ ବଧ (ଧାରାବାହିକ ପ୍ରକାଶିତ), ୧୯-୨-୧୯୦୨ ପୃଷ୍ଠାରେ ମନପକ୍ଷୀ ପ୍ରତି, ୧୯-୯-୧୯୦୩ ସଂଖ୍ୟାରେ ଜାତୀୟଗୀତି ପ୍ରଭୃତି କବିତା ପ୍ରକାଶିତ ।

'ଅଭିମନ୍ୟୁ ବଧ' କାବ୍ୟ ବଙ୍ଗଳାଶ୍ରୀ ରାଗରେ ରଚିତ ଏବଂ ମନେହୁଏ କବିଙ୍କର ପ୍ରଥମ ରଚିତ କାବ୍ୟ। ହିତୈଷିଣୀରେ ପ୍ରକାଶିତ ଏହି କାବ୍ୟର ପ୍ରଥମ ପଂକ୍ତି ହେଲା-

ଦୈବ ଯୋଗେ  ଦିନେ ଗର୍ଗ ମହାମୁନି
ସଙ୍ଗେ ଘେନି ଶିଷ୍ୟଗଣେ
ଉପସ୍ଥିତ ହେଲେ ଯାଇ ଚନ୍ଦ୍ରାଲୋକେ
ଶଶଲାଞ୍ଛନ ଭୁବନେ ।

'ମନପକ୍ଷୀ ପ୍ରତି' କବିତାରେ କବିଙ୍କ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ ।



Digitized by srujanika@gmail.com

କବି ଦୃଷ୍ଟି ପ୍ରକୃତିର ଅନବଦ୍ୟ ସୁଷମା ସହିତ ଜୀବନଦର୍ଶନର ମହାନୁଭବତାକୁ ହୃଦୟଙ୍ଗମ କରିପାରିଛି -

କହ କହ ଆରେ ପକ୍ଷୀବର
କେବାତୋର ନିବେଦନ କେ ତୋର ସୁଖକାନନ
କାହିଁଥିବୁ କିପାଁ ଆସି ହୃଦୟ ପିଞ୍ଜର
ମଧ୍ୟେ ତୁହି ଦିନକାଟୁ କିପାଁ ଏକେଶ୍ୱର
କାହିଁ ତୋର ସେ ସୁଖକାନନ
ଯହିଁ ସୁଖେ ଅନୁକ୍ଷଣ କରୁଥିବୁରେ ଭ୍ରମଣ
କେଉଁ ଦୋଷେ ସେ ସକଳ କରି ବିସର୍ଜନ
ମାୟା ପିଞ୍ଜରାରେ ପଡି ଲଭିଲୁ କଷଣ ।

ସମ୍ବାଦବାହିକା ୬-୩-୧୯୦୨ ସଂଖ୍ୟାରେ 'ବାଲେଶ୍ୱର ଜମିଦାର ଲାଲମୋହନ ଦାସଙ୍କ କନିଷ୍ଠ ଭ୍ରାତା କୁଞ୍ଜ ବିହାରୀ ଦାସ ମହୋଦୟ ସ୍କୁଲ ଛାତ୍ରମାନଙ୍କୁ ପୁରସ୍କାର ପ୍ରଦାନ ଉପଲକ୍ଷେ କବିତା, ୪-୨-୧୯୦୪ ସଂଖ୍ୟାରେ 'ଶିଶିର', ୧୧-୨-୧୯୦୪ ସଂଖ୍ୟାରେ 'ପ୍ରାର୍ଥନା' (ରାଧାନାଥଙ୍କ ପ୍ରତି), ୨୫-୨-୧୯୦୪ ସଂଖ୍ୟାରେ 'ଉପହାର' କବିତା ପ୍ରକାଶିତ । ସମ୍ବାଦ ବାହିକାରେ ପ୍ରକାଶିତ କବିତା ସମୂହର ରୂପ ମାଧୁର୍ଯ୍ୟ ରାଧାନାଥୀ ରଚନା କୌଶଳଦ୍ୱାରା ସୁନିୟନ୍ତିତ । ଦୃଷ୍ଟାନ୍ତ ରୂପେ ଶିଶିର କବିତାକୁ ନିଆଯାଇପାରେ-

ଚାହୁଁ ଚାହୁଁ ଶିଶିର ହେମନ୍ତ ଶେଷେ
ପ୍ରବିଷ୍ଟ ହେଲା ଆସି ଈଶ ଆଦେଶେ ।
ଉତ୍ତର ଦିଗୁଁ ବହେ ଶୀତ ସମୀର,
ଦୁର୍ଜନ ମୁଖୁଁ ନିଭ କର୍କଶ ଗୀର'
ଶୀତଜାତ ସମୀରେ ଗାତ୍ର ଅଥୟ
ଦୁର୍ଜନ ବାକ୍ୟେ ଯଥା କଂପେ ହୃଦୟ
ଅଦୃଶ୍ୟ ହେଲେ ଏବେ ମଧୁପଗଣ,
ବିଧର୍ମୀ ରାଜା ରାଜ୍ୟେ ପ୍ରଜା ଯେସନ ।

'ପ୍ରାର୍ଥନା' କବିତାରେ କବି ରାଧାନାଥଙ୍କ ମହନୀୟତା ସ୍ୱୀକାର କରି ବର୍ଣ୍ଣନା କରନ୍ତି,

ଉତ୍କଳର ବନ୍ଦନୀୟ କବି କୁଳୋତ୍ତମ
ସାହିତ୍ୟ ନନ୍ଦନ ବନ - କଳକଣ୍ଠ ପିକ
ରାଧାନାଥ ! ତବଯଶଃ ବ୍ୟାପଇ ସର୍ବତ୍ର
କିରଙ୍ଗେ ଉତ୍କଳେ, ପୁଣି ଯେତେଯେତେ ସ୍ଥାନ



Digitized by srujanika@gmail.com

ଭ୍ରମିଅଛ ଇଚ୍ଛାସୁଖେ, ଧନ୍ୟ କବିବର ।
ତୁମ୍ଭରି ଉଦ୍ୟମେ ସିନା ଏ ଦୀନ ଉତ୍କଳ,
ଅବକାଶ ତେ୍ୟଜି ପୁଣି ଭୟ, ଭ୍ରାନ୍ତି ବୀର ।

ତାଳଚେରରୁ ପ୍ରକାଶିତ ଗଡଜାତ ବାସିନୀ (୧୯୦୩) ପତ୍ରିକାର ପଦ୍ମଚରଣ ନାୟକ ଥିଲେ ନିୟମିତ ଲେଖକ । ଗଡଜାତ ବାସିନୀର ବିଭିନ୍ନ ସଂଖ୍ୟାରେ ତାଙ୍କର କେତେକ ରଚନା ପ୍ରକାଶିତ । ୩୧.୧.୧୯୦୩ ସଂଖ୍ୟାରେ କଳିପ୍ରତି (କବିତା), ୧୪.୩.୧୯୦୩ ସଂଖ୍ୟାରେ ସାବିତ୍ରୀ (କାବ୍ୟ ଧାରାବାହିକ ପ୍ରକାଶିତ), ୧୩.୬.୧୯୦୩ ରେ ଗଞ୍ଜାମୋତ୍କଳ ମାତାଙ୍କ ପ୍ରତି, ୮.୮.୧୯୦୩ ସଂଖ୍ୟାରେ ଘନଶ୍ୟାମ କବିଭୂଷଣଙ୍କ ପତ୍ରର ଉତ୍ତର, ୨୦.୧.୧୯୦୬ ସଂଖ୍ୟାରେ ରମଣୀ ପ୍ରାର୍ଥନା ପୁସ୍ତକର ସମାଲୋଚନା, ୨୭.୧.୧୯୦୬ ସଂଖ୍ୟାରେ ପ୍ରତିବାଦ ପତ୍ର, ୩.୨.୧୯୦୬ ସଂଖ୍ୟାରେ ଉତ୍କଳ ଦୁର୍ଦ୍ଦଶା, ୨୪.୨.୧୯୦୬ ସଂଖ୍ୟାରେ ନରପ୍ରତି ମୃତୁ୍ୟର ଭର୍ତ୍ସନା, ୧୭.୩.୧୯୦୬ ସଂଖ୍ୟାରେ ପ୍ରାର୍ଥନା,୨୭.୧୦.୧୯୦୬ ସଂଖ୍ୟାରେ ଭାରତୀ, ୩.୧୧.୧୯୦୬ ସଂଖ୍ୟାରେ ଘନଶ୍ୟାମ କବି ଭୂଷଣଙ୍କ ପାଞ୍ଚଟି ପୁସ୍ତକର ସମାଲୋଚନା, ୨୯.୧୨.୧୯୦୬ ସଂଖ୍ୟାରେ ନବବର୍ଷ ଉପଲକ୍ଷେ (କବିତା) ପ୍ରକାଶିତ।

ଏହି ସମସ୍ତ କବିତା ଅନ୍ତରାଳେ ପଦ୍ମଚରଣଙ୍କ ବଳିଷ୍ଠ କାବ୍ୟସ୍ୱର ଗୁଞ୍ଜରିତ । କବିତାର ଭାବପ୍ରସ୍ଥ ସରଳ ଶବ୍ଦସଜ୍ଜା ଓ ପାରମ୍ପରିକ ଶୈଳୀଦେଇ ମାଧୁର୍ଯ୍ୟମଣ୍ଡିତ । ଆଦର୍ଶବାଦ ଓ ପ୍ରକୃତିବର୍ଣ୍ଣନା କବିତାର ଭାବକେନ୍ଦ୍ରକୁ କରିଛି ପୁଷ୍ଟ ଓ ଆଭାମୟ । 'ଗଞ୍ଜାମୋତ୍କଳ ମାତାଙ୍କ ପ୍ରତି'ରେ କବିଙ୍କ ସ୍ୱଦେଶ ପ୍ରୀତିର ଝଲକ ପ୍ରତିଫଳିତ -

ଉଠଗୋ ଜନନୀ ? ଭାଗ୍ୟ ଦିନମଣି
ବହୁଦିନ ଅନ୍ତେ ତୋର ଉଦିତ
ନୂତନ ହରଷେ ହୁଅ ମା' ମଗନ
ଜଡତା ବିଷାଦ ନାଶି ତ୍ୱରିତ
ପକ୍ଷାଘାତ ଗ୍ରସ୍ତ - ଶରୀରେ ତୋର ମା'
ହୋଇଅଛି ଆଜି ଜ୍ଞାନ ସଂଚାର
ଶୁଣ ତୁ ପ୍ରଭାତେ ବିହଙ୍ଗ ସଙ୍ଗୀତ
ନିରୀକ୍ଷଣ କରେ ଶୋଭା ଭଣ୍ଡାର ।
ଭାଇ ଭାଇ ମିଳି ନାଶିବାରୁ ତୋର
ଚିରକାଳ ସ୍ଥାୟୀ ଦୁଃଖଦୁଷ୍କୃତ
ନିକ୍ୱଣ ଉକ୍ୱଳେ ଜୀବନ ତୋହର
ଆଜି ଧୀରେ ଧୀରେ ଉଜ୍ଜ୍ୱଳିକୃତ।



Digitized by srujanika@gmail.com

ଉତ୍କଳ ସାହିତ୍ୟରେ ତାଙ୍କର ଭୀମସିଂହ (୮/୭), କାହିଁ ସେ ରତନ (୮/୮), ନୀରବ ଶୋକ (୧୦/୨), ଅହଲ୍ୟା (୧୧/୨), ଅଶ୍ରୁକଣା (୧୨/୪), ନୀଳାଚଳ (୧୨/୬) ପ୍ରଭୃତି କବିତା ପ୍ରକାଶ ପାଇ ତାଙ୍କୁ ଅପୂର୍ବ ପାଠକୀୟତା ଆଣିଦେଇଥିଲା ।

ପାଠକଙ୍କ ଉତ୍କଣ୍ଠାର ଅପନୋଦନ ପାଇଁ କବିଙ୍କ 'କାହିଁ ସେ ରତନ' କବିତାର କିଛି ଅଂଶ ଏଠାରେ ଉଦ୍ଧୃତ ହେଲା । ଉଦ୍ଧୃତାଂଶରୁ କବିତାର ଶୈଳୀ ଓ ଭାବପକ୍ଷର ଅନନ୍ୟତାକୁ ହୃଦୟଙ୍ଗମ କରିହେବ । କବିତାର ସରଳ ତରଳ ଛନ୍ଦସଜ୍ଜା ଓ ସାବଲୀଳ ଶବ୍ଦବିନ୍ୟାସ କବିତାକୁ ସୁଖପାଠ୍ୟ ଓ ବହୁଚର୍ଚ୍ଚିତ କରିପାରିଥିଲା ।

ଆହା ! ବିହି ! ଧିକ ମୁହିଁ ! ଧିକ ମୋ ଜୀବନ !
କାଲି ଯାକୁ ଘେନି କୋଳେ
ଅବିରାମ ପ୍ରେମ - ଭୋଳେ
ଦେଉଥିଲି କପୋଳରେ ସହସ୍ରେ ଚୁମ୍ବନ;
ହରାଇ ବସିଲି ଆଜି, କାହିଁ ସେ ରତନ ।
ହରାଇ ବସିଲି ଆଜି, କାହିଁ ସେ ରତନ,
ଯାର ମୃଦୁ ପ୍ରେମ ହାସେ
ନବ ଆଶା ପରକାଶେ,
ଲଭଇ ପଲକେ ହୃଦ ନବୀନ ଚେତନ,
ଯାର ସୁଚାରୁ ଆନନ
କରି ସୁଖେ ନିରୀକ୍ଷଣ,
କରିଥିଲି ଧରାଧାମେ ସାର୍ଥକ ଜୀବନ;
ହରାଇ ବସିଲି ଆଜି, କାହିଁ ସେ ରତନ ।

ଚନ୍ଦ୍ରଶେଖର ନନ୍ଦଙ୍କ ସମ୍ପାଦନାରେ ପ୍ରକାଶିତ ବିରଳ ପତ୍ରିକା ସୁଧା (୧୯୦୭)ରେ ତାଙ୍କର 'ଶିଶୁର କର୍ତ୍ତବ୍ୟ' (କବିତା ) ପ୍ରକାଶିତ । ଶିଶୁର କର୍ତ୍ତବ୍ୟ କବିତାଟି ଶିଶୁମାନଙ୍କୁ କର୍ତ୍ତବ୍ୟ ପାଳନ ପାଇଁ ଉଦ୍‌ବୋଧିତ କରିବାରେ ସକ୍ଷମ ।

ହେ ଶିଶୁ ! ସମ୍ମୁଖେ ତବ ଅନନ୍ତ ଗଗନ
ପ୍ରଶାନ୍ତ ସୁନୀଳ ନାନାରଙ୍ଗେ ସୁରଞ୍ଜିତ
ବିସ୍ତାରି ନୟନଯୁଗ କର ନିରୀକ୍ଷଣ
ଉଜ୍ଜ୍ୱଳ ନକ୍ଷତ୍ର ପୁଞ୍ଜିଯୋଗେ ସୁଶୋଭିତ ।
ଅଗ୍ନିସମ ତପନର ପ୍ରଚଣ୍ଡ ଉତ୍ତାପ
ହୁ ହୁରବେ ଦଗ୍ଧେ ଯେହୁ ବିଶ୍ୱବାସୀ ପ୍ରାଣ



Digitized by srujanika@gmail.com

ପ୍ରବୃଟେ ଜଳଦଜାଳ ଶବଦନିର୍ଘାତ
ତୁଚ୍ଛମଣି ଚିରପ୍ରଭ ନୋହି ମ୍ରିୟମାଣ
ଶତବିଘ୍ନ ଶତବାଧା ଅତିକ୍ରମ କରି,
ସତତ କର୍ତ୍ତବ୍ୟପଥେ ହୁଅହେ ପଥିକ
ଜୀବନ ସଂଗ୍ରାମେ ଛନ୍ତି ଯେତେ ଯେତେ ପରୀ
କର୍ତ୍ତବ୍ୟରୁ ବଳି ଆଉ କି ଅଛି ଅଧିକ ?
"ମନ୍ତ୍ରର ସାଧନ କିମ୍ବା ଶରୀର ପାତନ"
ତା ସଙ୍ଗେ ମିଶାଅ ପୁଣି "କର୍ତ୍ତବ୍ୟ ପାଳନ" । (ଶିଶୁର କର୍ତ୍ତବ୍ୟ)

କବିଙ୍କର 'ସ୍ୱର୍ଗଯାତ୍ରା' ପୁସ୍ତକଟି ୧୨ ପୃଷ୍ଠା ବିଶିଷ୍ଟ ଓ ଦୁଇଟି ସର୍ଗରେ ସୀମିତ । ପ୍ରୋକ୍ତ ପୁସ୍ତକଟି ଲେଖକର ଦୃଷ୍ଟିକୁ ଆସିନାହିଁ କିନ୍ତୁ ସୁଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତି କାବ୍ୟକାର ପଦ୍ମଚରଣ ନାୟକ: ଏକ ପ୍ରଦକ୍ଷିଣ (ଆସନ୍ତାକାଲି - ଜୁଲାଇ- ୧୯୭୯ ଓ ଅଗଷ୍ଟ-୧୯୭୯) ଶୀର୍ଷକ ରଚନାରେ ସ୍ୱର୍ଗଯାତ୍ରା କାବ୍ୟ ୧୯୦୬ ପରେ ପ୍ରକାଶିତ ହୋଇଥିବାର ସୂଚନା ଦିଅନ୍ତି । ଜୟଦ୍ରଥବଧ କାବ୍ୟର ମୁଖବନ୍ଧରେ ସଦାନନ୍ଦ ପତିଶର୍ମା ଏହି ପୁସ୍ତକର ନାମୋଚ୍ଚାରଣ କରିନାହାଁନ୍ତି ଏଣୁ ଡକ୍ଟର ମହାନ୍ତି ଏହାକୁ ଜୟଦ୍ରଥବଧ (୧୯୦୬) ପରବର୍ତ୍ତୀ କାବ୍ୟରୂପେ ଗ୍ରହଣ କରିନେଇଛନ୍ତି । ଫକୀରମୋହନଙ୍କ ପତ୍ରରେ ଏହି କାବ୍ୟର ସୂଚନା ରହିଥିବାରୁ ଏହା ସମ୍ଭବତଃ ୧୯୦୬ରୁ ୧୯୦୯ ମଧ୍ୟରେ ପ୍ରକାଶ ପାଇଥିବାର ପ୍ରମାଣିତ ହୁଏ । 'ସ୍ୱର୍ଗଯାତ୍ରା' କାବ୍ୟ ଏକ କରୁଣାତ୍ମକ ଅମିତ୍ରାକ୍ଷର ଛନ୍ଦର କାବ୍ୟ । ଏଠାରେ ରାମଚନ୍ଦ୍ରଙ୍କ ଭବଲୀଳା ସମାପନ ପରେ ସ୍ୱର୍ଗଯାତ୍ରା ପ୍ରସଙ୍ଗ ବର୍ଣ୍ଣିତ । ଏହି କାବ୍ୟଟି ମଧ୍ୟ 'ମହାଯାତ୍ରା'ର ସୃଷ୍ଟିକୌଶଳ ଦ୍ୱାରା ନିୟନ୍ତିତ ହୋଇଥିବାର ଜଣାଯାଏ । ପ୍ରାରମ୍ଭ ମଙ୍ଗଳାଚରଣରୁ ଏହାର ଦୃଷ୍ଟାନ୍ତ ସହଜଲଭ୍ୟ-

ବୀଣାପାଣି ! କହ ? ଦେବୀ ଅନୁକମ୍ପାବହି
ଅଧମ ତନୟେ ତବ, ଏହି ଭିକ୍ଷା ପଦେ
ତବ ଅନୁଗ୍ରହେ ଦେବୀ ଅବିଦ୍ୟାନାଶିନୀ
ଦେଖିବି ସେ ଦୃଶ୍ୟରାଜି କଳ୍ପନା- ନୟନେ

ସୀତାଦେବୀଙ୍କ ପାତାଳ ପ୍ରବେଶ ପରେ ବିହରବ୍ୟଥିତ ରାମ ରାଜସିଂହାସନ ଆଦିକୁ ପରିତ୍ୟାଗ କରି ସ୍ୱର୍ଗଧାମକୁ ପ୍ରୟାଣ କରିବାର ଇଚ୍ଛାପୋଷଣ କରନ୍ତି ।

ତେଜି ରାଜଛତ୍ର ଦଣ୍ଡ ରାଜସିଂହାସନ
ତେଜି କୋଟି କୋଟି ପ୍ରଜା ଅଯୋଧ୍ୟା ନଗରୀ
ତ୍ରିଦିବ ପ୍ରୟାଣ ପ୍ରଭୁ ଇଚ୍ଛିଲେ ମାନସେ (ସ୍ୱର୍ଗଯାତ୍ରା)



Digitized by srujanika@gmail.com

ରାମଚନ୍ଦ୍ର ଲବକୁଶଙ୍କ ଦାୟିତ୍ୱ ଗୁରୁ ବଶିଷ୍ଠଙ୍କୁ ପ୍ରଦାନ କରନ୍ତି । ଦ୍ୱିତୀୟସର୍ଗରେ ରାମଚନ୍ଦ୍ରଙ୍କୁ ବିଦାୟ ଦେବାକୁ ସମସ୍ତ ପ୍ରଜା, କିଷ୍କିନ୍ଧ୍ୟା ପତି ସୁଗ୍ରୀବ, ଲଙ୍କାଧିପତି ବିଭୀଷଣ ଓ ହନୁମାନ ଉପସ୍ଥିତ ହୁଅନ୍ତି । ଏମାନେ ଅଶ୍ରୁପୂର୍ଣ୍ଣ ନେତ୍ରରେ ରାମଚନ୍ଦ୍ରଙ୍କ ବିହୁନରେ ଅନାଥ ହୋଇଯିବାର ଶୋକପ୍ରକାଶ କରନ୍ତି । ରାମଚନ୍ଦ୍ର ପ୍ରଜା ଓ ପ୍ରିୟ ସୁହୃଦମାନଙ୍କୁ ସାନ୍ତ୍ୱନା ଦେଇ କହନ୍ତି ।

କିପାଁ ଶୋକେ ଅଭିଭୂତ ହେ ସାଧୁ ପ୍ରଜାଏ
ସଖା ବିଭୀଷଣ, ମିତ୍ର କିଷ୍କିନ୍ଧ୍ୟାଧିପତି,
ମହାଯାତ୍ରା କାଳେ ମୋର, ଛାଡ ଚିନ୍ତା ମନୁଁ
ଦେଖାଇଛ ଯେଉଁ ସ୍ନେହ, ଭକ୍ତି, ଅକୃତ୍ରିମ
ମୋହପ୍ରତି, ସେ ସକଳ ଅତୁଳ ଏ ଭବେ;
ଇହପରକାଳେ ତାହା ନ ପାରିବି ଶୁଝି
ହର୍ଷୋତ୍‌ଫୁଲ୍ଲ ମନେ ଏବେ ଦିଅନ୍ତୁ ମେଲାଣି
କୃତାଞ୍ଜଳି ପୁଟେ ଶେଷେ ଏ ଭିକ୍ଷା ମୋହର
ସମସ୍ତଙ୍କୁ , ନଭୁଲିବ ମୋତେ କୃପାବହି
ପାଳିବ ଏ ଶିଶୁଦ୍ୱୟ, ନିଜ ପୁତ୍ରଜ୍ଞାନେ । (ପୃ-୯)

ପଦ୍ମଚରଣ ନାୟକଙ୍କ ସମ୍ପର୍କିତ ଉଲ୍ଲିଖିତ ସୂଚନା ସହିତ ତାଙ୍କର ଜୟଦ୍ରଥବଧ (୧୯୦୫) କାବ୍ୟର ସମ୍ୟକ୍ ଅନୁଶୀଳନହିଁ ସଂଶିତ ପ୍ରବନ୍ଧର ଉଦ୍ଦେଶ୍ୟ । 'ଜୟଦ୍ରଥ ବଧ' କାବ୍ୟ କବିଙ୍କର ପ୍ରଥମ ପ୍ରକାଶିତ କାବ୍ୟ । ଏହା ପୂର୍ବରୁ ସେ 'ଅଭିମନ୍ୟୁ ବଧ' କାବ୍ୟ ଓ ଅନ୍ୟାନ୍ୟ କବିତା ରଚନା କରିଥିଲେ ମଧ୍ୟ ଏହା ପ୍ରଥମେ ପୁସ୍ତିକାକାରେ ପ୍ରକାଶ ପାଇଥିଲା । 'ଜୟଦ୍ରଥବଧ' କାବ୍ୟ ରଚନା ସମୟେ କବି ସର୍ବୋତଭାବେ ବଙ୍ଗଳା ମାଇକେଲ ମଧୁସୂଦନଙ୍କ 'ମେଘନାଦ ବଧ' ଓ ରାଧାନାଥଙ୍କ 'ମହାଯାତ୍ରା'ର ସୃଷ୍ଟିକୌଶଳ ଦ୍ୱାରା ପ୍ରଭାବିତ । ବିଂଶ ବର୍ଷୀୟ ଜଣେ ନବୀନ କବିଙ୍କ ଦ୍ୱାରା ଅମିତ୍ରାକ୍ଷର ଛନ୍ଦରେ 'ମହାଯାତ୍ରା' ତୁଲ୍ୟ କାବ୍ୟଟିଏ ସୃଷ୍ଟିହେବା ଅତ୍ୟନ୍ତ ଆୟସର ବ୍ୟାପାର । କିନ୍ତୁ ସେଥିରେ ସଫଳ ହୋଇଛନ୍ତି ପଦ୍ମଚରଣ ନାୟକ ।

ପଦ୍ମଚରଣ ନିଜର ଏହି ଅନନ୍ୟ କୃତିକୁ ବିଭିନ୍ନ କବି ଓ ସୁଧିମଣ୍ଡଳୀକୁ ଦେଖାଇ ଅଭିମତ ଜିଜ୍ଞାସୁ ହୋଇଛନ୍ତି । ପୁସ୍ତକରେ ରାଧାନାଥ ଓ ମଧୁସୂଦନ ରାଓଙ୍କ ମନ୍ତବ୍ୟ, ଅସରଫ ଅଲ୍ଲୀ ଖାଁଙ୍କ ଇଂରାଜୀ ମନ୍ତବ୍ୟ ଏବଂ ସଦାନନ୍ଦ ପତି ଶର୍ମାଙ୍କ ମୁଖବନ୍ଧ ସଂଯୋଜିତ । ଏହି ମନ୍ତବ୍ୟଗୁଡିକରେ କବିଙ୍କ ରଚନାର ଉତ୍କର୍ଷାପକର୍ଷ ଯଥାଯଥ ବର୍ଣ୍ଣିତ । ରାଧାନାଥ ନିଜର ଅନ୍ତର୍ଭେଦୀ ସଂକ୍ଷିପ୍ତ ମନ୍ତବ୍ୟରେ କୁହନ୍ତି, 'କବିତା ରଚନାରେ ଗ୍ରନ୍ଥାକାର



Digitized by srujanika@gmail.com

ମହୋଦୟ ନୈସର୍ଗିକ ଶକ୍ତିଶାଳୀ; ତାହାଙ୍କର ବର୍ଣ୍ଣନାଶକ୍ତି ମଧ୍ୟ ପ୍ରଶଂସନୀୟ । ଅଧ୍ୟବସାୟ ସହକାରେ ରଚନାରେ ପ୍ରବୃତ୍ତ ହେଲେ ସେ ସମୟରେ ସୁକବିର ପ୍ରତିଷ୍ଠା ଲାଭ କରିପାରିବେ'' । (ମନ୍ତବ୍ୟ -୨୫-୫-୦୫ ରାଧାନାଥ ରାୟ) ଅସରଫ ଅଲ୍ଲୀ ଖାଁ କୁହନ୍ତି - '' Cursorily seen at random in some 10 minutes and am much pleased with its elegance similies and forceful style. The author has certainly a great command over Oriya Language'' ଭକ୍ତ କବି ମଧୁ ରାଓ ନିଜର ମନ୍ତବ୍ୟରେ କାବ୍ୟର ଏକ ନିରପେକ୍ଷ ମୂଲ୍ୟାୟନ କରିଛନ୍ତି । ସଦାନନ୍ଦ ପତି ମଧ୍ୟ ଯଥାସମ୍ଭବ ଜୟଦ୍ରଥ ବଧର ଗୁଣାଦର୍ଶ ପ୍ରଖ୍ୟାପନରେ ସଫଳ ହୋଇଛନ୍ତି ।

'ଜୟଦ୍ରଥ ବଧ' କାବ୍ୟର ପ୍ରାରମ୍ଭରୁ ହିଁ ମହାଯାତ୍ରା ବା ମେଘନାଦ ବଧର ପ୍ରଭାବ ସୁସ୍ପଷ୍ଟ ।

ଅସମ ସମରେ ପଡି, ବୀର ଚୂଡାମଣି-
ଅଭିମନ୍ୟୁ, ଯେବେ ତେଜି ପ୍ରପଞ୍ଚର ମାୟା
ଗଲାଚଳି ନିଜାଳୟେ, କହ, ମା ଶାରଦେ !
ସିତପଦ୍ମା - ସୀନା- ଦେବି ! ଅମୃତ ଭାଷିଣି !
ଏ ଦାସକୁ - କୃପା ବହି, ଏହି ଭିକ୍ଷା ପଦେ ;
କି କଲେ, ଶୁଣିଣ ସେହି ଦୁଃସହ ବାରତା
ଧର୍ମ୍ମରାଜା- ଯୁଧିଷ୍ଠିର, ପରନ୍ତପ ପାର୍ଥ
ସହଦେବ ଆଦି ଯେତେ ପାଣ୍ଡବ- ସେନାନୀ;
ପ୍ରଣମି ପୟରେ ତବ ବିଶ୍ୱୋବିନୋଦିନି !
ନିବେଦଇ ଅବତରି ଦିଅ ପଦଧୂଳି
ଅନୁକମ୍ପା ବହି ଦାସେ, ଆୟତଲୋଚନେ !
ତବ ଅନୁଗ୍ରହେ ଦେବି ! ବିରଚି ଲଳିତ-
କବିତା - ସୁମନ-ମାଳା ବିଦ୍ୱଜ୍ଜନ ପ୍ରିୟ
ପ୍ରବେଶି କାବ୍ୟ କାନନେ ସଭକ୍ତି ଅନ୍ତରେ
ପୂଜିବି ଚରଣ ଯୁଗ ତବ ଶ୍ୱେତ ଭୁଜେ! (ଜୟଦ୍ରଥ ବଧ - କାବ୍ୟ ପୃ-୧)

ଆଧୁନିକ ଯୁଗରେ ମାଇକେଲ ମଧୁସୂଦନ ପ୍ରମୁଖଙ୍କ ପ୍ରବର୍ତ୍ତିତ ପୁରାଣକୁ ନବରୂପ ପ୍ରଦାନର ପରମ୍ପରା ରେନ୍‌ସାଁର ମୁଖ୍ୟ ଲକ୍ଷଣ ରୂପେ ଗୃହୀତ ହୋଇଥିଲା । ଅନେକ କବି ସମକାଳରେ ବିଭିନ୍ନ ଭାଷାରେ ପୁରାଣ କଥାବସ୍ତୁକୁ ଆଧୁନିକ ଭାବବ୍ୟଞ୍ଜନା ମଧ୍ୟରେ



Digitized by srujanika@gmail.com

ନୂତନ ରୂପ ପ୍ରଦାନ କରିଛନ୍ତି । ସାହିତ୍ୟରେ ଇତିହାସ ପୁରାଣକୁ ନେଇ ଆଧୁନିକ କାବ୍ୟ ସୃଷ୍ଟିର ପରମ୍ପରା ଗଢ଼ି ଉଠିଲା । ଜାତୀୟ ଚେତନାର ଅଭିନବ ବିଭାବରୂପେ ବୀରବନ୍ଦନା ସ୍ୱୀକୃତ ହୋଇଥିଲା ।  ଫଳରେ ଇତିହାସ ପୁରାଣର ବୀର ଚରିତ୍ରଙ୍କୁ ଆଧାର କରି ଗଢ଼ି ଉଠିଲା ଅନେକ କାବ୍ୟ । ପୌରାଣିକ ଚରିତ୍ରର କାହାଣୀ ଭାଗ ଉପରେ ଆଧୁନିକ ଜୀବନଚର୍ଯ୍ୟାର ମଧୁମୟ ପ୍ରଲେପ ଦିଆଗଲା । ଚରିତ୍ରଗୁଡ଼ିକ ଅତି କଳ୍ପନାବାଦକୁ ପରିହାର କରି ବାସ୍ତବବାଦୀ ଓ ମାନବୀୟ ବ୍ୟକ୍ତିତ୍ୱ ସଂପନ୍ନ ହେବା ଫଳରେ ସେଗୁଡ଼ିକ ସମାଜ ଜୀବନକୁ ଆକୃଷ୍ଟ କଲା । ବ୍ୟକ୍ତିତ୍ୱର ମନୋବୈଜ୍ଞାନିକ ସଂଘର୍ଷ ଓ ଚାରିତ୍ରିକ ବିଶ୍ଳେଷଣ ମାଧ୍ୟମରେ ମାନବ ଜୀବନର ପ୍ରତିନିଧିତ୍ୱ କଲା କାବ୍ୟ ସମୂହ । ପୁରାଣ ନିର୍ଭର ଚରିତ୍ରଗୁଡ଼ିକ ମାନବୀକ ବ୍ୟଞ୍ଜନାରେ ଅଧିକ ପରିଚ୍ଛନ୍ନ ଓ ସ୍ୱଭାବ ସୁନ୍ଦର ଭାବେ ଗଢ଼ି ଉଠିଲେ । ଏହାହିଁ ଥିଲା ଆଧୁନିକତାର ଅନନ୍ୟ ପ୍ରତିଭୂ । ପ୍ରାଚୀନ ଚରିତ୍ର ମାଧ୍ୟମରେ ଆଧୁନିକ ମୂଲ୍ୟବୋଧର ପ୍ରତିଷ୍ଠା ଏହି କାବ୍ୟ ସମୂହକୁ ନୂତନ ପରିଚୟ ପ୍ରଦାନ କଲା । ଆଧୁନିକତାର ଏହି ମର୍ମବାଣୀ ଜୟଦ୍ରଥ ବଧ- କାବ୍ୟର ପ୍ରେରଣାର ଉତ୍ସ ।

ଏହି କାବ୍ୟଟି ୭ଟି ସର୍ଗରେ ବିଭକ୍ତ । କବି 'ଅଭିମନ୍ୟୁ ବଧ' କାବ୍ୟ ରଚନା ପରେ 'ଜୟଦ୍ରଥ ବଧ' କାବ୍ୟରଚନା ପରିକଳ୍ପନା କରିଛନ୍ତି । ଏଣୁ ପ୍ରଥମ ସର୍ଗରେ ଅଭିମନ୍ୟୁ ବଧ ପରବର୍ତ୍ତୀ କାହାଣୀ ବର୍ଣ୍ଣିତ । ଅଭିମନ୍ୟୁ ବଧରେ ପାଣ୍ଡବଙ୍କ ଶୋକ, ଅର୍ଜୁନଙ୍କୁ ଏ ସମ୍ବାଦ ପ୍ରଦାନ ଓ ସହଦେବଙ୍କ ଦ୍ୱାରା ବିଶଦ ଯୁଦ୍ଧ ବିବରଣୀ ବିବୃତ । ଦ୍ୱିତୀୟ ସର୍ଗରେ ରାଧାନାଥଙ୍କ କାବ୍ୟପଥର ପଥିକ ରୂପେ କବି ରାଧାନାଥଙ୍କୁ ସ୍ମରଣ କରିଛନ୍ତି ।  ଏହି ସର୍ଗରେ ସହଦେବ ଅର୍ଜୁନଙ୍କ ସମ୍ମୁଖରେ ଅଭିମନ୍ୟୁଙ୍କ ସହିତ ସପ୍ତରଥୀଙ୍କ ଯୁଦ୍ଧ ଓ ଅଭିମନ୍ୟୁର ବୀରଗତି ପ୍ରାପ୍ତି ସମ୍ବାଦ ଜଣାଇଛନ୍ତି । ଅର୍ଜୁନ ଅଭିମନ୍ୟୁର ଶବ ଦେଖି ମର୍ମାହତ । ଏହି ପ୍ରସଙ୍ଗରେ ଅର୍ଜୁନଙ୍କ ଶୋକପ୍ରକାଶ  ବେଶ୍ କରୁଣାତ୍ମକ  ଓ ଶୋକଜର୍ଜର । ତୃତୀୟ ସର୍ଗରେ ଶ୍ରୀକୃଷ୍ଣ ପାର୍ଥଙ୍କୁ ଶୋକତ୍ୟାଗ କରିବାକୁ ସାନ୍ତ୍ୱନାବାଣୀ ଶୁଣାଇଛନ୍ତି । ସଂସାରର ଅନିତ୍ୟତା ସବୁକିଛି ମାୟା ମରିଚିକା ଏବଂ ଭବକାର୍ଯ୍ୟ ପରେ ସମସ୍ତେ ଦିନେ ନା ଦିନେ ପ୍ରସ୍ଥାନ କରିବେ ଏକଥା ଶ୍ରୀକୃଷ୍ଣ ଜଣାଇଛନ୍ତି । ଅର୍ଜୁନ ଶୋକ ପରିତ୍ୟାଗ କରି ସୂର୍ଯ୍ୟାସ୍ତ ପୂର୍ବରୁ ଜୟଦ୍ରଥ ବଧ କରି ନ ପାରିଲେ ଅନଳରେ ପ୍ରବେଶ କରିବାର ପ୍ରତିଜ୍ଞା କରନ୍ତି । ୪ର୍ଥ ସର୍ଗର ପ୍ରାରମ୍ଭରେ ସାହିତ୍ୟିକ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କୁ କବି ଆବାହନ କରନ୍ତି । ଏହି ସର୍ଗରେ ଅର୍ଜୁନର ପ୍ରତିଜ୍ଞା କଥା ଦୂତମୁଖରୁ ଅବଗତ ହୋଇ ଦୁର୍ଯ୍ୟୋଧନ ଶିବିରରେ ଭବିଷ୍ୟତ କର୍ମପନ୍ଥା ପାଇଁ ମନ୍ତ୍ରଣା ଓ ଜୟଦ୍ରଥଙ୍କୁ ସୁରକ୍ଷା ଦେବାର ଯୋଜନା ଚାଲେ । ୫ମ ସର୍ଗରେ ଦୁଃଶୀଳାର ଶୋକ ବେଶ୍ ମର୍ମନ୍ତୁଦ । ଭାନୁମତୀ ସହିତ ଦୁଃଶୀଳାର କଥୋପକଥନ କଳାତ୍ମକ  ସିଦ୍ଧି  ଲାଭ  କରିଛି ।



Digitized by srujanika@gmail.com

ଭାନୁମତୀ, - ସୁଯୋଧନ-ପାଟ ମହାଦେବୀ,
ଅଶ୍ରୁଆଖି, ବିଧୁମୁଖୀ ପତିର ବିରହେ,
ଉପନୀତା ହେଲା ଆସି, ମନ୍ଥର ଗମନେ,
ସୁସଞ୍ଚ କୁଚ ଯୁଗଳ କଞ୍ଚୁକେ ଆବୃତ
ମନ୍ଦାର- ମଣ୍ଡିତ - ବେଣୀ ଶୋଭେ ପୃଷ୍ଠଦେଶେ;
ବିମଳ-ବଦନ-ଶୋଭା ଦିଶେ ରମଣୀୟ
ପୂର୍ଣ୍ଣେନ୍ଦୁକୁ ବଳି, କଟୀ ତଟେ ସୁଶୋଭିତ
ସୁରମ୍ୟ ତ୍ରିବଳୀ, ଦେଖି ମଧ୍ୟଦେଶ ହରି
ମନ୍ଦାକ୍ଷ ବର୍ଣ୍ଣୁ ପଶିବ ବିପନ ମଧ୍ୟରେ;
ସୁନ୍ଦରୀ କୂଳ ଲଲାମ ଅଟେ ସେ ସୁନ୍ଦରୀ ।
ନିରେଖି ସମ୍ମୁଖେ ତାଙ୍କୁ ଖରେ କରଯୁଗ
ନିବେଶି ଲଲାଟ ପଟେ, ନମିଲା ଦୁଃଶୀଳା ;
ତ୍ୱିଷାମ୍ପତି- ଦୂତୀ- ଉଷା-ପାଦେ, ଆହା' ଯଥା
ତୁଷାର ସିକ୍ତା ପଦ୍ମିନୀ ନମଇ ସରାଗେ ;
ସମଦଶା ବେନିଙ୍କର, ବେନିଙ୍କି ବେନିଏ
ଦେଖିଣ, ବିମଗ୍ନା ହେଲେ ଆନନ୍ଦ ସଲିଳେ;
ଦୁଃଖିକି ଦେଖିଲେ ଦୁଃଖୀ ଯେ ସୁଖ ଲଭଇ,
ତୁଳନା ତାହାର ସଙ୍ଗେ ନାହିଁ ଆନ ଭବେ ;
ସୁଖୀ ସଦା ସେ ସୁଖରୁ ଅଟଇ ବଞ୍ଚିତ । (ଜୟଦ୍ରଥ ବଧ- ପୃଷ୍ଠା ୫୬-୫୭)

ଭାନୁମତୀ ହିଂସାପଥକୁ ଘୃଣାକରି ଦୁର୍ଯ୍ୟୋଧନଙ୍କ ଦୁଷ୍କାର୍ଯ୍ୟକୁ ସମାଲୋଚନା କରି କହିଛି- ହିଂସା ହିଁ ଦିନେ ଏହି ବଂଶକୁ ନାଶ କରିବ । ଭାନୁମତୀ ବିରାଟ ଗୋଧନ ହରଣ, ଗନ୍ଧର୍ବ ଜାଲ ଆଦିରୁ ଅର୍ଜୁନଦ୍ୱାରା ରକ୍ଷା ପାଇବା କଥାକୁ ସ୍ମରଣ କରିଛି । ପାଣ୍ଡବଙ୍କ ଉପକାରୀ କାର୍ଯ୍ୟର ସ୍ମୃତିଚାରଣକରି ଦୁଃଶୀଳା ଓ ଭାନୁମତୀ ଶୋକ ପ୍ରକାଶ କରିଛନ୍ତି । ୬ଷ୍ଠ ସର୍ଗରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ କଥୋପକଥନ ମାଧ୍ୟମରେ ଶ୍ରୀକୃଷ୍ଣ ପଚାରିଛନ୍ତି- ତୁମ୍ଭେ ଜୟଦ୍ରଥକୁ କିପରି ବଧ କରିବ । ଅର୍ଜୁନ ଉତ୍ତର ଦେଇଛନ୍ତି ଶ୍ରୀକୃଷ୍ଣ ଯାହାର ଭରସା ତାର କିଛି ଅସମ୍ଭବ ନାହିଁ । ଏହି ସର୍ଗରେ ଶ୍ରୀକୃଷ୍ଣ ଜୟଦ୍ରଥର ତପସ୍ୟା ଓ ବରପ୍ରାପ୍ତି କଥା ଉଲ୍ଲେଖ କରି କହିଛନ୍ତି ତା'ଶିର ତଳେ ପଡିଲେ ଯିଏ ଶିରଛେଦ କରିବ ତାର ମୃତ୍ୟୁ ନିଶ୍ଚିତ ଘଟିବ । ଏଣୁ ଶିରଛେଦ କରି ସେହି ଶିରକୁ କାମ୍ୟବନେ ତପସ୍ୟାରତ ତାର ପିତାଙ୍କ ହାତରେ ପକାଇବାକୁ ଶ୍ରୀକୃଷ୍ଣ ନିର୍ଦ୍ଦେଶ ଦିଅନ୍ତି । ସପ୍ତମ ସର୍ଗରେ ସୁନ୍ଦର



Digitized by srujanika@gmail.com

ପ୍ରଭାତ ବର୍ଣ୍ଣନା ସହିତ ଜୟଦ୍ରଥକୁ ନ ପାଇବା, ଶ୍ରୀକୃଷ୍ଣ ଚକ୍ର ଉହାଡ ଦ୍ୱାରା ସନ୍ଧ୍ୟା କରିବା, ଅର୍ଜୁନ ଚିତା ପ୍ରସ୍ତୁତ କରି ପ୍ରାଣ ବିସର୍ଜନ ପାଇଁ ଉଦ୍ୟମ କରିବା, ସନ୍ଧ୍ୟା ହେବା ଜାଣି କୌରବ ଦଳଙ୍କ ସହିତ ଜୟଦ୍ରଥର ହର୍ଷଉଲ୍ଲାସ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଚକ୍ର ଓହରିଯିବାରୁ ପୁଣି ଦିନ ହେବା ଏବଂ ଅର୍ଜୁନଙ୍କ ଅବିଳମ୍ବେ ଜୟଦ୍ରଥ ବଧ ।

ଜୟଦ୍ରଥ ବଧ ଏକ ପାରମ୍ପରିକ କାବ୍ୟ । ପାରମ୍ପରିକ ଶଗଡ ଗୁଳାରେ ଚାଲି ମଧ କବି ନିଜସ୍ୱ ମୌଳିକତା ପ୍ରତିପାଦନରେ ସକ୍ଷମ ହୋଇଛନ୍ତି । ଉତ୍ତର ମହାଯାତ୍ରାକାଳୀନ ଏକ ସଫଳ ଅମିତ୍ରାକ୍ଷର ଛନ୍ଦର କାବ୍ୟ ରୂପେ 'ଜୟଦ୍ରଥ ବଧ'କୁ ଗ୍ରହଣ କରାଯାଇପାରେ । ଏହି କାବ୍ୟକୁ ରାଧାନାଥ ପ୍ରମୁଖ ଯେଉଁ ପ୍ରଶଂସାବାଣୀ ଶୁଣାଇଛନ୍ତି ତାହା ପଦ୍ମଚରଣ ନାୟକଙ୍କ ପ୍ରତି ଉପଯୁକ୍ତ ପୁରସ୍କାର । ଜୟଦ୍ରଥ ବଧ ବ୍ୟତୀତ ପଦ୍ମଚରଣଙ୍କର ଅନ୍ୟାନ୍ୟ କାବ୍ୟକୃତିର ସାମଗ୍ରିକ ଅଧ୍ୟୟନ ହେଲେ ଏହି ଅନାଲୋଚିତ ପ୍ରତିଭାଙ୍କର ସାରସ୍ୱତ ସ୍ଥାନ ସୁନିର୍ଦ୍ଦିଷ୍ଟ ହେବ । ସେ ଯାହାହେଉ ଏହି କ୍ଷୀଣ ଉଦ୍ୟମ ମାଧମରେ ପଦ୍ମଚରଣ ପଟ୍ଟନାୟକ ରୂପୀ ବଟବୃକ୍ଷ ତଳେ ଚାପି ହୋଇ ନିଜସ୍ୱ ପରିଚୟ ହରାଇଥିବା ପଦ୍ମଚରଣ ନାୟକଙ୍କୁ ଇତିହାସର ଭଷ୍ମତଳୁ ଆବିଷ୍କାର କରିବାର ପ୍ରଚେଷ୍ଟା ମାତ୍ର କରାଯାଇଛି । ଏହି ପ୍ରଚେଷ୍ଟା ଅନ୍ତରାଳରେ ଓଡ଼ିଆ ପାଠକ ଓ ଗବେଷକ ସେହି କୃତବିଦ୍ୟ ସାଧକଙ୍କୁ ତାଙ୍କର ଉପଯୁକ୍ତ ସମ୍ମାନ ଦେଲେ ଓଡ଼ିଆ ସାହିତ୍ୟ ମହିମାମଣ୍ଡିତ ହେବ ।□□□

## ଋଣ ସ୍ୱୀକାର:


୧) କବି ବ୍ରଜନାଥ ରଥ "ଜୟଦ୍ରଥ ବଧ" କାବ୍ୟଟି ଯୋଗାଇ ଦେଇଥିବାରୁ କୃତଜ୍ଞତା ଜଣାଉଛି ।

୨) ଅଧାପକ ଦେବେନ୍ଦ୍ର କୁମାର ଦାଶଙ୍କ ଏଷଣା-୪୪ରେ ପ୍ରକାଶିତ ଫକୀରମୋହନଙ୍କ ପତ୍ରର ସାହାଯ୍ୟ ନେଇଥିବାରୁ ତାଙ୍କର ଋଣ ସ୍ୱୀକାର କରୁଛି ।

୩) ଡକ୍ଟର ମନୀନ୍ଦ୍ର ମହାନ୍ତି ଆସନ୍ତକାଲି ଜୁଲାଇ - ୧୯୭୯ ଓ ଅଗଷ୍ଟ - ୧୯୭୯ ସଂଖ୍ୟାରେ ପ୍ରକାଶିତ "କାବ୍ୟକାର ପଦ୍ମଚରଣ ନାୟକ : ଏକ ପ୍ରଦକ୍ଷିଣ" ଆଲୋଚନାଟି ଯୋଗାଇ ମୋର କାର୍ଯ୍ୟକୁ ସୁଗମ କରି ଦେଇଥିବାରୁ କୃତଜ୍ଞତା ଜଣାଉଛି ।




Digitized by srujanika@gmail.com

# କବିଭୂଷଣ ରାମକୃଷ୍ଣ ସାହୁ ଓ ବାମଣ୍ଡା

ରାଧାନାଥ ଯୁଗୀୟ ଜଣେ ମୌଳିକ କାବ୍ୟ ସ୍ରଷ୍ଟା ରାମକୃଷ୍ଣ ସାହୁ (ଶାହ) । ସେ ଯେତେଟା ସମ୍ମାନର ହକ୍‌ଦାର ଓଡ଼ିଆ ସାହିତ୍ୟରେ, ତାଙ୍କୁ ସେତେଟା ସମ୍ମାନ ପ୍ରଦାନ କରାଯାଇନାହିଁ । ଗ୍ରାମ୍ୟ ଜୀବନର ଅକପଟ ଚିତ୍ରଣ, ଦେଶୀୟ ପ୍ରକୃତିର ଆଦର୍ଶମୟ ପରିବେଷଣ ଓ ସରଳ ସାବଲୀଳ ଶବ୍ଦସଜ୍ଜା ମଧ୍ୟରେ ଉତ୍କଳୀୟ କାବ୍ୟ ପ୍ରତୀଭୂ ସୃଷ୍ଟିରେ ରାମକୃଷ୍ଣ ସଫଳ । ବାସ୍ତବଧର୍ମୀ କାହାଣୀ କାବ୍ୟ ରୂପେ 'ସୁଲୋଚନା' ୧୮୮୯ ଓଡ଼ିଆ ସାହିତ୍ୟରେ ଅନନ୍ୟ । ଅନ୍ୟପକ୍ଷରେ 'ଲକ୍ଷ୍ମୀ' କିମ୍ବଦନ୍ତୀ ଗର୍ଭିତ ଏକ ବର୍ଣ୍ଣନାତ୍ମକ କାବ୍ୟ । 'ସୁଲୋଚନା ଓ ଲକ୍ଷ୍ମୀ' ବ୍ୟତିରେକେ କିଛି ଗୀତି କବିତାରେ ରାମକୃଷ୍ଣଙ୍କ କାବ୍ୟ ପ୍ରତିଭା ପ୍ରତିଫଳିତ । ଏହି ଅନବଦ୍ୟ କବିଙ୍କର ସାରସ୍ୱତ ପ୍ରୟାଣ ଓ ବାମଣ୍ଡା ସହିତ ଆତ୍ମିକ ସମ୍ପର୍କର ଏକ ସୂକ୍ଷ୍ମ ନିରୀକ୍ଷଣ ହିଁ ସଂଶିତ ଆଲୋଚନାର ଉଦ୍ଦେଶ୍ୟ ।

ସମକାଳରେ ରାମକୃଷ୍ଣଙ୍କ କାବ୍ୟ କବିତା ସେତେଟା ଚର୍ଚ୍ଚିତ ନ ହେବାର ମୁଖ୍ୟକାରଣ ହେଲା ସେ ରାଧାନାଥଙ୍କ ଅନ୍ୟତମ ଅନୁଗତ ରୂପେ ବହୁ ପ୍ରଚାରିତ ଓ ବହୁଳ ଭାବରେ କ୍ଷତିଗ୍ରସ୍ତ । ରାଧାନାଥଙ୍କୁ ଶ୍ରେଷ୍ଠ କବିର ଆସନରେ ସମାସୀନ କରିବାକୁ ଯାଇ ରାମକୃଷ୍ଣ ଯଥେଷ୍ଟ ଲହୁଲୁହାଣ ହୋଇଛନ୍ତି । 'ବିଜୁଳି - ଇନ୍ଦ୍ରଧନୁ' କଳହରେ ରାମକୃଷ୍ଣ ରାଧାନାଥ ସାହିତ୍ୟର ଜୟଗାନ କରି ବିଜୁଳି ଶିବିରର ଅନ୍ୟତମ ରଥୀ ରୂପେ ଆବିର୍ଭୂତ ହୋଇଥିଲେ । ଇନ୍ଦ୍ରଧନୁ ଗୋଷ୍ଠୀ ଲାଲା ରାମନାରାୟଣଙ୍କ ପରେ ରାମକୃଷ୍ଣ ସାହୁଙ୍କୁ ଅଧିକ ଆକ୍ରମଣ କରିଥିଲେ । ତାଙ୍କୁ କଣାଭୂଷଣ, କଣା ମାମୁଁ ରୂପେ ଆକ୍ଷେପ କରାଯାଇଥିଲା । ନବ୍ୟ କାବ୍ୟ ବିଜୟ ପ୍ରହସନରେ ''ଛତା ଜୋତା ଓ କାମିଜ ଘଡି ଶୋଭିତ କଣା ପଣ୍ଡିତ କବିଭୂଷଣଙ୍କ ପ୍ରବେଶ'' ରୂପେ ଆକ୍ଷେପ କରାଯାଇଛି (ଇନ୍ଦ୍ରଧନୁ - ପୃ-୩୦) ସମ୍ବଲପୁର ହିତୈଷିଣୀ (୩।୨୯) ପତ୍ରିକାରେ ପ୍ରକାଶିତ ନବ୍ୟ କାବ୍ୟ ଶୀର୍ଷାଙ୍କିର ରଚନାରେ ଏହି ଆକ୍ଷେପ ଅତି ମର୍ମନ୍ତୁଦ-

'' ନବ୍ୟ କବି ପ୍ରାଦୁର୍ଭାବେ ନବୀନ ଉତ୍କଳ
ନବ୍ୟ ସାଜେ ସୁସଜ୍ଜିତ ଉତ୍କଳ ଜନନୀ
ଛାଡି କାଙ୍ଗାଳିନୀ ବେଶ ଆହା କି ସୁନ୍ଦର
ଶୁଭକ୍ଷଣ ଅନୁମାନି ରାମକୃଷ୍ଣ ସାହୁ
ଅଣ୍ଟାବାନ୍ଧି ଠିଆ ଏବେ ସାହିତ୍ୟ ପ୍ରାଙ୍ଗଣେ ।



Digitized by srujanika@gmail.com

ଠିଆ କି କେବଳ- ? ନନା ଖୋଲି ୪ଂଟ୍ରୁଷାଠୀ
ବିଭୂଷିତ ଏବେ କବି ଭୂଷଣ ପଦରେ ।
ଘାଣ୍ଟି ଦଳୁଆ ପୋଖରୀ ଦରାଣ୍ଡିଣ ମୀନ
ଉଠିଲେ ଯାଦୁଆ ଲୋକ ଖରାପ୍ରାସ ପାଇ
ନିଜ ଦେହ କଣ୍ଡୁୟନେ ଯେହ୍ନେ ଲଭେ ସୁଖ
କବିଭୂଷଣଙ୍କ କାବ୍ୟ ତେହ୍ନେ ପ୍ରୀତିପଦ ।'ସମ୍ବଲପୁର ହିତୈଷିଣୀ (୫/୪)

୨୮-୬୧୮୯୩ରେ ରାମକୃଷ୍ଣ ସାହୁଙ୍କ ସମାଲୋଚକ ରାମନାରାୟଣଙ୍କ କବିତା ପ୍ରକାଶ ପାଇଥିଲା । ରାମ ନାରାୟଣ ବାସୁଦେବ ସୁଢ଼ଳଦେବଙ୍କ 'ଚିତ୍ରୋତ୍ପଳା' କାବ୍ୟର ସମାଲୋଚନା ଲେଖି 'ଇନ୍ଦ୍ରଧନୁ' ଗୋଷ୍ଠୀଙ୍କ ଦ୍ୱାରା ସମାଲୋଚିତ ହୋଇଥିବା କଥା ଏହି କବିତାରେ ବର୍ଣ୍ଣନା କରାଯାଇଛି । ରାମକୃଷ୍ଣ ଏହି କବିତାରେ ରାମ ନାରାୟଣଙ୍କୁ ସମବେଦନା ଜଣାଇ ଇନ୍ଦ୍ରଧନୁ ଦଳଙ୍କୁ ତୀକ୍ଷ୍ଣ ସମାଲୋଚନା କରିଛନ୍ତି । ପ୍ରୋକ୍ତ କବିତାକୁ ବ୍ୟଙ୍ଗ କରି ଦାମୋଦର ପଟ୍ଟନାୟକ ଶ୍ରୀ ଜୁବରାଜ ଛଦ୍ମ ନାମରେ ସମାଲୋଚକ କବିଭୂଷଣ କବିତାଟି ଉତ୍କଳ ଦୀପିକା ୧୫-୦୭-୧୮୯୩ ସଂଖ୍ୟାରେ ରଚନା କରିଥିଲେ । ଏହି କବିତାରେ ରାମକୃଷ୍ଣଙ୍କୁ ମାତ୍ରାତିରିକ୍ତ ଆକ୍ଷେପ କରାଯାଇଛି । ଦୀପିକାର ସେହି ସଂଖ୍ୟାରେ ଗୋଲକଧନ୍ଦା ମଧ୍ୟ ରାମକୃଷ୍ଣଙ୍କ କବିତା ଉପରେ ଦେଇଥିବା ଟିପ୍ପଣୀ ଓ କବିତା ସଂଶିତ ପ୍ରେକ୍ଷାରେ ଉଲ୍ଲେଖଯୋଗ୍ୟ ''ଏହି ଜୁଲାଇ ମାସ ତା୧ରିଖର ଉତ୍କଳ ଦୀପିକା ସାହାଯ୍ୟରେ ଆମ୍ଭେ ଉତ୍କଳ ମହାଶ୍ମଶାନରେ କବି ଉପେନ୍ଦ୍ର ଭଞ୍ଜଙ୍କ ଶବ ସମ୍ବନ୍ଧରେ ଆମ୍ଭର ଯାହା କର୍ତ୍ତବ୍ୟ ତାହା କରି କିପରି ଉକ୍ତ ପ୍ରେତାତ୍ମାର ସତ୍କାର କରିବାକୁ ହେବ ସେଥିପାଇଁ ଉତ୍କଳୀୟ ସମ୍ବାଦପତ୍ରମାନଙ୍କର ସମ୍ପାଦକ ବୃନ୍ଦ ଆପଣମାନଙ୍କର ଏବଂ ସକଳ ଉତ୍କଳବାସୀଙ୍କର ମତକୁ ଅପେକ୍ଷା କରିଅଛୁଁ ମାତ୍ର ଇତି ମଧ୍ୟରେ ଏ କାର୍ଯ୍ୟରେ ପ୍ରବୃତ୍ତି ହୋଇଥିବାରୁ ଏବଂ ଗତ ଜୁନ୍ ମାସ ତା ୨୮ ରିଖ ସମ୍ବଲପୁର ହିତୈଷିଣୀରେ କବିଭୂଷଣ କଟକ ସମାଲୋଚକ ବାବୁ ରାମନାରାୟଣ ଲାଲାଙ୍କୁ ସମ୍ବୋଧନ କରି ଯାହା କହିଅଛନ୍ତି ତାହା ପାଠ କରି ଆମ୍ଭର ଏହି ହୃଦୟ ବିଦାରକ ଅନୁତାପ ହେଉଅଛି ଯେ,

' କି କଲି କି କଲି କି ବୁଦ୍ଧି ହୁଡିଲି
ବେନି ନେତ୍ର ଥାଉଁ କଣା ମୁଁ ହୋଇଲି ।
ମହାଜନ ଯିବା ପଥେ ନ ଚାଲିଲି
ଉପଇନ୍ଦ୍ର-ବାସୀ-ଫୁଲରେ ରସିଲି



Digitized by srujanika@gmail.com

କଳାପାହାଡଙ୍କୁ ଅନୁକରି ଥରେ
ଖ୍ୟାତିରେ ପ୍ରୟାସୀ ନୋହିଲି ମହୀରେ
ପୂର୍ବ ପୁରୁଷଙ୍କ ଗୟା ଶ୍ରାଦ୍ଧବାରେ
କରି ନ ରଖିଲି ନାମ ଏ ସଂସାରେ ।''

ଇତ୍ୟାଦି ଏତଦ୍ ବ୍ୟତୀତ 'ଇନ୍ଦ୍ରଧନୁ' ପତ୍ରିକାରେ ପ୍ରକାଶିତ ଚଟନିଗୁଡ଼ିକରେ ମଧ୍ୟ ରାମକୃଷ୍ଣଙ୍କୁ ଆକ୍ରମଣାତ୍ମକ ବିଦ୍ରୂପ କରାଯାଇଛି । ରାମକୃଷ୍ଣଙ୍କର ଏହି ମାନସିକ ଆଘାତ ସମୟରେ ସମ୍ବଲପୁର ହିତୈଷିଣୀ, ବାମଣ୍ଡା ଓ ସୁଢ଼ଳଦେବ ତାଙ୍କ ପଶ୍ଚାତରେ ଛିଡ଼ା ହୋଇଥିଲେ । ରାମକୃଷ୍ଣଙ୍କ ସାରସ୍ୱତ ଜୀବନର ଅନ୍ୟତମ ପ୍ରେରଣା କ୍ଷେତ୍ର ବାମଣ୍ଡା । ତୀର୍ଥ ସାରସ୍ୱତ ବାମଣ୍ଡା ତାଙ୍କର କାବ୍ୟ ଜୀବନକୁ ସମୁତ୍ସାହିତ କରିଥିଲା । ସମ୍ବଲପୁର ହିତୈଷିଣୀ ୪/୧୧ ସଂଖ୍ୟାରେ ଶ୍ରୀ ଛଦ୍ମ ନାମରେ କବିଭୂଷଣଙ୍କ କୁଣ୍ଡଳ ପ୍ରାର୍ଥନା ଶୀର୍ଷକ ଏକ ରଚନା ଦୃଷ୍ଟିଗୋଚର ହୁଏ । ସେଥିରେ ରାମକୃଷ୍ଣଙ୍କୁ ଭଞ୍ଜଙ୍କ ନିମ୍ନ ପଦଟିର ବ୍ୟାଖ୍ୟା କରି ବାମଣ୍ଡା ରାଜାଙ୍କଠାରୁ କୁଣ୍ଡଳ ନେବାପାଇଁ ଆହ୍ୱାନ କରାଯାଇଛି । ପଦଟି ହେଲା-

''ଦିନେ ହୋଇଥିଲା ଘୋର ବରଷା
ବୋଇଲି ବାନ୍ଧବୀ ଖେଳିବା ପସା
ପସା ଖେଳ ମୋତେ ଆସଇ ନାହିଁ
ଦାନ ପଡ଼ିଲେ ସାର ଦେବି ବାହି
ସେ ଚତୁରୀ ବାଳୀ
ସାର ବାଛି ନେଲା ହଳଦୀ କାଳୀ ।''

ଏହି ପ୍ରଶ୍ନର ପ୍ରତ୍ୟୁତ୍ତରରେ ସମ୍ବଲପୁର ହିତୈଷିଣୀ ୪/୧୫, ୧୪.୦୯.୧୮୯୨ ରେ ରାମକୃଷ୍ଣ ନବ୍ୟ କାବ୍ୟାବତାରଃ- ତୃତୀୟସୂକ୍ତ ରଚନା କରିଥିଲେ । ଏଠାରେ ପଶାଖେଳ ଅର୍ଥ ରତି ଏବଂ ହଳଦୀକାଳି ସାର ଅର୍ଥରେ ସ୍ତନକୁ ଚିତ୍ରଣ କରାଯାଇଛି । ଏହା ଭଞ୍ଜ ପ୍ରେମୀଙ୍କ ପ୍ରତି ଏକ ବ୍ୟଞ୍ଜନାପୂର୍ଣ୍ଣ କଟାକ୍ଷ । ସେ ଯାହେଉ ସେହି ଉତ୍ତରରେ ସନ୍ତୁଷ୍ଟ ଆଳଙ୍କାରିକ କବି ସୁଢ଼ଳଦେବ କବିଭୂଷଣ ଉପାଧିକୁ ସ୍ୱୀକୃତି ପ୍ରଦାନ କରିଥିଲେ ଏବଂ ବାମଣ୍ଡା ଆଲୋଚନା ସଭାରେ ରାମକୃଷ୍ଣ ସାହୁଙ୍କ ସାରସ୍ୱତ କୃତିତ୍ୱ ଓ ଚିକିତ୍ସା ବିଜ୍ଞାନ ଉପରେ ରଚିତ ପୁସ୍ତକ ସମୂହର ଭୂୟସୀ ପ୍ରଶଂସା କରାଯାଇଥିଲା । ଲାଲା ରାମନାରାୟଣ ରାୟଙ୍କ ସଂକଳିତ କବିତା ସଂଗ୍ରହ (୧୮୮୮) ପୁସ୍ତକର ପ୍ରକାଶକ ଥିଲେ ରାମକୃଷ୍ଣ । ଏହି ପୁସ୍ତକରେ ରାଧାନାଥଙ୍କ ନଅଟି କାବ୍ୟାଂଶ ସହିତ ମଧୁସୂଦନଙ୍କ ଦୁଇଟି କବିତା ଓ ବଳରାମ ଦାଶଙ୍କ ଏକ କବିତାଂଶ ସଂକଳିତ । ବିଭିନ୍ନ ସମୟରେ ରାଧାନାଥଙ୍କ ସାହିତ୍ୟର



Digitized by srujanika@gmail.com

ଆଲୋଚନା କରିବାକୁ ଯାଇ ତାଙ୍କୁ ଅତି ପ୍ରଶଂସା କରିଛନ୍ତି ରାମକୃଷ୍ଣ । ବରପାଲି ପଣ୍ଡିତ ଲକ୍ଷ୍ମଣ ମିଶ୍ର ଅଳଂକାର ଶାସ୍ତ୍ର ଓ ବ୍ୟାକରଣଗତ ତ୍ରୁଟି ଦର୍ଶାଇ ପାର୍ବତୀ କାବ୍ୟର ସମାଲୋଚନା ସମ୍ବଲପୁର ହିତୈଷିଣୀରେ କରିଥିଲେ । ରାମକୃଷ୍ଣ ସମ୍ବଲପୁର ହିତୈଷିଣୀ (୭/୨୭)ରେ ଏକ ପତ୍ର ଦ୍ୱାରା ଲକ୍ଷ୍ମଣ ମିଶ୍ରଙ୍କ ମତକୁ ଖଣ୍ଡନ କରିଛନ୍ତି । ପୋକ୍ତ ପତ୍ରିକାରେ ଛଦ୍ମ ନାମରେ ରାଧାନାଥ ବିରୋଧୀ ଗୋଷ୍ଠୀଙ୍କୁ ରାମକୃଷ୍ଣ ସମାଲୋଚନା କରିଛନ୍ତି । ଅନେକ ରଚନାରେ ସେ ରାଧାନାଥ ଓ ବାସୁଦେବ ସୁଢ଼ଳଦେବଙ୍କୁ ଅତିରିକ୍ତ ପ୍ରଶଂସା କରିଥିବାର ଦେଖାଯାଏ ।

ରାମକୃଷ୍ଣଙ୍କ ବାମଣ୍ଡା ସହିତ ଆତ୍ମିକ ସମ୍ପର୍କ ଥିଲା । ରାଧାନାଥଙ୍କ ବାମଣ୍ଡା ସହିତ ଆତ୍ମିକ ସମ୍ପର୍କ ଥିଲା । ରାଧାନାଥଙ୍କ ସହିତ ଆସି ସେ ବାମଣ୍ଡାର ସାରସ୍ୱତ ବାତାବରଣ ସହିତ ଅଙ୍ଗାଙ୍ଗୀ ଭାବେ ଜଡିତ ହୋଇପଡିଥିଲେ । ରାଧାନାଥଙ୍କ ପରେ ମଧ ସେ ଅନେକଥର ବାମଣ୍ଡା ଆଗମନ କରିଛନ୍ତି । ୧୮୯୭ରେ ସୁଢ଼ଳଦେବଙ୍କ ସ୍ୱାସ୍ଥ୍ୟହାନୀ ଘଟିବାରୁ ମାସାଧିକ କାଳ ଦେବଗଡରେ ଅବସ୍ଥାନ କରି ସେ ତାଙ୍କର ଚିକିତ୍ସା କରିଥିଲେ । ସୁଢ଼ଳଦେବଙ୍କ ଚିକିତ୍ସାକୁ ଅଧାରୁ ଛାଡି ପାରିବାରିକ ଅସୁବିଧା ଜନିତ କାରଣରୁ ରାମକୃଷ୍ଣ କଟକ ଚାଲିଆସିଥିଲେ । ଏହି ଘଟଣାକୁ ଅତିରଞ୍ଜିତ କରି ପତ୍ର ପତ୍ରିକାରେ ସମ୍ବାଦ ପ୍ରକାଶ ପାଇବାରୁ ସୁଢ଼ଳଦେବ ଓ ରାମକୃଷ୍ଣଙ୍କ ମଧରେ ସାମୟିକ ତିକ୍ତତା ସୃଷ୍ଟି ହୋଇଥିବାର ମନେହୁଏ । ସମ୍ପର୍କ ଭଙ୍ଗର ଏହି ସନ୍ଧିକ୍ଷଣରେ ସୁଢ଼ଳଦେବଙ୍କ ସହିତ ସମ୍ପର୍କର ପୁନଃଉଦ୍ଧାର ପାଇଁ ଚେଷ୍ଟିତ ରାମକୃଷ୍ଣ ଭାରତାଦର୍ଶ ନାମକ ଖଣ୍ଡିଏ ପୁସ୍ତିକା ପ୍ରଣୟନ କରିଥିଲେ । ଏଥିରେ ବାସୁଦେବ ସୁଢ଼ଳଦେବଙ୍କୁ ଭାରତର ଅନ୍ୟତମ ଆଦର୍ଶ ଓ ଶ୍ରେଷ୍ଠ ନରପତି ରୂପେ ଚିତ୍ରଣ କରାଯାଇଛି । ପରବର୍ତ୍ତୀ ପର୍ଯ୍ୟାୟରେ ସୁଢ଼ଳଦେବଙ୍କ ଆତ୍ମଜ ସଚ୍ଚିଦାନନ୍ଦ ଦେବଙ୍କ ପ୍ରିୟ ପାତ୍ର ହୁଅନ୍ତି ରାମକୃଷ୍ଣ । ୧୯୧୧ ବେଳକୁ ସଚ୍ଚିଦାନନ୍ଦଙ୍କ ପ୍ରୋତ୍ସାହନ ଫଳରେ ସେ ବାସୁଦେବ ସୁଢ଼ଳ ଦେବଙ୍କ ଜୀବନୀ ଲେଖିବାକୁ ତଥ୍ୟ ସଂଗ୍ରହ କରନ୍ତି । ତାଙ୍କର ଏହି ଉଦ୍ୟମ ସଫଳ କାମ ହୋଇ ପାରି ନ ଥିଲା । କିନ୍ତୁ ତାଙ୍କ ଦ୍ୱାରା ସଂଗୃହୀତ ତଥ୍ୟକୁ ଉପଯୋଗ କରି ଚଣ୍ଡୀଚରଣ ବନ୍ଦୋପାଧ୍ୟାୟ ସାର ବାସୁଦେବ ଜୀବନୀ ( ବଙ୍ଗଳା)୧୯୧୬ରେ ରଚନା କଲେ ।

୧୯୧୧ରେ ସଚ୍ଚିଦାନନ୍ଦଙ୍କ ଆନୁକୂଲ୍ୟରେ ଲକ୍ଷ୍ମୀ କାବ୍ୟ ବାମଣ୍ଡାର ହିତୈଷିଣୀ ପ୍ରେସରେ ମୁଦ୍ରିତ ହୋଇଥିଲା । ଏଥିରେ ରାଜକବି ସଚ୍ଚିଦାନନ୍ଦଙ୍କ ଅଭିମତ ମଧ ସଂଯୁକ୍ତ । ୧୯୦୮ରେ ପ୍ରଧାନପାଟ ଜଳପ୍ରପାତ ପାଦ ଦେଶରେ ସଚ୍ଚିଦାନନ୍ଦ ଦେବ ବସନ୍ତ ନିବାସ



Digitized by srujanika@gmail.com

ଶୈଳନିବାସ ନିର୍ମାଣ କରିଥିଲେ । ଏହି ଶୈଳନିବାସର ପ୍ରତିଟି ସ୍ତମ୍ଭରେ ମାର୍ବଲ ସଂଯୁକ୍ତ ହୋଇ ବିଶିଷ୍ଟ କବିମାନଙ୍କର ବସନ୍ତ ବୃତ୍ତରେ ରଚିତ ବସନ୍ତ ନିବାସ ଶୀର୍ଷକ କବିତା ଖୋଦିତ । ରାମକୃଷ୍ଣଙ୍କ ନିମ୍ନ କବିତାଟି ବର୍ତ୍ତମାନ ସୁଦ୍ଧା ବାମଣ୍ଡା ସୁଧୀ ମଣ୍ଡଳୀଙ୍କୁ ଆକର୍ଷିତ କରେ-

'' ସ୍ୱର୍ଗଦ୍ୱାର ପାଶେ                ଦେଖରେ ହରଷେ
            ବସନ୍ତ ନିବାସ  ରାଜେ
ଅମର ନିବାସୀ                ରାଜ ଦମ୍ପତି ଏ
            ବିହରନ୍ତି ନାନା ସାଜେ ।
ସ୍ୱର୍ଗ ମନ୍ଦାକିନୀ-                ପ୍ରବାହ ରୂପିଣୀ
            ନିସର୍ଗ ପୂଣ୍ୟ ପ୍ରପାତ
ବସନ୍ତ ଆଗାରେ                ନିସର୍ଗ ପ୍ରକାରେ
            ଯହିଁ ହୋଇଛି ଆଖ୍ୟାତ ।
ତ୍ରିଭୁବନଦେବ                ଦେବ ଅବତାର
            ଅବତୀର୍ଣ୍ଣ ଧରାଧାମେ
ବସନ୍ତ ଆବାସେ                ବସନ୍ତ ନିବାସେ
            ବିହରନ୍ତି ରମ୍ୟାରାମେ ।
ସ୍ୱର୍ଗ ଦେବତାଏ                ଆଶିଷ କରନ୍ତୁ
            ଗଳେ ଦେଇ ପୁଷ୍ପହାର ।
ତ୍ରିଭୁବନ ଦେବ                ଦୀର୍ଘଜୀବୀ ହୋଇ
            ହରପ୍ରଜା ଦୁଃଖ ଭାର ।''

ରାମକୃଷ୍ଣ ସାହୁଙ୍କ ସୀମିତ କାବ୍ୟ ପ୍ରୟାସ ମଧ୍ୟରେ ଏକ ପରିବ୍ୟାପ୍ତ  ମାନସିକତା ଓ ଓଡ଼ିଆ  ଭାଷା ସାହିତ୍ୟର ସନ୍ଧିକ୍ଷଣର ସୂକ୍ଷ୍ମ ଅନୁରଣନ ପ୍ରତିଭାତ । ଜଣେ କବି ଭାବରେ ସେ ଯେତେ ସ୍ୱୀକୃତ, ଜଣେ ଚିକିତ୍ସକ ଭାବରେ ତତୋଧିକ  ସମ୍ମାନିତ । ଚିକିତ୍ସାଶାସ୍ତ୍ର ଉପରେ ଅନେକ ଲୋକପ୍ରିୟ ପୁସ୍ତକ  ରଚନା କରି ସେ ଓଡ଼ିଶାରେ ଯୁଗାନ୍ତର  ସୃଷ୍ଟି କରିଛନ୍ତି । ଶିଶୁପାଳନ, ଶରୀର ରକ୍ଷା, ସରଳ ଶରୀର ପାଳନ, ପାଚନ ସଂଗ୍ରହ , ପଦାର୍ଥ ବିଜ୍ଞାନ, ନୀତି ବିଜ୍ଞାନ, ପ୍ରସୂତି  ପରିଚର୍ଯ୍ୟା ପ୍ରଭୃତି ଅନେକ ପୁସ୍ତକରେ ତାଙ୍କର ଚିକିତ୍ସା ଜ୍ଞାନର ମହାନତା ପ୍ରଦର୍ଶିତ । ଚିକିତ୍ସା ବିଜ୍ଞାନରେ ପଥିକୃତ ଉଦ୍ୟମ କରି ସେ ଓଡ଼ିଆବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ।



Digitized by srujanika@gmail.com

ଏହି ମୌଳିକ କବି ଓ ଚିକିତ୍ସକଙ୍କ ଅବଦାନକୁ ନିରପେକ୍ଷ ମୂଲ୍ୟାୟନ କରିବାର ଅବସର ଆସିଛି । ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶଙ୍କ ରାମକୃଷ୍ଣ କାବ୍ୟ ସଂଗ୍ରହ ଏ ଦିଗରେ ପ୍ରାରମ୍ଭିକ ପଦକ୍ଷେପ। ଏହି ପଦକ୍ଷେପକୁ କବିଭୂଷଣ ଡା. ରାମକୃଷ୍ଣ ଶାହ ସ୍ମୃତି ସଂସଦ, ଏସ୍.ଏସ୍. ମିଡିଆ, ବାରିପଦା ତ୍ୱରାନ୍ୱିତ ଓ ଦୀପ୍ତିମନ୍ତ କରୁ ଏହା ହିଁ କାମନା । ରାମକୃଷ୍ଣଙ୍କ ତିରୋଧାନରେ ସମ୍ବଲପୁର ହିତୈଷିଣୀ ୨୭/୩୪, ୨୨.୭.୧୯୧୬ ସଂଖ୍ୟାରେ ଯେଉଁ ଶୋକ ସମ୍ବାଦ ପ୍ରକାଶ ପାଇଥିଲା ତାକୁ ଉଦ୍ଧୃତ କରି ସେହି ଦିବଂଗତ ସ୍ରଷ୍ଟାଙ୍କୁ ବାମଣ୍ଡା ଭୂମିର ପ୍ରତିପୂର୍ଣ୍ଣ ସମ୍ମାନ ଜଣାଉଛି ।

'' ଶୁଣି ଦୁଃଖିତ ହେଲୁ ଡାକ୍ତର ରାମକୃଷ୍ଣ ଶାହ ଆଜକୁ ୧୫/୨୦ ଦିନ ହେଲା ଇହଧାମ ତ୍ୟାଗ କରି ଅଛନ୍ତି । ପୂର୍ବରେ ଏ ଜଣେ ଉପଯୁକ୍ତ ଚିକିତ୍ସକ ଥିଲେ । କଟକ ଏବଂ ଗଡଜାତରେ ଏହାଙ୍କର ଡାକ୍ତରୀ ବିଦ୍ୟାରେ ଖ୍ୟାତି ପୂର୍ବେ ଯଥେଷ୍ଟ ଥିଲା । ପରେ ରାମକୃଷ୍ଣ ବାବୁ ଡାକ୍ତରୀ ବିଦ୍ୟା ଛାଡି ସାହିତ୍ୟ ସେବାରେ ଆମରଣ ମନପ୍ରାଣ ଢ଼ାଳିଥିଲେ । ' ସୁଲୋଚନା ଓ ଲକ୍ଷ୍ମୀ' କାବ୍ୟ ଦ୍ୱାରା ଏ ଉତ୍କଳ ସାହିତ୍ୟ ସଂସାରରେ ସେ ସୁପରିଚିତ । ସ୍ୱାସ୍ଥ୍ୟରକ୍ଷା ପ୍ରଭୃତି କେତେଖଣ୍ଡ ପାଠ୍ୟପୁସ୍ତକ ମଧ୍ୟ ଏ ପ୍ରଣୟନ କରିଥିଲେ । ରାମକୃଷ୍ଣ ବାବୁ ଜଣେ ପ୍ରକୃତିବାଦୀ ଏବଂ ସୁ-ଲେଖକ ଥିଲେ । ଏହାଙ୍କ ତିରୋଧାନରେ ଆମ୍ଭେମାନେ ଦୁଃଖିତ । ଈଶ୍ୱର ତାଙ୍କର ଶୋକ ସନ୍ତପ୍ତ ପରିବାର ଉପରେ ଶାନ୍ତିବାରି ବର୍ଷଣ ପୂର୍ବକ ପରଲୋକଗତ ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ ଏହାହିଁ କାମନା ।'' ❑❑❑



Digitized by srujanika@gmail.com

# ପାର୍ବତୀ ଉତ୍ତରାର୍ଦ୍ଧ: ଏକ ଦୃଷ୍ଟିପାତ

## ପ୍ରାକ୍ କଥନ:

'ପାର୍ବତୀ' କାବ୍ୟ କବିବର ରାଧାନାଥଙ୍କ ଏକ ଯୁଗାନ୍ତକାରୀ ସୃଷ୍ଟି । ପାର୍ବତୀ କାବ୍ୟ ସକଳ ବାଦ ବିସମ୍ବାଦ ମଧ୍ୟରେ ସତ୍ୟର ସମ୍ବାଦ ପରିବେଷଣ କରିଛି । ପ୍ରଶଂସିତ ହୋଇଛି, ସମାଲୋଚିତ ମଧ ହୋଇଛି ତତୋଧିକ । ଅନ୍ଧ-ସମାଜ ଅନ୍ତରାଳରେ ଘଟୁଥିବା କୁତ୍ସିତ କାମପିପାସା ଓ ଜାନ୍ତବ କ୍ଷୁଧାର ଅବତାରଣା କରିବାକୁ ଯାଇ ପିତା ଏବଂ କନ୍ୟାର ପ୍ରଣୟ କାହାଣୀ, କ୍ଷୁଧାର୍ତ୍ତ ଜନନୀର ପୁତ୍ର ଶବ ମାଂସ ଭକ୍ଷଣର ବୀଭତ୍ସ ବର୍ଣ୍ଣନା ହିଁ ପାର୍ବତୀ କାବ୍ୟର ସୌଷ୍ଠବ ସମ୍ପାଦନ କରିଛି । ଆଧୁନିକ ଜନଜୀବନର ବିକଳାଙ୍ଗ ପରିଚର୍ଯ୍ୟା ପରିପ୍ରେକ୍ଷୀରେ ବିଚାର କଲେ ' ପାର୍ବତୀ' ଏକ ଉଚ୍ଚାଙ୍ଗ କଳାତ୍ମକ କାବ୍ୟର ଗୌରବ ଦାବି କରେ । (୧)

କ୍ରାନ୍ତଦ୍ରଷ୍ଟା କବି ତଦାନୀନ୍ତନ ସାମାଜିକ କଳଙ୍କର କାଳିମାକୁ ଦର୍ଶାଇ ସମାଜ ସଂସ୍କାରର ପ୍ରଚ୍ଛନ୍ନ ଅଭିପ୍ରାୟକୁ କାବ୍ୟରୂପ ଦେଇଥାଏ । ଅତୀତର କଙ୍କାଳ ଉପରେ ଅଭିନବ ତୂଳୀ ଚଳାଇ ଅନନ୍ୟ ସାହିତ୍ୟ ସୃଷ୍ଟି କରେ । ଅତୀତର ଐତିହ୍ୟ ଓ ପରମ୍ପରାକୁ ଉପଜୀବ୍ୟ କରି ଗଢ଼ିଉଠେ ଆଧୁନିକ ସାହିତ୍ୟ ।'' ଆଧୁନିକ ପରମ୍ପରା ବିବର୍ଜିତ ନୁହେଁ । ଅତୀତର ପୁଷ୍କଳ ଐତିହ୍ୟରୁ ଉପାଦାନ ଗ୍ରହଣ କରି ଆଧୁନିକତା ପରିପୁଷ୍ଟ ହୁଏ । ଯେକୌଣସି ଯୁଗର କବି ଯେତେ ଆଧୁନିକ, ଅତୀତ ସହିତ ସେ ସେତେ ପରିଚିତ । ନିଜର ପରମ୍ପରାକୁ ଚିହ୍ନି ନ ପାରିଲେ ଆଧୁନିକତା ଏକ ପ୍ରହସନ ହୋଇଯାଏ । ନୂତନ ଶୈଳୀ, ନୂତନ ଚିନ୍ତାଧାରା ଓ ନୂତନ ପରିପ୍ରେକ୍ଷୀରେ ଯେ କୌଣସି ସାହିତ୍ୟ ସାଧକ ଲେଖନୀ ଚାଳନା କରନ୍ତୁ ନା କାହିଁକି ଅତୀତ ପ୍ରତି ସଚେତନ ରହିବା ସେମାନଙ୍କ ପକ୍ଷରେ ଏକ ଧର୍ମ । ଏହି ଦୃଷ୍ଟିରୁ ଆଧୁନିକ ସାହିତ୍ୟର ପୁରୋଧା ରାଧାନାଥ ରାୟଙ୍କ 'ପାର୍ବତୀ' ଆଧୁନିକ କାବ୍ୟର ସଞ୍ଜ୍ଞା ବହନ କରେ । କବିବର ଆଧୁନିକତାର ସୂତ୍ରପାତ କରି ପାରିଥିଲେ ଓଡ଼ିଶାର ଅତୀତର ପରମ୍ପରା ଓ ହିନ୍ଦୁଧର୍ମ ଦର୍ଶନର ଗଭୀର ଅଧ୍ୟୟନ ଫଳରେ । ସମାଜକୁ ବଳିଷ୍ଠ ଭିତ୍ତିରେ ଦଣ୍ଡାୟମାନ କରିବା ପାଇଁ ସେ ସର୍ବଦା ଚିନ୍ତା କରିଥିଲେ । ଅତୀତରୁ ଏଥିପାଇଁ ସେ ଉପାଦାନ ଗ୍ରହଣ କରିଥିଲେ ।'' (୨)

ମାଦଳାପାଞ୍ଜିର ଏକ ଆଖ୍ୟାୟିକା ଉପରେ ହିଁ ପାର୍ବତୀ କାବ୍ୟ ପ୍ରତିଷ୍ଠିତ । '' ଏ



Digitized by srujanika@gmail.com

ରାଜା ବ୍ରାହ୍ମଣମାନଙ୍କୁ ପଚାରିଲେ ଯେଉଁ ଫଳ ଉପୁଜାଇ ସେ ଫଳ ଖାଇ କି ନ ଖାଇ । ତହିଁକି ବ୍ରାହ୍ମଣେ ବୋଇଲେ ଯେ ଫଳ ଉପୁଜାଇ ସେ ଫଳ ଖାଇ। ସେଠାରୁ ରାଜା ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗ ହେଲେ । ସେ ଝିଅ ଗର୍ଭବାସ ହେଲେ । x x x ଏ ଉତ୍ତାରୁ ଝିଅକୁ ଯେଉଁଯାଏ ବୁଲାଇ ରକତ ଗୋଡରୁ ବହି ନ ଥିଲା ସୀମାନ୍ତ ଘେନି ପୋଖରୀ ଦୀପଦଣ୍ଡି କଲେ । ଦୀପଦଣ୍ଡି କରି ଝିଅକୁ ଆଣି ତହିଁରେ ରଖିଲେ ରାଣୀମାନେ ରାଜାଙ୍କ ମୁଣ୍ଡଛେଚି ମାଇଲେ। ସେଇଦିନୁ ପୋଖରୀ କୌଶଲ୍ୟାଗଙ୍ଗା ବୋଲାଇଲା । (୩)

କବିବର ରାଧାନାଥ ଗ୍ରୀକ୍ କବି ହୋମରଙ୍କ ଇଲିଆଡ କାବ୍ୟ, ଆସ୍‌କାଇଲସଙ୍କର 'ଆଗାମେନନ୍' ନାଟକ ଏବଂ ସେକ୍‌ସପିଅରଙ୍କର 'ହାମ୍‌ଲେଟ୍' ନାଟକ ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ ନିଜସ୍ୱ ସୃଜନଶୀଳତା ବଳରେ କୌଶଲ୍ୟାଗଙ୍ଗା କିମ୍ବଦନ୍ତୀକୁ ଆହରଣ କରି ପାର୍ବତୀ କାବ୍ୟ ରଚନା କରିଥିଲେ । ପାର୍ବତୀ କାବ୍ୟ ରଚନା କାଳରେ ସ୍ୱୀୟ ପୁତ୍ର ଶଶିଭୂଷଣ ରାୟ ଭୀଷଣ ଦୈହିକ ପୀଡାରେ ଶରବ୍ୟ ହେବାରୁ ମାନସିକ ଦୁଃଶ୍ଚିନ୍ତା ଗ୍ରସ୍ତ କବି ପାର୍ବତୀ କାବ୍ୟକୁ ସଂପୂର୍ଣ୍ଣ କରି ନ ପାରି ତା'ର ଉତ୍ତରାର୍ଦ୍ଧ ଗଦ୍ୟାକାରରେ ଲେଖି ଗଲେ (୪) ପ୍ରକୃତ କାବ୍ୟ ଅସମ୍ପୂର୍ଣ୍ଣ ରହିବା ଅନ୍ତରାଳରେ ଭିନ୍ନ କାରଣ ପ୍ରଚ୍ଛନ୍ନ ଥିବାର ସୂଚନା ମିଳେ। (୫)

## ରାଧାନାଥ ପ୍ରେମର ଅନ୍ତରଙ୍ଗ ଉଚ୍ଚାରଣ; ପାର୍ବତୀ ଉତ୍ତରାର୍ଦ୍ଧ

" ପାର୍ବତୀ କାବ୍ୟରେ କଳଙ୍କ କାଣ୍ଡ ଅଭିନୀତ ହୋଇଅଛି କିନ୍ତୁ ପାପର ଦଣ୍ଡ ଯହିଁରୁ କି ନେଗେଟିଭ୍ ଶିକ୍ଷା ହୁଅନ୍ତା, ତାହା ବର୍ଣ୍ଣିତ ହୋଇନାହିଁ । କବି ଯେ ପର୍ଯ୍ୟନ୍ତ 'ପାର୍ବତୀ'କୁ ଅସମ୍ପୂର୍ଣ୍ଣ ରଖିବେ, ସେତେଦିନ ଯାଏ ତାଙ୍କର ଶ୍ରେଷ୍ଠ ପ୍ରଶଂସାକାରୀମାନେ ମଧ୍ୟ ତାଙ୍କ କାବ୍ୟର କଳଙ୍କ କାଳିମା ଅପନୋଦନ କରିବାକୁ ସମର୍ଥ ହେବେ ନାହିଁ।" (୬) କବି ନନ୍ଦ କିଶୋରଙ୍କ ଏ ଉକ୍ତି ପ୍ରମାଣ କରିଦିଏ ଯେ ଅସମ୍ପୂର୍ଣ୍ଣ ପାର୍ବତୀ କାବ୍ୟ ରାଧାନାଥ ପ୍ରେମୀଙ୍କୁ ବ୍ୟଥିତ ଏବଂ ଅନନ୍ୟୋପାୟ କରି ଦେଇଛି । ଏଥିରୁ ଅନୁମିତ ହୁଏ ରାଧାନାଥଙ୍କ ଗୁଣମୁଗ୍ଧ ବଳଭଦ୍ର ଦେବ ପାର୍ବତୀ ଉତ୍ତରାର୍ଦ୍ଧ ରଚନା ବିନା ଯେ ରାଧାନାଥୀ କଳଙ୍କ ଅପନୋଦନ ହୋଇପାରେନା, ଉପଲବ୍ଧି କରି ପାରିଥିଲେ । ଫଳତଃ ପାର୍ବତୀ କାବ୍ୟ ଅନ୍ତର୍ଗତ ଐତିହାସିକ ତଥ୍ୟ ସମ୍ପର୍କରେ ଗଭୀର ଅନୁସନ୍ଧାନ ଓ ଗବେଷଣା କରି ନିଜର ସୁପରିକଳ୍ପନା ଦ୍ୱାରା ବିଷୟର ଯଥାସାଧ୍ୟ ସମନ୍ୱୟ ରକ୍ଷା କରି 'ପାର୍ବତୀ ଉତ୍ତରାର୍ଦ୍ଧ' ରଚନା କଲେ । " କବିବର ରାଧାନାଥଙ୍କର ଅନୁସୃତ ପଥର ଅବଲମ୍ବନରେ ଦୈବୀଶକ୍ତିର ପ୍ରଭାବ ଦେଖାଇ ବଳଭଦ୍ର ଦେବ ଯେଉଁ ବିନ୍ୟାସ ଚାତୁରୀ ପ୍ରଦର୍ଶନ କରିଛନ୍ତି, ତାହା



Digitized by srujanika@gmail.com

ଚିତ୍ତଚମକପ୍ରଦ ଔପନ୍ୟାସିକ ମାଧୁରୀରେ ମୂଳ କବିଙ୍କର କାବ୍ୟର ଗୌରବ ଗ୍ଲାନି ନକରି ବରଂ ତହିଁର ଉତ୍କର୍ଷ ସାଧନ କରିଅଛି । (୭) ଅପୂର୍ବ ରାଧାନାଥ ପ୍ରୀତିର ନିଦର୍ଶନ ସ୍ୱରୂପ ଅଳୀକତାର ଊର୍ଦ୍ଧ୍ୱରେ ସାରସ୍ୱତ ସଂଭାରର ମାଳା ପ୍ରସ୍ତୁତ କରି କବିବରଙ୍କର ସମ୍ମାନ ବର୍ଦ୍ଧନ କରି ଯାଇଛନ୍ତି କବି ବଳଭଦ୍ର । ତେଣୁ ପାର୍ବତୀ ଉତ୍ତରାର୍ଦ୍ଧ'ର ଉତ୍ସର୍ଗପତ୍ରରେ କବି ଲେଖିଛନ୍ତି ।

ଗଙ୍ଗାଙ୍କୁ ଅର୍ଚ୍ଚନା କରନ୍ତି ଯେସନେ ଭକ୍ତମାନେ ଗଙ୍ଗାଜଳେ;
ଅଥବା ଯେସନେ ତୁଳସୀର ପୂଜା ହୁଅଇ ତୁଳସୀ ଦଳେ ।
ତବ ବିରଚିତ କାବ୍ୟ ଉପବନୁ ତୋଳି ଏ ସୁମନ ରାଜି ।
ଗ୍ରନ୍ଥାକାର ତଥା ତୁମ୍ଭଙ୍କୁ ତଦ୍‌ଗତ ହୃଦୟେ ପୂଜଇ ଆଜି ।

କବି ବଳଭଦ୍ର ଦେବ ବାମଣ୍ଡାର ରାଜବଂଶରେ ୧୮୭୮ ଖ୍ରୀ:ରେ ଭୂମିଷ୍ଠ ହୋଇଥିଲେ । ପିତା ରାଜା ବାସୁଦେବ ସୁଢଳ ଦେବ । ଅଗ୍ରଜ ବିଜ୍ଞାନକବି ସଚ୍ଚିଦାନନ୍ଦଙ୍କ ସାହିତ୍ୟପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ କବିଙ୍କୁ ଆକୃଷ୍ଟ କରିଥିଲା । ରାଜ ପରିବାରର ବିଳାସପୂର୍ଣ୍ଣ ପରିବେଶ ମଧ୍ୟରେ ବାଣୀ ଆରାଧନାର ଫଲ୍‌ଗୁ ଧାରା ପ୍ରବାହିତ ହୋଇଥିଲା । ବାମଣ୍ଡା ରାଜ ଦରବାରର ଅନ୍ୟତମ ସମ୍ମାନିତ କବି ରାଧାନାଥଙ୍କ ପ୍ରତି ବଳଭଦ୍ର ବିଶେଷ ଭାବରେ ଅନୁରକ୍ତ ଥିଲେ । ତାଙ୍କର ସୌଜନ୍ୟତାରେ ମୁଗ୍ଧ ହୋଇ ରାଧାନାଥ 'ବାମଣ୍ଡା' ପ୍ରବନ୍ଧରେ ସ୍ୱୀକାର କରିଛନ୍ତି, ''ମହାରାଜଙ୍କ ମଧ୍ୟମ ପୁତ୍ର ଶ୍ରୀଯୁକ୍ତ ବଳଭଦ୍ର ଦେବ ପଟ୍ଟାୟତଙ୍କର ବିଚକ୍ଷଣତା, ସ୍ୱାଧୀନ ମନସ୍କତା, ନିର୍ଭୀକତା ଏବଂ ବିଶୁଦ୍ଧ ଚରିତ୍ରତାର ସୁପ୍ରତିଷ୍ଠା ପୂର୍ବରୁ ଶୁଣି ପ୍ରୀତ ହୋଇଥିଲି ଏବଂ ଏହାଙ୍କର ଅସାଧାରଣ ସୌଜନ୍ୟର ଚାକ୍ଷୁଷ ପରିଚୟ ପାଇ ତତୋଽଧିକ ପ୍ରୀତ ହେଲି । ମୁଁ ବାମଣ୍ଡା ପରିତ୍ୟାଗ କରି ଆସିବା ସମୟରେ ପଟ୍ଟାୟତ୍ ବାବୁଙ୍କ ସହିତ ସାକ୍ଷାତ ନ ହେବାରୁ ଦୁଃଖ ପ୍ରକାଶ କରି ଆସିଥିଲି । ସହୃଦୟ ପଟ୍ଟାୟତ୍ ଏହି ସମ୍ବାଦ ପାଇ ଅଶ୍ୱାରୋହଣରେ ମୋହ ପଛେ ପଛେ କୋଶେ ବାଟ ଆସି ମୋତେ ବିଦାୟ ଦେଇଗଲେ । ଏ ମଧ୍ୟ ସେହି ବ୍ରହ୍ମଜାତି ହୀରାର କଣି ।''

ରାଧାନାଥଙ୍କ କବି ପ୍ରତିଭା ବହୁଳ ଭାବେ ବଳଭଦ୍ର ଦେବଙ୍କ ଉପରେ ପ୍ରଭାବ ପକାଇଥିଲା । ରାଧାନାଥଙ୍କ ଶୈଳୀ, ଭୌଗୋଳିକ ପରିବେଶ ଆଦିର ବର୍ଣ୍ଣନାକୁ ଅନୁକରଣ କରି କବି ସ୍ୱୀୟ କାବ୍ୟରେ ମୂଳକାବ୍ୟର ଗଠନ ଚାତୁରୀ, ଶିଳ୍ପ ସୌନ୍ଦର୍ଯ୍ୟକୁ ଅକ୍ଷୁର୍ଣ୍ଣ ରଖିବାର ପ୍ରଚେଷ୍ଟା କରିଛନ୍ତି। ରାଧାନାଥଙ୍କ ବର୍ଣ୍ଣିତ ପିତା ଓ କନ୍ୟାର ଅଶ୍ଳୀଳ କାମ ପିପାସାକୁ ଏକ କାହ୍ନିକ ଚିତ୍ର ମାଧ୍ୟମରେ ଜାତୀୟ ସଂସ୍କୃତିକୁ ଅକଳଙ୍କ ରଖିବାର



Digitized by srujanika@gmail.com

ଅଭିନବ ମୀମାଂସା ପ୍ରଦାନ କରିଛନ୍ତି ଦାମ୍ଭିକ ପଦକ୍ଷେପ ନେଇ ରାଧାନାଥଙ୍କ ପ୍ରତି ଉଦ୍ଦିଷ୍ଟ ସମସ୍ତ କଟୁ ମନ୍ତବ୍ୟକୁ ଏଡାଇଯିବାର ପ୍ରଚେଷ୍ଟା କରିଛନ୍ତି ।

## 'ପାର୍ବତୀ ଉତ୍ତରାର୍ଦ୍ଧ' ଉପରେ ରାଧାନାଥଙ୍କ ପ୍ରଭାବ

'ପାର୍ବତୀ ଉତ୍ତରାର୍ଦ୍ଧ'ର ଉତ୍ସର୍ଗ ପତ୍ରରେ ଏହାକୁ ରାଧାନାଥ କାବ୍ୟ - ଉପବନର ଏକ ସୁମନ ରୂପେ କବି ସ୍ୱୀକାର କରି ଯାଇଛନ୍ତି । ତେଣୁ ଏହା ଉପରେ ରାଧାନାଥଙ୍କ ପ୍ରତିଫଳନ ରହିବା ସୁସ୍ପଷ୍ଟ । ରାଧାନାଥଙ୍କ ପାର୍ବତୀ ସଦୃଶ 'ପାର୍ବତୀ ଉତ୍ତରାର୍ଦ୍ଧ' ମଧ୍ୟ ବଙ୍ଗଳାଶ୍ରୀ ରାଗରେ ରଚିତ । ରାଧାନାଥ ଯୁଗରେ ଉପଧା ମିଳନ ଉପରେ ପ୍ରାଧାନ୍ୟ ଦିଆଯାଉଥିବା ଯୋଗୁ ପାର୍ବତୀ ଉତ୍ତରାର୍ଦ୍ଧରେ ମଧ୍ୟ କବି ଉପଧା ମିଳନ ଉପରେ ଗୁରୁତ୍ୱ ଦେଇଛନ୍ତି । ଯଦିଓ ଉପଧା ଯୋଗୁ କାବ୍ୟର ସାଧାରଣ ସୌନ୍ଦର୍ଯ୍ୟହାନି ଅନେକ ସ୍ଥଳେ ଘଟିଅଛି ।

ଯଥା: -

'ଦେଖୁଁ ଦେଖୁଁ ଆମ୍ଭ ଦୁର୍ଗବାସ କାଳ ହୋଇଗଲା ଅବସାନ
ଆହାର ଅଭାବେ ଯୋଦ୍ଧାମାନେ  ଆଉ ମାରି ନ ପାରିଲେ ବାଣ ।''

(ପାର୍ବତୀ ଉତ୍ତରାର୍ଦ୍ଧ)

'ମାରି ନ ପାରିଲେ ବାଣ' ସ୍ଥଳେ ' କରି ନ ପାରିଲେ ରଣ' ଅଧିକ ହୃଦ୍ୟ ହୋଇପାରିଥାନ୍ତା । ଏହା ତଦାନୀନ୍ତନ ରାଧାନାଥ ସାହିତ୍ୟର ପ୍ରଭାବ ନୁହେଁ କି ? ଯଦିଓ 'ଉପଧା ଏକ ଅପ୍ରୟୋଜନୀୟ ନିୟମର ଅନ୍ତର୍ଗତ ବୋଲି ବାମଣ୍ଡା ଦରବାରରେ ଆଲୋଚିତ ହୋଇସାରିଛି ।'' (୮)

ରାଧାନାଥଙ୍କ କାବ୍ୟରେ ବିଭିନ୍ନ ସ୍ଥାନରେ ପ୍ରାକୃତିକ ପରିବେଶ, ଭୌଗୋଳିକ ଅବସ୍ଥିତି, ସଂସ୍କୃତି, ପରମ୍ପରା, ଆଦିର ଚାକ୍ଷୁଷ ବର୍ଣ୍ଣନା ପାଠକକୁ ନୂତନ ସ୍ୱାଦ ଯୋଗାଇଥାଏ । ରାଧାନାଥଙ୍କର ଏହି ବର୍ଣ୍ଣନା ଚାତୁରୀକୁ ବଳଭଦ୍ର ନିଜ କାବ୍ୟରେ ପ୍ରୟୋଗ କରିଛନ୍ତି । ପାର୍ବତୀ କାବ୍ୟରେ ବିଜୟ ବାର୍ତ୍ତାର ସ୍ୱରୂପ ଅଗ୍ନିଶିଖାର ମାର୍ଗ ନିରୂପଣ କରି କଞ୍ଚୁକୀ ଦ୍ୱାରା ଓଡ଼ିଶାର ବିଭିନ୍ନ ସ୍ଥାନର ବର୍ଣ୍ଣନା ପ୍ରଦାନ କରିଛନ୍ତି । ସେହିପରି ବଳଭଦ୍ର ନିଜ କାବ୍ୟରେ ବିଜୟୀ ରାଜା ଗଙ୍ଗେଶ୍ୱରଙ୍କ ସହିତ ଯୁଦ୍ଧରୁ ଆଗତ ସମସ୍ତ ସାମନ୍ତ ରାଜାଙ୍କର ପରିଚୟ, ରାଜ୍ୟର ଭୌଗୋଳିକ ଅବସ୍ଥିତି, ପ୍ରାକୃତିକ ସୌନ୍ଦର୍ଯ୍ୟ ଆଦିର ବର୍ଣ୍ଣନା କଞ୍ଚୁକୀ ଦ୍ୱାରା ରାଣୀ ପାର୍ବତୀଙ୍କ ଠାରେ ନିବେଦନ କରାଯାଇଛି । ଏହି ସ୍ଥାନ ବର୍ଣ୍ଣନା ଅନେକାଂଶରେ ରାଧାନାଥ ପ୍ରଭାବରେ ପରିପୁଷ୍ଟ ।



Digitized by srujanika@gmail.com

(୧) ''ଶୁଭ୍ର ମୂର୍ତ୍ତି ଏହି ଯୁବକ ଅଟନ୍ତି ନରପତି କନିକାର

ତାଳୀବନାକୀର୍ଣ୍ଣ ନକ୍ର ଚକ୍ରଯୁତ ଜଳଦୁର୍ଗେ ବାସ ଯାର । (ପାର୍ବତୀ ଉତ୍ତରାର୍ଦ୍ଧ) ଏ ପଂକ୍ତି ଉପରେ ନନ୍ଦିକେଶ୍ୱରୀ କାବ୍ୟର ନିମ୍ନ ପଂକ୍ତିର ପ୍ରଭାବ ଲକ୍ଷ୍ୟଣୀୟ 'ତାଳୀବନ ଶ୍ୟାମ କନିକା କୁଜଙ୍ଗ''

(୨) ବରାହ ନାଥଙ୍କୁ ଘୋର ତପେ ତୋଷି ତାହାଙ୍କ ପ୍ରସାଦ ବଳେ

ଯେମାନଙ୍କ ତେଜ ଦୁଃସହ ହୋଇଛି ରଣେ ଅରାତି ମଣ୍ଡଳେ ।

ଧନ୍ୟଶାଳୀ ଆଳି ଦେଶର ଭୂପ ଏ ଆସନ୍ତି ଅସି ଆସ୍ଫାଳି

ବିମଳ କୀର୍ତ୍ତିରେ ଶତ୍ରୁ ବଦନରେ ବୋଳି ଦେଉଛନ୍ତି କାଳି ।''

ଏ ପଂକ୍ତି ସହିତ 'ନନ୍ଦିକେଶ୍ୱରୀ' କାବ୍ୟର ନିମ୍ନ ପଂକ୍ତିର ସାଦୃଶ୍ୟ ରହିଛି ।

'' ବରାହ ପାଳିତ ବାଳିପୂର୍ଣ୍ଣ ଆଳି କ୍ଷତ୍ର ବୃନ୍ଦ ଯା'ର ମହାବୀର୍ଯ୍ୟଶାଳୀ ।''

ଉପମା ପ୍ରଦାନରେ ମଧ୍ୟ ରାଧାନାଥଙ୍କ ପ୍ରଭାବ କବିଙ୍କ ଉପରେ ସ୍ପଷ୍ଟ ପ୍ରତୀୟମାନ ହୁଏ ।

(୩) '' ଦୋଳିଲେ କି ବାତେ କମଳିନୀ ଗଣ ସହିତେ ପଦ୍ମ କୋରକ'' ଅଥବା ଚନ୍ଦ୍ରମା ସହ ତାରାମାନେ ବିରଚିଲେ ହଲ୍ଲୀଷକ ।''

(ପାର୍ବତୀ ଉତ୍ତରାର୍ଦ୍ଧ - ବଳଭଦ୍ର ଦେବ)

'' କନକ ବଲ୍ଲରୀ ମଧ୍ୟେ କି ବିହରେ ସ୍ଥିର ହ୍ଲାଦିନୀ

ତାରା - ହଲ୍ଲୀଷକେ କି ଅବା ରୋହିଣୀ ଇନ୍ଦୁ ମୋହିନୀ ।''

(ଭାଷା- ରାଧାନାଥ ରାୟ)

(୪) '' ଅନାୟାସେ ମୋର ମନପକ୍ଷୀ ଲାଖିଗଲା ଯୁବା ରୂପ ଡୋରେ

ସଲିଳ ବିହାରୀ ରାଜହଂସ ଚଂଚୁ ଯଥା ମୃଣାଳ ସୂତ୍ରରେ ।''(ପାର୍ବତୀ ଉତ୍ତରାର୍ଦ୍ଧ)

''ରାଜ ଦେହୁଁ ମନ ଓଟାରୁଣ ଥିଲା ଉର୍ଦ୍ଧ୍ୱେଉଠି ସୁରବାଳୀ

ଛିନ୍ନ ମୃଣାଳରୁ ଅଣ୍ଟେ ସୂତ୍ର ଯଥା ଓଟାରି ଉଡେ ମରାଳୀ ।''(ଉର୍ବଶୀ - ରାଧାନାଥ ରାୟ)

ରାଧାନାଥଙ୍କ ବର୍ଣ୍ଣନା ଚାତୁରୀ ବଳଭଦ୍ର ଦେବଙ୍କୁ ବହୁଳ ଭାବରେ ପ୍ରଭାବିତ କରିଥିଲା । ରାଧାନାଥଙ୍କର ଅନେକ ପଂକ୍ତିକୁ ସେ ନିଜସ୍ୱ ଶୈଳୀରେ ପ୍ରୟୋଗ କରି ନିଜର ସିଦ୍ଧହସ୍ତତା ସାବ୍ୟସ୍ତ କରିଯାଇଛନ୍ତି । ରୀତିଯୁଗର ଅବସାନ ପରେ ଓଡ଼ିଆ ସାହିତ୍ୟକୁ ଅଯଥା ଶବ୍ଦ କ୍ଳିଷ୍ଟତା, ଆୟାସସାଧ୍ୟ ଅଳଙ୍କାର ବିଶେଷତଃ ଉପମା ପ୍ରୟୋଗରୁ ଉଦ୍ଧାର କରି



Digitized by srujanika@gmail.com

ସରସ, ସୁନ୍ଦର ଆଧୁନିକ ରୁଚିସମ୍ପନ୍ନ କରି ଗଢ଼ି ତୋଳିବାର ଭିନ୍ନ ଦିଗନ୍ତ ରାଧାନାଥ ତଥା ରାଧାନାଥ ପ୍ରେମୀ ସାହିତ୍ୟିକଙ୍କ କର୍ତ୍ତୃକ ଉନ୍ମୋଚିତ ହୋଇଥିଲା । ସେତେବେଳର ଉଦ୍‌ଯୋଗୀ ନବୀନ ସାହିତ୍ୟିକମାନେ ରାଧାନାଥ ପ୍ରଦର୍ଶିତ ପଥରେ ହିଁ ଅଗ୍ରସର ହୋଇଥିଲେ । ଫଳତଃ ରାଧାନାଥଙ୍କ ଚିନ୍ତା ଓ ଚେତନା ସେ ସମୟର ଅଧିକାଂଶ ସାରସ୍ୱତ କୃତି ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରିଥିଲା। ବାମଣ୍ଡା ଦରବାରକୁ ରାଧାନାଥଙ୍କ ବାରମ୍ବାର ଆଗମନ ଏବଂ ତାଙ୍କର କାବ୍ୟକୃତି 'ସମ୍ବଲପୁର ହିତୈଷିଣୀ' ପତ୍ରିକା ଏବଂ 'ଜଗନ୍ନାଥ ବଲ୍ଲଭ ପ୍ରେସ୍'ରେ ପ୍ରକାଶିତ ହେବା ଫଳରେ କବି ବଳଭଦ୍ର ରାଧାନାଥ ତଥା ରାଧାନାଥଙ୍କ ସାହିତ୍ୟ କୃତି ଦ୍ୱାରା ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ ହୋଇଥିଲେ । ରାଧାନାଥଙ୍କ ପାର୍ବତୀ କାବ୍ୟକୁ ମୌଳିକତାର ଅଳଂକରଣ ଭିତରେ ଉପସଂହାର ପ୍ରଦାନର ଅଭୀପ୍ସା ଅନେକତ୍ର ରାଧାନାଥ ଶୈଳୀକୁ ଆଦରି ନେବାକୁ କବିଙ୍କୁ ବାଧ କରିଛି। ଯଦ୍ୱାରା ପାଠକ ପାର୍ବତୀ କାବ୍ୟର ଉପସଂହାରକୁ ମଧ ରାଧାନାଥୀ କୃତି ରୂପେ ମର୍ଯ୍ୟାଦା ଦେବାରେ ଅସୁବିଧା ନ ଥିବ । ରାଧାନାଥଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ସତ୍ତ୍ୱେ କବି ନିଜସ୍ୱ ମୌଳିକତା, ପରିସ୍ଫୁଟନ କରି ଯାଇଛନ୍ତି । କ୍ଷତ୍ରିୟ ଜନୋଚିତ ନିର୍ଭୀକତା ପ୍ରଦର୍ଶନ କରି ପାର୍ବତୀ କାବ୍ୟର ମୀମାଂସା କରିଯାଇଛନ୍ତି । ଉତ୍କଳୀୟ ସଂସ୍କୃତି ତଥା ପରମ୍ପରାକୁ ସମ୍ମାନ ପ୍ରଦର୍ଶନ ପୂର୍ବକ ରାଧାନାଥଙ୍କ ଅସମ୍ପୂର୍ଣ୍ଣ ପାର୍ବତୀ କାବ୍ୟକୁ କାବ୍ୟ ଯଥାର୍ଥ୍ୟ ସହିତ ଉପସଂହାର ଟାଣି ସେ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ସାଧିତ କରିବା ସଂଗେ ସଂଗେ ରାଧାନାଥ ପ୍ରେମର ଦୃଷ୍ଟାନ୍ତ ରଖିଯାଇଛନ୍ତି ।

## ପାର୍ବତୀ କାବ୍ୟର କଳଙ୍କ ପ୍ରକ୍ଷାଳନ:

ପାର୍ବତୀ କାବ୍ୟର ଅସମ୍ପୂର୍ଣ୍ଣ ଅଂଶକୁ କବିବର ଗଦ୍ୟାକାରରେ ଲିପିବଦ୍ଧ କରି ଯାଇଥିଲେ । ଉକ୍ତ ଗଦ୍ୟାଂଶକୁ ଅନୁକରଣ କରି ଯଥେଷ୍ଟ ମୌଳିକତା ପ୍ରଦର୍ଶନ ପୂର୍ବକ ବଳଭଦ୍ର 'ପାର୍ବତୀ ଉତ୍ତରାର୍ଦ୍ଧ' ରଚନା କରିଛନ୍ତି । ରତ୍ନପୁରର ରାଜଜେମା ଅନ୍ନପୂର୍ଣ୍ଣା ପାର୍ବତୀଙ୍କ ସମ୍ମୁଖରେ ରତ୍ନପୁର ଅବରୋଧ, ଯୁଦ୍ଧର ବିଶଦ୍ ବର୍ଣ୍ଣନା ସହିତ ଯୁଦ୍ଧର ଅବ୍ୟବହିତ ପୂର୍ବ ମୁହୂର୍ତ୍ତରେ ଏକଜାତଙ୍କ ସହିତ ସାକ୍ଷାତ ଓ ପ୍ରେମାଙ୍କୁରର କାହାଣୀ ଶୁଣାଇଥିଲେ । କୌଶଲ୍ୟାଙ୍କ ଦୁର୍ଭାଗ୍ୟ ପରି ଅନ୍ନପୂର୍ଣ୍ଣା ମଧ ଯେ ଗଙ୍ଗେଶ୍ୱରଙ୍କ କାମ ପିପାସାର ଶୀକାର ହେବେ, ଏହା ପାର୍ବତୀଙ୍କ ସମ୍ମୁଖରେ ନିବେଦନ କରି ପ୍ରତିକାର ଭିକ୍ଷା କରିଥିଲେ । ମହାରାଣୀ ପାର୍ବତୀ କନ୍ୟା କୌଶଲ୍ୟାର ଦୁର୍ଦ୍ଦଶା ପୁଣି ସଂପ୍ରତି ପୁତ୍ରବଧୂତୁଲ୍ୟା ଅନ୍ନପୂର୍ଣ୍ଣାର ଆସନ୍ନ ଦୁର୍ଯ୍ୟୋଗର କାହାଣୀ ଶୁଣି ବିବ୍ରତା ହୋଇ ଉଠିଲେ। କର୍ତ୍ତବ୍ୟ ସମ୍ମୁଖରେ ତଥା



Digitized by srujanika@gmail.com

ଅନେକ ନିରୀହ ପ୍ରାଣର ଉତ୍ପୀଡନ ସମ୍ମୁଖରେ ପତ୍ନୀଦ୍ୱ ତାଙ୍କର ମୃତ୍ୟୁବରଣ କରି ସାରିଥିଲା । ଫଳତଃ ସେ କର୍ତ୍ତବ୍ୟର ତାଡନାରେ ନରାଧମ ଉତ୍ପୀଡକ, କାମପିପାସୁ ଗଙ୍ଗେଶ୍ୱରକୁ ହତ୍ୟା କରିଥିଲେ ଏବଂ ଆଶ୍ଚର୍ଯ୍ୟଚକିତ ପୁତ୍ର ଏବଂ ସଭାସଦ୍ ସମକ୍ଷରେ ଗଙ୍ଗେଶ୍ୱରଙ୍କର କଳଙ୍କିତ ଚରିତ୍ରକୁ ଉନ୍ମୋଚନ କରିଥିଲେ ।

ରାଧାନାଥଙ୍କ କାହାଣୀର ଉପସଂହାର ଗଙ୍ଗେଶ୍ୱରଙ୍କ ମୃତ୍ୟୁ ଏବଂ ପାର୍ବତୀ ନିରୁଦ୍ଦିଷ୍ଟ ହେବା ସହିତ ସଂଘଟିତ ହୋଇଥିଲା । ଅଥଚ କବି ବଳଭଦ୍ର କଳ୍ପନା ପ୍ରସୂତ ଅନ୍ୟ ଏକ ଚିତ୍ର ପ୍ରଦାନ ପୂର୍ବକ କାବ୍ୟର ଉପସଂହାରକୁ ଭିନ୍ନ ରୂପ ପ୍ରଦାନ କରିଛନ୍ତି । ଗଙ୍ଗେଶ୍ୱରଙ୍କ ହତ୍ୟାପରେ ଅନ୍ନପୂର୍ଣ୍ଣା ବିଷପାନ କରି ଆତ୍ମହତ୍ୟା କରିଥିଲେ । ଉଭୟ ଶବକୁ ସଂସ୍କାର କରିବାକୁ ନିଆଗଲା । ଶବ ସତ୍କାରର ପୂର୍ବ ମୁହୂର୍ତ୍ତରେ ସ୍ୱୟଂ ଜଗନ୍ନାଥ ଆବିର୍ଭୂତ ହୋଇ ସମଗ୍ର ଜନତାକୁ ସ୍ତମ୍ଭୀଭୂତ କରିଥିଲେ ଏବଂ ରହସ୍ୟପୂର୍ଣ୍ଣ କୌଶଲ୍ୟାର ଦୁର୍ଯ୍ୟୋଗର କାହାଣୀ ଶୁଣାଇଥିଲେ ।

‘‘ ଗଙ୍ଗେଶ୍ୱର ଜଗନ୍ନାଥଙ୍କ ପରମ ଭକ୍ତ । ତଦାନୀନ୍ତନ ଜଗନ୍ନାଥ ମନ୍ଦିର ବେଢ଼ାରେ ଥିବା ବେଢ଼ା କାଳିକା ନିରୀହ ଭକ୍ତମାନଙ୍କୁ ହତ୍ୟା କରି ରକ୍ତପାନ କରୁଥିଲେ। ତେଣୁ ଜଗନ୍ନାଥ ଦର୍ଶନାକାଂକ୍ଷୀ ଭକ୍ତଙ୍କର ସଂଖ୍ୟା କମିଗଲା ଏବଂ ଜଗନ୍ନାଥ ଗଙ୍ଗେଶ୍ୱରଙ୍କୁ ବେଢ଼ା କାଳିକାଙ୍କ ମନ୍ଦିର ଦ୍ୱାର ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ । ସେଇଦିନୁ ବେଢ଼ା କାଳୀଙ୍କର ମନ୍ଦିର ଦ୍ୱାର ରୁଦ୍ଧ ହୋଇଛି । ଯା’ଫଳରେ କାଳୀ ରୁଷ୍ଟ ହୋଇ ପ୍ରତିଶୋଧ ନେଲେ ।

ରତ୍ନପୁର ରାଜା ନିଜ କନ୍ୟାର ସ୍ୱୟଂବର ମନସ୍ଥ କରି ଗଙ୍ଗେଶ୍ୱରଙ୍କ ସହିତ ଥିବା ‘ଏକଜାତ’ ଏବଂ ଅନ୍ୟାନ୍ୟ ରାଜପୁତ୍ରମାନଙ୍କୁ ନିମନ୍ତ୍ରଣ କରିବାକୁ ଦୂତ ପ୍ରେରଣ କଲେ । କାଳୀ ଉପଯୁକ୍ତ ସୁଯୋଗ ଦେଖି ଦୂତକୁ ହତ୍ୟାକରି ନିଜେ ଛଦ୍ମ ବେଶରେ ଗଙ୍ଗେଶ୍ୱରଙ୍କ ସମ୍ମୁଖରେ ରତ୍ନପୁରର ବଡିମା ସହିତ ଗଙ୍ଗେଶ୍ୱରଙ୍କ ସମଗ୍ର ସାମ୍ରାଜ୍ୟକୁ ତୁଚ୍ଛ ରୂପେ ବର୍ଣ୍ଣନା କଲେ । ଫଳରେ ଅନ୍ୟର ପ୍ରଶଂସାରେ କ୍ରୋଧାନ୍ୱିତ ହୋଇ ଗଙ୍ଗେଶ୍ୱର ରତ୍ନପୁର ଦୁର୍ଗ ଅବରୋଧ କଲେ ।

କୌଶଲ୍ୟା ଗୁପ୍ତ ପ୍ରେମରେ ଅନ୍ତଃସତ୍ତ୍ୱା ବୋଲି କାଳୀ ଛଦ୍ମବେଶରେ ଚାରିଆଡେ ଅପପ୍ରଚାର କଲେ । ତେଣୁ ନିଜର ତଥା ପବିତ୍ର ଗଙ୍ଗବଂଶର ଗୌରବହାନି ଆଶଙ୍କାକରି ରାଜା ନିଜ କନ୍ୟାକୁ ବନ୍ଦୀ କଲେ । ଜଗନ୍ନାଥ କୌଶଲ୍ୟାଙ୍କୁ ବନ୍ଦୀଶାଳାରୁ ଉଦ୍ଧାର କରି ନିଜର ସେବାଦାସୀଙ୍କ ଗହଣରେ ରଖିଦେଲେ । ବନ୍ଦୀଶାଳାରୁ କୌଶଲ୍ୟା ନିରୁଦ୍ଦିଷ୍ଟା ହେବାପରେ କାଳୀ ନିଜର ଜଣେ ଚଣ୍ଡୀକୁ ଗର୍ଭବତୀ କରି କୌଶଲ୍ୟାର ଛଦ୍ମବେଶରେ



Digitized by srujanika@gmail.com

ରଖିଦେଲେ ଏବଂ ଅନ୍ୟ ଏକ ସହଚରୀ କୌଶଲ୍ୟାର ପ୍ରେତାତ୍ମା ରୂପେ ପାର୍ବତୀଙ୍କ ସମ୍ମୁଖରେ ନିଜର ଦୁର୍ଦ୍ଦଶା ବର୍ଣ୍ଣନା କରିଥିଲା ।

କାଳୀଙ୍କ ଅପପ୍ରଚାରକୁ ବିଶ୍ୱାସ କରି ନିଜର ଆସନ୍ନ ଦୁର୍ଯ୍ୟୋଗ ଆଶଙ୍କାରେ ଅନ୍ନପୂର୍ଣ୍ଣା ମଧ୍ୟ ପାର୍ବତୀଙ୍କ ଶରଣାପନ୍ନ ହେଲେ ଗଙ୍ଗେଶ୍ୱରଙ୍କ କାମୁକତାରୁ ଉଦ୍ଧାର ପାଇଁ । ଫଳରେ ପାର୍ବତୀ କ୍ରୋଧ ଜର୍ଜରିତା ହୋଇ ଗଙ୍ଗେଶ୍ୱରଙ୍କୁ ହତ୍ୟା କରିଥିଲେ । ପ୍ରକୃତରେ ସବୁ ମାୟା । ଗଙ୍ଗେଶ୍ୱର ଏବଂ ଅନ୍ନପୂର୍ଣ୍ଣା ଜୀବିତ ଅଛନ୍ତି ।'' ଏହା କହି ଜଗନ୍ନାଥ କୌଶଲ୍ୟାକୁ ଫେରାଇଦେଇ ଅନ୍ତର୍ଦ୍ଧାନ ହୋଇଗଲେ ।

ଏକ ଆନନ୍ଦାତ୍ମକ ପରିବେଶ କାବ୍ୟର ଉପସଂହାରକୁ ମିଳନାନ୍ତ କରିଗଢ଼ି ତୋଳିଲା । ଅନ୍ନପୂର୍ଣ୍ଣା ସହିତ ଏକଜାତଙ୍କର ବିବାହ ସମ୍ପନ୍ନ ହେଲା । କାଳକ୍ରମେ କୌଶଲ୍ୟା ମଧ୍ୟ ଯୋଗ୍ୟ ରାଜପୁତ୍ରକୁ ବିବାହ କଲେ ।

ରାଧାନାଥଙ୍କ ଦ୍ୱାରା ବର୍ଣ୍ଣିତ ପିତା ଓ କନ୍ୟାର ପାପ ପ୍ରଣୟ ଏବଂ କୌଶଲ୍ୟା କ୍ଷୁଧାରେ ଅତିଷ୍ଠ ହୋଇ ନିଜର ପୁତ୍ର ଶବ ମାଂସ ଭକ୍ଷଣ କରିବା କାହାଣୀକୁ କାଳୀଙ୍କ କୋପ ଜନିତ ଏକ ମାୟା ରୂପେ ବଳଭଦ୍ର ଚିତ୍ରଣ କରିଛନ୍ତି । ହିନ୍ଦୁ ସଂସ୍କୃତିରେ ମଣିଷର ଜୀବନର ଗତିପଥକୁ ନିୟନ୍ତ୍ରଣ କରିବାକୁ ଦୈବୀଶକ୍ତିର ଆଶ୍ରୟ ଲୋଡିବା ଏକ ପାରମ୍ପରିକ ବିଷୟ । ବେଦ, ଉପନିଷଦ, ପୁରାଣ ଆଦିରେ ଏହାର ଯଥେଷ୍ଟ ପ୍ରମାଣ ମିଳେ ଏବଂ ରାଧାନାଥୀୟ କାବ୍ୟକୃତିରେ ମଧ୍ୟ ଏହାର ଜ୍ୱଳନ୍ତ ନିଦର୍ଶନ 'ଉଷା' ଏବଂ 'ଯଯାତିକେଶରୀ' । ଏ ପ୍ରେକ୍ଷାପଟରେ ବଳଭଦ୍ର ଦେବ ଉକ୍ତ ରୀତିର ଅନୁସରଣ ମାତ୍ର କରିଛନ୍ତି ।

'ଚନ୍ଦ୍ରଭାଗା'ରେ ରାଧାନାଥଙ୍କ ଉକ୍ତି ''ତୁମ୍ଭ ପ୍ରତିକୂଳେ ତୁମ୍ଭଙ୍କୁ ସାକ୍ଷୀ କରିବି ଦିନେ''କୁ ଯଥାର୍ଥ ହୃଦୟଙ୍ଗମ କରି ବଳଭଦ୍ର କିଛି ଐତିହାସିକ ସତ୍ୟ ଆହରଣ କରି ଅତି ଚମତ୍କାର ଭାବେ ପାର୍ବତୀ କାବ୍ୟରେ ଆରୋପ କରିଛନ୍ତି । ଏ ଆରୋପ ରାଧାନାଥୀ ବ୍ୟଞ୍ଜନାର ଚରମ କୌଶଳ । ଚୋଳଗଙ୍ଗଦେବ (ଗଙ୍ଗେଶ୍ୱର)ଙ୍କ ବୈଷ୍ଣବ ଧର୍ମ ପ୍ରତି ପ୍ରଗାଢ଼ ଅନୁରକ୍ତି ସହିତ ବେଢ଼ା କାଳୀଙ୍କ ଦ୍ୱାର ରୁଦ୍ଧ ଘଟଣା ଏବଂ ଏହା ସହିତ ରାଧାନାଥଙ୍କ କଳ୍ପନା ପାଟବତାର ସମନ୍ୱୟରେ ଗଢ଼ିଉଠିଛି ପାର୍ବତୀ ଉତ୍ତରାର୍ଦ୍ଧର ଲଳିତ-କଳା-ବିଭବ । ଏପରି ଏକ କାଳ୍ପନିକ ପ୍ରଚେଷ୍ଟା ଦ୍ୱାରା କବି ଅଯଥା କଳଙ୍କିତ ରାଧାନାଥ ପ୍ରତିଭାକୁ ତଥା ଉତ୍କଳ ସଂସ୍କୃତିକୁ ରକ୍ଷା କରିବାର ଚେଷ୍ଟା କରିଛନ୍ତି । ରାଧାନାଥ ବର୍ଣ୍ଣିତ ପାର୍ବତୀ କାବ୍ୟର ଐତିହାସିକ ଭିତ୍ତିହୀନ କାହାଣୀରେ ବଳଭଦ୍ର କଳ୍ପନାରେ ପାଦେ ଆଗକୁ ବଢ଼ିଛନ୍ତି ମାତ୍ର ।



Digitized by srujanika@gmail.com

## ପାର୍ବତୀ କାବ୍ୟର ଐତିହାସିକତା:

ରାଧାନାଥଙ୍କ ସାହିତ୍ୟ ଥିଲା ସମନ୍ୱୟଧର୍ମୀ । ବିଦେଶୀ କଥାବସ୍ତୁର ଆହରଣ, ଏ ଦେଶର ଲୋକକଥା, ସଂସ୍କୃତି, ଇତିହାସ ଅନ୍ତରାଳରେ ଆହୃତ ଉପାଦାନର ସାମ୍ୟ ସନ୍ଧାନ ଏବଂ ଉଭୟର ଯଥାଯଥ ସମୀକରଣ । ପାର୍ବତୀ କାବ୍ୟ ବର୍ଣ୍ଣିତ ପିତା ଓ କନ୍ୟାର ଯୌନସମ୍ପର୍କ ହୁଏତ ପାଶ୍ଚାତ୍ୟ ଦେଶର ଏକ ଆଡମ୍ବର ହୋଇପାରେ, କିନ୍ତୁ ଉତ୍କଳ ମାଟିରେ ଏହାର କଳ୍ପନା ସୁଦ୍ଧା ଭୟାବହ। ଅଭିଶପ୍ତ ଅଗା ବଂଶର କାଳିମା-ମୟ ଇତିହାସ ଶିଶୁହତ୍ୟା, କନ୍ୟାହତ୍ୟା, ସ୍ୱାମୀହତ୍ୟା, ମାତୃ-ହତ୍ୟା ପାପରୁ ପାପର ଅଭ୍ୟୁଦୟ, ଗୋଟିଏ ହତ୍ୟାରୁ ଆଉ ଗୋଟିଏ ହତ୍ୟାର ଆୟୋଜନ। ଏଇ କଳଙ୍କିତ ଅଗା ପରିବାର ଜୀବନ ପର୍ଯ୍ୟାୟ ଗଙ୍ଗବଂଶରେ ଏକାନ୍ତ ସ୍ୱପ୍ନ (୯) ତେଣୁ ଆସ୍‌କାଇଲସ୍‌ଙ୍କ ନାଟକ ଗ୍ରୀକ୍-ସାହିତ୍ୟର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିବା ସ୍ଥଳେ ପାର୍ବତୀ କାବ୍ୟ ଓଡ଼ିଶା ମାଟିରେ ସମାଲୋଚିତ ହୋଇଛି । ପାର୍ବତୀ ଓ ଅନ୍ନପୂର୍ଣ୍ଣା ପରି ମହନୀୟ ନାରୀ ଚରିତ୍ର ସୃଷ୍ଟି ହୋଇଥିଲେ ମଧ୍ୟ ପିତା ଓ ପୁତ୍ରୀର କଳଙ୍କିତ ଯୌନ ସମ୍ପର୍କ ହିଁ ରାଧାନାଥଙ୍କୁ ବହୁ କଟୁ ମନ୍ତବ୍ୟର ଶରବ୍ୟ କରିଛି । ପାର୍ବତୀ କାବ୍ୟର ସମସ୍ତ ଚରିତ୍ରଙ୍କ ଐତିହାସିକତା ସମ୍ପର୍କରେ ଯୁକ୍ତିଯୁକ୍ତ ତଥ୍ୟ ଇତିହାସରେ ନାହିଁ ।

'କୌଶଲ୍ୟାଗଙ୍ଗ' ପୁଷ୍କରିଣୀ ଖୋଳାର କିମ୍ବଦନ୍ତୀକୁ ରାଧାନାଥ ରାୟ ଗ୍ରହଣ କରିଥିଲେ ମଧ୍ୟ 'କୌଶଲ୍ୟାଗଙ୍ଗ' ସମ୍ପର୍କରେ ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ'ରେ ତିନିଜଣ ରାଜାଙ୍କର ନାମୋଲ୍ଲେଖ ହୋଇଛି । (୧୦)

ପାର୍ବତୀ କାବ୍ୟରେ ରତ୍ନପୁର ରାଜାଙ୍କ ସହିତ ଗଙ୍ଗେଶ୍ୱରଙ୍କ ଯୁଦ୍ଧ ବିଷୟ ବର୍ଣ୍ଣିତ ହୋଇଛି। ଏହାର ଐତିହାସିକତା ସମ୍ପର୍କରେ ଅନୁଧ୍ୟାନ କଲେ ଜଣାପଡେ ଏହି ରତ୍ନପୁର ମୟୂରଭଞ୍ଜର ଠାକୁରମୁଣ୍ଡା ନିକଟବର୍ତ୍ତୀ ରତ୍ନପୁର ନୁହେଁ ବରଂ ଏହାର ସୀମା ଉଣା ଅଧିକେ ଛତିଶଗଡ ବା ଆଧୁନିକ ବିଳାସପୁର ରାୟପୁର ଜିଲ୍ଲା ମଧ୍ୟରେ ସୀମାବଦ୍ଧ ଥିଲା। ଏ ସାମ୍ରାଜ୍ୟ କଳଚୁରି ବା ହୈହୟ ବଂଶ ଦ୍ୱାରା ଅଧିଷ୍ଠିତ ହୋଇଥିଲା । (୧୧) ରତ୍ନପୁର ଯୁଦ୍ଧରେ ଜାଜ୍ୱଲଦେବଙ୍କ ନାତି ରତ୍ନଦେବ-୨ୟ ଗଙ୍ଗେଶ୍ୱର ବା ଚୋଡଗଙ୍ଗଙ୍କୁ ପରାସ୍ତ କରିଥିଲେ। ପରବର୍ତ୍ତୀ କାଳରେ ଜଟେଶ୍ୱର କାମାର୍ଣ୍ଣବ ମଧ୍ୟ ରତ୍ନପୁର ଅଧିପତି ପୃଥିରାଜ -୨ୟଙ୍କ ଦ୍ୱାରା ପରାସ୍ତ ହୋଇଥିଲେ। ଉଭୟ ଯୁଦ୍ଧର ବିଜୟଗାଥା କଳଚୁରୀମାନଙ୍କ ପ୍ରଶସ୍ତିକାରମାନେ ଲେଖିଯାଇଛନ୍ତି ।(୧୨)



Digitized by srujanika@gmail.com

କାବ୍ୟ ବର୍ଣ୍ଣିତ ଗଙ୍ଗେଶ୍ୱରଙ୍କ ରାଜଧାନୀ ପୁରୁଷୋତ୍ତମ । ମାତ୍ର ଇତିହାସ ଏହା ଅନୁମୋଦନ କରେ ନାହିଁ । ଚୋଡଗଙ୍ଗ ଦେବଙ୍କ ରାଜଧାନୀ କଟକ ଥିଲା । (୧୩)

ଗଙ୍ଗେଶ୍ୱରଙ୍କର ଅନେକ ରାଣୀଙ୍କ ନାମ ଇତିହାସରେ ଉଲ୍ଲେଖ ଥିଲେ ମଧ୍ୟ ପାର୍ବତୀ ନାମ ନାହିଁ । ବିଭିନ୍ନ ଶିଳାଲେଖରୁ ଚୋଡଗଙ୍ଗଙ୍କ ରାଣୀମାନଙ୍କର ନାମ ଜଣାପଡେ । ଯଥା- ଚୋଡ ମହାଦେବୀ, କସ୍ତୁରୀ କାମୋଦିନୀ, ଇନ୍ଦିରା, ଚନ୍ଦ୍ରଲେଖା, ସମଳା ମହାଦେବୀ, ପଦ୍ମଳା ଦେବୀ, ଲୀଳାବତୀ ଦେବୀ, ଶ୍ରୀୟା ଦେବୀ, ବେଣ ମହାଦେବୀ, ଲାବଣ୍ୟ ଦେବୀ, କଲ୍ୟାଣ ଦେବୀ, ଅନଙ୍ଗ ରଙ୍ଗିଣୀ, ସୁରସୁନ୍ଦରୀ ଏବଂ ଚନ୍ଦ୍ରବତୀ । (୧୪) ଗଙ୍ଗେଶ୍ୱରଙ୍କର କୌଶଲ୍ୟା ନାମ୍ନୀ କନ୍ୟା ଥିବା ମଧ୍ୟ କୌଣସି ଇତିହାସ ସ୍ୱୀକାର କରେ ନାହିଁ । (୧୫) ବରଂ ବୀର ଚୋଡଗଙ୍ଗ (ଗଙ୍ଗେଶ୍ୱର) କୋଶଳ ଜୟ କରି କୋଶଳର ରାଜକନ୍ୟାଙ୍କୁ ରାଣୀ କରିଥିବା ଓ ସେହି ରାଣୀ କୋଶଳା ଗଙ୍ଗ ବା କୋଶଳ ଦେବୀ ନାମରେ ପରିଚିତ ହୋଇଥିବା ସମ୍ଭବପର । ସେହି କୋଶଳା ମହାଦେବୀଙ୍କର ଶିଳାଲେଖ ୧୧୪୦ ଖ୍ରୀ: ମଧୁକେଶ୍ୱର ବା ମୁଖଲିଙ୍ଗମ ମନ୍ଦିରରେ ପ୍ରଦତ୍ତ ହୋଇଥିବାରୁ ସେହି ଧର୍ମପରାୟଣା ମହାରାଣୀଙ୍କ ନାମାନୁସାରେ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଦିତ ହୋଇଥିବା ସମ୍ଭବପର । (୧୬)

ପୁଣି ''ଆପଣାର ଦୁଷ୍କର୍ମ ଲୁକ୍କାୟିତ କରିବା ମାନସରେ ଗଙ୍ଗେଶ୍ୱର ରତ୍ନପୁରଠାରୁ କୌଶଲ୍ୟାଙ୍କୁ ଧଉଳି ପର୍ବତ ପାଖକୁ ପ୍ରେରଣ କରି ଦଣ୍ଡ ଦେବା ଓ ସେଠାରେ କୌଶଲ୍ୟାଗଙ୍ଗ ସରୋବର ଖନନ କରିବା ଅଯୌକ୍ତିକ ବୋଧହୁଏ। ଗଙ୍ଗେଶ୍ୱର ଇଚ୍ଛା କରିଥିଲେ ଦୁର୍ଭେଦ୍ୟ ଶିମିଳିପାଳ ପାହାଡ଼ରେ ଯେକୌଣସି ସ୍ଥାନରେ ତ ଏପରି ନିଧନ କାର୍ଯ୍ୟ କରିପାରିଥାନ୍ତେ । ତେଣୁ ମହାରାଜା ବିଜୟ ବୈଜୟନ୍ତି ଉଡ଼ାଇ ନୀଳାଚଳ ଫେରିବା ପୂର୍ବରୁ ଏପରି ଏକ ପ୍ରାୟଶ୍ଚିତ୍ତ ବିଧାନ ପାଇଁ ବୃହତ୍ ପୁଷ୍କରିଣୀ ଖନନ କରାଇବା ଏବଂ ତାହା ପୁଣି ତାଙ୍କର ରାଜଧାନୀରେ ଅନୁପସ୍ଥିତ କାଳରେ ସଂଘଟିତ ହୋଇଥିବା କେବଳ ଅବିଶ୍ୱାସ୍ୟ ନୁହେଁ, ଅସମ୍ଭବ ମଧ୍ୟ। (୧୭)

ଚୋଡ଼ଗଙ୍ଗ ଏବଂ ଗଙ୍ଗେଶ୍ୱର ଏକମାତ୍ର ବ୍ୟକ୍ତି କିନ୍ତୁ ରାଧାନାଥ ଗଙ୍ଗେଶ୍ୱରଙ୍କୁ ଚୋଡଗଙ୍ଗଙ୍କ ଆତ୍ମଜ ରୂପେ ବର୍ଣ୍ଣନା କରିଛନ୍ତି । ଚୋଡଗଙ୍ଗ ନିଜ ରାଜତ୍ୱର ଶେଷ ଆଡକୁ ଗଙ୍ଗେଶ୍ୱର ନାମରେ ସିଦ୍ଧି ଲାଭ କରିବା କଥା ବିଭିନ୍ନ ଶିଳାଲେଖରୁ ଜଣାପଡେ ।

'' ପାଦୌ ଯସ୍ୟ ଧରାନ୍ତରୀକ୍ଷ ମଖିଳଂ ନାଭିସ୍ତୁ ସର୍ବାଦିଶଃ
ଶ୍ରୋତଂ ନେତ୍ରଯୁଗଂ ରବୀନ୍ଦୁ ଯୁଗଳଂ ମୁର୍ଦ୍ଧାପି ଚ ଦ୍ୟୌରସୌ



Digitized by srujanika@gmail.com

ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତେଃ କୋ ନାମ କର୍ତ୍ତୁଂକ୍ଷମଃ
ତସ୍ୟୈତାଦ୍ୟନୃପୈ ରୁପେକ୍ଷିତମୟଂ ଚକ୍ରେଥ ଗଙ୍ଗେଶ୍ୱରଂ ।'' (୧୮)

ଏତଦ୍‌ବ୍ୟତୀତ କୋର୍ଣ୍ଣି ତାମ୍ରଫଳକରେ ଚୋଡଗଙ୍ଗଙ୍କୁ 'ଶ୍ରୀଗଙ୍ଗଚୂଡାମଣୀ' ରୂପେ ବର୍ଣ୍ଣନା କରାଯାଇଛି । (୧୯)

''But to our utter curiosity, we do come across one of the special surname of chodaganga called 'Gangeswar' in the Parvati Kavyam of late Radhanath Roy where kausalya is supposed to be the daughter of the king Gangeswar. In this connection it may be remembered that the imaginary work of the poet late Radhanath is neigther based on the prevailing customs and traditions of the Hindu society or on the Historical truth. Hence it is not appealing and convincing and no historical importance should be given to it.'' (୨୦)

ଯେହେତୁ 'ପାର୍ବତୀ କାବ୍ୟର ବାସ୍ତବତା ଅପେକ୍ଷା କଳ୍ପନାର ସମାବେଶ ଅଧିକ, ତେଣୁ କାଳ୍ପନିକ କାହାଣୀ ସଂଯୋଜନା କରି ଉତ୍କଳୀୟ ସଂସ୍କୃତିକୁ ଅକଳଙ୍କ ରଖିବାରେ କବି ବଳଭଦ୍ରଙ୍କ ପ୍ରଚେଷ୍ଟା ମହାର୍ଘ ହୋଇଛି । କଳ୍ପନାଶ୍ରୟୀ କବି ରାଧାନାଥ ଐତିହାସିକ ଯଥାର୍ଥ୍ୟହୀନ ଏକ କାହାଣୀ ପରିବେଷଣ କରି ଉତ୍କଳୀୟ ପରମ୍ପରାକୁ କଳଙ୍କିତ କରିଥିବା ସ୍ଥଳେ କବି ବଳଭଦ୍ର ଦେବ କଳ୍ପନାର ଆଶ୍ରୟ ନେଇ ସେହି କଳଙ୍କିତ ଅଧ୍ୟାୟକୁ ପ୍ରକ୍ଷାଳନ କରି ଉତ୍କଳ ସାହିତ୍ୟର ଉତ୍କର୍ଷତା ପ୍ରତିପାଦନ କରି ଯାଇଛନ୍ତି । ଏ ପର୍ଯାୟରେ ବିଶ୍ୱନାଥ କରଙ୍କ ପ୍ରଶଂସା ପ୍ରଣିଧାନଯୋଗ୍ୟ । ''କବି (ବଳଭଦ୍ର) ଅନ୍ୟ ସକଳ ବିଷୟରେ ରାଧାନାଥଙ୍କୁ ଅନୁସରଣ କରି ମଧ କାବ୍ୟର ଉପସଂହାର ଭିନ୍ନ ପ୍ରକାର କରି ବିଚକ୍ଷଣତାର ପରିଚୟ ଦେଇଛନ୍ତି । କାବ୍ୟ (ରାଧାନାଥଙ୍କ) ପୂର୍ବାର୍ଦ୍ଧରେ ଯାହା ଜାତୀୟ କଳଙ୍କ ବୋଲି ବିବେଚିତ ହୋଇ ଆସିଅଛି, କବି ତାହା କ୍ଷାଳନ କରିବାକୁ ଚେଷ୍ଟା କରି ଆସିଛନ୍ତି । ସେଥିପାଇଁ ସେ ଦୈବୀ ମାୟାର ଅବତାରଣା କରିଅଛନ୍ତି । ଆଧୁନିକ ଯୁଗରେ ସେ ପ୍ରକାର ଦୈବୀ ମାୟାର ସ୍ଥାନ ସାହିତ୍ୟରେ ନାହିଁ କହିଲେ ଚଳେ । ତାହା କାବ୍ୟର ଗୁଣ ନ ହୋଇ ଦୋଷରୂପେ ପରିଣତ ହୋଇଅଛି । ମାତ୍ର ରାଧାନାଥଙ୍କର କୌଣସି କାବ୍ୟ ସେ ଦୋଷରୁ ମୁକ୍ତ ନୁହେଁ। ପାର୍ବତୀ କାବ୍ୟରେ ଏବଂ ଉତ୍ତରାର୍ଦ୍ଧର ସୂଚନାରେ ସେ ଉକ୍ତ ପ୍ରକାର୍‌ ଦୈବୀମାୟାକୁ ବାଦ ଦେଇ ନାହାନ୍ତି । ସୁତରାଂ ବର୍ତ୍ତମାନ କବିଙ୍କୁ ସେଥିପାଇଁ ଦୋଷୀ କରାଯାଇ ନପାରେ । ବରଂ ସେ ଯେପରି ଭାବରେ ଦୈବୀମାୟାର ଅବତାରଣା



Digitized by srujanika@gmail.com

କରି କଳଙ୍କ କ୍ଷାଳନ କରିଛନ୍ତି ଏବଂ ବିୟୋଗାନ୍ତ ସୂଚନା ପରିହାର କରି କାବ୍ୟଟିକୁ ମିଳନାନ୍ତ କରି ପରିସମାପ୍ତି କରିଅଛନ୍ତି, ତାହା ଯଥାର୍ଥରେ ପ୍ରଶଂସନୀୟ । ଆମ୍ଭେମାନେ ଏଥିପାଇଁ କବିଙ୍କୁ ଅନ୍ତର ସହିତ ଅଭିନନ୍ଦନ କରୁଅଛୁ । (୨୧)

ରାଧାନାଥ ପ୍ରେମର ପଟ୍ଟାନ୍ତରହୀନ ଉଦାହରଣ ପ୍ରଦର୍ଶନ ପୂର୍ବକ ନିଜସ୍ୱ ନିର୍ଭୀକ ମତପ୍ରକାଶ ତଥା ମୌଳିକ କବି ପ୍ରତିଭାର ପରିଚୟ ପ୍ରଦାନ କରି ବଳଭଦ୍ର ଦେବ ଯୁଗ ଯୁଗ ପାଇଁ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସ୍ମରଣୀୟ ହୋଇ ରହିବେ । ବଳଭଦ୍ର ଦେବଙ୍କ ଦ୍ୱାରା ସଂଯୋଜିତ କଳ୍ପନାସିକ୍ତ କାହାଣୀର ଐତିହାସିକତା ଗବେଷଣା ସାପେକ୍ଷ; ତଥାପି ରାଧାନାଥ କଳଙ୍କକୁ କ୍ଷାଳନ ଦିଗରେ 'ପାର୍ବତୀ ଉତ୍ତରାର୍ଦ୍ଧ' ରେ ସେ ଯେଉଁ ବୌଦ୍ଧିକ ଭୂମିକା ସମ୍ପାଦନ କରିଛନ୍ତି, ସେଥିପାଇଁ ଉତ୍କଳ ସାହିତ୍ୟ କ୍ଷେତ୍ରରେ ତାଙ୍କର ମହାର୍ଘ ଦାନ ଚିର ଅମଳିନ ରହିବ ।ППП

## ସହାୟକ ସୂଚନା


୧) ରାଧାନାଥଙ୍କ ଶିଳ୍ପ ମାନସ : ଆଧୁନିକତାର କ, ଖ ଓ ଅନ୍ୟାନ୍ୟ ଆଲୋଚନା- ଅଧ୍ୟାପକ ଚିନ୍ତାମଣି ବେହେରା: ପୃ-୯୦-୯୧ ।

୨) ସାହିତ୍ୟ ମୀମାଂସା- ଅଧ୍ୟାପକ ଭାବଗ୍ରାହୀ ମିଶ୍ର ।

୩) ମାଦଳା ପାଞ୍ଜି - ପ୍ରାଚୀ ସଂସ୍କରଣ - ପୃ- ୨୩-୨୪ ।

୪) '' ଗ୍ରନ୍ଥାକାର ମହୋଦୟ ଆପଣାର ପ୍ରାଣପ୍ରତିମ ପ୍ରିୟତମ ପୁତ୍ରକୁ କଠିନ ପୀଡାଗ୍ରସ୍ତ ହେବାର ଦେଖି ସର୍ବଦା ଚିନ୍ତିତ ରହିବାରୁ 'ପାର୍ବତୀ' କାବ୍ୟର ରଚନା ଅସଂପୂର୍ଣ୍ଣ ଭାବରେ ରହିଲା । କବି ପୁତ୍ରଙ୍କ ପୀଡାରେ ଯେପରି ଦୁଃଖିତ, ତହିଁରେ ପାର୍ବତୀ ଅବଶିଷ୍ଟାଂଶ ଯେ ଶୀଘ୍ର ରଚିତ ଓ ମୁଦ୍ରିତ ହୋଇ ଉତ୍କଳ ସାହିତ୍ୟ ରସିକମାନଙ୍କ ପ୍ରୀତି ସମ୍ପାଦନ କରିବ ଏପରି ସମ୍ଭାବନା ଅତି ଅଳ୍ପ ।'' ଭୂମିକା- ପାର୍ବତୀ: ଅନୁମତ୍ୟନୁସାରେ- ନୀଳମଣି ବିଦ୍ୟାରତ୍ନ (ବାମଣ୍ଡା) ୨୫।୬।୧୮୯୧ ।

(୫) (କ) 'ପାଠ୍ୟପୁସ୍ତକ ସଂକ୍ରାନ୍ତୀୟ ରାଧାନାଥଙ୍କ ବିରୁଦ୍ଧରେ ପଣ୍ଡିତ ଗୋବିନ୍ଦ ରଥ ପ୍ରମୁଖଙ୍କ ତୀବ୍ର ସମାଲୋଚନା ଫଳରେ ରାଧାନାଥଙ୍କ ଚିତ୍ତର ଅଖଣ୍ଡ ଶାନ୍ତି ଓ ସୁସ୍ଥତା ତିରୋହିତ ହେବାରୁ ସେ 'ପାର୍ବତୀ'କୁ ଅସଂପୂର୍ଣ୍ଣ ଅବସ୍ଥାରେ ରଖିବାକୁ ବାଧ୍ୟ ହେଲେ ।''- ଓଡ଼ିଆ ସାହିତ୍ୟର ଇତିହାସ, ପୃ- ୨୯୯-୩୦୦: ଡଃ ନଟବର ସାମନ୍ତରାୟ ।

(ଖ) 'ସମ୍ବଲପୁର ହିତୈଷିଣୀ'ରେ ପାର୍ବତୀ କାବ୍ୟର ଧାରାବାହିକ ପ୍ରକାଶନ ସମୟେ ବର୍ଣ୍ଣିତ କଳଙ୍କ ଚିତ୍ରର ତୀବ୍ର ସମାଲୋଚନା ଯୋଗୁ ପାର୍ବତୀ କାବ୍ୟ ଅସଂପୂର୍ଣ୍ଣ ଥିବାର ଅନୁମାନ କରାଯାଏ । - ରାଧାନାଥଙ୍କ କାବ୍ୟରେ ନାରୀର ସ୍ଥାନ - ଜଳଂଧର ଦେବ ସହକାର-୧୪/୫ ।

୬) କବି ରାଧାନାଥ ଓ ତଦୀୟ କବିତା: ନନ୍ଦକିଶୋର ବଳ: ନନ୍ଦକିଶୋର ଗ୍ରନ୍ଥାବଳୀ: ପ୍ରଥମ ସଂସ୍କରଣ, ମନମୋହନ ପ୍ରେସ୍-କଟକ -୧୯୫୫, ପୃ-୯୭୩ ।

୭) ବଳଭଦ୍ର ଗ୍ରନ୍ଥାବଳୀର ଉଦ୍‌ବୋଧନ : ବଡ କୁମାରାଣୀ ( ବାମଣ୍ଡା-୧୯୩୨) ।

୮) (କ) ଉପଧା ବିଚାର: ମିଶ୍ର ଶ୍ରୀ ବ୍ରଜବନ୍ଧୁ ଦେବଶର୍ମା । ବାମଣ୍ଡା-୧୯୧୩




Digitized by srujanika@gmail.com

(ଖ) '' ଉପଧା ମିଳନ ପରି କୃତ୍ରିମ ସୌଷ୍ଠବକୁ ପ୍ରଶ୍ରୟ ଦେବା ଦ୍ୱାରା ଓଡ଼ିଆ ସାହିତ୍ୟର ଅନିଷ୍ଟ ହୋଇଚି । ଭାଷା ତା'ର ସ୍ୱଚ୍ଛନ୍ଦତା ହରେଇଚି, କବି ତା' ଆଙ୍ଗୁଠିରେ ସୁନାର ଶୃଙ୍ଖଳ ଦେଇଛି ।''- ଭୂମିକା ( କୋଣାର୍କେ) ଡଃ ମାୟାଧର ମାନସିଂ ।

(୯) ଓଡ଼ିଆ ସାହିତ୍ୟର ଇତିହାସ - ପୃ-୨୯୧- ଡଃ ନଟବର ସାମନ୍ତରାୟ ।

୧୦) (କ) ଧର୍ମଶୀଳ କେଶରୀ : ଏହାଙ୍କ ଅମଳରେ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଳା ହୋଇଥିଲା । ଏ ପୁଷ୍କରିଣୀ ଚାରିଦିଗରେ ଚାରି ଶାସନ ବସାଇ ମଧ୍ୟରେ ବାରବାଟୀ ଦୀପଦଣ୍ଡୀ କରାଇଥିଲେ: ପ୍ରାଚୀନ ଉତ୍କଳ: ଜଗବନ୍ଧୁ ସିଂହ ୧ମ ଭାଗ - ପୃ-୨୬୫ ।

(ଖ) କାମାର୍ଣ୍ଣବ ବା ଗଙ୍ଗେଶ୍ୱର: ଏ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଳାଇଥିଲେ । ଏ ପୁଷ୍କରିଣୀ ପିପିଲି ନିକଟବର୍ତ୍ତୀ । ରାଣୀମାନେ ଏହାଙ୍କ ମୁଣ୍ଡ ଛେଚି ମାରି ପକାଇଲେ । -ତତ୍ରୈବ- ପୃ-୨୮୯ ।

ଗ) ଭାନୁ ନରସିଂହ (କବି) : କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଳାଇଥିଲେ । ଗୀତଗୋବିନ୍ଦ ଦେଉଳ ନାଟିରେ ଖଞ୍ଜା କଲେ । ବନ୍ତଳ ସିଂହ ଗ୍ରାମ ଦାନ କଲେ । ଏ ଭୋଗ କଲେ ୩୬ ବର୍ଷ। -ତତ୍ରୈବ - ପୃ-୨୯୨ ।

୧୧) Epigraphia Indica, Vol. XXI P-159

୧୨) x x x ଶ୍ରୀ ରତ୍ନଦେବୋ ନୃପଃ ।
ଯଶ୍ଚୋଡଗଙ୍ଗ ନୃପତିଂ କଳିଙ୍ଗ ଦେଶାଧିପଂ ଗଜାଧୀଶଂ
ସମିତିଂ ଜଟେଶ୍ୱର ଜନକଂ କନକାଶ୍ୱଗଜାନ୍ ଜିତବାନ୍ ।''
-Kharod Stone Inscription- Mahakosala Historical Society's Paper-Vol,-II, P-61

୧୩) The History of Orissa- P-201-R.D. Banerji

୧୪) Four hundred years of Orissa- P-43: Dr. A.K. Panda- Punthi Pustak, Calcutta-1987.

୧୫) ତତ୍ରୈବ,(ପୃ- ୪୩)

୧୬) ରାଧାନାଥଙ୍କର ଦୁଇ କାବ୍ୟର ନାୟକ ଚୋଡଗଙ୍ଗ ଓ ଗଙ୍ଗେଶ୍ୱର - ଡଃ ବିଚିତ୍ରାନନ୍ଦ ମହାନ୍ତି- ଝଙ୍କାର - ୩୫ଶ ବର୍ଷ ୮ମ ସଂଖ୍ୟା ।

୧୭) ତତ୍ରୈବ ।

୧୮) In Dasgoba copper plate of Rajaraja-III, dated Saka Samvat 1120 (Ed- Dr. D.C. Sircar and S.R. Sarma in Epigraphia Indica Vol. - XXXI PP- 249-262)

୧୯) Korni Copper Plate quoted in Journal of Andhra Historical Research Society- P-III, PP-106-107

୨୦) For Hundred years of Orissa- P-43: Dr. A.K. Panda- Punthi Pustak, Calcutta-1987.

୨୧) ଉତ୍କଳ ସାହିତ୍ୟ '' ମନ୍ତବ୍ୟ'' (ସମ୍ପାଦକଙ୍କ ଅଭିମତ)୩୧ଶ ଭାଗ - ୬ଷ୍ଠ ସଂଖ୍ୟା । ଆଶ୍ୱିନ-୧୩୩୫, ପୃ-୨୬୪ ।



Digitized by srujanika@gmail.com

# ହିମାଚଳ ଓ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ସୃଷ୍ଟି ମାନସ

ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ହିମାଚଳ କବିତା ଏକ ଅନନ୍ୟ ସୃଷ୍ଟି । ହିମାଚଳର ସୃଷ୍ଟି ସମ୍ପଦ ଅପେକ୍ଷା ରାଧାନାଥଙ୍କ ବିତର୍କିତ ମନ୍ତବ୍ୟ ହିଁ ଏହି କବିତାକୁ ଅଧିକ ଚର୍ଚ୍ଚିତ କରିଛି। ରାଧାନାଥଙ୍କ ମନ୍ତବ୍ୟରେ ଦିଗ୍‌ହରା ଓଡ଼ିଆ ସମାଲୋଚକ ହିମାଚଳକୁ ତଥା ଏହାର ସ୍ରଷ୍ଟାକୁ ଉପଯୁକ୍ତ ସମ୍ମାନ ଦେବାରେ ଅବହେଳା କରିଛନ୍ତି।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଉତ୍କଳପ୍ରଭାର ଅବଦାନ ମହନୀୟ । ଆଧୁନିକ ଓଡ଼ିଆ ସାହିତ୍ୟକୁ ପ୍ରତିଷ୍ଠା ଦେବାର ଅନ୍ୟତମ ସାରସ୍ୱତ କ୍ଷେତ୍ର ମୟୂରଭଞ୍ଜର ଏହା ମୁଖପତ୍ର । ଗୋବିନ୍ଦ ଚନ୍ଦ୍ର ମହାପାତ୍ର ମୟୂରଭଞ୍ଜ ରାଜାଙ୍କ ଗୃହ ଶିକ୍ଷକ ଓ ପରବର୍ତ୍ତୀ ପର୍ଯ୍ୟାୟରେ ଦେୱାନ ପଦ ଅଳଙ୍କୃତ କରିଥିଲେ । ସେ ପ୍ରଭାର ସମ୍ପାଦନା କାର୍ଯ୍ୟ ସହିତ ନିବିଡ଼ି ଭାବେ ସଂପୃକ୍ତ ଥିଲେ । ପ୍ରଭାର ପୁରସ୍କାର ବିଚାରକ ମଣ୍ଡଳୀରେ ମୋହିନୀ ମୋହନ ଧର, ବୃନ୍ଦାବନ ଚନ୍ଦ୍ର ପଣ୍ଡାଙ୍କ ସହିତ ଗୋବିନ୍ଦଚନ୍ଦ୍ର ମହାପାତ୍ର ମଧ୍ୟ ଥିଲେ ।

ପ୍ରଭାର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରେ ହିମାଚଳ କବିତା ପ୍ରକାଶିତ । ଏହି ପତ୍ରିକାର କବିତାଗୁଡିକ ଉପରେ ମତାମତ ଦେଇ ରାଧାନାଥ ହିମାଚଳର ମହାନତା ସ୍ୱୀକାର କରନ୍ତି । This is a composition far above the average and deserves a permanent place in the oriya literature. It is a piece less seen and one ought to see the Himalayas to be above to appreciate this truely beautiful poem. It would be unfair in my opinion to treat it on the same footing with the other poetical pieces published in the utkala prava. R.N. Rai. Cuttack-1-11-91(ଉତ୍କଳ ପ୍ରଭା-୧/୭)। ରାଧାନାଥଙ୍କ ଏହି ମତକୁ ବିଦ୍ୟାରତ୍ନ ପ୍ରମୁଖ ସମକାଳୀନ ବୁଦ୍ଧିଜୀବୀ ଗଣ ଗ୍ରହଣ କରି ପାରି ନ ଥିଲେ । ପୁନଶ୍ଚ ପ୍ରଭାର ପ୍ରଥମ ଭାଗ ଷଷ୍ଠ ସଂଖ୍ୟାରେ ପ୍ରକାଶିତ ଚିଲିକା କାବ୍ୟ ଗୋବିନ୍ଦବାବୁଙ୍କ ହିମାଚଳ ସହିତ ଏକଶତ ଟଙ୍କା ଲେଖାଏଁ ପୁରସ୍କାର ଲାଭ କରିଥିଲା । ଏହି ପୁରସ୍କାର ଚୟନ ଉପରେ ଆକ୍ଷେପ କରି ରାଧାନାଥ ଗଙ୍ଗାଧରଙ୍କୁ (୧୦-୭-୧୮୯୪) ଲେଖିଥିଲେ- ପ୍ରଭା ଅଫିସର ପାରିତୋଷିକ ବିବରଣ ଦେଖି ଆବାକ ହୋଇଅଛି । ହୀରାଜିରାର ସମାନ ଦର, ଆମ୍ଭମାନଙ୍କ ପରି ଅକ୍ଷମ ଲୋକଙ୍କର ଭଲମନ୍ଦ ଜ୍ଞାନ ବାସ୍ତବିକ ମନସ୍ତାପର କାରଣ (କବିଲିପି- ପୃ-୬୫) ଏହା ପୂର୍ବରୁ ସମ୍ବଲପୁର ହିତୈଷିଣୀ ୨-୩-୧୮୯୨ ସଂଖ୍ୟାରେ ଏକ ସ୍ପଷ୍ଟୀକରଣ ଦେଇ



Digitized by srujanika@gmail.com

ରାଧାନାଥ ନିଜ ମତକୁ ଖଣ୍ଡନ କରିଥିଲେ । ମୁଁ କାହିଁକି ଏପରି ମତ ଦେଲି- ଏହି ପ୍ରଶ୍ନର ଉତ୍ତରରେ କହୁଛି ଯେ ଗୋବିନ୍ଦବାବୁଙ୍କ କବିତାରେ ପ୍ରସାଦଗୁଣର ନିତାନ୍ତ ଅଭାବ । କୌଣସି କୌଣସି ସ୍ଥଳରେ ଅର୍ଥ ଗ୍ରହଣ ହେବାର ଦୁର୍ଘଟ । ଏକ ଏକ ସ୍ଥଳରେ ଭାବ ନିତାନ୍ତ ଅପରିସ୍ଫୁଟ ରୂପରେ ପ୍ରକାଶିତ ହୋଇଛି ।

ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି, ପ୍ରସାଦ ଗୁଣର ଅଭାବ ଦୃଷ୍ଟିରେ ଗୋବିନ୍ଦବାବୁଙ୍କ ରଚନାକୁ କେହି ଯେବେ ନିକୃଷ୍ଟ ରଚନା ମଧ୍ୟରେ ପରିଗଣିତ କରନ୍ତି, ସେଥିରେ ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେବି ନାହିଁ । ବାସ୍ତବରେ ଏ ଅଂଶରେ ଗୋବିନ୍ଦ ବାବୁଙ୍କ ତ୍ରୁଟି ଏପରି ପରିସ୍ଫୁଟ ଯେ ସେଥି ସମ୍ବନ୍ଧରେ  ମତଭେଦ  ହେବାର ସମ୍ଭାବନା ନାହିଁ ।

ରାଧାନାଥଙ୍କ ଏହି ପରସ୍ପର ବିରୋଧୀ ମତ ହିଁ ଗୋବିନ୍ଦ ବାବୁଙ୍କ ହିମାଚଳକୁ ଏକ ଅଯଥା ବିତର୍କ ବଳୟକୁ ଟାଣି ଆଣିଥିଲା । ଏହାହିଁ ଥିଲା ହିମାଚଳର ନିରପେକ୍ଷ ମୂଲ୍ୟାୟନ ଦିଗରେ ଅନ୍ତରାୟ । ହିମାଚଳ  କବିତାର ସୃଷ୍ଟି ଶିଳ୍ପର ବିଶ୍ଲେଷଣ ପୂର୍ବରୁ ଗୋବିନ୍ଦ ଚନ୍ଦ୍ରଙ୍କର ସୃଷ୍ଟି ମାନସର ସଂକ୍ଷିପ୍ତ ପରିଚୟ ପ୍ରଦାନ ଆବଶ୍ୟକ ।

ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଏପ୍ରିଲ ୨୮,୧୮୪୫ ମସିହାରେ ଭଦ୍ରକର ଜଗନ୍ନାଥପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ପିତା କୃଷ୍ଣଦେବ ମହାପାତ୍ର ଓ ମାତା ସରସ୍ୱତୀ ଦେବୀ । ୧୮୬୪ ଖ୍ରୀରେ ସେ ମେଟ୍ରିକ୍ ପାସ୍ କରି ଏଣ୍ଟ୍ରାନ୍ସ ପଢ଼ିଥିଲେ । ଅଧ୍ୟୟନ ପରେ ଶିକ୍ଷକତା କାର୍ଯ୍ୟକୁ ଆଦରି ନେଇଥିଲେ । କାର୍ଯ୍ୟ କ୍ଷେତ୍ରରେ ଡେପୁଟୀ ଇନ୍ସପେକ୍ଟର ପଦକୁ ଉନ୍ନୀତ ହୋଇଥିଲେ । ୧୮୭୪ରେ ପୁରୀଠାରେ କାର୍ଯ୍ୟ କରୁଥିବା ବେଳେ ଜନ୍ ବୀମ୍ସ୍‌ଙ୍କ କ୍ରୋଧର ଶୀକାର ହୁଅନ୍ତି । ବ୍ରିଟିଶ୍ ସାହେବ ଜନ୍ ବୀମ୍ସଙ୍କ ସ୍କୁଲ ପରିଦର୍ଶନ ପରେ ଗୋବିନ୍ଦ ଚନ୍ଦ୍ର ବିଦ୍ୟାଳୟ ପ୍ରାଙ୍ଗଣକୁ ଗୋବର ପାଣିରେ ଧୋଇଥିଲେ । ଏହି ଘଟଣା ହିଁ ବୀମ୍ସଙ୍କ କ୍ରୋଧର କାରଣ ହୋଇଥିଲା । ଫଳରେ ସେ ଶିକ୍ଷକତା ପଦରୁ ବହିଷ୍କୃତ ହୋଇଥିଲେ । ପରେ ପରେ ଢେଙ୍କାନାଳ ଓ ନୟାଗଡ ରାଜାଙ୍କ ଅଧୀନରେ ଶିକ୍ଷକତା କରିଥିଲେ ମଧ୍ୟ ବୀମ୍ସଙ୍କ ଯୋଗୁ ଶିକ୍ଷକତା ଛାଡିବାକୁ  ବାଧ୍ୟ ହୋଇଥିଲେ । ଢେ଼ଙ୍କାନାଳ ରାଜାଙ୍କ ଗୃହଶିକ୍ଷକ ଥାଇ ୧୮୭୭ରେ ବହିଷ୍କୃତ ହୋଇଥିଲେ । ପରେ ଭଦ୍ରକର ଚରମ୍ପା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ । ୧୮୮୦ରୁ ଶେଷ ପର୍ଯ୍ୟନ୍ତ ସେ ମୟୂରଭଞ୍ଜ ରାଜାଙ୍କ ଗୃହ ଶିକ୍ଷକ ତଥା ଦେଓ୍ୱାନ ରୂପେ  କାର୍ଯ୍ୟ କରିଥିଲେ । ଏପ୍ରିଲ ୨୮,୧୯୦୭ରେ ଏହି ମହାପୁରୁଷଙ୍କର ମହାପ୍ରୟାଣ ଘଟିଥିଲା । ଗୋବିନ୍ଦଚନ୍ଦ୍ର ଆଜୀବନ ସାରସ୍ୱତ ସେବକ । ତାଙ୍କର ସମସ୍ତ ରଚନା ସଂକଳିତ ହୋଇପାରିନାହିଁ । ତାଙ୍କର କବିତ୍ୱ ଓ ବ୍ୟକ୍ତିତ୍ୱର ପ୍ରକୃଷ୍ଟ ମୂଲ୍ୟାୟନ ଏ



Digitized by srujanika@gmail.com

ଯାବତ ହୋଇପାରିନାହିଁ । ତାଙ୍କର ବଂଶଧରଙ୍କ ଦ୍ୱାରା ଇଂରାଜୀରେ ରଚିତ ପୁସ୍ତକ Biswamber Bidyabhusan and Gobinda chandra Mahapatra; Two poineers of the oriya renaissance. (1993) ରୁ ଗୋବିନ୍ଦବାବୁ ଓ ତାଙ୍କ ଜ୍ୟେଷ୍ଠ ଭ୍ରାତା ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କ ଜୀବନୀର ସମ୍ୟକ ପରିଚୟ ମିଳିଥାଏ ।

ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ସାରସ୍ୱତ କୃତିଗୁଡିକ ହେଲା, ରଘୁବଂଶ (ସଂସ୍କୃତରୁ ପଦ୍ୟାନୁବାଦ-୧୮୬୮) ହିତପାଠ (୧୮୭୪), ବର୍ଣ୍ଣବୋଧକ (୧୮୭୪), ହରହର ରିଆ ପହିଲ ପୋଥି ( ସାନ୍ତାଳୀ ଓଡ଼ିଆ ପ୍ରାଇମର-୧୮୮୧), ଭଗିରଥ କିର୍ତ୍ତୀକଳାପ (୧୮୭୭), ମହାଭାରତ (ଅନୁବାଦ), ଚକଡାପୋଥି ଇତ୍ୟାଦି।

ଉତ୍କଳପ୍ରଭାରେ ପ୍ରକାଶିତ ମୋ ଶିଶୁ, ଦୃଶ୍ୟରାଜି ଓ ହିମାଚଳ ଗୋବିନ୍ଦଚନ୍ଦ୍ରଙ୍କର କବିତ୍ୱର ପରାକାଷ୍ଠା ପ୍ରଦର୍ଶନ କରେ । ହିମାଚଳ ପ୍ରାକ ଚିଲିକା ଯୁଗୀୟ ଏକ ପ୍ରମୁଖ ପ୍ରକୃତି ବର୍ଣ୍ଣନାମୂଳକ କାବ୍ୟ । ଏହା ପୂର୍ବରୁ ବର୍ଣ୍ଣନାତ୍ମକ କାବ୍ୟ ରୂପେ ଗୋବିନ୍ଦ ରଥଙ୍କ କଲିକତା ଦର୍ଶନ (୧୮୭୫), ମେଳା ଦର୍ଶନ (୧୮୮୪), କଟକ ଦର୍ଶନ (୧୮୮୫), ଲାଟ ଦର୍ଶନ (୧୮୯୧), କବିତା କଳାପ (୧୮୭୮), ଦାମୋଦର ପଟ୍ଟନାୟକଙ୍କ କପିଳାସ କ୍ଷେତ୍ର (୧୮୮୫) ପ୍ରଭୃତି ଦୃଷ୍ଟିଗୋଚର ହୁଏ। ଏଥି ପୂର୍ବରୁ ଉତ୍କଳ ଦର୍ପଣରେ ପ୍ରକାଶିତ ଉତ୍କଳର ପ୍ରାକୃତିକ ଶୋଭା ଶୀର୍ଷକରେ ଏକ କବିତା ମଧ ବର୍ଣ୍ଣନାତ୍ମକ କାବ୍ୟର ସ୍ୱାକ୍ଷର ବହନ କରେ ।

ପ୍ରାକ୍ ଚିଲିକା ପ୍ରକୃତି ବର୍ଣ୍ଣନା ମୂଳକ କାବ୍ୟ ସମୂହର ସ୍ୱରୂପ ବିଶ୍ଳେଷଣ କଲେ ଉପରୋକ୍ତ କବିତାଗୁଡିକର ପର୍ଯ୍ୟାଲୋଚନା ସର୍ବାଦୌ କର୍ତ୍ତବ୍ୟ। କଲିକତା ଦର୍ଶନ, ମେଳା ଦର୍ଶନ, କଟକ ଦର୍ଶନ ଓ ଲାଟ ଦର୍ଶନ ବର୍ଣ୍ଣନାତ୍ମକ ହେଲେ ମଧ ମୁଖ୍ୟତଃ ଭ୍ରମଣ ବିବରଣୀ ମୂଳକ କାବ୍ୟ । କବିତା କଳାପର ପୂର୍ଣ୍ଣିମୀର ନିଶାକାଳ, ପ୍ରକୃତିର ଶୋଭା, ପୁରୁଷୋତ୍ତମର କେତେକ ଦୃଶ୍ୟ, ପ୍ରଭାତ ପ୍ରଭୃତି କବିତାରେ ପ୍ରକୃତିର ଅନବଦ୍ୟ ରୂପ ପ୍ରତିଫଳିତ । କପିଳାସ କ୍ଷେତ୍ର ଓ ଉତ୍କଳର ପ୍ରାକୃତିକ ଶୋଭାରେ ମଧ ଯଥାସାଧ୍ୟ ପ୍ରାକୃତିକ ଚିତ୍ର ସ୍ଥାନ ଲଭିଛି । ପ୍ରକୃତି ଚିତ୍ରଣର ପ୍ରାରମ୍ଭିକ ଉଦ୍ୟମ ରୂପେ ହିମାଚଳ କବିତାକୁ ସମ୍ମାନ ଦିଆଯାଇପାରେ ।

ଏହି କବିତାରେ ପ୍ରକୃତି ବର୍ଣ୍ଣନାର ସ୍ୱରୂପ ଅତି ସାଧାରଣ । ହିମାଳୟ ଅଧିତ୍ୟକାର ସୁନ୍ଦର ବର୍ଣ୍ଣନା ଦେବାରେ କବି କାର୍ପଣ୍ୟ କରି ନାହାନ୍ତି । ଯଦିଓ ରାଧାନାଥ ନିଜର ମତକୁ ପରବର୍ତ୍ତୀ ସପର୍ଯ୍ୟାୟରେ ଖଣ୍ଡନ କରିଛନ୍ତି ତଥାପି ମଧ ହିମାଚଳକୁ ଏକ ଅମୂଲ୍ୟ



Digitized by srujanika@gmail.com

ରତ୍ନ ରୂପେ ସ୍ୱୀକାର କରିବାରେ ଅସଙ୍ଗତି କିଛି ନାହିଁ ।

ଗୋବିନ୍ଦ ଚନ୍ଦ୍ରଙ୍କ ହିମାଳୟ ଯେ ରାଧାନାଥଙ୍କ ଚିଲିକାର ପ୍ରେରଣାସ୍ଥଳ ଓ ଅଗ୍ରସୂରୀ ଏ କଥା ସୁସମାଲୋଚକ ଗୋକୁଳଚନ୍ଦ୍ର ଶତପଥୀ ସ୍ୱୀକାର କରନ୍ତି । ବିଶେଷତଃ ହିମାଚଳର ଭାବ ଏବଂ ଭାଷା ସହିତ ଚିଲିକାର ସମ୍ବନ୍ଧ ଅନେକ । ଗୋବିନ୍ଦ ବାବୁ ହିମାଳୟ ପର୍ବତ ଦେଖିବା ପରେ ହିମାଚଳ ଏବଂ ରାଧାନାଥ ଚିଲିକା ଭ୍ରମଣ ପରେ ଚିଲିକା ଲେଖିଥିଲେ । (ଉତ୍କଳ ପ୍ରଭା: ଗୋକୁଳଚନ୍ଦ୍ର ଶତପଥୀ: ଭଞ୍ଜ ପ୍ରଦୀପ -୯ମ ଭାଗ/୩ୟ ସଂଖ୍ୟା)

ଏହି ଦୁଇ କବିତା ମଧ୍ୟରେ ଭାବ ଏବଂ ଭାଷାଗତ ସାମଞ୍ଜସ୍ୟକୁ ଗୋକୁଳଚନ୍ଦ୍ର ଶତପଥୀ କତିପୟ ପଂକ୍ତି ଉଦ୍ଧୃତ କରି ଦର୍ଶାଇଛନ୍ତି । ତାଙ୍କରି ଭାଷାରେ ରାଧାନାଥ ଥିଲେ, କବି, ଗୋବିନ୍ଦବାବୁ ଥିଲେ ପଣ୍ଡିତ । ସେ ଯାହା ହେଉ ଗୋବିନ୍ଦ ବାବୁଙ୍କର ଆଧୁନିକ ଦୃଷ୍ଟିଭଙ୍ଗୀ ହିମାଚଳରେ ପରିଦୃଶ୍ୟମାନ । ଆଧୁନିକତାର ଅନୁବ୍ରତୀ ହେଲେ ମଧ ମଧ୍ୟଯୁଗୀୟ କାବ୍ୟାଦର୍ଶର ଅନୁସରଣ କରି ପ୍ରାରମ୍ଭରେ କବି ଇଷ୍ଟ ବନ୍ଦନା କରିଛନ୍ତି ।

ହିମାଚଳ ବାସିନି ମା ଶିବଙ୍କ ଘରଣି
ଆବାସ ତୁମ୍ଭର ଏହି ଶୁକ୍ଳ ଗିରିମଣି,
ଦର୍ଶନେ ତାହାର ଏଡେ ହୁଅଇ ଉନ୍ନତ
ମନ ମୋର ବଚ ତହିଁ ପରାସ୍ତ ସତତ ।(ଉତ୍କଳପ୍ରଭା- ୧/୧ - ପୃ-୫)

ମଧ୍ୟ ଯୁଗୀୟ ମଙ୍ଗଳାଚରଣର ଦୀର୍ଘ ବର୍ଣ୍ଣନାକୁ ପରିହାର କରି ଗୋଟିଏ ପଦରେ ଇଷ୍ଟବନ୍ଦନା ଓ କାବ୍ୟ ପ୍ରସଙ୍ଗକୁ କବି ବର୍ଣ୍ଣନା କରିଛନ୍ତି । ସାବଲୀଳ ଶବ୍ଦସଜ୍ଜା ମାଧ୍ୟମରେ କବିତାଟି ଶ୍ରୁତି ମଧୁର ହୋଇଛି । ପ୍ରଥମ ପଦରେ ପାଣ୍ଡିତ୍ୟର ଯେଉଁ ଝଲକ ପ୍ରକାଶିତ ପରବର୍ତ୍ତୀ ସୋପାନରେ ତାହା କବିତ୍ୱର ଦୀପ୍ତିରେ ମହିମାମଣ୍ଡିତ ।

ଏକ ଏକ ଗିରି ଶୋଭା ଏକ ଶୃଙ୍ଗ ଶୋଭା
ହୃଦୟ ଫୁଲାଇ ଦିଏ, କେଡେ ମନଲୋଭା ।
ଏକ ଶୃଙ୍ଗ ପଦ ତଳେ ଏକ ଶୃଙ୍ଗ ତାର କୋଳେ
ତାର ପାଶେ ଆଉ ଏକ ନିଜ ମଥା ତୋଳେ
ଦକ୍ଷିଣରେ ବାମ ଗିରି, ବାମେ ଅନ୍ୟ ଗିରି
ବିରାଜିତ ନେତ୍ର ପଥେ ଅନୁପମ ଶିରି । (ହିମାଚଳ: ଉତ୍କଳପ୍ରଭା - ୧/୧- ପୃ-୬)

ସୂର୍ଯ୍ୟଙ୍କ କିରଣରେ ଅନୁପମ ହିମାଚଳର ମାର୍ଜିତ ରୂପକୁ କବି ଦୃଷ୍ଟି କାବ୍ୟଚିତ୍ର ମାଧ୍ୟମରେ ବର୍ଣ୍ଣନା କରିଛି ।



Digitized by srujanika@gmail.com

ତହିଁ ତଳେ ମାରକତ ଅଳିନ୍ଦ ମଧ୍ୟରେ
ଅଧିତ୍ୟକା ଦେଶେ ନେତ୍ର ରଚିର ସ୍ଥାନରେ
ସୁବିରଳ ସୁଚିକ୍କଣ ଦୀର୍ଘାୟିତ ଘନ
ପ୍ରଭାତରୁ ପ୍ରଭାକର ହୋଇ ଉଦୟନ
ପରିକର ଭାବେ ବେଶ କରନ୍ତି ମାର୍ଜନା
ହୀରକ ଚୂଡାରେ ଅଗ୍ରେ କରଦାନ କରି
ଉଜ୍ୱଳ କରନ୍ତି ମଣି ଶାଣ ଦେଲା ପରି
କାହିଁ ଅଛି ଆଉ ଏତେ ମହାମଣି ଖଣ୍ଡ ?
ଶାଣ ଦେଇଛନ୍ତି ଯାର ଆପେ ସେ ମାର୍ତ୍ତଣ୍ଡ । (ହିମାଚଳ)

ହିମାଚଳକୁ ଦେବତାଙ୍କ ସ୍ଥାନ ରୂପେ ସ୍ୱୀକାର ନ କରି ଏହାର ପ୍ରତ୍ୟେକ ଅଂଶର ଶାଶ୍ୱତ ପ୍ରକାଶ ହିଁ ଦେବତୁଲ୍ୟ ବୋଲି କବି ବର୍ଣ୍ଣନା କରିଛନ୍ତି । ଓଡ଼ିଶାର ବର୍ଣ୍ଣନାତ୍ମକ ପ୍ରକୃତି କାବ୍ୟ ପରମ୍ପରାରେ ହିମାଚଳ ଏକ ମହିମ୍ନ ସଂଯୋଜନ । ଉନବିଂଶ ଶତାବ୍ଦୀର ଜଣେ କୃତବିଦ୍ୟ ସାରସ୍ୱତ ସାଧକ ଓ ସାହିତ୍ୟ ସଙ୍ଗଠକ ରୂପେ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ସମ୍ମାନିତ । ଗୋବିନ୍ଦ ବାବୁଙ୍କ ପ୍ରତିଭାର ସାମଗ୍ରିକ ମୂଲ୍ୟାୟନ ଦିଗରେ ଏହି ଆଲୋଚନାଟି ସ୍ମାରକୀର କାର୍ଯ୍ୟ କଲେ ଲେଖକ ଉପକୃତ ହେବ । ଏହି ପ୍ରସଙ୍ଗରେ ପବିତ୍ର ଭଞ୍ଜ ଭୂମିର ଗବେଷକମାନଙ୍କ ଦୃଷ୍ଟି ଆକର୍ଷଣ କରୁଛି ଓ ଭଞ୍ଜଭୂମିର ସାରସ୍ୱତ ପ୍ରେକ୍ଷାପଟ୍ଟକୁ ପ୍ରମାଣ କରୁଛି ।□□□



Digitized by srujanika@gmail.com

# ହିନ୍ଦୀ ସାହିତ୍ୟ ଜଗତରେ ଓଡ଼ିଆ ସମ୍ବାଦ: ପାଣ୍ଡେୟ ଲୋଚନ ପ୍ରସାଦ

ହିନ୍ଦୀ ସାହିତ୍ୟ ଦିଗନ୍ତରେ ଓଡ଼ିଆକୁ ଏକ ଦୀପ୍ତିମାନ ଜ୍ୟୋତିଷ୍କ ରୂପେ ପ୍ରତିଭାତ କରାଇବାରେ ଲୋଚନପ୍ରାସାଦ ପାଣ୍ଡେୟଙ୍କ ସଦୁଦ୍ୟମ ପ୍ରଶଂସାଯୋଗ୍ୟ । ବଳରାମ ଦାସ, ଫକୀରମୋହନଙ୍କଠାରୁ ଆରମ୍ଭ କରି ଗଙ୍ଗାଧର, ନନ୍ଦକିଶୋର ତଥା ବୀରବିକ୍ରମ ଦେବଙ୍କ କୃତିକୁ ହିନ୍ଦୀରେ ଅନୁବାଦ, ପ୍ରଚାର ଓ ପ୍ରସାର କରିବାରେ ତାଙ୍କର ନିରଳସ ସାଧନା ଅନନ୍ୟ ତଥା ଅନୁପମ । କେବଳ ଲୋଚନ ପ୍ରସାଦ ନୁହନ୍ତି ତାଙ୍କର ଅନୁଜଗଣ ମଧ ଜ୍ୟେଷ୍ଠ ଭ୍ରାତାଙ୍କ ଏହି ମିଶନକୁ କରିଥିଲେ ସଫଳକାମ ଓ ସୌନ୍ଦର୍ଯ୍ୟମଣ୍ଡିତ ।

ଲୋଚନ ପ୍ରସାଦ ପାଣ୍ଡେୟଙ୍କ ଓଡ଼ିଆ ସାହିତ୍ୟକୁ ଦାନ ଅପୂର୍ବ ଓ ଅଭିନବ। ହିନ୍ଦୀ ଓ ଓଡ଼ିଆ ବ୍ୟତୀତ ସେ ଇଂରେଜୀ ଓ ବଙ୍ଗଳା ସାହିତ୍ୟରେ ମଧ କୃତିତ୍ୱ ଅର୍ଜନ କରିଥିଲେ। ସେ ମଧପ୍ରଦେଶର ବିଳାସପୁର ଜିଲ୍ଲା ମହାନଦୀ ତୀରବର୍ତ୍ତୀ ବାଲପୁରଠାରେ ପୌଷ ଶୁକ୍ଳ ଦଶମୀ ମଙ୍ଗଳବାର ଇଂରାଜୀ ୪ ଜାନୁୟାରୀ ୧୮୮୭ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚିନ୍ତାମଣି ପାଣ୍ଡେୟ ଓ ମାତା ଦେବହୂତି ଦେବୀ । ତାଙ୍କର ବଡଭାଇ ଶ୍ରୀଯୁକ୍ତ ପୁରୁଷୋତ୍ତମ ପ୍ରସାଦ ପାଣ୍ଡେୟ ଜଣେ ପଣ୍ଡିତ ଓ ହିନ୍ଦୀ ସାହିତ୍ୟର ସୁନାମଧନ୍ୟ ଲେଖକ । ପାଣ୍ଡେୟ ୧୮୯୮ରେ ପ୍ରାଇମେରୀ ପରୀକ୍ଷାରେ ପାସ୍ କରିଥିଲେ । ୧୯୦୨ରେ ସମ୍ବଲପୁର ହାଇସ୍କୁଲରେ ମିଡିଲ ସ୍କୁଲ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରି ଜିଲ୍ଲାରେ ପ୍ରଥମ ହୋଇଥିଲେ । ୧୯୦୫ରେ କଲିକତା ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ତା' ପରେ କାଶୀରେ ସେଣ୍ଟ୍ରାଲ ହିନ୍ଦୁ କଲେଜରେ ଭର୍ତ୍ତି ହେଲେ । ଘରୋଇ ଅସୁବିଧା ନେଇ ପଢ଼ି ନ ପାରି ଫେରି ଆସିଥିଲେ ।

ପାଣ୍ଡେୟଜୀ କେବଳ ଯେ ସାହିତ୍ୟିକ ଥିଲେ ତା ନୁହେଁ, ସେ ଥିଲେ ଜଣେ ପରୋପକାରୀ ସମାଜ ସଂସ୍କାରକ । ସେ ଅନେକ ଅନୁଷ୍ଠାନ ଗଢ଼ିଥିଲେ, ଅନେକ ଅନୁଷ୍ଠାନ ସହ ସଂପୃକ୍ତ ଥିଲେ । '' କ୍ଷୟରୋଗ ନିର୍ବାଣ ସମିତି'' ଗଠନ କରି କ୍ଷୟରୋଗୀଙ୍କ ସେବା କରୁଥିଲେ । ''ଛତିଶଗଡ ଗୌରବ ପ୍ରଚାରକ'' ମଣ୍ଡଳୀ ଯାହାକି ପରେ



Digitized by srujanika@gmail.com

ମହାକୋଶଳ  ଇତିହାସ ସମିତିରେ ପରିଣତ ହେଲା ତା'ର ପ୍ରତିଷ୍ଠାତା ସେ ଥିଲେ । ଅବୈତନିକ ଭାବେ ସରକାରଙ୍କ ଦ୍ୱାରା '' ଛତିଶଗଡ ବ୍ୟାକରଣ'' ସମ୍ପାଦନା ପାଇଁ ନିଯୁକ୍ତ ଥିଲେ । ୧୯୨୮ରେ Indian Historical Records Commisionର ସଂଯୁକ୍ତ ସଭ୍ୟ ଥିଲେ । ମଧ୍ୟପ୍ରଦେଶ ଶିକ୍ଷା ବିଭାଗଦ୍ୱାରା ପାଠ୍ୟପୁସ୍ତକ ନିର୍ବାଚନ କମିଟିର ସଭ୍ୟ ଏବଂ ଲାଇବ୍ରେରୀ ଏକାଡେମୀର ସଭ୍ୟ ମନୋନୀତ ହୋଇଥିଲେ । ଜାତୀୟ ଅଭିଲେଖାଗାର, ଦିଲ୍ଲୀର ସଦସ୍ୟ ଥିଲେ ।

୧୯୧୧ ବେଳକୁ ପାଣ୍ଡେୟଜୀ ରାୟଗଡର ନଟବର ଉଚ୍ଚ ବିଦ୍ୟାଳୟର ସହକାରୀ ଶିକ୍ଷକ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ । ୧୯୧୨ରେ ରାୟଗଡ ସରକାର ତାଙ୍କୁ ପ୍ରାଇଭେଟ ସେକ୍ରେଟାରୀ କରି ରେଖ୍ୱା ପଠାଇଥିଲେ । ୧୯୧୩ରେ ପ୍ରାନ୍ତୀୟ ସରକାର ଚନ୍ଦ୍ରପୁର ପଦ୍ମପୁର ଷ୍ଟେଟ୍‌ର କୋର୍ଟ ଅଫ୍ ୱାର୍ଡସର ସେ ମେନେଜର ନିଯୁକ୍ତ ହୋଇଥିଲେ । ୧୯୨୩ରେ ପ୍ରାନ୍ତୀୟ ସରକାର ଦ୍ୱାରା ଚନ୍ଦ୍ରପୁର (ଜି.ବିଳାସପୁର)ର ଅନରେରୀ ମାଜିଷ୍ଟ୍ରେଟ୍ ନିଯୁକ୍ତ ହୋଇଥିଲେ ।

ଲୋଚନ ପ୍ରସାଦ ଜଣେ ବହୁମୁଖୀ ଲେଖକ । ତାଙ୍କର ହିନ୍ଦୀ ରଚନା ମଧ୍ୟରେ ଦୋମିତ୍ର (୧୯୦୬- ନୋଭେଲ) ବାଳିକା ବିନୋଦ  (କବିତା ପୁସ୍ତକ) ଦିଲ୍ ବହଲାନେ କି ଦବା, ବ୍ୟଭିଚାର ବିଭୀଷିକା, ଛତ୍ର ଦୁର୍ଦ୍ଦଶା (ନାଟକ) ମେବାଡ ଗାଥା (ଖଣ୍ଡକାବ୍ୟ) ପ୍ରେମ ପ୍ରଶଂସା (ନାଟକ) ଜୀବନଜ୍ୟୋତି, ମାଧବ ମଞ୍ଜରୀ, ପଦ୍ୟ ପୁଷ୍ପାଞ୍ଜଳି ପ୍ରମୁଖ ପ୍ରଧାନ । ୧୯୧୦ରେ ସେ ହିନ୍ଦୀ କବିତାର ଏକ ପ୍ରତିନିଧି ସ୍ଥାନୀୟ  ସଂକଳନ ''କବିତ୍ୱ କୁସୁମ ମାଳା'' ପ୍ରକାଶ କରିଥିଲେ ।

ତାଙ୍କର ଇଂରାଜୀ ରଚନା ମଧ୍ୟରେ ମହାକୋଶଳ ସମ୍ପର୍କରେ କିଛି ପ୍ରତ୍ନତାତ୍ତ୍ୱିକ ନିବନ୍ଧ ବ୍ୟତୀତ " Letters to my brother" "The way to be happy and gay", 'Radhanath the national poet of Orissa', 'Lochan's well known man ପ୍ରମୁଖ ପ୍ରଧାନ ।

ଉଦାତ୍ତ ଓ ପରିବ୍ୟାପ୍ତ ହୃଦୟବତ୍ତାର କବି ପାଣ୍ଡେୟଙ୍କ ଓଡ଼ିଆ ସାହିତ୍ୟ ପ୍ରୀତି ଉଲ୍ଲେଖଯୋଗ୍ୟ । ବିଶ୍ୱମୟ ପ୍ରେମରେ ଉବୁଟୁବୁ କବିର ଉଦାତ୍ତ ଉଚ୍ଚାରଣ ଭାଷାର ସୀମିତ ପରିଧିକୁ ଅତିକ୍ରମ କରି ଅନ୍ୟ ଭାଷା ଭାଷୀର ପାଠକଙ୍କୁ ମୁଗ୍ଧ ଚକିତ କରି ତୋଳେ । ଏ ପରିପ୍ରେକ୍ଷୀରେ ହିନ୍ଦୀ କବି ଲୋଚନ ପ୍ରସାଦ ନିଜର କାବ୍ୟ ସାଧନାର ବୃତ୍ତମଧ୍ୟରେ  ଓଡ଼ିଆ ସାହିତ୍ୟକୁ ପ୍ରଦକ୍ଷିଣ କରନ୍ତି ଏବଂ ଓଡ଼ିଆ ପାଠକକୁ ଆବିଷ୍ଟ କରିବାରେ ସଫଳ ମଧ୍ୟ ହୁଅନ୍ତି । ତାଙ୍କର ଏ ସାରସ୍ୱତ ପ୍ରଦକ୍ଷିଣ ଏ ମାଟିର ଯୁଗ ପୁରୁଷ ସାରଳା ଦାସ, ଜଗନ୍ନାଥ



Digitized by srujanika@gmail.com

ଦାସ, ବଳରାମ ଦାସ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ରାଧାନାଥ, ଗଙ୍ଗାଧର, ଫକୀରମୋହନଙ୍କ କାବ୍ୟ ଭୂମିକୁ ସ୍ପର୍ଶ କରେ ଏବଂ ନିଜର ଏକ ଅଭିନବ କାବ୍ୟ ଭୂମି ଗଠନରେ ମହିମା ମଣ୍ଡିତ ହୁଏ ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଯେତେବେଳେ ସମ୍ବଲପୁର ମଧ୍ୟପ୍ରଦେଶ ଶାସନାଧୀନ ଥିଲା, ସେତେବେଳେ ଓଡ଼ିଆ ଭାଷାକୁ ସେ ଅଞ୍ଚଳରେ ହିନ୍ଦୀ ଭାଷା କବଳିତ କରିଯିବାର ଆଶଙ୍କା ପ୍ରକାଶ ପାଉଥିଲା । ସମ୍ବଲପୁର ଅଞ୍ଚଳର ସମସ୍ତ ବୁଦ୍ଧିଜୀବୀ ଓଡ଼ିଆ ଭାଷାର ପ୍ରଚଳନ ( ସରକାରୀ ସ୍ତରରେ) ନେଇ ଆନ୍ଦୋଳନରେ ବ୍ୟସ୍ତ ଥିଲେ । ଏ ଆନ୍ଦୋଳନର ମୁଖପତ୍ର ରୂପେ ବାମଣ୍ଡାରୁ ପ୍ରକାଶିତ ''ସମ୍ବଲପୁର ହିତୈଷିଣୀ'' (୧୮୮୯-୧୯୨୩) ପତ୍ରିକା ଏକ ଯୁଗାନ୍ତକାରୀ ଭୂମିକା ସମ୍ପାଦନ କରିଥିଲା । ଠିକ୍ ସେହି ସମୟରେ ନାରାୟଣ ନନ୍ଦ ( ପଣ୍ଡିତ ଚିନ୍ତାମଣି ନନ୍ଦ ବିଦ୍ୟାଭୂଷଣଙ୍କ ନାତି) ନିଜର ସହପାଠୀ ଲୋଚନ ପ୍ରସାଦଙ୍କୁ ସ୍ରଷ୍ଟାର ସ୍ୱାଭିମାନ ନେଇ ଅନୁଯୋଗ କରିଥିଲେ, ''ତୁମେ ହିନ୍ଦୀ ଭାଷୀ ଲୋକ ଓଡ଼ିଆ ଭାଷାର ପ୍ରାଚୀନତ୍ୱକୁ ନା ସ୍ୱୀକାର କରୁଛ ନା ଓଡ଼ିଆ ସାହିତ୍ୟକୁ ସମ୍ମାନ ଦେଉଛ ।'' ଏପରି ଏକ ସାରସ୍ୱତ ଆକ୍ଷେପ ଲୋଚନ ପ୍ରସାଦଙ୍କୁ ଓଡ଼ିଆ ଭାଷା ପ୍ରୀତିର ନିଦର୍ଶନ ପ୍ରକାଶ ପାଇଁ ଅନୁପ୍ରେରଣା ଯୋଗାଇଛି। ଯା' ଫଳରେ ସେ ଅନେକ ଓଡ଼ିଆ କାବ୍ୟ କବିତା ରଚନା କରିଯାଇଛନ୍ତି ।

କେବଳ ଯେ କାବ୍ୟ କବିତା ରଚନାରେ ସେ ବ୍ୟସ୍ତ ରହିଛନ୍ତି ତା ନୁହେଁ ବରଂ ଓଡ଼ିଆ ସାହିତ୍ୟର କାଳଜୟୀ ସୃଷ୍ଟି ସମୂହକୁ ହିନ୍ଦୀ ଭାଷାରେ ଅନୁବାଦ ତଥା ଆଲୋଚନା କରି ଏ ଭାଷାର ପୁଷ୍କଳତା ପ୍ରମାଣ କରିଛନ୍ତି । '' କଲ୍ୟାଣ'' ଜୁଲାଇ ୧୯୩୦ ସଂଖ୍ୟାରେ ହିନ୍ଦୀଭାଷାରେ ଦାଣ୍ଡି ରାମାୟଣର ପ୍ରଥମ ପ୍ରାମାଣିକ ଆଲୋଚନା କରିଥିଲେ । ୧୯୦୬ ବେଳକୁ ବିହାରର ଆରା ଜିଲ୍ଲାରୁ ପ୍ରକାଶିତ ଏକ ପତ୍ରିକାରେ ସେ ଗଙ୍ଗାଧରଙ୍କ କୀଚକବଧର କିଛି ଅଂଶ ହିନ୍ଦୀରେ ଅନୁବାଦ କରିଥିଲେ । ତାଙ୍କ ଭାଇ ମୁରଲୀଧର ପାଣ୍ଡେୟ ଫକୀରମୋହନଙ୍କ ଉପନ୍ୟାସକୁ ହିନ୍ଦୀରେ ଅନୁବାଦ କରିଥିଲେ।

ଅନେକ ସମାଲୋଚକ ମାମୁଁ, ଲଛମା ପ୍ରଭୃତିର ଅନୁବାଦକ ଭାବେ ଲୋଚନ ପ୍ରସାଦ ପାଣ୍ଡେୟଙ୍କୁ ସ୍ୱୀକାର କରିଥାନ୍ତି । କିନ୍ତୁ ପ୍ରକୃତରେ ଲୋଚନ ପ୍ରସାଦଙ୍କ ଅନୁଜ ମୁକୁଟଧର ଓ ମୁରଲିଧର ହିଁ ମାମୁଁ ଓ ଲଛମାର ହିନ୍ଦୀ ଅନୁବାଦକ । ଏତଦ୍‌ବ୍ୟତୀତ ଦୀନବନ୍ଧୁ ଗଡନାୟକ ( ସମ୍ବଲପୁରହିତୈଷିଣୀ ସମ୍ପାଦକ)ଙ୍କ 'ପରିଶ୍ରମ' (ପ୍ରବନ୍ଧ) ଓ ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ 'ସୁନାବୋହୂ' (ଶୈଳବାଳା ଅର୍ଥାତ ଆଦର୍ଶ ବଧୂ) ଉପନ୍ୟାସର ମଧ୍ୟ ସେମାନେ ହିନ୍ଦୀ ଅନୁବାଦକ । ଲୋଚନ ପ୍ରସାଦ ୧୯୧୧ରେ ରାଧାନାଥଙ୍କ କେଦାର ଗୌରୀର ଏକ



Digitized by srujanika@gmail.com

ମନୋଜ୍ଞ ହିନ୍ଦୀ ଅନୁବାଦ କରନ୍ତି । ଏହି ଉଦ୍ୟମକୁ ଶଶିଭୂଷଣ ରାୟ ମୁକୁର (୬/୩) ପୃଷ୍ଠାରେ ଭୂୟସୀ ପ୍ରଶଂସା କରନ୍ତି । ମୁକୁଟଧର ପାଣ୍ଡେୟ ହିନ୍ଦୀ ଛାୟାବାଦୀ ଯୁଗର ଅନ୍ୟତମ ଶ୍ରେଷ୍ଠ କବି । ମୂରଲିଧରଙ୍କ ସାରସ୍ୱତ ସିଦ୍ଧି ମଧ୍ୟ ହିନ୍ଦୀ ସାହିତ୍ୟରେ ସ୍ୱୀକୃତ ।

ଗଙ୍ଗାଧର, ରାଧାନାଥ, ଫକୀରମୋହନ ଓ ମଧୁସୂଦନଙ୍କ ପ୍ରତି ପାଣ୍ଡେୟଙ୍କ ପ୍ରଗାଢ଼ ସାରସ୍ୱତ ସମ୍ମାନ ରହିଥିଲା । ଏମାନଙ୍କ ଉପରେ ବିଭିନ୍ନ ସମୟରେ ଓଡ଼ିଆ ଓ ହିନ୍ଦୀ ପତ୍ରିକାରେ ସେ ଆଲୋଚନା କରିଛନ୍ତି। ରାଧାନାଥଙ୍କ ସମ୍ପର୍କରେ 'Radhanath the national poet of Orissa' ରେ ସେ କହନ୍ତି- His poems have greatly adorned and enriched uria literature. They have begun an era in the uria literary world. Radhanath is known as the first and most successful writer of blank verse in uria and for sweetness of expression, correctness of description and simplicity of style, his poems will always occupy a very high rank in uria literature. His 'Granthavali' has earned for him on, eternal fame. Radhanath's 'Kavitavali' is appointed as a text book for the Entrance Examination of the culcutta university. Radhanath was a good poet of Bangla also। ମେ ୩୦.୧୯୧୧ରେ ବାମଣ୍ଡାଠାରେ ପାଣ୍ଡେୟଙ୍କର ଭକ୍ତ କବି ମଧୁସୂଦନଙ୍କ ସହ ସାକ୍ଷାତ ହୋଇଥିଲା । ସେହି ମହାର୍ଘ ସ୍ମୃତିରେ ''ସ୍ନେହୋପହାର'' କବିତା ସମ୍ବଲପୁର ହିତୈଷିଣୀ (୨୯.୦୫.୧୯୧୨)ରେ ରଚନା କରିଥିଲେ ।

'' ସ୍ୱାଗତ ସ୍ୱାଗତ ଆହେ ଭକ୍ତ କବି
ସ୍ୱାଗତ ହେ ମହାଶୟ
ନରଦେହେ ଦିବ୍ୟ ଦେବାବତରଣ
ଦେଖୁନେତ୍ର ସବିସ୍ମୟ
କିଶାନ୍ତ ପ୍ରଶାନ୍ତ ତେଜପୂର୍ଣ୍ଣ ମୂର୍ତ୍ତି
ଉଭାନେତ୍ର ପଥେ ଆଜି
ଆନନ୍ଦ ଉଲ୍ଲାସ ଶ୍ରମ ସଂଯମର
ରହିଛି ଉଭାବିରାଜି.... ।

ଓଡ଼ିଶାର ସମସ୍ତ କୃତବିଦ୍ୟ ଲେଖକଙ୍କ ସହିତ ତାଙ୍କର ସୁପରିଚୟ ଓ ପତ୍ର ବିନିମୟ ମଧ୍ୟ ରହିଥିଲା । ଏତଦ୍‌ବ୍ୟତୀତ ବାମଣ୍ଡା ଓ ଖଡିଆଳ ଦରବାର ସାହିତ୍ୟିକମାନଙ୍କ



Digitized by srujanika@gmail.com

ସହିତ ତାଙ୍କର ସୁସମ୍ପର୍କ ରହିଥିଲା । ସେ ସମ୍ବଲପୁର ହିତୈଷିଣୀ, ମୁକୁର, ଗଡଜାତ ବାସିନୀ ଓ ଉତ୍କଳ ସେବକରେ ରୀତିମତ ଲେଖୁଥିଲେ । ୧୯୧୦ରେ କଲିକତାରୁ ଜଷ୍ଟିସ ସାରଦା ଚରଣ ମିତ୍ର ' ଲିପିବିସ୍ତାର ପରିଷଦ' ଗଠନ କରି '' ଦେବନାଗର'' ନାମରେ ଏକ ପତ୍ରିକା ପ୍ରକାଶ କରନ୍ତି । ଯେଉଁଠି ଭାରତର ସମସ୍ତ ପ୍ରାନ୍ତର ଲେଖା ଦେବନାଗରୀ ଲିପିରେ ମୁଦ୍ରିତ ହେଉଥିଲା । ପାଣ୍ଡେୟଙ୍କ ଓଡ଼ିଆ ଭାଷାର ରଚନା ପ୍ରାୟତଃ ଏ ପତ୍ରିକାରେ ପ୍ରକାଶ ଲଭୁଥିଲା ।

ଆଶ୍ଚର୍ଯ୍ୟର କଥା ହେଲା ଏହି ଯଶସ୍ୱୀ ସ୍ରଷ୍ଟା ଓଡ଼ିଆ ଭାଷା ଜାଣିଥିଲେ, ବୁଝୁଥିଲେ, ପଢୁଥିଲେ କିନ୍ତୁ ଲେଖୁଥିଲେ ଦେବନାଗରୀ ଲିପିରେ । ତାଙ୍କ ରଚନାକୁ ସମକାଳୀନ ସମ୍ପାଦକଗଣ ଓଡ଼ିଆ ଲିପିରେ ରୂପାନ୍ତରିତ କରି ନିଜ ପତ୍ରିକାରେ ଆଗ୍ରହର ସହିତ ସ୍ଥାନ ପ୍ରଦାନ କରୁଥିଲେ ।

୧୯୦୭ରେ ପ୍ରକାଶିତ ''କବିତା କୁସୁମ'' ତାଙ୍କର ଓଡ଼ିଆ କବିତାର ଏକ ମନୋଜ୍ଞ ସଂକଳନ । ତାଙ୍କ ଭାଷାର ସ୍ୱଚ୍ଛନ୍ଦତା ତାଙ୍କୁ ଜଣେ ମୌଳିକ ଓଡ଼ିଆ ଭାଷୀ ରୂପେ ଗ୍ରହଣ କରିବାରେ ହିତୈଷିଣୀ ସମ୍ପାଦକ ବିଦ୍ୟାରତ୍ନଙ୍କ ସ୍ୱୀକାରୋକ୍ତି ପ୍ରଣିଧାନଯୋଗ୍ୟ-'' ତାଙ୍କର (ପାଣ୍ଡେୟଜୀ) କବିତାଗୁଡିକରୁ ସେ ଯେ ଓଡ଼ିଆ ଭାଷୀ ନୁହଁନ୍ତି, ଏ ପ୍ରତ୍ୟୟ ଜନ୍ମେ ନାହିଁ । କବିତାଗୁଡିକ ଭାବପୂର୍ଣ୍ଣ ଏବଂ ଦୋଷ ଶୂନ୍ୟ ବୋଲାଯାଇପାରେ । କବିତାଗୁଡିକରୁ କବିଙ୍କ ଧର୍ମାନୁରାଗ, ସ୍ୱଦେଶ- ସ୍ୱଭାଷା ପ୍ରୀତି, ପରଦୁଃଖ କାତରତା, ସଂସ୍କାର ପ୍ରିୟତା ପ୍ରଭୃତି ଗୁଣର ପରିଚୟ ମିଳେ । ''

ସାହିତ୍ୟ ସାଧନା ପାଣ୍ଡେୟଙ୍କର ମଜ୍ଜାଗତ ଥିଲା । ସେ ଅନ୍ତର ସହିତ କାବ୍ୟଦେବୀର ବନ୍ଦାପନା ପାଇଁ ପ୍ରସ୍ତୁତ ଥିଲେ । ତାଙ୍କ ପ୍ରାଣର ଉଷ୍ମ ଆବେଗ ସାହିତ୍ୟ ପ୍ରତି ସତତ ଉନ୍ମୁଖ ଥିଲା ।

କି ଅପୂର୍ବ ସୁଖ ଆହା ସାହିତ୍ୟ ସେବନେ
ବାଗ୍ଦେବୀର ଆରାଧନ
କରେ ଯେହୁ ପୁଣ୍ୟଜନ
ସ୍ୱର୍ଗର ଦେବତା ସେହି ଏ ମର ଭୁବନେ
କଳ୍ପନା ତରୀରେ ବସି
ମନେ ମୃଦୁ ମୃଦୁ ହସି
ପ୍ରାତଃ ବାୟୁରୂପେ ଭ୍ରମେ ବିଚାର ସାଗରେ



Digitized by srujanika@gmail.com

ନବ ଭାବ ନବଚିତ୍ର
ରମ୍ୟଦ୍ୱୀପ ସୁପବିତ୍ର
ଦରଶନ କରେ ସେହୁ ପୁଲକ ଅନ୍ତରେ ।(ସାହିତ୍ୟ ସେବା)

ବାମଣ୍ଡାର ସାହିତ୍ୟିକ ରାଜା ସଚ୍ଚିଦାନନ୍ଦ ଦେବ ତାଙ୍କୁ ସ୍ୱାଗତ କରି ତାଙ୍କ ସାହିତ୍ୟ କୃତିର ପ୍ରଶଂସା କରିଥିଲେ । ଦେବଗଡ ପଣ୍ଡିତ ସଭାରେ ତାଙ୍କର ଓଡ଼ିଆ କୃତି ପର୍ଯ୍ୟାଲୋଚନା କରାଯାଇଥିଲା । ହିନ୍ଦୀ ଭାଷୀ ହୋଇ ତାଙ୍କର ଓଡ଼ିଆ ଭାଷା ପ୍ରୀତିରେ ମୁଗ୍ଧ ସଚ୍ଚିଦାନନ୍ଦ ଦେବ ୧୯୧୧ ଜୁଲାଇ ୧୦ରେ ଏକ ବିରାଟ ପଣ୍ଡିତ ସଭାରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ'' କାବ୍ୟ ବିନୋଦ'' ଉପାଧି ପ୍ରଦାନ କରିଥିଲେ । ଏହାର ବହୁଦିନ ପରେ ୧୯୪୮ ଅଖିଳ ଭାରତୀୟ ହିନ୍ଦୀ ସାହିତ୍ୟ ସମ୍ମେଳନର ମେରଠ ଅଧିବେଶନରେ '' ସାହିତ୍ୟ ବାଚସ୍ପତି'' ଉପାଧି ପାଇଥିଲେ । ହିନ୍ଦୀ ସାହିତ୍ୟରେ ଅଜସ୍ର ସମ୍ମାନ ଅପେକ୍ଷା ଓଡ଼ିଶାର '' କାବ୍ୟ ବିନୋଦ'' ଉପାଧିକୁ ସେ ଶ୍ରେୟ ମଣୁଥିଲେ ।

ବାମଣ୍ଡାର ସାରସ୍ୱତ ପରମ୍ପରା ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ଆହୁରି ରସଘନ ହୋଇଉଠିଛି ତାଙ୍କର ମହାନଦୀ କାବ୍ୟରେ । ବାମଣ୍ଡରେ ସୁଡ଼ଳଦେବଙ୍କ '' ଚିତ୍ରୋତ୍ପଳା'' କାବ୍ୟର ଅନୁଶୀଳନ କରିବାର ସୁଯୋଗ ସେ ପାଇଥିଲେ ଏବଂ ରାଧାନାଥଙ୍କ ଚିଲିକା କାବ୍ୟର '' କ୍ଷୁଦ୍ର ସିପ୍ରାସ୍ରୋତ ବିଖ୍ୟାତ ଜଗତେ / ମହାନଦୀ ନାମ ରହିଲା ଗୁପତେ ।'' ପଂକ୍ତିର କରୁଣାତ୍ମକ ସ୍ୱର ତାଙ୍କୁ ମହାନଦୀ କାବ୍ୟ ରଚନା ପାଇଁ ଉତ୍ସାହିତ କରିଥିବା ଜଣାଯାଏ ।

'' ଚିଲିକାର କବି ଅମର ଅକ୍ଷରେ
ନଚିତ୍ରି ତୋଚିତ୍ର ସାହିତ୍ୟ ପଟରେ
କି ଭାବି ତୋ ପାଇଁ ଦୁଇଧାଡି ମାତ୍ର
ଲେଖିଲେ, (ଆଶ୍ଚର୍ଯ୍ୟେ ଅସ୍ଥିର ମୋ ଗାତ୍ର)
ଶୁଣି ସେ କ୍ରନ୍ଦନ ରାଜର୍ଷି ସୁକବି,
କୌଶଳେ ଚିତ୍ରିଲେ ଚିତ୍ରୋତ୍ପଳା ଛବି(ମହାନଦୀ-୧୯୧୫)

କବିତା କୁସୁମ, ମହାନଦୀ ବ୍ୟତୀତ ଅପୂର୍ଣ୍ଣ କାବ୍ୟ 'ପଲାସୀଯୁଦ୍ଧ', 'ସତ୍ୟ ହରିଶ୍ଚନ୍ଦ୍ର', ଓ 'ସୀତା ବନବାସ' କାବ୍ୟ ତାଙ୍କର ବଳିଷ୍ଠ ପ୍ରତିଭାର ପ୍ରମାଣ ଦିଏ । ସମ୍ବଲପୁର ହିତୈଷିଣୀ (୧୬.୧୧.୧୯୧୨)ରେ ଶ୍ରୀହରିଶ୍ଚନ୍ଦ୍ର କାବ୍ୟର ପ୍ରସ୍ତାବନା ପ୍ରକାଶ ଲିଭିଥିଲା । ଏ କାବ୍ୟ ପ୍ରାରମ୍ଭରେ ଦେବ ବନ୍ଦନା ପ୍ରଭୃତି ପାରମ୍ପରିକ ରୀତିକୁ ପରିହାର କରି କବି ନିଜସ୍ୱ ମୌଳିକ ଶୈଳୀ ପ୍ରଦର୍ଶନରେ ସଫଳ ହୋଇଛନ୍ତି । ଜନ ମାନସରେ ସତ୍ୟର ପ୍ରତିଷ୍ଠା



Digitized by srujanika@gmail.com

କଲେ ଏ କାବ୍ୟର ସୃଷ୍ଟି ।

ପାଣ୍ଡେୟଙ୍କ କାବ୍ୟ କୃତିରୁ ତାଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଅଙ୍ଗୀକାରବଦ୍ଧତା ସୁସ୍ପଷ୍ଟ । ଆଧୁନିକ ଯୁଗର ସମସ୍ତ ବିଭାବ ତାଙ୍କ କବିତାରେ ସୁରକ୍ଷିତ । ତାଙ୍କ କବିତା କେତେକାଂଶରେ ସେ ସମୟର ପ୍ରଚଣ୍ଡ ପ୍ରତିଭା ରାଧାନାଥ ଓ ମଧୁସୂଦନଙ୍କ ଦ୍ୱାରା ପ୍ରଭାବିତ ।

ବ୍ୟକ୍ତିଗତ ଜୀବନରେ ସେ ଜଣେ ଦରଦୀ ସ୍ନେହୀ ଅତିଥି ବତ୍ସଳ ମଣିଷ । ତାଙ୍କ ବାମଣ୍ଡା ଏବଂ ସମ୍ବଲପୁର ଆଗମନ କାଳରେ ସେ ଗଙ୍ଗାଧର, ଭକ୍ତକବି ମଧୁସୂଦନ, ଶଶିଭୂଷଣ ରାୟ, ନାଟ୍ୟକାର ବୀର ବିକ୍ରମ ଦେବ, ବିଜ୍ଞାନି କବି ସଚ୍ଚିଦାନନ୍ଦ ଦେବ, ଫକୀରମୋହନ, ନନ୍ଦ କିଶୋର ବଳ ପ୍ରମୁଖଙ୍କ ସହିତ ସୌହାର୍ଦ୍ଦ୍ୟ ସମ୍ପର୍କ ରଖିଥିଲେ । ତାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ କବି ଭୂଷଣ ସ୍ୱପ୍ନେଶ୍ୱର ଦାଶ ପ୍ରଶଂସାରେ ଶତମୁଖ ହୋଇ ଉଠନ୍ତି ।

'' କିଏ ଦେଲା ତବନାମ ଲୋଚନ ପ୍ରସାଦ
ମୋ ମତରେ ନୋହିଲା ତ ତବ ଗୁଣ ଭଳି
ବାସ୍ତବିକ କିନ୍ତୁ ତମେ ହୃଦୟ ପ୍ରସାଦ
ପ୍ରସାଦ ରତ୍ନ ତୁମ୍ଭର ହୃଦୁଁ ଦିଶେ ଝଳି ।''

ତାଙ୍କ କବିତା କେବଳ ସୌନ୍ଦର୍ଯ୍ୟର ଉପାସନା କରୁ ନ ଥିଲା ବରଂ ଅସହାୟଙ୍କୁ ସାହାଯ୍ୟ କରିବାକୁ ଉନ୍ମୁଖଥିଲା । ଥରେ ଏକ ଚକ୍ଷୁରୋଗୀ ଓଡ଼ିଆ ଯୁବକ ପାଣ୍ଡେୟଙ୍କୁ ସାହାଯ୍ୟ ପ୍ରାର୍ଥନା କଲା । ପାଣ୍ଡେୟ କଲିକତାର ଏକ ସାରସ୍ୱତ ଉତ୍ସବରେ ଯୋଗ ଦେବାକୁ ଯାଇଥିଲେ । ସେଠାରୁ ସେ ଉକ୍ତ ଯୁବକକୁ ବାମଣ୍ଡା ରାଜା ସଚ୍ଚିଦାନନ୍ଦଙ୍କ ପାଖକୁ ନିମ୍ନ ପତ୍ର ସହ ପ୍ରେରଣ କରିଥିଲେ ।

'' ଧନହୀନ ଏହି ଉତ୍କଳୀୟ ଛାତ୍ର
ହୋଇ ଦୁଷ୍ଟ ନେତ୍ର ରୋଗ କବଳ ।
ଇଚ୍ଛାଥିଲେ ମଧ ବିଦ୍ୟା ଅର୍ଜନରେ
 ହୋଇଛି ଦୁର୍ଦ୍ଦଶା ଯୋଗୁ ଅବଳ ।
ଶ୍ରୀସଚ୍ଚିଦାନନ୍ଦ ହୃଦୟ ଆନନ୍ଦ
ଔଦାର୍ଯ୍ୟ ସିଂଧୁରୁ ଏକଇ ବିନ୍ଦୁ
ନେତ୍ରାମୃତ ହୋଇ ନେତ୍ରଦାନ ଦେଇ



Digitized by srujanika@gmail.com

ପ୍ରକାଶିବ ତାର ସୌଭାଗ୍ୟ ଇନ୍ଦୁ ।''

ପତ୍ର ପ୍ରାପ୍ତି ମାତ୍ରେ ସଚ୍ଚିଦାନନ୍ଦ ଛାତ୍ରଟିର ଚକ୍ଷୁଚିକିତ୍ସା ପାଇଁ ସମୁଚିତ ବନ୍ଦୋବସ୍ତ କରିଥିଲେ ।

ମାନସିଂହ Eastern state agency ର ଶିକ୍ଷା ପରାମର୍ଶ ଦାତା ଥିଲା ବେଳେ ରାୟଗଡ ଷ୍ଟେଟରେ ପାଣ୍ଡେୟଙ୍କ ସାକ୍ଷାତ ଲଭନ୍ତି । ତାଙ୍କୁ ଅନୁରୋଧ କରି ସେ ରାଧାନାଥ, ମଧୁସୂଦନ, ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର ଓ ଖଡିଆଳର ତତ୍‌କାଳୀନ ରାଜା ବୀରବିକ୍ରମ ଦେବଙ୍କର କେତେକ ଚିଠି ସଂଗ୍ରହ କରି ଆଣିଥବା କଥା ''ଶଂଖ'' ପତ୍ରିକାରେ ପ୍ରକାଶ କରିଛନ୍ତି । ଏ ପତ୍ରଗୁଡିକ ଏକ ଏକ ସାହିତ୍ୟିକ ଦଲିଲ୍ । ଝଙ୍କାର- ନଭେମ୍ବର- ୧୯୯୭ ସଂଖ୍ୟାରେ ମାନସିଂହଙ୍କ ସଂଗୃହୀତ ଭକ୍ତକବି ମଧୁସୂଦନଙ୍କ ଏକ ପତ୍ର ବସନ୍ତ କୁମାର ପଣ୍ଡା ପ୍ରକାଶ କରି ଏକ ଜାତୀୟ କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି । ଏଠି '' ଶଂଖ'' ପ୍ରଥମ ବର୍ଷ ୨ୟ ସଂଖ୍ୟାରେ ମାନସିଂହ ଦ୍ୱାରା ପ୍ରକାଶିତ ବୀର ବିକ୍ରମ ଦେବଙ୍କର ଦୁଇଟି ପତ୍ର ଓଡ଼ିଆ ପାଠକ ଓ ଗବେଷକଙ୍କ ଅବଗତି ନିମନ୍ତେ ଉଦ୍ଧୃତ କରୁଛି । ଏ ପତ୍ର ଦୁଇଟିରୁ ରାଧାନାଥଙ୍କ ମହାଯାତ୍ରା ସମ୍ପର୍କରେ ନୂତନ ସୂଚନା ମିଳୁଛି । ଚିଠି ଦୁଇଟି ହିନ୍ଦୀରେ ଲେଖା ।

## ବୀରବିକ୍ରମ ଦେବଙ୍କ ପତ୍ର (୧)

ଖରିଆର, ୧୦.୦୯.୧୯୦୭

ପ୍ରିୟବର ମହାଶୟ,

ଆପକେ ଚିଠି ମିଲି । ମଦୀୟ ଲିଖିତ '' ବ୍ୟଭିଚାର-ଦୋଷ ପ୍ରକାଶିକା' ନାଟକ କୋ ହିନ୍ଦୀ ଅନୁବାଦ କରନେକି ଅନୁମତି ମାଁଗତେ ହେଁ । ବହୁତହି ଅଛିବାତ୍ ହେଁ । ମେଁ ସହର୍ଷ ଅନୁମତି ପ୍ରଦାନ କରତା ହୁଁ । ଆପ ଅନୁବାଦ କିଜିୟେ, ଭେଜ୍ ଦିଜିୟେ, ମେଁ ଛପୁଆଲୁଙ୍ଗା ଉକ୍ରଲ ପୁସ୍ତକ ମେଁସେ '' ଉକ୍ରଲ୍ ଦୁର୍ଦ୍ଦଶା'' ଅଉର '' ନାଟକ ରଚନା ପ୍ରଣାଳୀ'' ଓ ହରିଶ୍ଚନ୍ଦ୍ର ଭାରତେନ୍ଦୁ ବାବୁ ହରିଶ୍ଚନ୍ଦ୍ର ଲିଖିତ ନାଟକାବଲୀକି ଆଧାର ପର ଲିଖା ହୁଁ । ଦୋ ପୁସ୍ତକ ପ୍ରକାଶ ହୋ ଚୁକୀ, ଯୋ ଆପ୍‌କେ ପାଶ୍ ଭେଜାହୁଁ । ଅଓର 'ହରିଶ୍ଚନ୍ଦ୍ର' ଇସ୍ ବଖତ ପ୍ରେସ୍ ମେ ହାୟ । ଆନେପର୍ ଭେଜ୍ ଦୁଙ୍ଗା । ରାଜକୁମାରୀ ଶିକ୍ଷା ' କେ ସମ୍ବନ୍ଧମେଁ ଯୋ ମହାଶୟୋଁ କୋ ମନ୍ତବ୍ୟ ହେଁ, ଓହ୍ ଆପକେ ପାଶ୍ ଭେଜା ନ ହୋଙ୍ଗା କରକେ, ଅବ୍ ଭେଜତାହୁଁ, ଦେଖ୍ ଲିଜିୟେଗା ବର୍ତ୍ତମାନ, ମଦୀୟ ଲିଖିତ,



Digitized by srujanika@gmail.com

କୁସୁମ ସୁନ୍ଦରୀ ନାଟକ ହରିଶ୍ଚନ୍ଦ୍ର, ଶୈଳବାଳା, ପଞ୍ଜାବ ପତନ, ଅଶ୍ୱଶାସ୍ତ୍ର ପ୍ରଶ୍ନାବଳୀ, ଭାତୃସ୍ନେହ ନାଟକ, ସ୍ତ୍ରୀ ଶିକ୍ଷା ( ହିନ୍ଦୀ) ଯନ୍ତ୍ରସ୍ଥ ହେଁ ଯୈ ସେ ଯୈସେ ଆତେ ଯାଏଙ୍ଗେ, ଭେଢ୍‌ତେ ଯାଉଙ୍ଗା । କବିବର ରାୟ ରାଧାନାଥ ବାହାଦୂର କୋ ଫିଲହାଲ ମୈ କଟକମେଁ ଦେଖାଥା । ମେରେ ଅନୁମାନ ସେ ଉନେ ଶୋକଜ ଉନ୍ମାଦ ହୁଆ ହେଁ । ଔର୍ କହନ୍ ସେ ଇୟହ ବି ମାଲୁମ୍ ହୁଆ କି, ଯିସ୍ ଦିନ୍ ସେ ଉନ୍‌କେ ମହାଯାତ୍ରା ପୁସ୍ତକ କେ ଉପର୍‌ସେ ଉନପର ରାଜ ଦ୍ରୋହକା ଦୋଷ ଲଗାୟା ଗୟା, ଉସି ଦିନସେ ଉନ୍‌କା ଦିଲ୍ ବିଗଡ୍‌କର ସାଧାରଣ ଓ ସ୍ୱାଭାବିକ ଘଟନା ଭାରିସି ମାଲୁମ୍ ପଡନେ ଲଗୀ ହେଁ । ଅଉର ଯଥାର୍ଥ ମେ ସାଂଘାତିକ ଦୁଖ୍ ହୃଦୟକୋ ପହୁଁଚତେ ହି ମନୋବାହିନୀ ନାଡୀ ବିଗଡ ଯାତୀ ହେଁ । ଅଉର ଉପରୋକ୍ତ ରୋଗକା ସଂଚାର ହୋତା ହେ । ଅଉର ଇୟହ ରୋଗ ଷଡ୍ ଋତୁ ଭୋଗ ହୋଯାନେ ପର ଅସାଧ ହୋ ଯାତା ହେଁ । ଇଷ୍‌ସେ ମେଁ ନିଃ ସନ୍ଦେହ କହ୍ ଶକ୍‌ତା ହୁଁ କି, ଉକ୍ତ ମହୋଦୟକି ସ୍ୱାସ୍ଥ୍ୟ ଆଛା ହୋନେ କି ଆଉର୍ ସମ୍ଭାବନା ନାହିଁ ହେଁ । ଈଶ୍ୱରେଚ୍ଛା ବଲୀୟସୀ । ଯୋ ହୋନ୍‌ହାର ହେଁ ଓହି ହୋତା ହେଁ । ମନୁଷ୍ୟକା କୁଛ ବଶ୍ ନହିଁ ଚଲ୍‌ତା । ଅନାନ୍ୟ ସବ୍ କୁଶଲ ହେଁ ଆପ୍‌କା ଆଶୀର୍ବାଦାର୍ହ

ବୀରବିକ୍ରମ ଦେବ
ଯୁବରାଜ ଖରିଆର

## ପତ୍ର ( ୨ )

ମହାଶୟ,

ଗତ୍ କଲ୍ ଆପ୍‌କା କୃପାପତ୍ର ଓ 'କରୁଣା ସପ୍ତକ' ମିଲା । ରଚନା ବହୁତ ଠିକ୍ ହେଁ ଆପ୍ ହିନ୍ଦୁସ୍ଥାନୀ ହୋକର ଭି ଉତ୍କଳ ସାହିତ୍ୟ କି ଓର୍ ଝୁକା ହୁଆ ଦେଖକର୍ ମୁଝେ ବହୁତ ହି ଆନନ୍ଦ ହୁଆ । ଈଶ୍ୱର ଆପକୋ ଇସ୍ ନବୀନ କାର୍ଯ୍ୟମେ ସଫଲତା ଦେୱେ ୟହି ପ୍ରାର୍ଥନା ହେଁ ।

ସପ୍ତକ ମେଁ ଯୋକୁଛ ସଙ୍ଗତାସଙ୍ଗତ ଥି ଉସ୍‌କା ସୁଧାର କର ଶିଷେକି ପେନ୍‌ସିଲ୍ ସେ ଲିଖ୍‌ଦିୟା ହୁଁ । ଦେଖ ଲେଙ୍ଗେ ।

ରାଧାନାଥ ଗ୍ରନ୍ଥାବଲି ମେଁ ବାସ୍ତବତଃ ରାଜ ବିଦ୍ରୋହ- ସୂଚକ ଯେସା କୋଇ ପଦ୍ୟ ନହିଁ ହେଁ । ତଥାପି ସରକାର କୋ ଏଡି ଟେଢ଼ି ସମ୍‌ଝାନେ ୱାଲେ, ପୁସ୍ତକ ମେଁ ଯହାଁ ଯହାଁ 'ଯବନ' ଶବ୍ଦୋକୋ ପ୍ରୟୋଗ ହୁଆ ହେଁ, ଉସିକୋ ବିଧର୍ମୀ ଅର୍ଥଲେକର, ଗୁରୁଣ୍ଡା



Digitized by srujanika@gmail.com

( ଗୋରା) ପର କଟାକ୍ଷ କିୟା ଗୟା ହେଁ କରକେ ସମ୍‌ଝାୟେ ହେ । ଅଓର ରାଧାନାଥ ବାବୁକୋ ଲାଚାର ହୋକର କ୍ଷମା ମାଁଗନି ପଡି । ଏ ସବ୍ ବାତେଁ ୧୯୦୬ ସାଲ୍ କେ ପୂର୍ବ ବଙ୍ଗବାସୀ ମେଁ ପ୍ରକାଶ ହୁଇଥି ।

ରାଧାନାଥ ଗ୍ରନ୍ଥାବଲୀକା ପ୍ରକାଶକ ମେରେ ସାହୋଦର ଲାଲ୍ ଶିବ ନାରାୟଣ ଦେବ ହେଁ ।

ଅନ୍ୟାନ୍ୟ କୁଶଲ୍ । ।। ଇତି ।।

ଆପକା ଆଶୀର୍ବାଦାର୍ହ

ବୀରବିକ୍ରମ ଦେବ, ଖରିଆର

ଏ ପତ୍ରରୁ ପାଣ୍ଡେୟଙ୍କର '' କରୁଣା ସପ୍ତକ'' ରଚନା ଓ ଓଡ଼ିଆ ଭାଷା ପ୍ରତି ତାଙ୍କର ପ୍ରୀତିର ଅମଳିନ ଦୃଷ୍ଟାନ୍ତ ସ୍ପଷ୍ଟ ହୁଏ ।

ପାଣ୍ଡେୟ ସତ୍ୟ ଏବଂ ଶାଶ୍ୱତର କବି । ପୁରାତତ୍ତ୍ୱ, ଇତିହାସ, ସଂସ୍କୃତି ଓ ନୃତତ୍ତ୍ୱ ଉପରେ ତାଙ୍କର ଗବେଷଣାତ୍ମକ ନିବନ୍ଧ ଦେଶ ବାହାରେ ମଧ୍ୟ ପ୍ରଶଂସିତ । ଅନୁଭୂତିର ଗଭୀରତା ନେଇ ତାଙ୍କର ସାରସ୍ୱତଚର୍ଯ୍ୟା, ଯାହା ଭାଷା, ଭୂମି ଭେଦ ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ ଓ ପ୍ରାଚୁର୍ଯ୍ୟ ମଣ୍ଡିତ । ହିନ୍ଦୀ ଭାଷୀ ଏହି ଯୁଗଜନ୍ମାଙ୍କ ଓଡ଼ିଆ ସାହିତ୍ୟକୁ ଦାନ ଅସାଧାରଣ । ଓଡ଼ିଆ ସାହିତ୍ୟର ସାମଗ୍ରିକ ଅଧ୍ୟୟନ ବେଳେ ତାଙ୍କର ଅବଦାନକୁ ବିସ୍ମରୀଗଲେ ଇତିହାସ କ୍ଷମା ଦେବ ନାହିଁ । ୧୮ ନଭେମ୍ବର ୧୯୫୯ରେ ଇହଲୀଳା ସାଙ୍ଗ କରିଥିବା ସେହି ଯୁଗାନ୍ତକାରୀ ସ୍ରଷ୍ଟାଙ୍କୁ ଆସନ୍ତୁ ପଲ୍ଲୀ କବି ନନ୍ଦକିଶୋର ବଳଙ୍କ ଭାଷାରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ।'' I have all along entertained a really high opinion about your literary activities and patriotism so deep and sober. You have laid every oriya under obligation by your disintersted endeavours in favour of oriya language and literature... I really feel my self drawn nearer to you by your noble and pure life, glimpses of which can be had from your writings.(ନନ୍ଦକିଶୋର ବଳଙ୍କ ତା ୧୬.୯.୧୯୧୧ର ପତ୍ର)□□□



Digitized by srujanika@gmail.com

# ଅନାଲୋଚିତ ପ୍ରତିଭା:
# କବି ମୌଲାନା ମୁସ୍ତକିମ୍ ଖାଁ

ମୌଲାନା ମୁସ୍ତକିମ୍ ଖାଁ ଜଣେ ମାନବବାଦୀ କବି । ତାଙ୍କ କବିତାରେ ବହୁମୁଖୀ ସାମାଜିକ ଆବେଦନର ପରିଚୟ ମିଳେ । ଗଭୀରତମ ପ୍ରେମରୁ, ତୀବ୍ରତମ ଆତ୍ମିକ ଅନୁଭବରୁ ତାଙ୍କ କବିତାର ସୃଷ୍ଟି । ସେ ଥିଲେ ସର୍ବଶ୍ରେଷ୍ଠ ରୋମାଣ୍ଟିକ୍ ଓ ସର୍ବୋତ୍ତମ ଆଧ୍ୟାତ୍ମବାଦୀ । ସାମାଜିକ ଜୀବନର ଅଭାବ, ଅସୁବିଧା, ସ୍ୱପ୍ନଭଙ୍ଗ ଭିତରେ ବି ସେ ଥିଲେ ସ୍ୱପ୍ନବିଳାସ, ଖିଆଲି ଓ କଳ୍ପନା ପ୍ରବଣ । ପ୍ରତିଟି କବିତାରେ ରୋମାଣ୍ଟିକ୍ ଚେତନା ସହ ଆଧ୍ୟାତ୍ମିକ ଚିନ୍ତାଧାରାର ଅପୂର୍ବ ପ୍ରତିଫଳନ ଦେଖାଯାଏ। ତାଙ୍କ କବିତାର ଓଁକାର ଧ୍ୱନି ସମାଜର ଦୁଃଖକୁ, ଦୁର୍ବିପାକକୁ, ଅସହାୟତାକୁ ଧୋଇଦେଇ ଏକ ସହଜ ସୁନ୍ଦର ପୃଥିବୀର ନବନିର୍ମାଣ କରେ । ଜାଗତିକ ଦୁଃଖ, ଦୁର୍ଦ୍ଦଶା ପାଇଁ ଈଶ୍ୱରଙ୍କଠାରେ ସର୍ବସ୍ୱ ସମର୍ପି ଦେଇଥିବା ଅଭିମାନୀ କବି ଗାଇ ଉଠନ୍ତି :

'' ପ୍ରଭୁ ଯାହାଇଛା ତାହାକର  
ସମର୍ପିତ ମନ-ଧନ-ଯଉବନ କଞ୍ଜ ଚରଣେ ତୁମର ।  
ଲାଭ-କ୍ଷତି-ମାନ-ଅଭିମାନ-ଶାଖା  
ଛେଦନରେ ମୋର କିଛି ନାହିଁ ଦକା  
ଧର୍ମାଧର୍ମ-ପତ୍ର ପାପପୁଣ୍ୟ-ଫଳ, ଏଥିକି ନାହିଁ ଖାତର ।

ଧର୍ମକୁ ସେ ମାନବୀୟ ସମ୍ବେଦନାରେ ରସାଣିତ କରିଛନ୍ତି । ସର୍ବଧର୍ମ ସମନ୍ୱୟରେ ବିଶ୍ୱାସ ରଖୁଥିବା ଏହି କୃତବିଦ୍ୟ ସାଧକଙ୍କ କବିତାରେ ମହନୀୟତା, ସହନଶୀଳତା ଏବଂ ସର୍ବୋପରି ସବୁ ମଣିଷ ଓ ଧର୍ମକୁ ଏକ ବୋଲି ପ୍ରତିପାଦନ କରିବାର ମନୋଭାବ ସୁସ୍ପଷ୍ଟ । ଉନବିଂଶ ଶତାବ୍ଦୀର ଶେଷ ବର୍ଷ (୧୮୯୯)ରେ ଜନ୍ମିତ ଏହି ପ୍ରତିଭାର ବିକାଶକାଳ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ । ତତ୍‌କାଳୀନ ପଶ୍ଚିମ ଓଡ଼ିଶାର ବିପର୍ଯ୍ୟସ୍ତ ସାମାଜିକ ଜୀବନ, ସାମ୍ରାଦ୍ୟବାଦୀ ବ୍ରିଟିଶ୍ ପ୍ରଶାସନର ଦୁଃସ୍ପରିଣାମ ଓ ଭାଷା ସାହିତ୍ୟର ଦୁର୍ବିସହ ସନ୍ଧିକ୍ଷଣରେ ମୌଲାନା ମୁସ୍ତକିମ୍ ନିଜ କୃତି ସମୂହକୁ ବୃହତ୍ତର ଜନସାଧାରଣଙ୍କ ଉନ୍ନତିକଳ୍ପେ ଉତ୍ସର୍ଗୀ ଦେଇଥିଲେ ।

ଗଣ୍ଡିବଦ୍ଧ ପରମ୍ପରା ଓ ଧର୍ମ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱରେ ମୁସ୍ତକିମ୍‌ଙ୍କ ସାରସ୍ୱତ ପ୍ରୟାଣ । ପଶ୍ଚିମ ଓଡ଼ିଶାର ସାମାଜିକ ପୃଷ୍ଠଭୂମିରେ ଗଣସାହିତ୍ୟର ଆଲୋକ ବର୍ତ୍ତିକାରୂପେ ଏହା



Digitized by srujanika@gmail.com

ଦେଦୀପ୍ୟମାନ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭାଷା ସାହିତ୍ୟ ଉପରେ ଚରମ ଦୁର୍ଗତି ଦେଖାଦେଇଥିଲା । ଗ୍ରାମାଞ୍ଚଳର ଲୋକଙ୍କ ମଧ୍ୟରେ ଧର୍ମ ମାଧ୍ୟମରେ ଶିକ୍ଷା ପ୍ରଦାନର ଏକ ଉତ୍କୃଷ୍ଟ ରୁଚି ସୃଷ୍ଟି ହୋଇଥିଲା । ହିନ୍ଦୁ ମୁସଲମାନ ସହାବସ୍ଥାନ ଫଳରେ ଗଢ଼ି ଉଠିଥିଲା ଏକ ମିଶ୍ର ସଂସ୍କୃତି । ଏହି ନବ ଉତ୍‌ଥିତ ସାଂସ୍କୃତିକ ଧାରା ବିଭିନ୍ନ ଭାଷାର ତାଡନାରେ ଅତିଷ୍ଠ ହୋଇ ମୁକ୍ତିର ରାହା ଖୋଜୁଥିଲା । ଭାଷା ସାହିତ୍ୟର ମିଶ୍ର ଆବେଦନକୁ ସମ୍ମାନ ଜଣାଇ ପରିଚ୍ଛନ୍ନ ଦିଗନ୍ତର ସନ୍ଧାନୀ ହୋଇଥିଲେ  କବି ମୁସ୍ତକିମ୍ । ସେ ଉର୍ଦ୍ଦୁ, ଓଡ଼ିଆ ମିଶ୍ରଣରେ ଭାଷାକୁ ଦେଲେ ନୂତନ ଜୀବନୀ ଶକ୍ତି, ଭାବକୁ ଦେଲେ ଅଫୁରନ୍ତ ଆବେଗ ଏବଂ ସାହିତ୍ୟକୁ କଲେ ଗତିଶୀଳ ।

ଅନେକ ଶିକ୍ଷିତ ମୁସଲମାନ ଉର୍ଦ୍ଦୁକୁ ଆଦରି ନେବାବେଳେ ମୁସ୍ତକିମ୍  ଓଡ଼ିଆ ଭାଷାର ସମୃଦ୍ଧି ଓ ହିନ୍ଦୁଧର୍ମର ପ୍ରଚାର ସହିତ ଧର୍ମ ସମନ୍ୱୟର ବାର୍ତ୍ତାକୁ ବଳିଷ୍ଠ ଭିତ୍ତିରେ ସ୍ଥାପନ କରିଥିଲେ । ସମ୍ବଲପୁର ଅଞ୍ଚଳରେ ମୁସଲମାନମାନେ କ୍ଷମତାର କେନ୍ଦ୍ରରେ ନ ଥିଲେ ବରଂ ସଂଖ୍ୟାଲଘୁ ଭାବରେ ରହି ଶତାବ୍ଦୀ ଶତାବ୍ଦୀ ଧରି ହିନ୍ଦୁ ଧର୍ମର ସଂସ୍ପର୍ଶରେ ଆସିଥିଲେ । ମୁସ୍ତକିମ୍ ଭିନ୍ନ ଏକ ସମ୍ପ୍ରଦାୟର ହୋଇ ମଧ୍ୟ ହିନ୍ଦୁ ଧର୍ମର ସାରବତ୍ତାକୁ ଯେପରି ନିବିଡ ଭାବେ ଅଧ୍ୟୟନ କରି ଗଣ ମାଧ୍ୟମରେ ଲୋକାଭିମୁଖୀ କରିଛନ୍ତି ତାହା ତାଙ୍କର ସାରସ୍ୱତ ନିଷ୍ଠା ଓ ଗଭୀରତାର ପ୍ରମାଣ । ଲୋକପ୍ରିୟ ସାଧାରଣ ଭାଷାରେ ପ୍ରାଣବାନ ସାହିତ୍ୟ ସୃଷ୍ଟି କରିବାର କଠୋର ବ୍ରତ ସେ ଗ୍ରହଣ କରିଥିଲେ ଏବଂ ଏହି ସାଧନାରେ ସିଦ୍ଧି ପ୍ରାପ୍ତ ହୋଇଥିଲେ । ସବୁ ଧର୍ମ ତାଙ୍କର ଥିଲା ଅତି ନିଜର । ମାନବ ଓ ମାନବତା ଥିଲା ତାଙ୍କର ଆରାଧନାର ବସ୍ତୁ । ତେଣୁ ସେ 'ଆଲ୍ଲାଙ୍କ ଉପରେ ଯେତେ କବିତା ଓଡ଼ିଆ ଓ ଉର୍ଦ୍ଦୁରେ ଲେଖିଛନ୍ତି, ତତୋଽଧିକ ଭକ୍ତିମୂଳକ ସଂଗୀତ ରାଧା-କୃଷ୍ଣ, ହରପାର୍ବତୀଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି । ସମ୍ଭବତଃ ସାଲବେଗଙ୍କ ପରେ ସେ ହିଁ ହେଉଛନ୍ତି ପ୍ରଥମ ଓଡ଼ିଆ ମୁସଲମାନ କବି ଯିଏକି ସନାତନ ଧର୍ମ ଉପରେ ଏତେ ବେଶୀ କାବ୍ୟ କବିତା ରଚନା କରିଛନ୍ତି ।

ପୃଷ୍ଠଭୂମିର ଅନ୍ଧକାର ମଧ୍ୟରେ ମୁସ୍ତକିମ୍ ଥିଲେ ଦୀପ୍ତିମନ୍ତ ସୂର୍ଯ୍ୟ । ଜଣେ ସଂଗ୍ରାମୀ ମଣିଷ ଭାବେ ସେ ଅନୁନ୍ନତ, ଅଶିକ୍ଷିତ ଗ୍ରାମାଞ୍ଚଳର ମଣିଷ ପାଇଁ ଲଢ଼େଇ କରୁଥିଲେ । ସାରସ୍ୱତ ଲଢ଼େଇର ଏହି ବୀଜମନ୍ତ୍ର ସେ ଗୁରୁ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କଠାରୁ ପ୍ରାପ୍ତ ହୋଇଥିଲେ । ସ୍ୱପ୍ନେଶ୍ୱର ଦାଶ (୧୮୭୬-୧୯୬୨) ରାଧାନାଥ ଯୁଗୀୟ ଜଣେ ବହୁପ୍ରସୂ ଅଥଚ ଅନାଲୋଚିତ ପ୍ରତିଭା । ସେ ହୀରାଖଣ୍ଡ, ସାଧନା, ଉତ୍କଳସେବକ, ପ୍ରଭୃତି ପତ୍ରିକାର ସମ୍ପାଦନା ସହିତ ସୁରେନ୍ଦ୍ର ସାଏ, କାମାୟନୀ, ଲାଟଦର୍ଶନ, ବ୍ୟାକରଣ ସ୍ତବ ପ୍ରଭୃତି ଅଜସ୍ର ପୁସ୍ତକର ରଚୟିତା । କବିଭୂଷଣ ସ୍ୱପ୍ନେଶ୍ୱରଙ୍କ ପ୍ରଭାବ ମୁସ୍ତକିମ୍‌ଙ୍କୁ କବି ହେବାର ପ୍ରେରଣା  ଯୋଗାଇଥିଲା ।



Digitized by srujanika@gmail.com

ରାଧାନାଥଙ୍କ ଆବିର୍ଭାବ ପରେ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ଦୃଷ୍ଟି ସମ୍ପ୍ରସାରିତ ହୋଇଥିଲା । ଅନେକ ଗବେଷକ ମନେ କରନ୍ତି ଆଧୁନିକତାର ପ୍ଳାବନରେ ସମଗ୍ର ସାହିତ୍ୟ ପ୍ଲାବିତ ହୋଇଯାଇଥିଲା । ପ୍ରକୃତରେ କୌଣସି ଯୁଗର କୌଣସି ସାହିତ୍ୟରେ ଏପରି ଘଟିବାର ନଜିର ନାହିଁ। ସାହିତ୍ୟ ଏକ ଆବେଗପ୍ରବଣ ସ୍ରୋତସ୍ୱିନୀ। ଏହା ବିଭିନ୍ନ ସ୍ରୋତର ମିଳନରେ ପରିପୁଷ୍ଟ। ଆବଶ୍ୟକତା ଅନୁସାରେ, ସାମାଜିକ ପ୍ରତିବଦ୍ଧତାର ଦାୟରେ ସାହିତ୍ୟର ସୃଷ୍ଟି। ସମକାଳରେ ସମତାଳରେ ରାଧାନାଥଙ୍କ ସାହିତ୍ୟ ଗଢ଼ି ଉଠିଲାବେଳେ ଅନ୍ୟପକ୍ଷରେ ଭୀମଭୋଇଙ୍କ ଭଜନ ଲୋକଚିତ୍ତକୁ ଆକୃଷ୍ଟ କରିଥିଲା। ନବନାଟ୍ୟ ଆନ୍ଦୋଳନର ଉଦ୍ଭଟ ପରୀକ୍ଷାମୂଳକ ନାଟକକୁ ପରାହତ କରି ଗଣକବିଙ୍କ ଗୀତିନାଟ୍ୟ ଗ୍ରାମାଞ୍ଚଳର ସଂଖ୍ୟାଧିକ ଲୋକଙ୍କ ସମ୍ବେଦନାକୁ ଆଦ୍ର କରି ତୋଳୁଥିଲା। ଏଣୁ ଆଧୁନିକ ସାହିତ୍ୟର ଜୟଯାତ୍ରାବେଳେ ମଧ୍ୟ ଗଣସାହିତ୍ୟର ଧ୍ୱଜା ତୋଳି ବୈଷ୍ଣବ ପାଣି ଗଣକବିର ସମ୍ମାନରେ ସମ୍ମାନିତ। ବୈଷ୍ଣବ ପାଣିଙ୍କ ପରି ଅନେକ ଗଣକବି ସାହସିକ ସାହିତ୍ୟ କର୍ମକରି ମଧ୍ୟ ସଂପ୍ରତି ଅନାଲୋଚିତ। ଏମିତି ଏକ କୃତବିଦ୍ୟ ସାଧକ ମୌଲାନା ମୁସ୍ତକିମ୍ ଖାଁ ।

ମୁସ୍ତକିମ୍ ଅବିଭକ୍ତ ସମ୍ବଲପୁର ଜିଲ୍ଲା ତଥା ବର୍ତ୍ତମାନର ଝାରସୁଗୁଡା ଜିଲ୍ଲାର ଲଖନପୁର ତହସିଲର ରାଜସ୍ୱ ଗ୍ରାମ ରେମତା ( ଭୁତିଆ)ଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ମାତା ଥିଲେ ରେମଣ୍ଡା ଗୌନ୍ତିଆ ଓ୍ୱାରିସ୍ ମହମ୍ମଦଙ୍କ ଜ୍ୟେଷ୍ଠା କନ୍ୟା ହମିଦୁନ ବିବି ଓ ପିତାଙ୍କ ନାମ ଥିଲା ଅହମଦ ଖାଁ । କବି ମୁସ୍ତକିମ୍‌ଙ୍କ ପିତାଙ୍କ ନାମ ବ୍ୟତୀତ ତାଙ୍କର ବଂଶ ପରିଚୟ ଓ ପୂର୍ବ ବାସସ୍ଥାନର କୌଣସି ସୂଚନା ମିଳେନାହିଁ । ଅହମଦ ଖାଁ ପ୍ରଚଣ୍ଡ ସ୍ୱାଭିମାନୀ ଥିଲେ । ସେ ନିଜର ପତ୍ନୀ ହମିଦୁନ୍ ବିବିଙ୍କ ସହିତ ରେମତାରେ ଏବେ ମସଜିଦ୍ ଥିବା ଘରେ ବସବାସ କରୁଥିଲେ । ଥରେ ପତ୍ନୀଙ୍କ ସହିତ ସାମାନ୍ୟ ଘରୋଇ କଳହକୁ କେନ୍ଦ୍ରକରି ସେ ଘରଛାଡି ଚାଲିଯାଇଥିଲେ । ତାଙ୍କ ମୃତ୍ୟୁପରେ ସେ ଲଇଡାଠାରେ କାଚଚୁଡି ତିଆରି କରି ଜୀବିକା ନିର୍ବାହ କରୁଥିବାର ଜଣା ପଡିଲା । ସେ ଘରଛାଡିବା ପରେ ରାୟଗଡ ଅଞ୍ଚଳରେ ଦ୍ୱିତୀୟ ବିବାହ କରିଥିଲେ ।

ବାପହରା ଶିଶୁପୁତ୍ରର ଲାଳନପାଳନ ଦାୟିତ୍ୱ ସଧବା ହୋଇ ବିଧବା ପରି ଜୀବନ ବିତାଉଥିବା ହମିଦୁନ୍ ବିବିଙ୍କ ଉପରେ ପଡିଲା । ଏଥିରେ ତାଙ୍କର ବାପା ଓ ସାନଭାଇ ଅଲିଉଲ୍ ମହମ୍ମଦ ଭଣଜାଙ୍କୁ ପୁତ୍ରବତ୍ ଭଲପାଇ ଶିକ୍ଷାଦୀକ୍ଷାର ସମସ୍ତ ଭାର ଗ୍ରହଣ କରିଥିଲେ ।

ସେତେବେଳେ ରଂପେଲାରେ ମାଇନର ସ୍କୁଲ ପର୍ଯ୍ୟନ୍ତ ଥାଏ । ପ୍ରଧାନ ଶିକ୍ଷକ ଥାଆନ୍ତି କବିଭୂଷଣ ସ୍ୱପ୍ନେଶ୍ୱର ଦାଶ । ମୌଲାନା ମୁସ୍ତକିମ୍ ସେହିଠାରେ ତୃତୀୟ ଶ୍ରେଣୀ



Digitized by srujanika@gmail.com

ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ଏଇଠି କବି ଜୀବନର ମୂଳଦୁଆ ପଡିଥିଲା । ପରେ ସିଦ୍ଧ ସୁଫି ଫକୀର ଅବଦୁଲ୍ଲା ଶାହଙ୍କଠାରୁ ସେ ଆରବୀ ଓ ପାର୍ସି, ଭାଷା, ଧର୍ମ ଓ ଯୁଦ୍ଧବିଦ୍ୟା ଶିକ୍ଷାକରିଥିଲେ । ବିଭିନ୍ନ ଲୋକଙ୍କଠାରୁ ମନ୍ତ୍ରତନ୍ତ୍ର ଶିକ୍ଷାକରି ସିଦ୍ଧିଲାଭ କରିଥିଲେ । ବ୍ରାହ୍ମଣ ପଣ୍ଡିତମାନଙ୍କ ସହିତ ଯୋଗାଯୋଗ କରି ସଂସ୍କୃତ ଓ ହିନ୍ଦୁଧର୍ମ ଉପରେ ପାରଦର୍ଶିତା ଲାଭକଲେ ।

କୁଡାଲୋଇର ଗୌନ୍ତିଆ ନବିଦାତ ଖାଁ ଜମାଦାରଙ୍କ ଜ୍ୟେଷ୍ଠା କନ୍ୟା ଜଏବୁନ୍ ବିବିଙ୍କ ସହ ତାଙ୍କର ବିବାହ ହୋଇଥିଲା । ବିବାହ ପରେ ମୁସ୍ତକିମ୍ ରେମଡାରେ ଅବସ୍ଥାନ କଲେ ଓ ତାଙ୍କ ଭରଣପୋଷଣ ପାଇଁ ତାଙ୍କ ମାମୁ ଅଲିଉଲ୍ ମହମ୍ମଦ ଅନେକ ଜମି ତାଙ୍କ ନାମରେ ଉପହାର ଦେଇଥିଲେ । ମାମୁଙ୍କ ମୃତ୍ୟୁପରେ ମାମୁ ପୁଅମାନଙ୍କ ସହିତ ଏହି ଜମି ନେଇ ମନାନ୍ତର ଘଟିବାରୁ କବି ଅଜ୍ଞାତବାସରେ ଯାଇଥିଲେ । କିଛି ବର୍ଷ ପରେ ଘରକୁ ଫେରିବାବେଳକୁ ଜଣାପଡିଲା ସେ କଲକତା, ମୁମ୍ବାଇ, ଚେନ୍ନାଇ ଅଞ୍ଚଳ ଯାଇ ନିଜର ଭାଗ୍ୟ ପରୀକ୍ଷା କରିଥିଲେ ଏବଂ ବଙ୍ଗଳା, ଗୁଜୁରାଟି, ମରାଠି, ତେଲୁଗୁ ଆଦି ଭାଷା ଶିକ୍ଷା କରିବାର ସୁଯୋଗ ପାଇଥିଲେ । ଫେରିବା ପରେ ସେ ଶ୍ୱଶୁର ଦେବାକୁ ଚାହୁଁଥିବା ଜମିଗ୍ରହଣ ନ କରି ନିଜେ କିଛି ଜମି ଯୋଗାଡ କରି ବସବାସ କରିଥିଲେ । ରେମଡା ଅବସ୍ଥାନ ସମୟେ ସାତଟି ସନ୍ତାନର ମୃତ୍ୟୁ ଘଟିବାରୁ ବ୍ୟଥିତ କବି ନିଜ ଘରକୁ ମସ୍‌ଜିଦ୍‌କୁ ଦାନ କରି ଜଭ୍‌ଗଲ ଭିତରେ ଘର କରି ରହିଥିଲେ । ଏହି ସ୍ଥାନକୁ 'ବିଚ୍ଛେଦଗଡ' ନାମରେ ସେ ନିମତ କରିଥିଲେ । ପ୍ରଥମ ପତ୍ନୀଙ୍କ ମୃତ୍ୟୁପରେ ଭଗ୍ନ ମନୋରଥ କବି ସମ୍ବଲପୁର ଦଲାଇପଡାସ୍ଥ ସ୍ୱନାମଧନ୍ୟ ମୁନ୍‌ସୀ ଆକବର ଅଲ୍ଲୀଙ୍କ କନିଷ୍ଠା କନ୍ୟା ଜୁବେଦା ବାଈଙ୍କୁ ବିବାହ କରନ୍ତି । ଜୁବେଦା ବାଈଙ୍କ ଗର୍ଭରୁ ଏକ ପୁତ୍ର ସନ୍ତାନ ଜନ୍ମଲାଭ କରିଥିଲେ । ସେ ହେଲେ ଆଧୁନିକ ଯୁଗର ପ୍ରତିଷ୍ଠିତ କବି କୁମାର ହସନ୍ । ମୌଲାନା ମୁସ୍ତକିମ୍‌ଙ୍କ ସଂଘର୍ଷମୟ ଜୀବନର ଅନ୍ତ ୧୯୬୬ ସେପ୍ଟେମ୍ବର ୮ ତାରିଖରେ ଘଟିଥିଲା । ଜୀବନର ଘୋର ଅଭାବ, ଅନଟନ, ମାନସିକ ଯନ୍ତ୍ରଣା ପ୍ରିୟ ପରିଜନଙ୍କ ଅବର୍ତ୍ତମାନ ମୁସ୍ତାକିମ୍‌ଙ୍କୁ ଅଧିକ ଜୀବନମୁଖୀ ଓ ପ୍ରେମମୟ କରିଥିଲା। ଯାହା ବିଶ୍ୱମୟ ଜଗତକୁ ନିଜର ମଣି ଉଦାତ୍ତ କଣ୍ଠରେ ଜୀବନର ବାଣୀ ପ୍ରଚାର କରିଥିଲା ।

ମୌଲାନା ମୁସ୍ତକିମ୍ ମୁସଲମାନ ହୋଇ ଓଡ଼ିଆ ପ୍ରାଣତାର ପରିଚୟ ପ୍ରଦାନ କରିଛନ୍ତି । ସେ ଅନୁଭବ କରିଥିଲେ ଜଣେ ପ୍ରକୃତ ହିନ୍ଦୁ ସଚ୍ଚା ମୁସଲମାନ ଓ ଜଣେ ପ୍ରକୃତ ମୁସଲମାନ ହିଁ ସଚ୍ଚା ହିନ୍ଦୁ, ଖ୍ରୀଷ୍ଟିୟାନ୍, ଭାରତୀୟ ସର୍ବୋପରି ମଣିଷ ଜଣେ । ତାଙ୍କର ଏହି ପ୍ରସାରିତ ଦୃଷ୍ଟିଭଙ୍ଗୀ ପୌରାଣିକ କଥାବସ୍ତୁକୁ ଆଧାରକରି ଲୀଳା, ସୁଆଙ୍ଗ ରଚନା କରି ଗ୍ରାମାଞ୍ଚଳର



Digitized by srujanika@gmail.com

ସାଧାରଣ ଖଟିଖିଆଙ୍କୁ ମନୋରଞ୍ଜନର ଖୋରାକ ଯୋଗାଇଥିଲା । ତାଙ୍କର ସାରସ୍ୱତ ସାଧନାର କ୍ଷେତ୍ର ଅବିଭକ୍ତ ସମ୍ବଲପୁର ଜିଲ୍ଲାର ଗ୍ରାମାଞ୍ଚଳ । ସାଧାରଣ ଗ୍ରାମବାସୀଙ୍କ ପରି ତାଙ୍କର ପ୍ରାଚୀନ ପ୍ରୀତି ସର୍ବାଧିକ । ସେ ସାଧାରଣ ଜନତାର ଅସ୍ଥିମଜ୍ଜାଗତ ରାମାୟଣ ଓ ମହାଭାରତର କଥାବସ୍ତୁକୁ ଆଧାରକରି ସାହିତ୍ୟ ସୃଷ୍ଟି କରିଛନ୍ତି । ଭାଷାକୁ ସାଧାରଣ ଅଥଚ ବୈଚିତ୍ର୍ୟମୟ କରି ଗଢ଼ି ତୋଳିଛନ୍ତି । ଓଡ଼ିଆ ଭାଷା ମଧ୍ୟରେ ସମ୍ବଲପୁରୀ ଓ ଉର୍ଦ୍ଦୁ ଚୌପଦୀ ସଂଯୋଜନ କରି ଲୀଳାକୁ ଅଧିକ ମନୋରମ ଓ ଆହ୍ଲାଦମୟ କରିଛନ୍ତି ।

ଓଡ଼ିଆ, ହିନ୍ଦୀ, ଉର୍ଦ୍ଦୁ ଓ ସମ୍ବଲପୁରୀ ଭାଷା ପ୍ରୟୋଗଦ୍ୱାରା ମାନସିକ ସାଯୁଜ୍ୟ ହାସଲ ଏବଂ ସାମ୍ପ୍ରଦାୟିକ ସଦ୍‌ଭାବ ସ୍ଥାପନ ତାଙ୍କର ଉଦ୍ଦେଶ୍ୟ । ଭାବବତ ସ୍ତରରେ ମଣିଷ ମଣିଷ ମଧ୍ୟରେ ସଂହତିରକ୍ଷା ଓ ଐକ୍ୟସ୍ଥାପନ ତାଙ୍କର ସାହିତ୍ୟର ବଳିଷ୍ଠ ବିଭାବ । ମୌଲାନା ହୋଇ ତାଙ୍କର ହିନ୍ଦୁ ଦେବାଦେବୀ ଓ ଓଡ଼ିଆ ସଂସ୍କୃତି ପ୍ରୀତି ପ୍ରଶଂସାଯୋଗ୍ୟ । ତାଙ୍କର ସାହିତ୍ୟର ଲକ୍ଷ୍ୟସ୍ଥଳ ଗ୍ରାମାଞ୍ଚଳର ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଲୋକ । ସେମାନଙ୍କୁ ସେମାନଙ୍କ ଜୀବନର ଅନୁପମ ପ୍ରତୀତି ଆଣିଦେବାରେ ମୁସ୍ତକିମ୍‌ଙ୍କ ସାହିତ୍ୟ ସମର୍ଥ ।

ସାଲବେଗଙ୍କଠାରୁ ଆରମ୍ଭ କରି ବହୁଲୋକ ସାଂସ୍କୃତିକ ସହାବସ୍ଥାନ ଉପରେ ଗୁରୁତ୍ୱାରୋପ କରିଛନ୍ତି । ଓଡ଼ିଆଭାଷାକୁ ଲୌକିକ ସ୍ତରରୁ ଆଣି ଓଡ଼ିଆ ସଂସ୍କୃତିକୁ ବହୁ ପ୍ରଚାରିତ କରିଛନ୍ତି । ଓଡ଼ିଆ ଭାଷା ଉପରେ ପ୍ରାଦେଶିକ ଭାଷାରେ ଆକ୍ରମଣ ବେଳେ ଓଡ଼ିଆ ଭାଷାରେ ଜୀବନୀ ଶକ୍ତିର ସଞ୍ଚାର କରିବାରେ ମୁସ୍ତକିମ୍‌ଙ୍କ ଲୀଳା, ସୁଆଙ୍ଗ, ପାଲା ଆଦି ଟନିକ ପରି କାର୍ଯ୍ୟ କରିଛି । ଏଣୁ ମୁସ୍ତକିମ୍ ସାଧାରଣଙ୍କ ଭାଷାର ସାଧାରଣ ଅତିପ୍ରିୟ ଓ ପରିଚିତ ଆଖ୍ୟାନକୁ ହିଁ ସାହିତ୍ୟର ଆଧାର ରୂପ ଗ୍ରହଣ କରିଛନ୍ତି । ମୁସ୍ତକିମ୍‌ଙ୍କ ସାହିତ୍ୟ ଦୁଇଟି କାରଣରୁ ଗୁରୁତ୍ୱପୂର୍ଣ୍ଣ । ପ୍ରଥମତଃ ଭିନ୍ନ ସମ୍ପ୍ରଦାୟର ହୋଇ ମଧ୍ୟ ଓଡ଼ିଆ ପରିଚିତିକୁ ସୁଦୃଢ଼ କରିବା ଏକ ସାହସିକ କାର୍ଯ୍ୟ । ଦ୍ୱିତୀୟତଃ ସାମ୍ପ୍ରଦାୟିକ ସଦ୍‌ଭାବ ସ୍ଥାପନରେ ତାଙ୍କର ସାହିତ୍ୟ ଉତ୍ସର୍ଗୀତ । ହିନ୍ଦୁ ମୁସଲିମ୍ ଅଭେଦ୍ୟ ପ୍ରୀତିର ଚରମ ଦୃଷ୍ଟାନ୍ତ ମୌଲାନା ମୁସ୍ତକିମ୍ ଖାଁ । ସାମ୍ପ୍ରଦାୟିକ ଭାବ ବିନିମୟର ସାନ୍ଦ୍ର ମୁହୂର୍ତ୍ତକୁ ସ୍ପଷ୍ଟ ରୂପ ଦେବାକୁ ମୁସ୍ତକିମ୍ ଖାଁଙ୍କ ରଚନାବଳୀର ଅଧ୍ୟୟନ ଅପରିହାର୍ଯ୍ୟ ତଥା ଏକ ଐତିହାସିକ ଆବଶ୍ୟକତା ।

ସାଲବେଗ ଭଜନ ସମୂହ ସାମ୍ପ୍ରଦାୟିକତାର ଉର୍ଦ୍ଧ୍ୱରେ ଯେଉଁମାନବବାଦ ଓ ସର୍ବଜନୀନ ଆଧ୍ୟାତ୍ମଚେତନାର ପ୍ରଚାର କରେ ତାହା ସତ୍ୟପୀର ପୂଜା ବା ସତ୍ୟନାରାୟଣ ପୂଜା ( ପାଲା) ଦ୍ୱାରା ବଳିଷ୍ଠ ଭିତ୍ତିରେ ସଂସ୍ଥାପିତ । ଅନେକ ଯବନ କବି ଓଡ଼ିଆ ଭାଷା-ସଂସ୍କୃତିକୁ ପୁଷ୍ଟ କରିଥିବାର ସୂଚନା ମିଳେ । ଯାତ୍ରା, ଗୀତିନାଟ୍ୟ, ଲୋକସାହିତ୍ୟରେ ସେମାନଙ୍କର ଯୋଗଦାନ ଗୁରୁତ୍ୱପୂର୍ଣ୍ଣ । ଫକୀର ମୋହନଙ୍କ 'ମାମୁ' ଉପନ୍ୟାସର ପ୍ରଥମ



Digitized by srujanika@gmail.com

ଆଲୋଚକ ଅସରଫ ଅଲ୍ଲୀ ଖାଁ ଓ ବିଶିଷ୍ଟ ଔପନ୍ୟାସିକ ମୌଲବୀ ଅବଦୁଲ ରହିମ୍ ପ୍ରଭୃତିଙ୍କ ସାରସ୍ୱତ ଅବଦାନକୁ ଏ ପ୍ରସଙ୍ଗରେ ସ୍ମରଣ କରାଯାଇପାରେ। ଅସରଫ ଅଲ୍ଲୀ ଖାଁ ଓଡ଼ିଆ ପ୍ରାଣତାର ଅପୂର୍ବ ପରିଚୟ ଦେଇଥିଲେ । ତାଙ୍କ ଘରର ନାମ 'ବାଣୀଭବନ' ପ୍ରେସର ନାମ 'ଜଗତଜ୍ୟୋତି ପ୍ରେସ୍' ଓ କାବ୍ୟର ନାମ 'ପ୍ରଦୋଷ ପଦ୍ମିନୀ' । ଏହାଙ୍କ ପୁତ୍ର ମଇନୁଦ୍ଦିନ ମହମ୍ମଦ ମଧ୍ୟ 'ପ୍ରାଚ୍ୟଦେଶର କାହାଣୀ' ପ୍ରଭୃତି ଅନେକ ଓଡ଼ିଆକୃତିର ସ୍ରଷ୍ଟା । ଅସରଫ ଅଲ୍ଲୀଙ୍କ ରଚନା ସମଗ୍ର ସଂକଳିତ ହୋଇନାହିଁ । ଅବଦୁଲ ରହିବ ଫକୀରମୋହନଙ୍କ ପ୍ରକୃତ ଉତ୍ତରାଧିକାରୀ । ସେ ସ୍ନେହଲତା (୧୯୧୨), ସ୍ୱର୍ଣ୍ଣଲତା (୧୯୨୧), କନକଲତା (୧୯୨୮), ସୁକୁମାରୀ (୧୯୨୮) ଅମୃତ କୁମାରୀ (୧୯୩୨)ପ୍ରଭୃତି  ନଅଟି ଉପନ୍ୟାସର ସ୍ରଷ୍ଟା । ଏହା ବ୍ୟତୀତ ତାଙ୍କର ଅନ୍ୟାନ୍ୟ ରଚନାର ଏକ ସୁଦୃଶ୍ୟ ଗ୍ରନ୍ଥାବଳୀ ଚିତ୍ରୋତ୍ପଳା ପବ୍ଲିକେଶନ ଆନୁକୂଲ୍ୟରେ ପ୍ରକାଶ ଲଭି ମୁସଲମାନ ଲେଖକଙ୍କର ଓଡ଼ିଆ ଭାଷା ପ୍ରୀତିର ଚରମ ନିଦର୍ଶନ ପ୍ରଦର୍ଶିତ । ମୌଲବି ଅବଦୁଲ ରହିମ ଗ୍ରନ୍ଥାବଳୀ'ର ସଂକଳକର ସଂଳାପରେ ଡକ୍ଟର ରମାକାନ୍ତ ବେହେରା କହନ୍ତି -

ବିଶେଷତଃ ଓଡ଼ିଆ ସାହିତ୍ୟରେ ମୁସଲମାନ ସାହିତ୍ୟ ସାଧକ ବିରଳ । ଜଣେ ମୁସଲମାନ ଲେଖକଙ୍କର ଲେଖନୀରେ ହିନ୍ଦୁ ପାରିବାରିକ ଜୀବନର ଯେଉଁ ଜୀବନ ଚିତ୍ର, ହିନ୍ଦୁ ନାରୀର ଧର୍ମୀୟ ବିଶ୍ୱାସ, ପୂଜା, ବାରବ୍ରତ, ବିଧବାମାନଙ୍କର ନୈତିକ ଜୀବନ ଧାରା ପ୍ରତି ତାଙ୍କର ଯେଉଁ ଆନ୍ତରିକ ଶ୍ରଦ୍ଧାବୋଧର ପରିଚୟ ମିଳେ, ବିଳମ୍ବରେ ହେଲେ ମଧ୍ୟ ସମାଜର ବୃହତ୍ତର ସଂପ୍ରୀତି ପାଇଁ ତାହା ଲୋକଲୋଚନକୁ ଆସିବା ଉଚିତ ।''  ( ମୌଲବୀ ଅବଦୁଲ ରହିମ ଗ୍ରନ୍ଥାବଳୀ)

ଏହି ମନ୍ତବ୍ୟ ମୌଲାନା ମୁସ୍ତକିମ୍ ଖାଁଙ୍କ ରଚନା ପ୍ରସଙ୍ଗରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ସମ୍ବଲପୁର ଅଞ୍ଚଳର ଲୋକ ସାହିତ୍ୟକୁ ସମୃଦ୍ଧ କରିବାରେ ମୁସ୍ତକିମ୍‌ଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ପାଲା, ସଂପ୍ରଦା, ଡାଲଖାଇ, ସୁଆଙ୍ଗ, ଫାର୍ସ, ପ୍ରଶ୍ନୋତ୍ତର ରଚନା କରି ସେ ଲୋକ ସାହିତ୍ୟର ପରିଚ୍ଛନ୍ନ ପରମ୍ପରାକୁ ଋଦ୍ଧିମନ୍ତ କରିଛନ୍ତି । ସରଳ ଗଣମାନସକୁ ମନୋରଞ୍ଜନର ଖୋରାକ ଯୋଗାଇ ଶିକ୍ଷିତ କରିବାରେ ତାଙ୍କ ସାହିତ୍ୟର ଉଦ୍ଦେଶ୍ୟ ସଫଳ ହୋଇଛି ।

ମୁସ୍ତକିମ୍‌ଙ୍କ ସାହିତ୍ୟର ପୃଷ୍ଠଭୂମି ଥିଲା ଗ୍ରାମାଞ୍ଚଳ କିନ୍ତୁ ଭାବବସ୍ତୁ ଥିଲା ଦେଶ କାଳ ପାତ୍ର ଓ ଧର୍ମର ଊର୍ଦ୍ଧ୍ୱରେ । ଇସ୍‌ଲାମ ସହିତ ବେଦବେଦାନ୍ତ, ଗୀତା, ଉପନିଷଦ ଆଦିରେ ତାଙ୍କର ଥିଲା ଅଗାଧ ପାଣ୍ଡିତ୍ୟ । ବହୁ ରାଜଦରବାରରେ ସେ ଧର୍ମାଲୋଚନା କରି ପୁରସ୍କୃତ ହୋଇଥିବାର ଜଣାଯାଏ । ବହୁ ପଣ୍ଡିତ ତାଙ୍କର ଶିଷ୍ୟ ଥିଲେ । ଜ୍ୟୋତିଷୀ, କବିରାଜୀ



Digitized by srujanika@gmail.com

ଶାସ୍ତ୍ରରେ ତାଙ୍କର ଅପୂର୍ବ ଦଖଲ ଥିଲା । ପ୍ରାଚୀନ ଛନ୍ଦ ଅଳଙ୍କାର ଉପରେ ଗଭୀର ପ୍ରବେଶ ଥିଲା । ସ୍ୱତଃସ୍ଫୂର୍ତ୍ତ ଭଙ୍ଗୀରେ ସେ ତତ୍‌କ୍ଷଣାତ୍ ସଂଗୀତ ରଚନା କରୁଥିଲେ । ତାଙ୍କର ସଂଗୀତଗୁଡ଼ିକ ଶ୍ରୁତିମଧୁର ରାଗରାଗିଣୀରେ ମହିମାମଣ୍ଡିତ । ପ୍ରାଚୀନ କାବ୍ୟ କୌଶଳର ପରୀକ୍ଷାରେ ସେ ମାହୀର ଥିଲେ, କିନ୍ତୁ ଆବେଦନ ଥିଲା ସରଳ ଓ ସର୍ବଜନ ବୋଧଗମ୍ୟ । ଶୈଳୀ ଥିଲା ପୁରାତନ ଅଥଚ ବାସ୍ତବ ଜୀବନର ଚିତ୍ରକୁ ରୂପାୟନ କରୁଥିଲା । ସମୟ ସହିତ ପାଦମିଳାଇ ଚାଲିବାରେ ସେ ପଶ୍ଚାତ୍‌ପଦ ନ ଥିଲେ । ଆବଶ୍ୟକ ହେଲେ ବୃହତ୍ତର ସମାଜର ମଙ୍ଗଳ ପାଇଁ ସେ ନିଜର ପୂର୍ବମତକୁ ଖଣ୍ଡନ କରୁଥିଲେ । ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ଜାତୀୟ କଂଗ୍ରେସର ସକ୍ରିୟ ସଭ୍ୟ ଥାଇ ସ୍ୱାଧୀନତା ପୂର୍ବରୁ ରଚିତ ତାଙ୍କର ବିଖ୍ୟାତ ଗୀତ '' ମୋଟ ବସନେ ବଢ଼ାଅ ଆଦର'' ( ଅପ୍ରାପ୍ୟ)ରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ, ଖଦୀ ଓ ଭାରତର ସ୍ୱାବଲମ୍ବନଶୀଳତା ପ୍ରତି ଲୋକଚେତନା ଜାଗ୍ରତ କରାଇଥିଲେ ମଧ୍ୟ ସ୍ୱାଧୀନୋତ୍ତର ମୋହଭଙ୍ଗ କାଳରେ ଗାନ୍ଧୀବାଦର ବିଫଳତାରେ ବିମର୍ଷପ୍ରାଣ କବି ଗାଇଥିଲେ । '' ଗାନ୍ଧୀନେ ବିଗାଡା ଭାରତ କୋ'' (ଅପ୍ରାପ୍ୟ) । ଜନତାଙ୍କୁ ଗଣତନ୍ତ ପ୍ରତି ଆକର୍ଷିତ କରି ସେ ଲେଖିଥିଲେ- ''ଜନେ ଗଣତନ୍ତ୍ରେ ନ ଭୁଲ'' । ସାମାଜିକ ପ୍ରତିବଦ୍ଧତାରେ ପୂର୍ଣ୍ଣ ଏହି କବିତା ସମୂହରୁ ତାଙ୍କର ସଂଗ୍ରାମୀ ଓ ପ୍ରଗତିଶୀଳ ଚିନ୍ତାଧାରାର ପରିଚୟ ମିଳେ ।

୧୯୩୮ ର ବନ୍ୟା, ଶସ୍ୟ ହାନୀ, ରାଜ୍ୟକର, ଅନ୍ୟାୟ ପାଣ୍ଠି ଅସୁଲପ୍ରତି ଅକୁତୋଭୟ କବିଚିତ୍ତ ପ୍ରତିବାଦ ଜଣାଇଥିଲା-

ଆଜି ସାରା ଭାରତ ବିପତି ମୁଖେ ହୋଇଛି ପତିତ ସେ । ପଦ ।
ପେଟକୁ ଦାନା ନ ମିଳଇ ସବୁରି
ଅଣ୍ଟାକୁ କନା ପାଇଁ ନାହିଁ ସଂପତ ।୧।
ତା'ପରେ ବନ୍ୟା ଶସ୍ୟରୋଗ ସର୍ବତ୍ର
ତଥି ଉପରେ ରାଜକର ବର୍ଦ୍ଧିତ ଯେ ।୨।
ତଦୁପରେ ଅନ୍ୟାୟ ପାଣ୍ଠି ଅସୁଲ
ହାହାରବେ ପ୍ରଜାଙ୍କ ଧ୍ୱନି ଉତ୍‌ଥିତ ଯେ ।୩।
ମୁସ୍ତକି ଭାଷ ଇଷ୍ଟ ସୁଦୟାକର
କୃଷକ କୁଳ ଦୁଃଖୁ ହୋନ୍ତୁ ମୁକତ ଯେ ।୪।

ପରାଧୀନତାର ଦୁଃଖ କବିଙ୍କୁ କାତର କରିଥିଲା । ଭାରତର ଚରମ ଦୁର୍ଦ୍ଦିନରେ କବି ନୀରବରେ ନ ବସି ଜନସାଧାରଣଙ୍କୁ ଇଂରେଜ ଶାସନ ବିରୁଦ୍ଧରେ ଦୃପ୍ତ ଆହ୍ୱାନ ଜଣାଇଥିଲେ ।



Digitized by srujanika@gmail.com

ଆଜି ବୀର ଶୂନ୍ୟ ହୋଇଲା କି କ୍ଷିତି
ଯେଉଁ ଭାରତ ପରେ ବୀରଙ୍କ ପ୍ରତାପରେ
ଉଦୟଥିଲା ଦିନରାତି
ମହାମହା ମଲ୍ଲ ଥିଲେ, ଯେବଣ ଭାରତେ
ନାହିଁ କି ତାଙ୍କ ପୁତ୍ର ସନ୍ତତି ?
ଦାସ ହୋଇଲେ କି ଝାନେ, ଭୂପତି ନନ୍ଦନେ
ଲଜ୍ଜା ନରଖି ଏକ ରତି ।
ରଚକ ମୁସ୍ତକି ଭାଷ, ଦୁଃଖୀଙ୍କ ନିଃଶ୍ୱାସେ
ବିଭ୍ରମ ହୋଇଲା ବି ନୀତି ।

କବି ମୁସ୍ତକିମଙ୍କ ସୁପୁତ୍ର କୁମାର ହସନ୍‌ଙ୍କ ଅନୁସାରେ କବିଙ୍କର ଅନେକ ପାଣ୍ଡୁଲିପି ସୁରକ୍ଷିତ ଥିଲା ହେଲେ ତାଙ୍କ ପ୍ରବାସ କାଳରେ ଗାଁ ଘର ବର୍ଷାରେ ଭୁଷୁଡ଼ିପଡିବାରୁ ବହୁ ପାଣ୍ଡୁଲିପି ମଧ୍ୟରେ ତ୍ରିପୁରମୋହିନୀ ହରଣ, ନୀଳାଦ୍ରିହରଣ, ଶ୍ରୀରାମ ବନବାସ ଗୀତାଭିନୟ, ଲକ୍ଷ୍ମୀପୁରାଣ ସୁଆଙ୍ଗ, କୃଷ୍ଣଜନ୍ମ, ଦିୱାନା ମୁସ୍ତାଫା, ପଠାଣ ଠଗ ଫାର୍ସ, ସାଧୁ ବେଶ୍ୟା ଫାର୍ସ, ଗ୍ରାହକ ପ୍ରଶ୍ନୋତ୍ତର ମାଳା (୧ମ, ୨ୟ ଓ ୩ୟ ଭାଗ), ସଂଗୀତ ରସକଲ୍ଲୋଳ, ଦ୍ୱିଭାଷୀ ଛାନ୍ଦ, ବୋଧକଥା, ପୃଥ୍ୱୀଯୁଗ ଓ ସତ୍ୟାସତ୍ୟ ଜନ୍ମ ଓ ଯୁଦ୍ଧ, ମାନବ ଭଞ୍ଜନ ଚଉତିଶା, ଭଜନ ଅନାମିକା ଚଉତିଶା ବହୁ ଗୀତିକବିତା ପ୍ରଭୃତି ପ୍ରଧାନ । ଏ ସମସ୍ତ ଭିତରୁ ଯେଉଁ କେତୋଟି କୃତି ବହୁ ଆୟାସ ମଧ୍ୟରେ ସଂଗୃହୀତ ସେଥିରୁ କବିଙ୍କର ସାରସ୍ୱତ ଆବେଦନର ବଳିଷ୍ଠ ପ୍ରମାଣ ସମୁଜ୍ଜ୍ୱଳ ।

**କ: ଲକ୍ଷ୍ମୀପୁରାଣ ସୁଆଙ୍ଗ:** ଏହି ସୁଆଙ୍ଗରେ ଶ୍ରୀୟା ଚାଣ୍ଡାଳୁଣୀ ଘରକୁ ଲକ୍ଷ୍ମୀ ଯିବା ଘଟଣାକୁ ନେଇ ବହୁ ପ୍ରଚଳିତ ଆଖ୍ୟାୟିକା ବର୍ଣ୍ଣିତ । ସୁଆଙ୍ଗର ଗତିଶୀଳତା ପାଇଁ କବି ଝଙ୍କଡ ସାରଳାଙ୍କୁ ବନ୍ଦନା କରିଛନ୍ତି । ସାରଳାଙ୍କ ବ୍ୟତୀତ ହିଙ୍ଗୁଳା, ପାର୍ବତୀ କାଳୀ ପ୍ରଭୃତି ଦେବୀଙ୍କ ସହିତ ଗଣନାଥଙ୍କୁ ମଧ୍ୟ କବି ପ୍ରାର୍ଥନା କରିଛନ୍ତି । ପାଠକ ତଥା ଶ୍ରୋତାଙ୍କୁ ଦୋଷାଦୋଷ କ୍ଷମା ପାଇଁ ବହୁ ପ୍ରଚଳିତ ପ୍ରାଚୀନ କାବ୍ୟ ପରମ୍ପରା ରୀତିରେ କବି ସମ୍ବୋଧନ କରିଛନ୍ତି ।

ମୋ ଜଣାଣ ଏତିକି କିଞ୍ଚିତ ଦୟାକର ।
ବିସ୍ତାରି କହିବି ଲକ୍ଷ୍ମୀବ୍ରତ ସମାଚାର ॥
କବି ମୁସ୍ତକିମ୍ କହେ ଯୋଡହସ୍ତ ହୋଇ ।
ସାଧୁଜନେ ନିବେଦନେ ଏତିକି କରଇ ॥
ହେବା ନୋହିବାର ଦୋଷ ନ ଧରିବ ମନେ ।



Digitized by srujanika@gmail.com

ମଧୁମକ୍ଷି ଉଚ୍ଛିଷ୍ଟ ଭକ୍ଷନ୍ତି ଦେବମାନେ ।।
ସେପରି ଦୋଷ ମାର୍ଜନା କର ରସ ନେଇ ।
ବାଲୁତକୁ ଦୋଷଦେବା ଉଚିତ ନୁହଇ ଯେ ।।

ପାରମ୍ପରିକ ନାଟ୍ୟକଳାର ଦ୍ୱାରୀ, ଚର୍ଚ୍ଚା, ଲୀଳା ମାଧ୍ୟମରେ ସରସ ଭାବରେ ଆଖ୍ୟାୟିକାଟି ଉପସ୍ଥାପିତ । ନାରଦ ଓ ପରାଶର ମୁନିଙ୍କ କଥାବାର୍ତ୍ତାରୁ ଆରମ୍ଭ ହୋଇ ସୁଆଙ୍ଗଟି ପରିଣତି ଆଡକୁ ଗତିକରିଛି । ମୁସ୍ତକିମ୍‌ଙ୍କ ବର୍ଣ୍ଣନାରେ ଦ୍ୱାରୀର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ହାସ୍ୟରସ ସୃଷ୍ଟିରେ ଦ୍ୱାରୀ ସଫଳ ହୋଇଛି । ଦ୍ୱାରୀର ଗୀତ ରଚନାରେ କବିଙ୍କ କୃତିତ୍ୱ ସ୍ୱୀକୃତ ।

ରଙ୍ଗିଆ ଦୁଆରୀ ଅଇଲା ଲୋ
ରଙ୍ଗାବୁଢ଼ି ମନ ମୋହିଲା ଲୋ । ପଦ ।
ରଙ୍ଗିଆ ଜଙ୍ଗିଆ, ଦଗଲି ରଙ୍ଗିଆ
ରଙ୍ଗ ଟୋପି ଶିରେ ବୋହିଲା ଲୋ ।୧।
ମୋ କନିଆ କାଳୀ, ଦେଲା ଲାତ ଚାରି
ହୁଣ୍ଡାର ମଳକୁ ପିଇଲା ଲୋ ।୨।
ରଙ୍ଗବାନା ଭୁଜେ, କି ରଙ୍ଗେ ବିରାଜେ
ରଙ୍ଗେ ମୁସ୍ତକିମ କହିଲା ଲୋ ।୩।

**ଖ: ତ୍ରିପୁର ମୋହିନୀ ହରଣ:** କବିଙ୍କ ରଚିତ ଏହା ଏକ ପାଲା । ବିନ୍ଧ୍ୟମାଳ ନୃପତି ମେରୁଶୃଙ୍ଗଙ୍କ କନ୍ୟା ତ୍ରିପୁର ମୋହିନୀର ସ୍ୱୟମ୍ବରରୁ କୃଷ୍ଣପୁତ୍ର ପଦ୍ମନର କନ୍ୟାହରଣ ବୃତ୍ତାନ୍ତ ଏଠାରେ ବର୍ଣ୍ଣିତ । କବି ମୁସ୍ତକିମ୍ ଏକାଧାରରେ ଜଣେ ଜ୍ୟୋତିଷ, ଶାସ୍ତ୍ରବିଦ୍, ଭିଷକରତ୍ନ । ତାଙ୍କର ବହୁମୁଖୀ ପ୍ରତିଭାର ପ୍ରତିଫଳନ ପ୍ରତିଟି ରଚନାରେ ପ୍ରତିଫଳିତ । କାବ୍ୟ ସ୍ରଷ୍ଟାର ବ୍ୟକ୍ତିତ୍ୱ ସୃଷ୍ଟି କୌଶଳକୁ ନିୟନ୍ତ୍ରିତ କରେ । ଜଣେ ଚିକିତ୍ସକ ଭାବେ ସେ ବୀର୍ଯ୍ୟବିନ୍ଦୁରୁ ଶିଶୁଜନ୍ମର ସମସ୍ତ ବିଭାବକୁ ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି ।

ପ୍ରଥମ ମାସରେ ମାସ ଋତୁ ହେଲା ବନ୍ଦ
ଦ୍ୱିତୀୟରେ ମୁଖ ନିନ୍ଦେ ପୂର୍ଣ୍ଣମୀର ଚାନ୍ଦ ।
ତୃତୀୟରେ ଅରୁଚି ଅଙ୍ଗରେ ପ୍ରକାଶିଲା
ଚତୁର୍ଥ ମାସରେ ଦେହେ ଅରୁଚି ଜନ୍ମିଲା ।
ଢେଉମାଟି ମୁଟୁକୁରି ଖାଇବାକୁ ମନ
ଖାଇଲେ ଅକାର ମାଡେ ପଖାଳ ତିଉଣ ।



Digitized by srujanika@gmail.com

ନାରୀ ରୂପ ବର୍ଣ୍ଣନାରେ କବିଙ୍କ ପାରମ୍ପରିକ ଶବ୍ଦ କୌଶଳ ଅତ୍ୟନ୍ତ ପ୍ରୀତିକର । ନାରଦ ମୁଖରେ ତ୍ରିପୁର ମୋହିନୀର ରୂପ ବର୍ଣ୍ଣନାରୁ ଏହା ପ୍ରମାଣିତ ।

ବାମା ସମାନେ ଆନ କେ ନୋହିଥିଲେ ନୋହିବେ ଗୋ । ପଦ ।
ଇନ୍ଦ୍ରଧନୁ ଖଣ୍ଡ ଜିଣି, ଦିଶଇ ଭ୍ରୂଲତା ଠାଣି
ଚତୁର୍ଥୀ ଚନ୍ଦ୍ରଲଲାଟେ ସମନୋହି ହାରିବେ ଗୋ ।୧।
ଭସ୍ମହୀନ ପକ୍ୱ ବିମ୍ବ, ଓଷ୍ଠକୁ ତୁଳ ନୋହିବ
କୋରକଜିତ ଦଶନ ହାସ ଚିତ୍ତ ମୋହିବ ଗୋ ।୨।
ନାସା ଶୁକ ତିଳଫୁଲ, ତୁଳେ କି ତୁଳନା ଛାର
ବାଣୀକୁ ବୀଣା ଅସମ, ଧନ୍ୟଗଢ଼ା ଦଇବ ଗୋ ।୩।
ଚମ୍ପା ସୁନାରୀ କେତକୀ ଅସମ ହେବେ କାନ୍ତିକି
ମୁସ୍ତକି କହେ ହଟକ ଛଟକ ତନୁ ନେତ୍ର ହୋଇବ ଅଟକଗୋ ।୪।

**ଗଃ ଦ୍ରୁପତୀ ସ୍ୱୟଂବରଃ** କବିଙ୍କର ଏହା ଏକ ରସପୂର୍ଣ୍ଣ ଆଖ୍ୟାୟିକା । ଚିର ପରିଚିତ ଆଖ୍ୟାନକୁ ନୂତନ ଶବଦ ଦୁକୂଳ ପିନ୍ଧାଇଛନ୍ତି । ଏହି ସୁଆଙ୍ଗଟି ଅସମ୍ପୂର୍ଣ୍ଣ । ଏହାର ଶେଷ ଅଂଶ ଅଲଭ୍ୟ। ଏଥିରେ ହିନ୍ଦୀ ଭାଷାର ଫାର୍ସି ସଂଯୋଜିତ କରି କବି ଏହାକୁ ଅତି ପ୍ରାଣବନ୍ତ କରିଛନ୍ତି ।

ବିଧାତା ତକଦିର୍ ମେ ଯୋ ଲିଖେଗା
ଗୋ କୋନ ମେଟେଗା ।ପଦ।
ରାଜାକା ଛୋକରୀ, ବହ୍ମନକା ପ୍ୟାରୀ
ମଙ୍ଗନେ ଖାନେ ଓ୍ୱାଲେ କା ପାଉଁ ଦାବେଗା ।୧।
ଲାଖଲାଖ ରାଜା, ଜମାୟା ହୈ ରାଜା ।
ନଶିବ୍ ମେଁ କ୍ୟା ହୈ କୌନ୍ ଜାନେଗା ।୨।
ମୁସ୍ତକିମ୍ ଧାଏ, ଯୋ କରେ ଖୋଦାଏ
ବଦନାମୀକା ହାର ଗଲେ ମେଁ ଡାଲ ଦେଗା ।୩।

**ଘଃ ପୃଥ୍ୱୀଯୁଗ ଓ ସତ୍ୟାସତ୍ୟ ଜନ୍ମ ଓ ଯୁଦ୍ଧଃ** ଏହା ଏକ ବିଚିତ୍ର କାବ୍ୟ । ଏହାର ପ୍ରସ୍ତାବନାରେ କବି କାବ୍ୟ ଉଦ୍ଦେଶ୍ୟ ଜ୍ଞାପନ କରିଛନ୍ତି:

ସଂକ୍ଷେପ ଭାବରେ ବର୍ଣ୍ଣିବି ହେଲା ଯେପରି କ୍ଷିତି
ସତ୍ୟ ଅସତ୍ୟଙ୍କ ଜନମ ଆଉ ଯୁଗ ଉତ୍ପତ୍ତି ।
ସତ୍ୟ ଅସତ୍ୟ ମର୍ତ୍ତ୍ୟ ବେନି ଭାଗ ବଣ୍ଟନ ଭାବ



Digitized by srujanika@gmail.com

ପୁଣି ଯେଉଁ ରୂପେ କଳହ ହୋଇ କଲେଟି ଯୁଦ୍ଧ ।
କହିବି ଯଥାର୍ଥ ମାଗୁଣି ପ୍ରଭୁ ଜଣାଣ ଘେନ
ବାଲୁତ ମୁସ୍ତକିମ୍ ତବ ପାଦପଦ୍ମେ ଶରଣ ।

ଏହା ଅନେକ ଛାନ୍ଦରେ ବିଭକ୍ତ । ପ୍ରତି ଛାନ୍ଦ ଭିନ୍ନ ଭିନ୍ନ ରାଗରେ ରଚିତ । ଏହି କାବ୍ୟର ପଞ୍ଚଦଶ ଛାନ୍ଦ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଏବଂ ଷୋଡ଼ଶ ଛାନ୍ଦର ଗୋଟିଏ ପଦ ମାତ୍ର ସୁଲଭ । ଅସମ୍ପୂର୍ଣ୍ଣ ହେଲେ ମଧ କାବ୍ୟର କଳା କୌଶଳ ପ୍ରଶଂସାଯୋଗ୍ୟ- କାବ୍ୟଟିର ପ୍ରାରମ୍ଭରେ ନିଦାବିଷ୍ଣୁ ପୂର୍ଣ୍ଣବ୍ରହ୍ମଙ୍କଠାରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଜନ୍ମବୃତ୍ତାନ୍ତ ବର୍ଣ୍ଣିତ ।

ଏ ଉତ୍ତାରୁ ଶୁଣ ଜନେ ଏ ବିଚିତ୍ର ରସ
ପୂର୍ଣ୍ଣବ୍ରହ୍ମ ଗୁପ୍ତେ ଥିଲେ ନ ହୋଇ ପ୍ରକାଶ ଯେ ।
ସୃଷ୍ଟି ଇଚ୍ଛା କଲେ ପ୍ରଭୁ ଅନନ୍ତ ସାଗର
ତାଙ୍କ ଆଜ୍ଞାରୁ ପ୍ରକୃତି ପୁରୁଷେ ବାହାର ଯେ ।
ପ୍ରକୃତି ଅଙ୍ଗରୁ ଯେ କିଶୋରୀ ଜାତ ହେଲା
କିଶୋରୀ ତନୁରୁଟି ଅନନ୍ତ ସମ୍ଭବିଲା ଯେ ।
ଅନନ୍ତଠାରୁ ସମ୍ଭୁତ ଶେଷଦେବ ନାମ
ଶେଷ ତହୁଁ ମହତ ହୋଇଲା ଉତ୍ପନ୍ନ ଯେ ।
ମହତ ହୁଁ ବିରାଟ ପୁରୁଷ ହେଲା ଜନ୍ମ
ଶୁଣଶୁଣ ସୁଜ୍ଞଜନ ବିଧିର ବିଧାନ ଯେ ।
ବିରାଟ ପୁରୁଷ ବାମ ଅଙ୍ଗୁ ଜାତ କଲେ
ଆଦିଶକ୍ତି ନାମ ଖ୍ୟାତି ଅଟେ ଏ ସୟଲେ ଯେ ।

**ଙ: ଉତ୍ତରମାଳା:** ଏହି ଉତ୍ତରମାଳାକୁ କବି ୧ମ, ୨ୟ ଓ ୩ୟ ଭାଗରେ ବିଭକ୍ତ କରିଥିଲେ । ଅନେକ ଉଦ୍ୟମ ଫଳରେ ୧ମ ଓ ୩ୟ ଭାଗ ସମ୍ପାଦକର ଦୃଷ୍ଟିଗୋଚର ହୋଇପାରିଛି । ଏଗୁଡିକ ମୁଖ୍ୟତଃ ସଂପ୍ରଦା, ପାଲା ସମୟରେ ସୃଷ୍ଟ ପ୍ରଶ୍ନର ଉତ୍ତରମାଳା । ଏଥିରେ କବିଙ୍କ ବହୁଶାସ୍ତ୍ରଦର୍ଶୀ ପ୍ରତିଭାର ପରିଚୟ ମିଳେ । କବିଙ୍କ ପ୍ରସାରିତ ଦୃଷ୍ଟିଭଙ୍ଗୀର ଏହା ପରିଚାୟକ । ଏଥିରେ କବି ମହାଭାରତ ରକ୍ଷଯକ୍ଷ ଖନନକାର ଜନ୍ମ, ଅଷ୍ଟବସୁ ଉପାଖ୍ୟାନ, ମର୍ତ୍ତ୍ୟକୁ ସୁଧର୍ମ ସଭା ଆସିବା, କର୍ଣ୍ଣ ମହିମା ବର୍ଣ୍ଣନ, ଦ୍ରୌପଦୀ କେତୁକା ଅବତାର, ସହଦେବ ଉପାଖ୍ୟାନ, ଦ୍ରୌପଦୀର ଛପନ କୋଟି ବସ୍ତ୍ର ପ୍ରାପ୍ତି, ମୁଖ ଓ ବେଦ ନିର୍ଣ୍ଣୟ, ନନ୍ଦିଘୋଷେ ମୁଣ୍ଡ ସ୍ଥାନେ, ଭୀଷ୍ମ ଶରଶଯ୍ୟା, ଅର୍ଜୁନ ପୂର୍ବଜନ୍ମ, ବୃହନ୍ନାରୀ କାରଣ ରାଧା ଆଗ କୃଷ୍ଣ ପଛ, ମନ ଓ ପ୍ରକୃତି, ଆୟୁ ବୃଦ୍ଧି, ଧ୍ରୁବ ପୂର୍ବଜନ୍ମ, ପିଙ୍ଗଳ ଉପାଖ୍ୟାନ,



Digitized by srujanika@gmail.com

ପଞ୍ଚବ୍ରହ୍ମ ବିଷୟ, ଶରୀରେ ସପ୍ତଦୀପ ପ୍ରଭୃତି ଅଜସ୍ର ପୌରାଣିକ ବିଷୟ ଦାୟିକା ବା ପ୍ରଶ୍ନୋତ୍ତର ଶୈଳୀରେ ସନ୍ନିବେଶିତ । କ୍ଷୁଦ୍ର କବିତା ପରି ଏଗୁଡ଼ିକ ପାଠକ ପ୍ରାଣରେ ଚମକ ସୃଷ୍ଟିକରେ । ନୂତନ ଏକ ପୃଥିବୀର ଜ୍ଞାନ ଗନ୍ତାଘରକୁ ଉନ୍ମୋଚନ କରେ । ଉତ୍ତରମାଳା ପାଲାଗାୟକମାନଙ୍କର ଅତିପ୍ରିୟ ଓ ଆଦରର ଧନ ଥିଲା । ଏଥିଲ କବିଙ୍କର କଳ୍ପନା ପାଟବତା ସହିତ ପୁରାଣଶାସ୍ତ୍ର ଜ୍ଞାନର ସୁନ୍ଦର ପ୍ରକାଶ ଘଟିଛି। ପାଠକଙ୍କ ରସାବଗତି ପାଇଁ ଏଠାରେ 'ଦ୍ରୌପଦୀ ଅବତାର'ଟି ଉଦ୍ଧୃତ କରାଗଲା ।

ସଚିଯାଇ ଆକାଶ ଜାହ୍ନବୀରେ ଲୁଚି
ଇନ୍ଦ୍ରହତ ଜାଣି ରୋଦୁଁ ଶଙ୍କର ପାର୍ବତି
ସେ ପଥେ ଭେଟିଲେ ହର ଉମାଦେଲେ ବର
ସଚିପତି ପତି ଉଚ୍ଚାରିଲେ ପାଞ୍ଚଥର ।
ଅସ୍ତୁ ଅସ୍ତୁ ପାଞ୍ଚ ଥର କହିଲେ ଧୂର୍ଜଟୀ
ଆଗୋ ସୁଲକ୍ଷଣି ପ୍ରାପ୍ତ ହୁଅ ପଞ୍ଚପତି ।
ସଚି କହିଲେ ବିପରୀ କଲ ବରେ ହର
ଶମ୍ଭୁ କହି ପଞ୍ଚ ଆତ୍ମା ଅଛଇ ଇନ୍ଦ୍ରର ।
ଧର୍ମ ଆତ୍ମାର ଯୁଧିଷ୍ଠୀ ପବନର ଭୀମ
ଶୂନ୍ୟାତ୍ମାରୁ ପାର୍ଥ ତିନି କୁନ୍ତୀରୁ ଉତ୍ପନ୍ନ ।
ଅଶ୍ୱିନୀ ଆତ୍ମାରୁ ଯେ ନକୁଳ ଜାତ ଜାଣ
କୁମାର ଆତ୍ମାରେ ସହଦେବ ସତ୍ୟ ମଣ
ତୁହି ସଚି ସେ ସମୟେ ଦ୍ରୌପଦୀ ହୋଇବୁ ।
ଦ୍ରୁପଦ ପାଳିବେ ଏ ପାଞ୍ଚଙ୍କୁ ବିଭା ହେବୁ ।

**ଚ: ସଂଗୀତ ରସକଲ୍ଲୋଳ :** ଏଥିରେ ଗଣେଶ ବନ୍ଦନା, ଭଜନ ସହିତ ଅନେକ କ୍ଷୁଦ୍ର ସଂଗୀତ ଅନ୍ତର୍ଭୁକ୍ତ । ସଂଗୀତଗୁଡ଼ିକ ପ୍ରାଚୀନ ବିଷୟବସ୍ତୁ ଆଧାରିତ ଓ ରାଗରାଗିଣୀ ଯୁକ୍ତ। ଧର୍ମୀୟ ଭିତ୍ତିଭୂମି ସହିତ ଶୃଙ୍ଗାର ରସର ସମାବେଶ ଏହି ସଂଗୀତଗୁଡ଼ିକୁ ଲୋକପ୍ରିୟ କରିଛି । ରାଧାକୃଷ୍ଣ ବିଷୟ ବ୍ୟତୀତ ଅନ୍ୟାନ୍ୟ ବିଷୟକୁ ମଧ୍ୟ ଆଧାର କରି କିଛି ସଂଗୀତ ପ୍ରସ୍ତୁତ । ଏହି ସଂଗୀତରୁ କିଛି ସଂକଳନ କରି ଏକ ଛୋଟିଆ ' ପକେଟ୍ ସଂଗୀତ' କଟକର କୋହିନୂର ପ୍ରେସ ପ୍ରକାଶ କରିଥିଲା ବୋଲି କବି କୁମାର ହସନ ପିତାଙ୍କ ମୁଖରୁ ଶୁଣିଥିଲେ କିନ୍ତୁ ସଂପ୍ରତି ସେ ପୁସ୍ତକ ଦୁର୍ଲ୍ଲଭ ।

ସଂଗୀତ ରସକଲ୍ଲୋଳ କବିଙ୍କ ଏକ ଉତ୍ତରିତ ସୃଷ୍ଟି-କ୍ଷୁଦ୍ର ସଂଗୀତଗୁଡ଼ିକରେ ଆଧ୍ୟାତ୍ମିକତା, ପ୍ରକୃତି ପ୍ରୀତି, ପୌରାଣିକ ଆଖ୍ୟାନର ପୁନଃବିନ୍ୟାସ ସହିତ ବିମଳ ଆନନ୍ଦ ପ୍ରଦାନର ପରମ



Digitized by srujanika@gmail.com

ଉତ୍କଣ୍ଠା ପ୍ରକାଶିତ । ରସ ସୃଷ୍ଟି ସହିତ ସାମ୍ୟ ଦୃଷ୍ଟି ଓ ଜୀବେଦୟାର ଲାକ୍ଷଣିକ ଦୃଷ୍ଟାନ୍ତ ପ୍ରତି ସଂଗୀତରେ ସୁସ୍ପଷ୍ଟ ।

ଧିକ୍ ଯଦି ପିଣ୍ଡେ ପରାଣ ନ ଥିଲେ
ଧିକ୍ ପ୍ରାଣ ଯେବେ ବିଦ୍ୟାହୀନଟି । ଘୋଷା ।
ଧିକ୍ ବିଦ୍ୟା ଯେବେ 'ଭ୍ୟାସ ନାହିଁ ବେଦେ
ଧିକ୍ 'ଭ୍ୟାସ ବେଦେ ପ୍ରେମହୀନଟି ।
ଧିକ୍ ପ୍ରେମ ଯଦି ଅରୀ ନ ସଂହାରୀ
ଧିକ୍ ଅରୀ ନାଶ ଉଦାର ହୀନଟି ।
ଧିକ୍ ସତ୍ୟ ଯଦି ଧର୍ମର ବିରୋଧୀ
ଧିକ୍ ଧର୍ମ ନୋହି ଦୟାବାନଟି ।
ଧିକ୍ ଦୟା ଯଦି ସ୍ୱାଦୁ ତହିଁ ନାହିଁ
ଧିକ୍ ସ୍ୱାଦୁ ଯେବେ ସତ୍ୟହୀନଟି ।
ଧିକ୍ ସେ ଉଦାର ଜ୍ଞାନ ନାହିଁ ଯାର
ଧିକ୍ ଜ୍ଞାନ ବିଷ୍ଣୁ ଯଦି ନ ଖଟି ।
ମୁକ୍ତକିମ୍ ଭାଷି, ଧିକ୍ ବିଷ୍ଣୁ ତୋଷି
ନ ଦେଖେ ସର୍ବ ଜୀବେ ସମାନଟି ।

**ଛ: ପଠାଣ ଠଗ ଫାର୍ସ ଓ ସାଧୁବେଶ୍ୟା ଫାର୍ସ:**

ଉନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଫାର୍ସଗୁଡିକ ଖୁବ୍ ଲୋକପ୍ରିୟ ଥିଲା । ନାଟକ ମଞ୍ଚସ୍ଥ ମଧ୍ୟାନ୍ତରରେ ଫାର୍ସଗୁଡିକ ଅଭିନୀତ ହେଉଥିଲା । କେବଳ ଫାର୍ସ ମଧ୍ୟ ଅନେକ ସ୍ଥଳରେ ବିଭିନ୍ନ ଉପଲକ୍ଷେ ଗ୍ରାମାଞ୍ଚଳର ମଧ୍ୟସ୍ଥଳରେ ଖୋଲାମଞ୍ଚରେ ପ୍ରଦର୍ଶିତ ହେଉଥିଲା । ଏଗୁଡିକ ଲୋକଶିକ୍ଷାଧର୍ମୀ ଓ ମନୋରଞ୍ଜନମୂଳକ ଥିଲା । ଏହାର ଶାଣିତ ବ୍ୟଙ୍ଗ୍ୟ ହାସ୍ୟରସ ଉଦ୍ରେକ ସହିତ ଲୋକଙ୍କୁ ସାମାଜିକ ସଚେତନ କରି ଗଢ଼ିତୋଳୁଥିଲା । କେହି କେହି ସମାଲୋଚକ ଫାର୍ସକୁ ଲଘୁନାଟକ ସମ୍ମାନ ଦିଅନ୍ତି ।

ପଠାଣ ସିପାହୀ ଜଣେ ଜମିଦାରଙ୍କ ପାଖରେ ଚାକିରି କରି ପାରିଶ୍ରମିକ ବାବଦକୁ ଘୋଡାଟିଏ ପାଇ ଫେରିଲାବେଳେ ଠକମାନେ ଘୋଡାଟି ନେଇଗଲେ । ସିପାହୀଟି ପରେ ସ୍ତ୍ରୀ ଓ ସାଧୁବେଶରେ ଆସି ଠକମାନଙ୍କର ମାଲ ସବୁ ହରଣ କରି ଘୋଡା ଘେନିଗଲା । ଏହି ବିଷୟବସ୍ତୁକୁ ନେଇ ''ପଠାଣ ଠଗ ଫାର୍ସ'' ରଚିତ । ଏହି ଫାର୍ସରେ ଉର୍ଦ୍ଦୁ ଓ ପାର୍ସୀ ଭାଷାରେ ରଚିତ ଗୀତଗୁଡିକ ବେଶ୍ ଭାବସଂବେଦୀ ହୋଇପାରିଛି । ସଂଳାପଗୁଡିକ ମଧ୍ୟ ଓଡ଼ିଆ ହିନ୍ଦୀ ମିଶ୍ରଣରେ ଚଟୁଳ ଓ ଆକର୍ଷଣୀୟ ହୋଇଛି । ସିପାହୀ ଓ ଦେବାନଙ୍କ ବକ୍ତବ୍ୟରେ



Digitized by srujanika@gmail.com

ଓଡ଼ିଆ ହିନ୍ଦୀ ମିଶ୍ରିତ ସଂଳାପ ବେଶ୍ ହାସ୍ୟୋଦ୍ଦୀପକ ।

ସିପାହୀ: ହଜୁର ଆଜକୋ ଚାର ମହେନା ହୁଆ ହମ୍ ସିପାହୀ କାମମେଁ ଜୈନ ହୋକର ନୌକରୀ ବରାବର କରତେ ଚଲା ଆତା। ମଗର ତନଖା ଅଭିତକ ଏକ ପୈସା ଭି ନହିଁ ମିଲା। ଇସିଲିଏ ହଜୁର କି ଇଜ୍‌ଲାସ୍ ତକ ଆୟା ହୁଁ । ଆଗେ ହଜୁର ମାଲିକ ହେଁ ।

ଜମିଦାର: କିହେ ଦେବାନ, ସିପାହୀ ବେତନ ଲାଗି କହୁଛି କିଛିଥିଲେ ଦେଇଦିଅ ।

ଦେବାନ: ମଣିମା, ତହସିଲରେ ତ ଟଙ୍କା ନାହିଁ କୋଉଥାଉ ଦେବି ?

ଜମିଦାରୀ: ସିପାହୀ, କିଛିଦିନ ଠହୁର, ପାଇବ।

ସିପାହୀ: ହଜୁର, ମଏଁ ଖୋଦାକି କସମ ଖାକେ ବୋଲତା ହୁଁ ମେରା ପାସ ଜିତନେ ଦର ସାମାନ ଥା, ସବ୍ ବିକକେ ଖା ଚୁକା । ଖାଲି ଏକ ରୋଜକା ଖୁରାକ ହଏ କଲ ଦିନଭର ଚଲେ ଗା । ଲେକିନ୍ ମେଁ ଅବ ନୌକରୀ କରନେ ନାହିଁ ଚାହାତା । ମେରା ଯୋ ହିସାବ ହଏ ସୋ ଦେଦୋ । ମଏଁ ଆପନେ ଓ୍ୱତନ୍ ଚଲା ଯାଉଙ୍ଗା ।

ଦେବାନ: ତୁ କ'ଣ ପାଗଳ ହେଲୁ କି । ଅଭି ଖଜଣା ମେ ରୁପିୟା ନାହିଁ । ଆଠ ରୋଜପରେ ଦରମା ମିଲେଙ୍ଗା । ଆଠରୋଜ ଠହୁର କର । କଣ ବେଶିଦିନ ତୋମେ କୋ, ବୋଲତା ଙ୍ଗା । (ଇତ୍ୟାଦି)

ଏଥିରେ ଅନେକ ଗୀତ ହିନ୍ଦୀ ଓ ଅନେକ ଓଡ଼ିଆ ଗୀତ ସଂଯୋଜିତ ।

'ସାଧୁ ବେଶ୍ୟା ଫାର୍ସ'ରେ ସାଧୁଙ୍କୁ ଗୃହୀ ଜୀବନ ଯାପନ କରିବା ପାଇଁ ବେଶ୍ୟାର ଅନୁରୋଧ। ବେଶ୍ୟା ଓ ସାଧୁଙ୍କ ଯୁକ୍ତିତର୍କ ମଧ୍ୟରେ ସାଧୁହାରି ବେଶ୍ୟା ସହିତ ମିଳନ। ସାଧୁ ଓ ବେଶ୍ୟାଙ୍କ ସଂଗୀତମୟ ସଂଳାପ ହିଁ ଫାର୍ସର ମୁଖ୍ୟ ଆକର୍ଷଣ ।

ବେଶ୍ୟା: ତୁମ୍ଭେ କିଏ ପରପଞ୍ଚ ବେଶ୍ କିସ୍ ପାଇଁ ।

ବାବାଜୀ: ବାବାଜୀ ମୁଁ ସଦା ଈଶ୍ୱରଙ୍କୁ ସେବୁ ଥାଇ ।

ବେଶ୍ୟା: ଈଶ୍ୱର କାହିଁ ଅଛନ୍ତି ଦେଖାଅ ହେ ମୋତେ

ବାବାଜୀ: କଷ୍ଟେ ତପକର ପରାପତ ହେବେ ତୋତେ ।

ବେଶ୍ୟା: ବୃଥା ତପକର ଲିଙ୍ଗ ଈଶ୍ୱର ନପୂଜି

ବାବାଜୀ: ବାଲୁକା ଲିଙ୍ଗ ପୂଜିଣ ବୋଲାଇ ବାବାଜି ।

ବେଶ୍ୟା : (ଗୀତ) ଆ ଆ ଆ ଗୋସାଇଁ

କରିବି ସାଇଁ କହିଛି ମୁହିଁ। ଘୋଷା ।

ସୁଖେ ରଖିବି ପୁରେ, ପତି ମୋ ନାହିଁ ଘରେ

ବେଶ୍ୟା ନିନ୍ଦା ଯିବ ମେଟାଇ ।୧।



Digitized by srujanika@gmail.com

ତୋ ଲାଗି ଆଜରୁ ମୋର
ଚଖାଇ ଓଷ୍ଠ ମଧୁ, ମିଟାଇ ନାମ ସାଧୁ
ଜଟାଇ ଜଟ ପଟକୁ ମାଳାପୋଥି ଦେବି ହଟାଇ ।୨।
ମୁକ୍ତିକ ରଚେ ରସ, ହରିହର ହେବ ବିଷ
ଗୋରିନାମ ହେବ ସୁରସ ଦିବାନିଶି ହୋଇବୁ ବାଇ । ୩ ।
ବାବାଜୀ : (ଗୀତ)ଯା ଯା ଯାରେ ମାଇଁ
ଆନକୁ ତୁହିଁ କହ ରସାଇ । ପଦ ।
ସୁଖ ମୋ ବନେ ବାସ ନଗର ଲାଗେ ବିଷ
ତୋ ପୁରେ ଗଲେ ଯଶ ପଉରୁଷ ଯିବ ହଜାଇଁ ।୧।
ମଧୁପ ଖାଏ ମଧୁ ତା ନାମ ପୁଷ୍ପବନ୍ଧୁ
ବାବାଜୀ ବେଶ ଜଟପଟ ମଠ ପୋଥି ମାଳା ହିଁ ।୨।
କହେ ମୁସ୍ତକି ହରି ହର ନପୁଛି କରି
ନଗୁଚେ ଫଳଜଳ ଗରଳ ସକଳ ଲାଗଇ ।୩। (ସାଧୁବେଶ୍ୟା ଫାର୍ସ)

**ଙ: ବିବିଧ :** ଏହି ପର୍ଯ୍ୟାୟରେ କବିଙ୍କ ଚଉତିଶା, ତାଲଖାଇ, ଆକାରଯୋଗ୍ୟ, କଚଟତପ, ସ୍ୱରବ୍ୟଞ୍ଜନ, ବର୍ଣ୍ଣନିୟମ, ସ୍ୱରୋଷ୍ଠନିୟମ, ବିରୋଧାଭାସ ପ୍ରଭୃତି ବିଭିନ୍ନ ପ୍ରାଚୀନ ନିୟମରେ ରଚିତ କବିତାକୁ ଅନ୍ତର୍ଭୁକ୍ତ କରାଯାଇପାରେ । ଏତଦ୍‌ବ୍ୟତୀତ କବିଙ୍କ ସମ୍ବଲପୁରୀ, ପାର୍ସୀ, ଉର୍ଦ୍ଦୁ, ବଙ୍ଗଳା ଓ ଭୁଲିଆ ଭାଷାରେ ରଚିତ କିଛି କବିତା ରହିଛି । ଏହି କବିତାଗୁଡ଼ିକରୁ କବିଙ୍କ ବହୁଭାଷା ଜ୍ଞାନର ପରିଚୟ ମିଳେ ।

କବିଙ୍କ ମାନଭଞ୍ଜନ ଚଉତିଶା, ଭଜନ ଅନାମିକା ଚଉତିଶା ଓ ପତିତପାବନ ଚଉତିଶା ଚଉତିଶା ସାହିତ୍ୟର ଅପୂର୍ବ ଦୃଷ୍ଟାନ୍ତ । ଭଜନ ଅନାମିକା ଚଉତିଶାର ଶେଷ ପଂକ୍ତିକୁ ଉଦ୍ଧାର କରାଯାଇପାରେ ।

କ୍ଷମା କରିବ ଦୋଷାଦୋଷ ମମ ବିଦୁଷ
କ୍ଷୟାର୍ଥ ଥାଇପାରେ ଏଥି ,
କ୍ଷମାଶୀଳ ଶ୍ରୀପଦେ ମୁସ୍ତକିମ ଯେ ଭଜେ
ଆପଣ ଯୋଗୁଁ ରକ୍ଷା କ୍ଷିତି
ହେ କୃପାମୟ, କ୍ଷମ ମୁଁ ପଶିଲି ଶରଣ
କ୍ଷୀରେ ନୀର ପରାୟେ ମନ
କ୍ଷିତି ତେଜୁଁ ଦୀବେଶ, ଚନ୍ଦ୍ରାଙ୍କେ ଯଥାଶଶ
ତଥା ଶ୍ରୀପଦେ କର ଲୀନ ହେ ।



Digitized by srujanika@gmail.com

କବିଙ୍କ ପିତାମାତା ଅତି ଆଦରରେ ପୁତ୍ରର ନାମ ମୁସ୍ତକିମ୍ ରଖିଥିଲେ । ଆରବି ଭାଷାରେ ମୁସ୍ତକିମ୍‌ର ଅର୍ଥ 'ସଳଖପଥ' । ପିତାମାତା ଆଶା ରଖିଥିଲେ ପୁତ୍ରର ଜୀବନଚର୍ଯ୍ୟା ସୁଖମୟ ହେବ । ଦୁନିଆର କୁଟିଳତା ମଧ୍ୟରେ ଜୀବନର ଗତି ବାଧାହୀନ ହେବ । କିନ୍ତୁ ନିଜ ନାମର ବିରୁଦ୍ଧାଚରଣ କରି କବିଙ୍କ ଜୀବନଯାତ୍ରା ଦୁଃଖମୟ, ଦ୍ୱନ୍ଦ୍ୱ ଓ ସ୍ୱବିରୋଧରେ ପରିପୂର୍ଣ୍ଣ ଥିଲା । ନିଜର କଣ୍ଟକିତ ଜୀବନ ପଥର ସ୍ମୃତିଚାରଣକୁ କବି କାବ୍ୟିକ ପଦବିନ୍ୟାସରେ ପ୍ରସ୍ତୁତ କରିଛନ୍ତି । ସଂଗୀତପ୍ରେମୀ କବି ଜୀବନୀକୁ ମଧ୍ୟ ଦେଇଛନ୍ତି ଛାନ୍ଦସିକ ପ୍ରାଚୁର୍ଯ୍ୟ । ତାଙ୍କ ଜୀବନୀର ବୈଚିତ୍ର୍ୟକୁ ନିମ୍ନ ଉଦ୍ଧୃତିରୁ ଉପଭୋଗ କରାଯାଇପାରେ ।

"ତହୁଁ ଭାଙ୍ଗିଦେଲୁ ପେଶା, ନଷ୍ଟକଲୁ ଯେତେ ଚାଷ ବେଉସା
ତୁଷ୍ଟ ନୋହିଲୁ ଦେଇ ଏ ଦଶା, ଦଇବରେ ।
ତହୁଁ ଜାତ କଲୁ ଜ୍ୱର, କ୍ଲେଶ କଷ୍ଟ କହି ନୁହେଁ ତାହାରରେ
ଏବେ ଅରକ୍ଷ ଏକାକୀ ନର, ଦଇବରେ ।
କଲୁ ପର ଅନ୍ନଭୋଗୀ, ଯୌବନେ ଦରିଦ୍ର ଆବର ରୋଗୀରେ
ମାନହାନି ତା ତୁଲେ ସଂଯୋଗି, ଦଇବରେ । (ଆତ୍ମଜୀବନୀ)

କବି ମୁସ୍ତକିମ୍‌ଙ୍କ ସମସ୍ତ ରଚନା ସଂଗ୍ରହ ହୋଇପାରିନାହିଁ । କବି କୁମାର ହସନ୍‌ଙ୍କ ଅକ୍ଳାନ୍ତ ପ୍ରଚେଷ୍ଟାରେ ଯେଉଁ କେତୋଟି ରଚନା ଆଶୁ ଧ୍ୱଂସମୁଖରୁ ଉଦ୍ଧାର କରାଯାଇ ଏଇ ଲେଖକର ସମ୍ପାଦନାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶ ହେବାକୁ ଯାଉଛି, ସେହି ରଚନା ସମୂହର ସୂକ୍ଷ୍ମ ଆଲୋଚନା ମାତ୍ର ଏଠାରେ କରାଗଲା । ମୁସ୍ତିକିମ୍‌ଙ୍କ ଅନେକ ସୃଷ୍ଟି ମୌଖିକ ସାହିତ୍ୟ ରୂପେ ପାଲାଗାୟକ, ଲୀଳା ସୁଆଙ୍ଗ ଅଭିନେତାଙ୍କ ସ୍ମୃତିରେ ରହିଥିଲା । ସେହି ବହୁ ପ୍ରଚାରିତ ଅତୀବ ଲୋକପ୍ରିୟ ସଂଗୀତଗୁଡ଼ିକ ପ୍ରୋକ୍ତ ବ୍ୟକ୍ତିମାନଙ୍କ ତିରୋଧାନ ସହିତ ଅନ୍ଧକାରର ଅତଳ ଗର୍ଭକୁ ଚାଲିଯାଇଛି । ଏଣୁ ମୁସ୍ତକିମ୍‌ଙ୍କ ସର୍ଜନଶୀଳ ପ୍ରତିଭାର ସମ୍ୟକ୍ ପରିଚୟ ପ୍ରଦାନ ଓ ହିନ୍ଦୁ ମୁସ୍‌ଲିମ୍ ଧର୍ମ ସମନ୍ୱୟର ଅନନ୍ୟ ବାଣୀ ପ୍ରଖ୍ୟାପନ ପ୍ରସଙ୍ଗରେ ତାଙ୍କର ରଚନା ସମୂହ ସଫଳକାମ ଏଥିରେ ମତଦ୍ୱୈଧ ରହି ନ ପାରେ । ବିଭିନ୍ନ ବିଷୟକ, ବିଭିନ୍ନ ଭାବସଂଯୁକ୍ତ ଏହି ରଚନା ସମୂହରୁ କବିଙ୍କର ସୃଷ୍ଟି ପ୍ରବଣ ସତ୍ତାର ଅନ୍ୱେଷଣ କରାଯାଇପାରେ ।□□□



Digitized by srujanika@gmail.com

# ନିର୍ବାସିତର କାବ୍ୟିକ ପ୍ରକାଶ: ଲିଙ୍ଗରାଜ ପାଣିଗ୍ରାହୀଙ୍କ 'ଅମୃତେ ବିଷ'

## (୧)

ଲିଙ୍ଗରାଜ ପାଣିଗ୍ରାହୀ (୧୮୯୪-୧୯୫୭) ଜଣେ ଜୀବନବାଦୀ କବି । ତାଙ୍କ ସୃଷ୍ଟିକର୍ମ ସାଧାରଣ ମଣିଷର ସୁଖ ଦୁଃଖ ସହ ସମ୍ବନ୍ଧିତ । ଜୀବନ ପ୍ରତି ମାଟି ପ୍ରତି ଏବଂ ଜାତି ପ୍ରତି ତାଙ୍କ ସ୍ୱର ସମର୍ପିତ । ପୁଷ୍ପାଞ୍ଜଳି (୧୯୧୫), କଳିକାଞ୍ଜଳି (୧୯୧୯), ନଡ଼ିଆ ପଇତା (୧୯୧୯), ବିଛୁଆତି ପତ୍ର (୧୯୨୨) ପ୍ରଭୃତି କବିତା ସଂକଳନ ତାଙ୍କର କବି ପ୍ରତିଭାର ପରିଚୟ ପ୍ରଦାନ କରେ । ଏତଦ୍ ବ୍ୟତୀତ 'ବାଣହରଣ' (୧୯୨୬), ବସ୍ତ୍ରଦାନ (୧୯୨୭), କୃଷ୍ଣ ଜନ୍ମ ନାଟିକା ରଚନା କରି ସେ ନିଜର ନାଟ୍ୟ ପ୍ରତିଭାକୁ ପ୍ରକାଶିତ କରିଛନ୍ତି । ଲିଙ୍ଗରାଜ ପାଣିଗ୍ରାହୀଙ୍କ 'ଅମୃତେ ବିଷ' ଏକ ଉଚ୍ଚକୋଟୀର କାବ୍ୟ ।

ଅମୃତେ ବିଷ ଅମିତ୍ରାକ୍ଷର ଛନ୍ଦରେ ରଚିତ ଏବଂ ରାମାୟଣ କଥାବସ୍ତୁ ଗର୍ଭିତ । ରାମାଭିଷେକ ଆୟୋଜନ ଏବଂ ବନବାସ ପ୍ରସ୍ତାବ ତଥା ସରଯୁ ନଦୀ ତୀର ପର୍ଯ୍ୟନ୍ତ ରାମଙ୍କୁ ଅଯୋଧ୍ୟାବାସୀ ଅନୁଗମନ କରିବା ପ୍ରେକ୍ଷାପଟରେ କାବ୍ୟର କଥାବସ୍ତୁ ନିର୍ମିତ । କିନ୍ତୁ ଏହାର ବିଷୟ ସଞ୍ଚାର ନବୀନତା, ଶୈଳୀର ସ୍ୱତନ୍ତ୍ରତା ଏବଂ ପରିବେଷଣର ସ୍ୱକୀୟତା ଏହାକୁ ଏକ ମୌଳିକ ତଥା ଉତ୍କୃଷ୍ଟ କାବ୍ୟର ମର୍ଯ୍ୟାଦା ପ୍ରଦାନ କରେ । ଏହାର ମୁଖ୍ୟରସ କରୁଣ ରସ । ଅମିତ୍ରାକ୍ଷର ଛନ୍ଦର ସୁଲଳିତ ସାଂଗୀତିକତା ଲିଙ୍ଗରାଜଙ୍କ ଶବ୍ଦ ସଂଯୋଜନା ଉପରେ ନିବିଡ କର୍ତ୍ତୃତ୍ୱକୁ ପ୍ରମାଣିତ କରେ । ଏହି ସୁଲଳିତ ସଙ୍ଗୀତ ଧ୍ୱନି, କରୁଣ ରସର ଆତ୍ମିକକୁ ଅପୂର୍ବ ଆଙ୍ଗିକର ଭାବ ଗାମ୍ଭୀର୍ଯ୍ୟ ପ୍ରଦାନ କରେ । ଯାହା ପାଠକୀୟ ସମ୍ବେଦନା ଆକର୍ଷଣରେ ସଫଳ ହୋଇଥିଲା ।

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯେଉଁ ନୂତନ ଜାଗରଣର ସୃଷ୍ଟି ହେଲା ତାର ନେତୃତ୍ୱ ନେଲେ କବି ଓ ସାହିତ୍ୟିକ ଗଣ । ସେ ସମୟରେ କବିମାନେ ସମାଜର ବିଭିନ୍ନ ସ୍ତରରେ ଏପରି ସଂଶ୍ଳିଷ୍ଟ ହୋଇ ରହିଥିଲେ ଯେ ସେମାନଙ୍କୁ ଅନେକତ୍ର ନାନା ଉପଦେଶ, ନୀତିବାକ୍ୟ ଓ ଉପାଖ୍ୟାନ ମାଧ୍ୟମରେ ନିଜର ସାମାଜିକ କର୍ତ୍ତବ୍ୟ ସମ୍ପାଦନ କରିବାକୁ ପଡୁଥିଲା । ସେଥିପାଇଁ ଦୁଇ ମହାନ୍ କାବ୍ୟ ମହାଭାରତ ଓ ରାମାୟଣ ଯୁଗଯୁଗ ଧରି ଅପୂର୍ବ ଖୋରାକ ଯୋଗାଇ ଆସିଛି । ସମକାଳୀନ ସାମାଜିକତାକୁ ସମ୍ମାନ ଜଣାଇ ପାରମ୍ପରିକ ଲୋକ କଥାକୁ ଅପୂର୍ବ



Digitized by srujanika@gmail.com

ଶୈଳୀରେ ପରଶି ଦେଇଛନ୍ତି ଲିଙ୍ଗରାଜ । ଅମିତ୍ରାକ୍ଷର ଛନ୍ଦ ପରି କ୍ଲିଷ୍ଟ ଛନ୍ଦରେ ସାର୍ଥକତା ଆନୟନ କରି ସେ ନିଜର ପାଣ୍ଡିତ୍ୟ ଓ କବିତ୍ୱର ଅନନ୍ୟ ସ୍ୱାକ୍ଷର ପ୍ରଦର୍ଶନ କରିଛନ୍ତି ।

'ଅମୃତେ ବିଷ' କାବ୍ୟଟି ୧୯୨୧ ମସିହାରେ ବାମଣ୍ଡା ହିତୈଷିଣୀ ପ୍ରେସରୁ ପୁସ୍ତକାକାରେ ମୁଦ୍ରିତ ହୋଇଥିଲା । ପୁସ୍ତକ ଆକାରରେ ପ୍ରକାଶ ପାଇବା ପୂର୍ବରୁ ଏହା ସମ୍ବଲପୁର ହିତୈଷିଣୀ ପତ୍ରିକାରେ ୧୭।୬।୧୯୧୬ରୁ ୨।୬।୧୯୧୭ ମଧ୍ୟରେ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ସମ୍ବଲପୁର ହିତୈଷିଣୀ ପୃଷ୍ଠାରୁ କାବ୍ୟଟି ପାଠକରି ଅନେକ ସାରସ୍ୱତ ସାଧକ ପ୍ରଶଂସା କରିଥିଲେ । ଏ ସମ୍ପର୍କରେ ସମ୍ବଲପୁର ହିତୈଷିଣୀ (୨୮/୩୩) ୨।୬।୧୯୧୭ ସଂଖ୍ୟାରେ 'ଅମୃତେ ବିଷ'ର ଶେଷ ଅଂଶ ପ୍ରକାଶ ଲଭିବା ସହିତ ଏ ସମ୍ପର୍କରେ ସମ୍ପାଦକଙ୍କ ମନ୍ତବ୍ୟ କାବ୍ୟର ମହାନତା ପ୍ରକାଶ କରେ । ସମ୍ପାଦକଙ୍କ ମତରେ -

> ଦେବଗଡର ଅନ୍ୟତମ ସାହିତ୍ୟ ସେବକ ଶ୍ରୀମାନ୍ ଲିଙ୍ଗରାଜ ପାଣିଗ୍ରାହୀ ମହାଶୟ ଆଜକୁ ପ୍ରାୟ ବର୍ଷାଧିକ କାଳ ହେଲା ଏହି ପତ୍ରିକାରେ 'ଅମୃତେ ବିଷ'ନାମରେ କ୍ରମଶାକାରରେ ଖଣ୍ଡିଏ କାବ୍ୟ ଲେଖୁଥିଲେ । ଏହି ସଂଖ୍ୟାରେ ସେହି ମଧୁମୟ ଲେଖା ଶେଷ ପାଇଅଛି । ରାମାୟଣ ମହାକାବ୍ୟର ଅଂଶଗ୍ରହଣ କରି 'ଅମୃତେ ବିଷ' ଲିଖିତ । ଏହି 'ଅମୃତେ ବିଷ' ପାଠ କରି ଅନେକ କୃତବିଦ୍ୟ ସାହିତ୍ୟିକ ଆନନ୍ଦ ପ୍ରକାଶ କରି ଆମ୍ଭମାନଙ୍କଠାକୁ ପତ୍ରାଦି ଦେଇ ଏହି କାବ୍ୟର ସୁଖ୍ୟାତି କରିଅଛନ୍ତି । ପ୍ରକୃତ ପକ୍ଷେ ଉଦିୟମାନ ଲେଖକ ଶ୍ରୀମାନ୍ ଲିଙ୍ଗରାଜଙ୍କର ରଚନା ହୃଦୟଗ୍ରାହୀ ପୁଣି ଆଶାପ୍ରଦ ।
>
> 'ଅମୃତେ ବିଷ' ପୁସ୍ତକାକାରେ ପ୍ରକାଶିତ ହେଲେ ସାହିତ୍ୟସେବୀମାନଙ୍କର ନିଶ୍ଚୟ ଆଦରଣୀୟ ହୋଇପାରିବ ବୋଲି ଆମ୍ଭେମାନେ ବିଶ୍ୱାସ କରୁଁ । ସତ୍ଉତ୍ସାହି ନବୀନ ଲେଖକଙ୍କ ପ୍ରତି କୌଣସି ଉଦାର ହୃଦୟ ଗୁଣଗ୍ରାହୀ ସାହିତ୍ୟଭକ୍ତ ଆନୁକୂଲ୍ୟ ଦୃଷ୍ଟି ଦେଲେ 'ଅମୃତେ ବିଷ' ସାଧାରଣରେ ପରିଚିତ ହୋଇପାରନ୍ତା। ଆଶା କରୁ କୌଣସି ଗୁଣଗ୍ରାହୀ ମହାତ୍ମା ଏହି କାବ୍ୟ ଖଣ୍ଡିକକୁ ମୁଦ୍ରିତ କରାଇଦେଇ ଦେଶ ଓ ସାହିତ୍ୟର ଉପକାର ସାଧନ କରିବେ। 'ଅମୃତେ ବିଷ' ଯେ ଧରଣରେ ଲିଖିତ ସେପରି ଲେଖା ଉତ୍କଳ ସାହିତ୍ୟ କ୍ଷେତ୍ରରେ ପ୍ରଚୁର ନୁହେଁ । ବାମଣ୍ଡାରେ ନବୀନ ନବୀନ ସାହିତ୍ୟିକମାନଙ୍କର ଆବିର୍ଭାବ ଓ ସୁଖ୍ୟାତି ଦେଖି ଆମ୍ଭେମାନେ ଆନନ୍ଦିତ ଅଛୁ। (ସ.ହି. ୨୮/୩୩)



Digitized by srujanika@gmail.com

ସମ୍ବଲପୁର ହିତୈଷିଣୀର ଏହି ଆଶାବାଣୀକୁ ତାଳଚେରର ପଟ୍ଟାୟତ ଶ୍ରୀମାନ ପ୍ରମୋଦ ଚନ୍ଦ୍ର ଦେବ ସଫଳ କରିଥିଲେ । ତାଙ୍କରି ଆର୍ଥିକ ସହାୟତାରେ 'ଅମୃତେ ବିଷ' କାବ୍ୟଟି ପୁସ୍ତକ ରୂପେ ପ୍ରକାଶ ପାଇଥିଲା । ନୀଳମଣି ବିଦ୍ୟାରତ୍ନ, ଚିନ୍ତାମଣି ମହାନ୍ତି, ବଳଭଦ୍ର ଦେବ ପ୍ରମୁଖ ସାହିତ୍ୟ ରଥୀଙ୍କ ଆଗ୍ରହକ୍ରମେ କବି କାବ୍ୟଟିକୁ ପୁସ୍ତକ ରୂପେ ପ୍ରକାଶ କରିବାକୁ ଅଗ୍ରସର ହୋଇଥିଲେ ।

'ଅମୃତେ ବିଷ' ଛଅଟି ସର୍ଗରେ ବିଭକ୍ତ । ପ୍ରଥମ ସର୍ଗରେ ରାମଙ୍କ ଅଭିଷେକ ପ୍ରସ୍ତାବ ଏବଂ ତଦ୍‌ଜନିତ ଅପୂର୍ବ ଉନ୍ମାଦନା ଓ ଉତ୍ସବ ପାଇଁ ଏକ ତୀବ୍ର ଆଲୋଡନ ସୃଷ୍ଟି । ଦ୍ୱିତୀୟ ସର୍ଗରେ ଦଶରଥଙ୍କ ଦରବାରରେ ହାସ୍ୟ ଗଳ୍ପ, ପାରିଷଦଙ୍କ ଗହଣେ ଆଲୋଚନା । ଉତ୍ସବରତ ଅନ୍ତଃପୁରେ କୈକେୟୀ ଭବନରେ ମନ୍ଥରାର କୁମନ୍ତ୍ରଣା ଏବଂ କୈକେୟୀଙ୍କ ମାନ । ତୃତୀୟ ସର୍ଗରେ ପାରିଷଦ ପରିବେଷ୍ଟିତ ଦଶରଥ ରାମଚନ୍ଦ୍ରଙ୍କୁ ଆବଶ୍ୟକୀୟ ଉପଦେଶ ଛଳରେ ରାଜନୀତି, ଭାଷା ପ୍ରୀତି ପ୍ରଭୃତିର ବିଷଦ୍ ବର୍ଣ୍ଣନା। କୈକେୟୀ ଭବନର ବୃଦ୍ଧ କଞ୍ଚୁକୀ ବିଶେଷ ଖବର ଦେବା ଏବଂ ଦଶରଥ କୈକେୟୀ ଭବନ ଉପଲକ୍ଷେ ଗମନ କରିବା । ଚତୁର୍ଥ ସର୍ଗରେ ଦଶରଥଙ୍କ କୈକେୟୀଙ୍କୁ ମାନ ଭାଙ୍ଗିବାକୁ ଅନୁରୋଧ । କୈକେୟୀ ସତ୍ୟ କରାଇ ବର ମାଗିବା ଏବଂ ଦଶରଥଙ୍କ ବିଷାଦ ଦଶା । ନିଜ ସ୍ତ୍ରୈଣତା ପ୍ରତି ଘୋର ମାନସିକ ଅନୁତାପ । ପଞ୍ଚମ ସର୍ଗରେ ରାମଚନ୍ଦ୍ରଙ୍କ କୈକେୟୀ ଭବନକୁ ପ୍ରବେଶ । କୈକେୟୀ କର୍ତ୍ତୃକ ବର ସମ୍ପର୍କରେ ଅବଗତ ଏବଂ ପିତୃ ସତ୍ୟ ପାଳିବାକୁ ନିଜର ପରମ ଉନ୍ମୁଖତା ପ୍ରଦର୍ଶନ । ଦଶରଥଙ୍କ କୈକେୟୀଙ୍କୁ ଭର୍ତ୍ସନା । ଷଷ୍ଠ ସର୍ଗରେ ରାମଙ୍କର ସମସ୍ତଙ୍କଠାରୁ ପର୍ଯ୍ୟାୟକ୍ରମେ ବିଦାୟ ଯାଚଞ୍ଚା ଏବଂ ଲକ୍ଷ୍ମଣ ଓ ସୀତାଙ୍କ ସହ ବନ ଗମନ ।

ସଂକ୍ଷିପ୍ତ ଭାବେ କାବ୍ୟର ପରିପାଟୀ ଏ ରୂପେ ଗଠିତ ହୋଇଥିଲେ ହେଁ ବର୍ଣ୍ଣନାର ସ୍ୱତନ୍ତ୍ରତା ଏବଂ ଶିଳ୍ପକଳାର ଅନନ୍ୟତା ସହିତ ଆଧୁନିକ କବି ମାନସର ବିଦଗ୍ଧ ଅନୁଭୂତିର ସଫଳ ରୂପାୟନ ହିଁ ' ଅମୃତେ ବିଷ'ର ସୃଷ୍ଟି ଶିଳ୍ପର ମୂଳକଥା । ଅମୃତେ ବିଷର ଭାଷା ସୌନ୍ଦର୍ଯ୍ୟ ବା ସୃଷ୍ଟି ଶିଳ୍ପକୁ ଅନୁଶୀଳନ କରିବା ପୂର୍ବରୁ ଏ କାବ୍ୟ ରଚନା କରିବା ଅନ୍ତରାଳେ ପ୍ରଚ୍ଛନ୍ନ କବିଙ୍କ ତୀବ୍ର ମାନସିକତାକୁ ବିଶ୍ଳେଷଣ କରିବା ସର୍ବାଦୌ କର୍ତ୍ତବ୍ୟ । ନଚେତ ଏହି କାବ୍ୟର ଲଳିତ କଳା ବିଭବକୁ ପ୍ରକୃଷ୍ଟ ମୂଲ୍ୟାୟନ କରି ହେବ ନାହିଁ । ଏ କାବ୍ୟ ରଚନା କରିବାର ଅଭିଳାଷ କାହିଁକି ? ବିଷୟ ବସ୍ତୁକୁ ଏତେ ସୀମିତ କରିବାର ଅଭିପ୍ରାୟ କ'ଣ ?

କବିଙ୍କର ପୂର୍ବପୁରୁଷ ହିନ୍ଦୋଳରୁ ଆସି ବାମଣ୍ଡାରେ ଅବସ୍ଥାନ କରିଥିଲେ । ଯା' ଫଳରେ ତାଙ୍କର ଅବଚେତନ ନିର୍ବାସନର କାରୁଣ୍ୟରେ ଝୁରି ହେଉଥିଲା । ପବିତ୍ର ଶୈଶବର ସ୍ମୃତିକୁ ସେ ଅନେକତ୍ର ଉଖାରି ହୃଦୟର କରୁଣତାରେ ଅବଗାହନ କରିଛନ୍ତି ।



Digitized by srujanika@gmail.com

''ଶୈଶବ କାଳୁ ମୁଁ ହୋଇ ପିତୃହୀନ
ଦୁଃଖେ ଦୂର ଦେଶେ କଟାଇଲି ଦିନ
ତେଣୁ ସେ ଭ୍ରମଣ ଆଶା ବିଦୂରିତ
ହୋଇ ଚିତ୍ତ ହେଲା ନୈରାଶେ ପୂରିତ
ମନୁଷ୍ୟ ପାଞ୍ଚେ ଯା ଏ ଭବ ମଣ୍ଡଳେ
ପ୍ରତିକୂଳେ ବିଧି ଭାଙ୍ଗେ ତା କୌଶଳେ ।''(ବୁଢ଼ୀ ପର୍ବତ: ପୁଷ୍ପାଞ୍ଜଳି୧୯୧୫, ପୃଷ୍ଠା ୨୯)

ଏପରି ଏକ କରୁଣାର୍ଦ୍ର ଅଭିଜ୍ଞତା ନିଜ ଅଜାଣତେ ରାମସୀତାଙ୍କର ନିର୍ବାସିତ ଆଲେଖ୍ୟକୁ ଆଦରି ନେଇଛି ଦରଦର ମାର୍ମିକ ଅନୁଗ୍ରହରେ । ପୁନଶ୍ଚ ପ୍ରସଙ୍ଗ ଉତ୍‌ଥାପନ ମାଧ୍ୟମରେ କବି ସୁଯୋଗ ପାଉଛନ୍ତି ପାଠକ ମନରେ ନିଜର ଆଦର୍ଶ ସ୍ଥାପନ କରିବାର । ପାରମ୍ପରିକ କାହାଣୀ ଅନ୍ତରାଳେ ନୂଆ ଆଭିମୁଖ୍ୟ ନୂଆ ଆଦର୍ଶବାଦ ପ୍ରଖ୍ୟାପନ ହିଁ କବିଙ୍କ ମୂଳଲକ୍ଷ୍ୟ । ଏହି ଦୃଷ୍ଟିରୁ କବି ମୂଳ ପୃଷ୍ଠଭୂମି ନିର୍ମାଣ କଲାବେଳେ ଅତି ସଜ୍ଞାନ ଚିତ୍ତରେ ନିମ୍ନୋକ୍ତ ବିଷୟଗୁଡ଼ିକ କୌଶଳପୂର୍ଣ୍ଣ ଭାବେ ସଂଯୋଗ କରିଛନ୍ତି ।

କ. ଦଶରଥଙ୍କ ରାମଙ୍କୁ ଉପଦେଶ ଛଳରେ ଆଧୁନିକ ରାଜନ୍ୟ ବର୍ଗଙ୍କୁ ବିଳାସୀପୂର୍ଣ୍ଣ ଶାସନ ପଦ୍ଧତି ଏବଂ ପ୍ରଜାପୀଡ଼ନ ସମ୍ପର୍କରେ ଆକ୍ଷେପ ଏବଂ ଆଦର୍ଶ ରାଜନୀତି ବର୍ଣ୍ଣନ ।

ଖ. ଭାଷା ଓ ସାହିତ୍ୟ ପ୍ରତି ରାଜକୀୟ ପ୍ରୀତି ସୃଷ୍ଟି ।

ଗ. ସ୍ତ୍ରୈଣ ଚରିତ୍ରର ଉତ୍କଟ ପରିଣତି ଦଶରଥଙ୍କ ଉଦାହରଣ ଛଳରେ ସମାଜକୁ ଦର୍ଶାଇବା ।

ଘ. ଦାମ୍ପତ୍ୟ ପ୍ରେମର ପରାକାଷ୍ଠା ପ୍ରଦର୍ଶନ ।

ଙ. ଭ୍ରାତୃଭକ୍ତି ତଥା ପିତୃଭକ୍ତିର ମହନୀୟ ଦୃଷ୍ଟାନ୍ତ ଜ୍ଞାପନ ।

ଚ. ଗଡଜାତ ଅଞ୍ଚଳର ପ୍ରାକୃତିକ ଚିତ୍ର ଓ ସମସ୍ୟାବଳୀ ପ୍ରସଙ୍ଗ ଛଳରେ ବର୍ଣ୍ଣନା ।

ଛ. ଅନେକ ଆଞ୍ଚଳିକ ଶବ୍ଦର ସାଧୁ ସମାବେଶ ଏବଂ ସାରସ୍ୱତ ଗୌରବ ପ୍ରଦାନ ।

ବାମଣ୍ଡା ଏକ ଗୌରବମୟ ଯାତ୍ରା ପରମ୍ପରାର ବାହକ ଥିଲା । ନାଟ୍ୟକାର ନାରାୟଣ ଚନ୍ଦ୍ର ଦାସଙ୍କ 'ଦଶରଥ ବିୟୋଗ', 'ସୀତାବର୍ଜନ', 'ସୀତା ଦେବୀଙ୍କ ପାତାଳ ପ୍ରବେଶ', 'ରାଜମୃଗୟା' ପ୍ରଭୃତି ଯାତ୍ରା ବିଂଶ ଶତକର ପ୍ରଥମ ଦଶକ ଓ ଊନବିଂଶ ଶତକର ଶେଷ ଦଶକରେ ମଞ୍ଚସ୍ଥ ହୋଇ ଅପୂର୍ବ ଲୋକପ୍ରିୟତା ଅର୍ଜନ କରିଥିଲା । ଶୈଶବର ସେହି ସ୍ମୃତି ସହିତ ନିଜ ପୂର୍ବ ପୁରୁଷର ଭିଟାମାଟି ହିନ୍ଦୋଳର ସ୍ୱପ୍ନିଳ ଆକର୍ଷଣ ଯେଉଁ କରୁଣରେଖା ଅଙ୍କନ କରେ ତାର ଏକ ବିନ୍ଦୁ ଅମୃତତ୍ୱରେ ଉଦ୍‌ଭାସିତ ହେଲା ବେଳେ ଅନ୍ୟ ବିନ୍ଦୁଟି କରୁଣାର



Digitized by srujanika@gmail.com

ବିଷାକ୍ତତାରେ ପୁରିଉଠେ । ଏପରି ଏକ ଦ୍ୱନ୍ଦ୍ୱାତ୍ମକ ପରିବେଶରେ ସ୍ମୃତି ଚଉଦ ବର୍ଷ ପରେ (୧୯୧୬) ଯେତେବେଳେ ଯୁବକ ଲିଙ୍ଗରାଜଙ୍କ ସ୍ମୃତି କୋଷରେ ପୁନଶ୍ଚ ଅତୀତର ଶିହରଣ ଆଣିଦିଏ ଠିକ୍ ସେତିକିବେଳେ ଅବଚେତନ ମନ ତଳେ ଜାଗି ଉଠେ, ରାମ ସୀତାଙ୍କ ଚତୁର୍ଦ୍ଦଶ ବର୍ଷ ବନବାସ ଏବଂ ଅଭିଷେକ ଉତ୍ସବର ଅମୃତ ପ୍ଲାବନ ମଧ୍ୟରେ କୈକେୟୀ କର୍ତ୍ତୃକ ବିଷପ୍ରଦାନ। ଯା' ଫଳରେ ଗୋଟିଏ ରାତି ମଧ୍ୟରେ ରାମ ଅଭିଷେକ ଆନନ୍ଦକୁ ପରିତ୍ୟାଗ କରି ସନ୍ୟାସୀ ବେଶରେ ବନ ଅଭିମୁଖେ ଗମନ କରନ୍ତି। ଏହି ଆଲୋଡ଼ିତ ମୁହୂର୍ତ୍ତ ତେଣୁ ଅତିନିବିଷ୍ଟ ଚିତ୍ତରେ ଲିଙ୍ଗରାଜଙ୍କୁ ପ୍ରଲୁବ୍ଧକରେ 'ଅମୃତେ ବିଷ' ରଚନା ପାଇଁ ।

(୨)

ପ୍ରାଚୀନ ଗଳ୍ପ ରୂପ ଉପରେ 'ଅମୃତେ ବିଷ' କାବ୍ୟ ଗଢ଼ି ଉଠିଥିଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ଭାବେ ଏକ ଆଧୁନିକ କାବ୍ୟ । ଏହାର ପ୍ରାରମ୍ଭିକ ପର୍ଯ୍ୟାୟରେ ମଣିଷ ମନର ଆବିଳତାକୁ ଧ୍ୱଂସ କରି ଏକ ସ୍ୱଚ୍ଛ ସୁନ୍ଦର କାବ୍ୟ କୀର୍ତ୍ତି ନିର୍ମାଣର ଶାନ୍ତ ଉଦ୍‌ଘୋଷଣା ଶୈଳ୍ପିକ ରୀତିରେ ଅନୁରଣିତ ହୁଏ । ପ୍ରକୃତିର ରୂପକୁ ଶରତ ଋତୁ ନିର୍ମଳ କରିବାର ପ୍ରତୀକ ମାଧ୍ୟମରେ ପ୍ରଥମରୁ ହିଁ କବି କୁସଂସ୍କାର ମୂଳୋତ୍ପାଟନର ଆଭିମୁଖ୍ୟକୁ ପରିଷ୍କାର କରିଦିଅନ୍ତି ।

''ଧରଣୀ ଧବଳକାରୀ ବିମଳ ଶରତ
ଉପଗତ ଧାରାଧାମେ କାଉଁଶି କୁସୁମେ
ମହୀ ମଣ୍ଡି ନିଜ ବପୁ, ଧବଳ ଅଂଶୁକା
ପରମ ପବିତ୍ରା କୀର୍ତ୍ତିଦେବୀ ସମ ବିଶ୍ୱେ
ବିରାଜିତା; ଗୁଡ଼କାର ଗୋରସ ସଂଯୋଗେ
ଅଗ୍ନିରେ ବସାଇ ପାତ୍ର ସ୍ଥିତ ଚିନି ମଧୁଁ
ନିକ୍ଷେପଣ କରେ ଯଥା ଆବିଳତା ରାଶି
ତେସନ ପ୍ରକୃତି -ନାରୀ ଶରତ ସଂଯୋଗେ
ନିବିଡ ଜଳଦାବୃତ୍ତ ଅସୀମ ଅମ୍ବରେ
କରେ ସୁନିର୍ମଳ, ସର ସରିତ ସଳିଳ
ହୀରକ-ସ୍ୱଚ୍ଛତା ଜିଣି ଦିଶଇ ରୁଚିର ।''(ପୃ-୧)

ଶରତ ଋତୁ କର୍ତ୍ତୃକ ପୃଥିବୀର ଆବିଳତା ଦୂରୀଭୂତ ହେଲା ପରି ସମାଜର ଯାବତୀୟ କୁସଂସ୍କାରକୁ ବିନାଶ କରି ଏକମାତ୍ର ସ୍ୱଚ୍ଛସୁନ୍ଦର ସଂସ୍କୃତିମୟ କରିବାର ଆସ୍ପର୍ଦ୍ଧା ରଖେ ରାମାୟଣର ଆଦର୍ଶମୟ କାହାଣୀ। ବକ୍ତବ୍ୟକୁ କବି ଆହୁରି ଶାଣିତ ଏବଂ ସ୍ପର୍ଶକ୍ଷମ କରନ୍ତି 'ଗୁଡ ରନ୍ଧନ



Digitized by srujanika@gmail.com

ସମୟରେ ଗୋରସର ମିଶ୍ରଣ ଯେପରି ଆବିଳତାକୁ ପରିଷ୍କାର କରେ'ର ପଲ୍ଲୀ ପ୍ରତୀକ ପ୍ରୟୋଗରେ । ନିଜର ଆଭିମୁଖ୍ୟକୁ ଏହି ରୂପେ ବୟାନ କରି ସାରିଲାପରେ କବି କାବ୍ୟ ଭାରତୀଙ୍କୁ ନିବେଦନ କରନ୍ତି କାବ୍ୟୋତ୍କର୍ଷ ସାଧନ ନିମନ୍ତେ -

'' ଏ ଅମୃତମୟ କାଳେ ଜନନୀ, ଭାରତୀ !
ସୁଧାମୟୀ ! ଦେ ମା ! କୃପା ସୁଧା ବିନ୍ଦୁ ଆଜି
ଅଧମ ଅକ୍ଷମ ସୁତେ, ଅୟି ଶ୍ୱେତଭୁଜେ
କରୁଣା ନିଳୟେ, ତୋର କୃପା ନିଦର୍ଶନେ-
ମହାତପୀ ବାଲମିକ କବି କୁଳଗୁରୁ
ମସ୍ତିଷ୍କ ନିଃସୃତ ସେହି ପୁରାତନ ଗୀତି
ଅନୁସରି ପଶିବି ମୁଁ କାବ୍ୟ ଉପବନେ ।''

କବି ଗୁରୁ ବାଲ୍ମିକୀଙ୍କ ରାମାୟଣ ଅନୁସରଣରେ ନିଜ କାବ୍ୟ ସୌଧ ଗଠନର ଯାଚଞ୍ଚା ସହିତ ପ୍ରତ୍ୟେକ ସଙ୍କଟମୟ ମୁହୂର୍ତ୍ତରେ କାବ୍ୟର ଗତିଶୀଳତା ପାଇଁ କବି କଳ୍ପନା ଦେବୀଙ୍କୁ ଆତ୍ମନିବେଦନ କରିଛନ୍ତି।

'' ଆସ ମା କଳ୍ପନା ! କବି ହୃଦ ବିହାରିଣୀ
ଅଗମ୍ୟ ଗାମିନୀ ମାତ ବିଶ୍ୱ ଶୋଭାରାଣୀ
ଏ ଅଧମ ମସ୍ତିଷ୍କରେ ରଚି ସିଂହାସନ
ଦେଖାଅ ମା......'' (୨ୟ ସର୍ଗ- ପୃ.୧୫)

କିମ୍ବା

'କବି ହୃଦ ବିହାରିଣୀ ଭାରତି ସଙ୍ଗିନୀ
ଆସମା କଳ୍ପନା ଦେବୀ, କାବ୍ୟ
ଶୋଭାରାଣୀ........'' (୩ୟ ସର୍ଗ- ପୃ.୩୪)

ପୂର୍ବରୁ ଆଲୋଚନା କରାଯାଇଛି ତତ୍‌କାଳୀନ ରାଜନ୍ୟବର୍ଗଙ୍କୁ ଆଦର୍ଶନୀତି ସମ୍ପର୍କରେ ଅବଗତ କରାଇବାର ସୁଯୋଗ ହାସଲ ଏହି କାବ୍ୟର ଅନ୍ୟତମ ଲକ୍ଷ୍ୟ । ତେଣୁ ଆଦର୍ଶ ରାଜାଙ୍କର ପ୍ରଶଂସାରେ ଶତମୁଖ କବି ସ୍ୱୀକାର କରନ୍ତି ଅସଂଖ୍ୟ ଭ୍ରାନ୍ତ ସ୍ତାବକର ଅଜସ୍ର ସ୍ତବବାଣୀ ସତ୍ତ୍ୱେ-

'' ପଡେ କି ମୃଗେନ୍ଦ୍ର କେବେ ଶଶକ କୌଶଳେ ?
ପ୍ରକୃତ ଦରଶୀ ରାଜା ଜ୍ଞାନେ ସୁଚତୁର



Digitized by srujanika@gmail.com

ନିଜର ପ୍ରତିଭା କେତେ ଜାଣନ୍ତି ସେ ନିଜେ
ଅଳୀକ ପ୍ରସ୍ତାବ ମୂଲ୍ୟହୀନ ସମର୍ଥନ
ସ୍ତବ ସ୍ତୁତି ତୋଷାମଦ ଉଡିଯାଏ କାହିଁ
ସତ୍ୟନ୍ୟାୟ ଯାହା ତାହା ହୁଅଇ ଗୃହୀତ ।''(୨ୟ ସର୍ଗ- ପୃ.୧୪)

ଅନେକ ରାଜା ନିଜ ପ୍ରଜାଙ୍କୁ ଉଚିତ ଶିକ୍ଷା ଦେବା ଦିଗରେ ଖୁବ୍ ଉଦାସୀନ । ଏପରିକି ଗଡଜାତର ତତ୍କାଳୀନ ଇତିହାସକୁ ନିରୀକ୍ଷଣ କଲେ ଖୁବ୍ କମ୍ ସ୍କୁଲ ଅତିକମ ଛାତ୍ର ବିଦ୍ୟାଗ୍ରହଣ କରୁଥିବା ଜଣାଯାଏ । ଶିକ୍ଷାପ୍ରତି ଉଭୟ ଶାସକ ଓ ଜନସାଧାରଣ ଉଦାସୀନ ଥିଲେ । ଏହାକୁ ହୃଦୟଙ୍ଗମ କରି ଲିଙ୍ଗରାଜ ପାଣିଗ୍ରାହୀ ଘୋଷଣା କରନ୍ତି -

'' ଶିକ୍ଷିତ ହୋଇଲେ ପ୍ରଜା ବିପଦ ରାଜାକୁ
ଭାବଇ ଯେ ନୃପ ଏହା, ମହାମୂଢ଼ ସେହୁ

x x x x x x

ରାଜ୍ୟ ଶିକ୍ଷୋନ୍ନତି କଲ୍ପେ ଦେବା ମନ ପ୍ରାଣ
ପ୍ରଧାନ କର୍ତ୍ତବ୍ୟ ଭବେ ଜ୍ଞାନୀ ନୃପତିର
ଶିକ୍ଷାହୀନ ରାଜ୍ୟ ବନ୍ଧ ସଦା ତମୋମୟ
ସୂର୍ଯ୍ୟହୀନ ସ୍ଥାନ ସମ; ନିଷ୍ଠୁର କର୍କଶ ।''(୩ୟ ସର୍ଗ- ପୃ.୪୧)

ତତ୍କାଳୀନ ଓଡ଼ିଶାର ଶିକ୍ଷାକ୍ଷେତ୍ରର ଘୋର ଦୂରାବସ୍ଥାକୁ ହୃଦୟଙ୍ଗମ କରି ସମ୍ବଲପୁର ହିତୈଷିଣୀ ବାରମ୍ବାର ସ୍ୱର ଉତ୍ତୋଳନ କରୁଥିଲା । ଏହି କାବ୍ୟର ହିତୈଷିଣୀରେ ପ୍ରକାଶନ ତଥା ଲିଙ୍ଗରାଜ ତାର ସହ ସମ୍ପାଦକ ରୂପେ ଶିକ୍ଷାର ପ୍ରସାର ନିମନ୍ତେ ନିଜର ନୈତିକ ସମର୍ଥନ ଜଣାଇବା ଆଦୌ ଆଶ୍ଚର୍ଯ୍ୟର ବିଷୟ ନୁହେଁ ।

କେବଳ ଶିକ୍ଷାର ସଂସ୍କାର ନୁହେଁ ମାତୃଭାଷାର ଉନ୍ନତି କଲ୍ପେ ମଧ୍ୟ କବି ଗୁରୁତ୍ୱାରୋପ କରନ୍ତି କାରଣ ଏହି କାବ୍ୟ ରଚନା ସମୟକୁ ଭାଷାକୁ କେନ୍ଦ୍ରକରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଜାଗରଣ ସୃଷ୍ଟି ହୋଇଥାଏ ଏବଂ ଏ ଜାଗରଣର ଅନ୍ୟତମ ପ୍ରବକ୍ତା ରୂପେ କାର୍ଯ୍ୟ କରୁଥାଏ ହିତୈଷିଣୀ ପତ୍ରିକା। ମାତୃଭାଷାର କଳାତୀତ ମହାର୍ଘ ରୂପକୁ କବି କାବ୍ୟ ମାଧ୍ୟମରେ ଆବାହନ କରିଛନ୍ତି ।

''ଜାତିର ଜୀବନ ଅଟେ ଜାତି ମାତୃଭାଷା
ଭାଷାହୀନ ଜାତିନୁହେଁ ଜାତି ଆଖ୍ୟାଧାରୀ
ମାତୃଭାଷା ପ୍ରତି ବାବୁ କରିବ ଭକତି



Digitized by srujanika@gmail.com

ଜାତୀୟ ସାହିତ୍ୟ, ବେଦ, ବିଜ୍ଞାନ, ଦର୍ଶନ
ଜ୍ୟୋତିଷ, ଗଣିତ, ସ୍ମୃତି, କାବ୍ୟ, ପୁରାତତ୍ତ୍ୱ
ଭୂତତ୍ତ୍ୱ, ସଙ୍ଗୀତ ଆଦି ଉନ୍ନତି ମାନସେ
ହେବନାହିଁ ହତୋତ୍ସାହ ରାଜ୍ୟ ମଧ୍ୟେ ରାଜା ।''(୩ୟ ସର୍ଗ- ପୃ. ୪୨)

ଲିଙ୍ଗରାଜ ଜଣେ ସଚେତନ କାବ୍ୟଶିଳ୍ପୀ -ସାମାନ୍ୟ ଶବ୍ଦଚର୍ଯ୍ୟା ମଧ୍ୟରେ ସେ ଭୂମାର ମହାସ୍ପନ୍ଦନରେ ସ୍ପନ୍ଦିତ କରିଯାନ୍ତି ତାଙ୍କର କାବ୍ୟଲୋକକୁ । ସାଧାରଣ ବ୍ୟକ୍ତିସତ୍ତା ମଧ୍ୟରେ ଉପଲବ୍ଧି କରନ୍ତି ଅସାଧାରଣତାର ଅଖଣ୍ଡ ପ୍ଳାବନ । ତେଣୁ ସେ କାବ୍ୟ ମାଧ୍ୟମରେ ରାମଚନ୍ଦ୍ରଙ୍କୁ ସାଧାରଣ ରାଜପୁତ୍ର ରୂପେ ଚିତ୍ରଣ କଲାବେଳେ ମଧ୍ୟ ମହାନ ଆଦର୍ଶର ଅତିନ୍ଦ୍ରୀୟତାରେ ଚିତ୍ରିତ କରିଛନ୍ତି । ଦଶରଥଙ୍କ ରାଜପୁରୀ ବା ଦରବାରର ପ୍ରାଚୁର୍ଯ୍ୟ ପୁରାଣ ବର୍ଣ୍ଣିତ ଏକ ଅସମ୍ଭବ କଳ୍ପନା ବିଳାସର ମିଥ୍ୟାମାୟା ସୃଷ୍ଟି କରେନା ବରଂ ନିଜର ଅଙ୍ଗେନିଭା ରାଇକୀୟ ପ୍ରାଚୁର୍ଯ୍ୟର ବିବରଣୀର ପ୍ରତ୍ୟକ୍ଷ ବର୍ଣ୍ଣନା ଦିଅନ୍ତି କବି । ଫଳରେ ଅତିବାସ୍ତବ ବା ଅତିକଳ୍ପନାର ଭାରାରେ ତାଙ୍କର କାବ୍ୟ ଭାରାକ୍ରାନ୍ତ ନ ହୋଇ ସ୍ୱଚ୍ଛ ଏବଂ ସାବଲୀଳ ରସ ସମ୍ପଦରେ ପାଠକର ମନକୁ ଛୁଇଁପାରେ । ଅତି ଆପଣାର ପ୍ରେକ୍ଷାପଟରେ ପାଠକ ଅନୁଭବ କରେ କାବ୍ୟର ପ୍ରତିଟି ଘଟଣାକୁ । ପ୍ରତିଟି ଚରିତ୍ର ଏକାନ୍ତ ନିଜର ଏଇ ସମାଜର ପରି ମନେ ହୁଅନ୍ତି । ଏପରି ଏକ ଜୀବନ୍ତ ଚାରିତ୍ରିକ ବର୍ଣ୍ଣନା କବିଙ୍କ ଅନୁଭୂତିର ତୀବ୍ରତା, ଚେତନାର ଗଭୀରତା ଓ ସୃଷ୍ଟିର ଆବେଗକୁ ପରିପ୍ରକାଶ କରେ । କେଉଁଠି ଚରିତ୍ର ଭିତରେ ସମ୍ପର୍କ ଅବାସ୍ତବତାର ଆବାହନ କରିନାହିଁ । ବରଂ ବାସ୍ତବ ଚିତ୍ର ଉତ୍ତୋଳନରେ ସିଦ୍ଧହସ୍ତ କବିଙ୍କ ଅଭିଜ୍ଞତାକୁ ସମ୍ମାନ ଜଣାଇଛି । ଚରିତ୍ରକୁ ବାସ୍ତବମୁଖୀ କରିବା ଦିଗରେ ଆବଶ୍ୟକ ସ୍ଥଳେ ଦୃଶ୍ୟ ବର୍ଣ୍ଣନାରେ କବି ନିଜର ଅଭିଜ୍ଞତା ସୁଲଭ ଦେଶଜ ଶବ୍ଦ ସମୂହର ପ୍ରୟୋଗ କରିଛନ୍ତି । ଯେଉଁଗୁଡିକ କି ଗଡଜାତ ମହାଲମାନଙ୍କରେ ସୁପରିଚାଳିତ ଏବଂ ପାଠକ ମନରେ ଏକ ପରିଚିତ ଧାରଣା ସୃଷ୍ଟି କରିବାରେ ସଫଳ ହୁଏ । ରଇଁସା, ଗଡମାଝି, ବହିଦାର, ଚରା, ରସଦ, ଅଞ୍ଚା, ପଞ୍ଚା, ବେଠି, ଫୁଗୁଲି ପରି କେତୋଟି ଶବ୍ଦ କାବ୍ୟରେ ଯଥାର୍ଥ କାବ୍ୟ ସମ୍ମାନ ଲଭିଛି ।

(୩)

ଲିଙ୍ଗରାଜଙ୍କ ଭାଷା ଅତି ସରଳ, ନିରାଡମ୍ବର କିନ୍ତୁ ଆବେଗପୂର୍ଣ୍ଣ । ତାଙ୍କର ପ୍ରତିଟି ପଦ ସଂଯୋଜନା ଏକ ବଳିଷ୍ଠ କାରିଗରୀ କୌଶଳର ମହାନତା ପ୍ରତିପାଦନ କରେ । ତାଙ୍କ ଶୈଳୀ ରାଧାନାଥୀ କାବ୍ୟ ଶୈଳୀର ଅନୁରୂପ । ତାଙ୍କର ସରଳ ଓ ସାବଲୀଳ ବକ୍ତବ୍ୟ ନିଜର ନିତ୍ୟ ଦୃଶ୍ୟମାନ ଜଗତର ଘଟଣାବଳୀକୁ ଅତି କଳାତ୍ମକ ଭାବେ ବର୍ଣ୍ଣନା କରେ । ଚିତ୍ର ସଜାରେ



Digitized by srujanika@gmail.com

ତାଙ୍କର ଅତି ଆପଣାର ପଲ୍ଲୀ ଚିତ୍ରଗୁଡିକ ହିଁ ଗୁରୁତ୍ୱଲାଭ କରେ । ରାଧାନାଥୀ କୌଶଳ ଦ୍ୱାରା ଅନୁପ୍ରାଣିତ କବିଙ୍କର ଶବ୍ଦଶଯ୍ୟା ମନୋମୁଗ୍ଧକର ।

'' ପ୍ରଭାତିଲା ବିଭାବରୀ ପୌରନ୍ଦରୀ ଦ୍ୱାରେ
ବାଳାର୍କ-ସିନ୍ଦୁର ଟୋପା ଘେନି ଭାଲ ଦେଶେ
ରକ୍ତିମା ଛଟାରେ ମୋହି ଜଗତ-ନୟନ
ବିଜେ ଉଷାରାଣୀ ଆହା ତ୍ରିଦିବ ଦୁହିତା ।''(ପ୍ରଥମ ସର୍ଗ - ପୃ.୩)

ପଲ୍ଲୀ ଚିତ୍ରଣରେ ସିଦ୍ଧହସ୍ତ କବିଙ୍କ ପ୍ରତିବେଦନ ଖୁବ୍ ଶକ୍ତିଶାଳୀ ।

''ମୂରଲୀ ବାଦନ କରି ଲଗୁଡ ହସ୍ତରେ
କେକିପୀଛ ଖୋସି ଶିରେ ଗୋରୂପଲ ପଛେ
ଆସନ୍ତି ଗୋପାଳେ ଗୃହେ ମନର ଉଲ୍ଲାସେ
ପ୍ରଦୋଷ ସୁନ୍ଦରୀ ପିନ୍ଧି କୃଷ୍ଣ ଝୀନବାସ
କବରୀରେ ଖୋସି ଏକ ସ୍ୱର୍ଗ ପାରିଜାତ
ଅବତୀର୍ଣ୍ଣ ସ୍ୱର୍ଗ ଧାମୁଁ ସାକେତ ନାଗରେ ।''(୨ୟ ସର୍ଗ- ପୃ.୧୨)

ଗୀତିମୟ ସୁଶ୍ରାବ୍ୟ ଶବ୍ଦ ସଂଯୋଜନା ଲିଙ୍ଗରାଜଙ୍କ ଅନ୍ୟତମ ବୈଶିଷ୍ଟ୍ୟ । ଅତି ପାରମ୍ପରିକ ଶବ୍ଦ ଚୟନ ତାଙ୍କ କବିତ୍ୱକୁ ମହନୀୟ କରିଛି । ଅନେକ ନୂତନ ଅପ୍ରଚଳିତ ଗଡ଼ଜାତୀ ଶବ୍ଦ ପ୍ରୟୋଗ କରି ସେ ଆଧୁନିକ କବିତାର ଶବ୍ଦ ଭଣ୍ଡାରକୁ ଅଭିବୃଦ୍ଧି କରି ପାରିଛନ୍ତି ।

ଲିଙ୍ଗରାଜ ଜଣେ ସାମର୍ଥ୍ୟପୂର୍ଣ୍ଣ ନାଟ୍ୟକାର ହୋଇଥିବାରୁ ତାଙ୍କର ଅନେକ କାବ୍ୟ କବିତାରେ ଏକ ଗୀତିମୟ ନାଟକୀୟତା ପରିଦୃଶ୍ୟମାନ ହୋଇଥାଏ । ଜଣେ ନାଟ୍ୟକାରର ଜୀବନପ୍ରତି ଥିବା ସ୍ନେହଶୀଳ ଦୃଷ୍ଟିଭଙ୍ଗୀ ସୂକ୍ଷ୍ମ ଏବଂ ଶ୍ଳେଷପୂର୍ଣ୍ଣ ଚେତନାର ଆନ୍ଦୋଳନ ତାଙ୍କର କାବ୍ୟ କବିତାରେ ମଧ ସ୍ପଷ୍ଟତଃ ଅନୁମତି ହୁଏ । ତାଙ୍କର କାବ୍ୟ ପ୍ରାରମ୍ଭରେ ନାଟକୀୟତା ବେଶ୍ ଲକ୍ଷ୍ୟଣୀୟ-

''ଧରଣୀ ଧବଳକାରୀ ବିମଳ ଶରତ
ଉପଗତ ଧରାଧାମେ...'' (୧ମ ସର୍ଗ : ପୃ-୧)

କିମ୍ବା ଚତୁର୍ଥ ସର୍ଗର ପ୍ରାରମ୍ଭ-

''ବିରାଜଇ ନିଶିଥିନୀ ପିନ୍ଧି ଶୁକ୍ଳବାସ
ସୁନୀଳ ଗଗନେ ଦୀପ୍ତ ମଣିଖଣ୍ଡ ସମ ।'' (ପୃ-୪୫)

କିମ୍ବା ଷଷ୍ଠ ସର୍ଗର ପ୍ରାରମ୍ଭ-



Digitized by srujanika@gmail.com

''ଡାକିଲେଣି ତାମ୍ରଚୂଡ଼ କାକଗଣ କାଆ କାଆ''(ପୃ-୭୫)

ଉଦ୍ଧୃତ ନାଟକୀୟ ପ୍ରାରମ୍ଭ ପାଠକ ପ୍ରାଣରେ ଏକ ଅପ୍ରତ୍ୟାଶିତ ଉତ୍କଣ୍ଠା ଓ କଳାତ୍ମକ ଚମକ ସୃଷ୍ଟି କରିବାରେ ସଫଳକାମ ହୁଏ ।

ଉଲ୍ଲିଖିତ ପଂକ୍ତିଗୁଡିକରୁ ଲିଙ୍ଗରାଜଙ୍କ ଉପମା ଏବଂ ଚିତ୍ରକଳ୍ପ ପ୍ରୟୋଗର ସିଦ୍ଧହସ୍ତତା ବେଶ୍ ପ୍ରମାଣିତ ହୁଏ । ଅନେକତ୍ର ସେ ରାଜ ଅନ୍ତପୁରର ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତିକୁ ମଧ୍ୟ ବେଶ୍ ଶ୍ଳେଷପୂର୍ଣ୍ଣ ଭଙ୍ଗୀରେ କାବ୍ୟରେ ପ୍ରକାଶ କରିଛନ୍ତି-

'' ରାଜା ରାଜୁଡାର କଥା ଅଟଇ ବିଷମ
କରତ ସମାନ ତାହା ସର୍ବଦା ଦାନ୍ତୁଆ
ଘିଞ୍ଚିଲେ କାଟଇ ଯଥା ଠେଲିଲେ ତେସନ
ଆଖିଥିଲେ ଦେଖ କାନଥିଲେ ଶୁଣୁଥାଅ
ନ କହି ନ କରି କିଛି ଏଯନ ମାରିଯାଅ ।''(ପଞ୍ଚମ ସର୍ଗ:ପୃ.୬୭)

ନବ୍ୟବାବୁ ସାଜୁଥିବା ଆଧୁନିକ ଶିକ୍ଷିତ ଗୋଷ୍ଠୀଙ୍କୁ ଆକ୍ଷେପ କରି ଶ୍ରୀରାମଙ୍କ ଆଡମ୍ବର ଶୂନ୍ୟତା କବି ଅତି ନାଟକୀୟ ଭଙ୍ଗୀରେ ପ୍ରକାଶ କରନ୍ତି ।

''ନାହିଁ ଅଙ୍ଗେ ଆଭରଣ ସ୍ୱର୍ଣ୍ଣ ରତ୍ନ ଆଦି
ନାହିଁ ପୁଣି କୋଟପେଣ୍ଟ ହ୍ୟେଟ ମୋଫଲର
ନାହିଁ ନେତ୍ରେ ନବ୍ୟରୁଚି ସୁବର୍ଣ୍ଣ ଚଷମା
ନାହିଁ ହେମ ଜରିମୟ ଚହଟ ପୋଷାକ
ସଦା ଆଡ଼ମ୍ବର ଶୂନ୍ୟ ବୀର ଦାଶରଥି ।''(ପଞ୍ଚମ ସର୍ଗ- ପୃ.୬୨)

ଅମୃତେବିଷ କାବ୍ୟଟି ହିତୈଷିଣୀ ପତ୍ରିକାରେ ଧାରାବାହିକ ପ୍ରକାଶ ଲଭି ପାଠକଙ୍କୁ ଆକୃଷ୍ଟ କରିପାରିଥିଲା । ପୁସ୍ତକାକାରେ ପ୍ରକାଶନ ସମୟେ କବି ଅନେକତ୍ର ସାମାନ୍ୟ ପରିବର୍ତ୍ତନ କରି କାବ୍ୟକୁ ମୁଦ୍ରିତ କରନ୍ତି । ଜଣେ ସୃଜନଶୀଳ କବି ମାନସିକ ସ୍ତରରେ ବେଶ୍ ସଞ୍ଚରଣଶୀଳ । ଏଣୁ ସେ ନିଜର କାବ୍ୟ ଭୂମିକୁ ନିତ୍ୟନୂତନ ଶବ୍ଦବସାଣ ଓ ଚିତ୍ରଣରେ ମହୀୟାନ କରିଥାଏ। ଅମୃତେବିଷର ଶେଷାଂଶର କେତୋଟି ସଂଶୋଧିତ ପଂକ୍ତି ଏଠାରେ ପାଠକଙ୍କ ଅବଗତି ପାଇଁ ଉଦ୍ଧୃତ କରାଗଲା । ଲିଙ୍ଗରାଜ ପତ୍ରିକାରେ ପ୍ରକାଶିତ କାବ୍ୟ ପଂକ୍ତିର ଖଣ୍ଡନମଣ୍ଡନ କରି ପୁସ୍ତକାକାରେ ପ୍ରକାଶ କରିଛନ୍ତି । ଏଥିରେ ମୂଳ ପ୍ରକାଶିତ ଅନେକ ପଂକ୍ତିକୁ ବାଦ ଦିଆଯାଇଛି କିଛି ସଂଶୋଧିତ ଓ ଅନେକ ନୂତନ ଅଂଶ ସଂଯୋଜିତ ହୋଇଛି । ଏହି ପ୍ରକ୍ରିୟାରେ ଲିଙ୍ଗରାଜଙ୍କ କ୍ରିୟାଶୀଳ କବିକର୍ମର ଅନନ୍ୟତା ପ୍ରତିପାଦିତ ହୋଇଛି । ଯେପରି-



Digitized by srujanika@gmail.com

ନୂତନ ଉତ୍ସାହ ଦାନେ ପ୍ରଫୁଲ୍ଲ ମାନସେ
ବିଦାୟ ପ୍ରଦାନ ଏକା ତୁମ୍ଭରି ଉଚିତ
ଅଯୋଧାର ସୁଖଦୁଃଖ ଲାଗିଲା ତୁମ୍ଭଙ୍କୁ
ଚତୁର୍ଦ୍ଦଶ ବର୍ଷ ଅନ୍ତେ ହୋଇବ ସାକ୍ଷାତ୍
ଏହିଠାରୁ ପ୍ରତ୍ୟାବୃତ୍ତ ହୁଅ ହେ ସମସ୍ତେ
କରୁ ପ୍ରଣିପାତ ଦିଅ ବିଦାୟ ସୁଚିତେ ।(ସମ୍ବଲପୁର ହିତୈଷିଣୀ- ୨୮/୩୩)

ପୁସ୍ତକାକାରରେ ପ୍ରକାଶ ପାଇବା ବେଳକୁ 'ବିଦାୟ ପ୍ରଦାନ'ଠାରୁ 'ଲାଗିଲା ତୁମ୍ଭଙ୍କୁ' ପର୍ଯ୍ୟନ୍ତ ପଂକ୍ତିରେ ପରିବର୍ତ୍ତନ ଓ ଏଇଠି ଚଉବନ ସଂଖ୍ୟକ ଅଧିକ ଧାଡି ସଂଯୋଗ କରାଯାଇଛି-

ବିଦାୟ ପ୍ରଦାନ ଏକା ତୁମ୍ଭରି ଉଚିତ
ମୋର ପ୍ରତି ଥାଏ ଯଦି ଭକ୍ତି ପ୍ରୀତି ତବ
ତାହା ଏହି ରକ୍ତମାଂସ ଜୀବନର ପ୍ରତି
କରିବା ପ୍ରଯୁଜ୍ୟ କେବେ ନୁହଇ ଉଚିତ...
ଚତୁର୍ଦ୍ଦଶ ବର୍ଷ ଅନ୍ତେ ହୋଇବ ସାକ୍ଷାତ୍(ଇତ୍ୟାଦି)

ଲିଙ୍ଗରାଜଙ୍କ କବି ପ୍ରାଣ ତୀକ୍ଷ୍ଣ, ରୁଚିଶୀଳ ଓ ତୀବ୍ର, ଯାହା ମନର ଆବେଗକୁ ଅତିକଳାତ୍ମକ ଭାବେ କାବ୍ୟ କବିତାରେ ପ୍ରତିଫଳିତ କରେ । ଆଧୁନିକ ସାମାଜିକ ପ୍ରେକ୍ଷାପଟରେ ଆଦର୍ଶବାଦ ପ୍ରଖ୍ୟାପନ ଏବଂ ଭାଷା ସାହିତ୍ୟର ଅକୁଣ୍ଠ ଐଶ୍ୱର୍ଯ୍ୟ ସମ୍ପାଦନ ଦିଗରେ 'ଅମୃତେ ବିଷ' କାବ୍ୟର କାହାଣୀସଜ୍ଜା, ଶିଳ୍ପ ପ୍ରକରଣ, ଭାଷା ଓ ଚିତ୍ରକଳ୍ପର ଯଥାଯଥ ପ୍ରୟୋଗ ଏହାକୁ ଏକ ଉଚ୍ଚକୋଟୀର କାବ୍ୟର ସମ୍ମାନ ପ୍ରଦାନ କରେ ।❑❑❑



Digitized by srujanika@gmail.com

# ସୁଲୋଚନା ଦେଈଙ୍କ 'ପଦ୍ମିନୀ': ଏକ ଅଧ୍ୟୟନ

ଓଡ଼ିଆ ସାହିତ୍ୟରେ ଊନବିଂଶ ଶତାବ୍ଦୀ ଏବଂ ବିଂଶ ଶତାବ୍ଦୀର ସଂଧିକ୍ଷଣରେ ସୃଷ୍ଟ କାବ୍ୟଚେତନା ମୁଖ୍ୟତଃ ତୀବ୍ର ଜାତୀୟତାବାଦର ଉତ୍ସ ରୂପେ ଐତିହାସିକ ମାଧ୍ୟମକୁ ଆହରଣ କରି ନେଇଥିଲା । ଏ ଦେଶର ପରମ୍ପରାପୁଷ୍ଟ କାହାଣୀର ବିଶ୍ୱସ୍ତ ବର୍ଣ୍ଣନା ମାଧ୍ୟମରେ ଆଦର୍ଶବାଦ ପ୍ରଖ୍ୟାପନ ହିଁ ଥିଲା ସାହିତ୍ୟର ଶ୍ରେଷ୍ଠ ଆଭିମୁଖ୍ୟ । ଏ ଦୃଷ୍ଟିରୁ ବିଚାର କଲେ ସୁଲୋଚନା ଦେଈଙ୍କ ଆଦର୍ଶବାଦୀ କାବ୍ୟପ୍ରାଣ ଅତି ସଜ୍ଞାନ ଚିତ୍ତରେ ଏ ଦେଶର ଉତ୍ସର୍ଗୀକୃତ ନାରୀ ଜୀବନର ଶ୍ରେଷ୍ଠ ଦୃଷ୍ଟାନ୍ତ 'ପଦ୍ମିନୀ'କୁ ହିଁ ନିର୍ବାଚିତ କରିଛି । ଏ ଦେଶର ସଂସ୍କୃତି ଓ ଐତିହ୍ୟ ପ୍ରତି ଗଭୀର ଅନୁରକ୍ତି ଦ୍ୱାରା ପଦ୍ମିନୀ ଚରିତ୍ରକୁ ଅସାଧାରଣ ଶୁଦ୍ଧତା ଓ ଉତ୍କର୍ଷତାର ମୂର୍ତ୍ତିମତୀ ବିଗ୍ରହ ରୂପେ ପାଠକ ସମ୍ମୁଖରେ ଟେକିଦେବା ଥିଲା କାବ୍ୟର ଲକ୍ଷ୍ୟ । ଏ ଦୃଷ୍ଟିରୁ ଏ କାବ୍ୟାଲୋଚନା ଅତୀବ ଗୁରୁତ୍ୱପୂର୍ଣ୍ଣ ।

'ପଦ୍ମିନୀ'ର ପ୍ରକାଶ କାଳ ୧୯୨୭ ଏବଂ ତତ୍‌ପୂର୍ବରୁ ଏହା 'ସମ୍ବଲପୁର ହିତୈଷିଣୀ'(୧୯୨୦)ରେ ପ୍ରକାଶିତ । କିନ୍ତୁ 'ପଦ୍ମିନୀ' କାବ୍ୟନିବେଦନରେ ସୁଲୋଚନା ଦେଈ ସ୍ୱୀକାର କରିଛନ୍ତି ଏହା ତାଙ୍କର ଚଉଦ ବର୍ଷ ବୟସ ସମୟର ରଚନା । ସୁଲୋଚନା ଦେଈଙ୍କ ଜନ୍ମ ୧୮୯୫ ମ: କୁ ବିଚାର କଲେ 'ପଦ୍ମିନୀ' କାବ୍ୟ ରଚନା ସମୟ ୧୯୦୯ ବୋଲି ଗ୍ରହଣ କରିନେବା ଅଯୌକ୍ତିକ ହେବ ନାହିଁ । ସେ ଯାହେଉ ପଦ୍ମିନୀ କାବ୍ୟର ଅନ୍ତସ୍ୱରରେ ସୁଲୋଚନା ଦେଈଙ୍କ ଚାରିତ୍ରିକ ବୈଶିଷ୍ଟ୍ୟ ଏବଂ ଉଚ୍ଚାଙ୍ଗ ଜୀବନାଦର୍ଶର ସୌନ୍ଦର୍ଯ୍ୟ ବିଭବ ପ୍ରତିଫଳିତ । ପଦ୍ମିନୀର ବିଷୟବସ୍ତୁ ନିର୍ବାଚନ ଅନ୍ତରାଳରେ ନାରୀ କବିଙ୍କର ଚାରିତ୍ରିକ ମହତ୍ତ୍ୱ ବିକଶିତ ଏବଂ ସମାଜ ସଂସ୍କାରର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ସୁସ୍ପଷ୍ଟ । ନାରୀ ଶିକ୍ଷା ଏବଂ ନାରୀ ପ୍ରଗତି ନେଇ ଅନେକ କାବ୍ୟ କବିତା ପ୍ରବନ୍ଧ ଆଦି ରଚନା କରିଥିବା ଏ ପ୍ରତିଭା ପ୍ରାରମ୍ଭିକ ପର୍ଯ୍ୟାୟରେ ପଦ୍ମିନୀ ରୂପୀ ଏକ ନିର୍ଭୀକା ସତୀ ନାରୀର କାହାଣୀ ପରିବେଷଣ କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବରଂ ଏହା ଫଳରେ ତାଙ୍କର ଶିଳ୍ପକଳାର ଆଭିମୁଖ୍ୟ ସ୍ପଷ୍ଟ ହୋଇଥାଏ । ଜାତୀୟତାବାଦୀ ଚିନ୍ତାଧାରା କିପରି କବିତାର ସ୍ଫୁଲିଙ୍ଗ ପରି ସ୍ୱତଃସ୍ଫୂର୍ତ୍ତ ଭାବେ କବିର ହୃଦୟରୁ ସ୍ପନ୍ଦିତ ହୋଇଥାଏ ତା'ର ଏକ କଳାତ୍ମକ ଦୃଷ୍ଟାନ୍ତ ପଦ୍ମିନୀ କାବ୍ୟ । ଏକ ଉତ୍ସର୍ଗୀକୃତ ଆଦର୍ଶମୟୀ ଐତିହାସିକ ଚରିତ୍ରର ନବୀକୃତ ରୂପ ଏ କାବ୍ୟ ଅନ୍ତରାଳରେ କେତେଦୂର ସୃଷ୍ଟି ସାଫଲ୍ୟ ଲାଭ କରିପାରିଛି ତାହାହିଁ ଏ ଆଲୋଚନାର ବିଚାର୍ଯ୍ୟ ବସ୍ତୁ ।



Digitized by srujanika@gmail.com

ସୁଲୋଚନା ଦେଈ ଏ ଶତାବ୍ଦୀର ପ୍ରଥମ ତିନି ଦଶକର ଜଣେ ଶିକ୍ଷିତା ନାରୀ କବି । ରକ୍ଷଣଶୀଳ ସମାଜର ଜଣେ ଗୃହ ବଧୂ ଥାଇ ସ୍ୱାମୀ ସନ୍ତାନର ପରିବାର ମଧ୍ୟରେ ସେ ଲେଖନୀ ଚାଳନା କରୁଥିବା ଯୋଗୁ ପ୍ରତି ପଦକ୍ଷେପରେ ସାମାଜିକ ପରମ୍ପରା ତଥା ବିଧି ନିର୍ଦ୍ଦେଶର ଖଡ୍‌ଗ ଧାର ପ୍ରତି ସେ ସଚେତନ ଥିଲେ । ଏବଂ ଆହୁରି ମଧ୍ୟ ସେ ଉପଲବ୍ଧି କରିଥିଲେ ଏ ସମାଜରେ ନାରୀର ଦୂରାବସ୍ଥା । ଯା' ଫଳରେ ନାରୀଶିକ୍ଷାର ଅପରିହାର୍ଯ୍ୟତା ସେ ହୃଦୟଙ୍ଗମ କରିଥିଲେ। ଏଇଥି ପାଇଁ ସେ ନିଜର ସମସ୍ତ ପରିଶ୍ରମ ଏବଂ ସାହିତ୍ୟିକ କୃତିକୁ ବିନିଯୋଗ କରିଥିଲେ। ଫଳତଃ ଏକ କୋମଳ ବିଦ୍ରୋହର ସୂଚନା ନାରୀ ପ୍ରଗତିର ନାନ୍ଦୀପାଠ ରୂପେ ତାଙ୍କ ଲେଖନୀରେ ଝଙ୍କୃତ ହୋଇଥିଲା ।

ନବୀନ ପ୍ରଭାତେ ଜାଗିଲାଣି ଧରା
ଜାଗ ଉତ୍କଳ ଲଳନା,
ଅର୍ଦ୍ଧଯାମ ଭଳି ଶୋଇ ରହିଅଛ ଏ
ଏ କି ଘୋର ବିଡମ୍ବନା।

x x x x x x

ବେଦଶାସ୍ତ୍ରେ ଗାର୍ଗୀ ଗଣିତରେ ଲୀଳା-
ବତୀର ଅଛଇ ନାମ,
ହୀନ ନୁହେଁ ନାରୀ ଅଛିତାର ଶକ୍ତି
ତୁଚ୍ଛ ନୁହଇ ତା କାମ । ନାରୀ ଜାତି: ଚିତ୍ତ ବିକାଶ ପୃ ୬୭-୬୮

ନାରୀ ଶିକ୍ଷା ପାଇଁ ପ୍ରଚାର କରିବାକୁ କାୟମନବାକ୍ୟରେ ସୁଲୋଚନା ଦେଈ ଉଦ୍ୟମ କରିଯାଇଛନ୍ତି। ତାଙ୍କ ପ୍ରାଣର ଏକମାତ୍ର ସ୍ୱପ୍ନ ନାରୀ ଜାତି ଉଚ୍ଚଶିକ୍ଷିତା ହୋଇ ମାତୃଭୂମିର ମୁଖ ଉଜ୍ଜ୍ୱଳ କରନ୍ତୁ। ତାଙ୍କର ଅବଚେତନ ମନରେ ବାରମ୍ବାର ଏ ଆଶା ପ୍ରତିଧ୍ୱନିତ ହୋଇଛି। ଯାହାକୁ ତାଙ୍କର ସୃଷ୍ଟିଶୀଳ ପ୍ରାଣର ଉତ୍ସରୂପେ ଗ୍ରହଣ କରାଯାଇପାରେ ।

'' କେବେ ବାମାଗଣ ହୋଇ ସୁଶିକ୍ଷିତ ମନା
ହିତକର ନାନାଗ୍ରନ୍ଥ କରିବେ ରଚନା ।
ଜ୍ଞାନ ଶିକ୍ଷା ଧର୍ମ ଦୀକ୍ଷା କରିବେ ସେ ଦାନ
ପ୍ରାଣ ପରେ ସ୍ୱଜାତିର ସାଧିବେ କଲ୍ୟାଣ ।''
('ବାମାହୀତାର୍ଥୀର ଆଶା'- ଅବକାଶ ମଞ୍ଜରୀ- ପୃ-୪୦)



Digitized by srujanika@gmail.com

ତାଙ୍କର କବିତା ତାଙ୍କ ମନର ସମସ୍ତ ଗୋପନ ଇଚ୍ଛାକୁ ବ୍ୟକ୍ତ କରିବା ସହିତ ସମାଜର ମଙ୍ଗଳ ସାଧନ ପରିପ୍ରେକ୍ଷୀରେ ଏକ ମୌଳିକ ବୈପ୍ଳବାତ୍ମକ ଭୂମିକା ସମ୍ପାଦନ କରି ପାରିଛି । କେବଳ କବିତା ନୁହେଁ ନାରୀଶିକ୍ଷା, ନାରୀ ଅଧିକାର ସମ୍ପର୍କରେ ସେ ଅନେକ ପ୍ରବନ୍ଧ ରଚନା କରିଯାଇଛନ୍ତି । ଯାହାକି ବହୁ ଉପେକ୍ଷିତ ନାରୀ ସମାଜ ସପକ୍ଷରେ ନିଜର ସ୍ୱର ଉତ୍ତୋଳନ କରି ଏକ ତୀବ୍ର ପ୍ରଚାର ଚଳାଇବାରେ ସକ୍ଷମ ହୋଇଛି । ସମାଜର ବିଭିନ୍ନ ତ୍ରୁଟି ବିଚ୍ୟୁତିକୁ ଅତି ସଂଭ୍ରମତାର ସହିତ ପ୍ରତିବାଦ ଜଣାଇଛନ୍ତି ଯଦିଓ ଉଗ୍ରବିପ୍ଳବର ଆହ୍ୱାନ ଦେଇ ନାହାନ୍ତି ।

'' ନାରୀ ଶକ୍ତି ରୂପିଣୀ, ଯେଉଁ ଭାରତବର୍ଷରେ ଆବହମାନ କାଳରୁ ଶକ୍ତି ପୂଜା ହୋଇ ଆସୁଛି, ଏବେ ସେଠାରେ ନାରୀ ଜାତି ଅବଳା ନାମଧେୟ ହେବା କିଦୁଃଖ ଓ କ୍ଷୋଭର ବିଷୟ ! ନାରୀ ଅବଳା ନୁହେଁ, ତାହାର ବଳ ଅସୀମ; ନାରୀର ହୃଦୟ- ବଳରେ ସଂସାରର ସମସ୍ତ ସୁଖଶାନ୍ତି; ସୃଷ୍ଟି ସ୍ଥିତି ଓ ପ୍ରଳୟ କ୍ଷଣେ କ୍ଷଣେ ଘଟୁଅଛି; ଅତଏବ ନାରୀ ତ୍ରିଗୁଣ ସମ୍ପନ୍ନ ।''(ନାରୀ ଜାତିର ଅଧିକାର: ଚିତ୍ତ ବିକାଶ - ପୃ-୧୦୫)

ଆମର ପ୍ରାଚୀନ ସ୍ମୃତି ଶାସ୍ତ୍ରରେ ଉଲ୍ଲେଖ ଅଛି '' ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ'' । ଯେଉଁଠି ନାରୀ ପୂଜାପାଏ ସେଠି ଦେବତା ଆହ୍ଲାଦିତ ହୋଇଥାନ୍ତି । ଏପରି ଏକ ସଂସ୍କୃତି ସଂପନ୍ନ ଦେଶର ନାରୀ ଜାତିର ଏ ଅଧୋଗତି ବାସ୍ତବିକ ପରିତାପର ବିଷୟ । ଏହାକୁ ମର୍ମେ ମର୍ମେ ଉପଲବ୍ଧ କରିଥିଲେ ସୁଲୋଚନା ଦେଈ । ତେଣୁତ ଏପରି ଏକ ପୃଷ୍ଠଭୂମିରେ ସଂବେଦନଶୀଳ ହୃଦୟ ତାଙ୍କର ଆକ୍ଷେପ କରିଥିଲା;-

'' ଅନେକଙ୍କର ଧାରଣା ଅଛି ଯେ ନାରୀମାନେ ବିଦ୍ୟାଶିକ୍ଷା କଲେ ଧର୍ମହାନୀ ହେବ ଓ ଲଜ୍ଜା, ଦୟା, ବିନୟ ପ୍ରଭୃତି ସେମାନଙ୍କୁ ତ୍ୟାଗ କରିବ । ପୁନଶ୍ଚ ଅନେକ ଶିକ୍ଷାଭିମାନୀ ପୁରୁଷର ଭୟଅଛି ଯେ ନାରୀମାନେ ଶିକ୍ଷିତା ହେଲେ ସେମାନଙ୍କର ସମକକ୍ଷା ହୋଇ ଲେଖନୀ ଚାଳନା କରିବେ; ଯେତେଦିନ ପର୍ଯ୍ୟନ୍ତ ଦେଶରୁ ଏ ସମସ୍ତ କୁସଂସ୍କାର ତିରୋହିତ ନ ହେବ ତେତେଦିନ ପ୍ରକୃତ ନାରୀଶିକ୍ଷାର ଆଶା ସୁଦୂରପରାହତ ।''

ସୁଲୋଚନା ଦେଈଙ୍କ ଏ ବକ୍ତବ୍ୟ ସ୍ମରଣ କରାଇ ଦିଏ Professor Huxleyଙ୍କ Science & Educationପୁସ୍ତକର ନିମ୍ନ ଉଦ୍ଧୃତାଂଶ- " Let us have sweet girl graduates by all means. They will be none the less sweet for a little wisdom, and the golden hair will not curlless gracefully outside the head by reason of their being brains within." ( ଯୁବତୀ ଗ୍ରାଜୁଏଟ ସର୍ବଥା ବାଞ୍ଛନୀୟ । ଟିକିଏ ଶିକ୍ଷା ଓ ଜ୍ଞାନ ପ୍ରଭାବରୁ ସେମାନଙ୍କର ସୌନ୍ଦର୍ଯ୍ୟ ଏବଂ ମାଧୁର୍ଯ୍ୟ ହାନି ହେବ ନାହିଁ ଏବଂ ସେମାନଙ୍କର ମୁଣ୍ଡ ମଧ୍ୟରେ ମସ୍ତିଷ୍କ ଥିଲେ ମୁଣ୍ଡରେ ଥିବା କୁଞ୍ଚିତକେଶ



Digitized by srujanika@gmail.com

ଟିକିଏ ମାତ୍ର ଊଣା ହେବ ନାହିଁ) ଏହାଠୁ ବଳି କି ଆକ୍ଷେପ କରିପାରେ ଜଣେ ଆଦର୍ଶବାଦୀ କଳାକାର ଏ ଅନ୍ଧବିଶ୍ୱାସୀ ସମାଜକୁ ?

. ନାରୀ ଜାତିର ମହାନତାକୁ ପ୍ରଦର୍ଶନ କରି ଅଶିକ୍ଷିତା ନାରୀ ମନରେ ଶିକ୍ଷାପ୍ରତି ମମତା ସୃଷ୍ଟି କରିବା ଥିଲା ସୁଲୋଚନା ଦେଈଙ୍କ ଅନ୍ୟତମ ଉଦ୍ଦେଶ୍ୟ। ଏଥିପାଇଁ ବୋଧହୁଏ ସେ ବାମଣ୍ଡାର ରାଜଧାନୀ ଦେବଗଡରେ ମନ୍ଦାକିନୀ ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ରୂପେ ନିଜର ଭବିଷ୍ୟତକୁ ଶୃଙ୍ଖଳିତ କରିଥିଲେ । ଇତିହାସ ପୃଷ୍ଠାର ସମସ୍ତ ଗରୀୟସୀ ଚରିତ୍ର ଥିଲେ ତାଙ୍କର ଆଦର୍ଶ । କେବଳ ଐତିହାସିକ ଚରିତ୍ର ନୁହେଁ, ତତ୍‌କାଳୀନ ନାରୀ ସମାଜ ମଧ୍ୟରେ ଯାହାଙ୍କଠାରେ ସାମାନ୍ୟ ବିଦ୍ୟାର ଆଗ୍ରହ ଦେଖୁଥିଲେ ବା ଆଦର୍ଶର ଝଲକ ଅନୁଭବ କରୁଥିଲେ ତାଙ୍କ ପ୍ରତି ଉତ୍ସର୍ଗୀ ଦେଉଥିଲେ ନିଜର ସାରସ୍ୱତ କୃତଜ୍ଞତା । ଏ ପର୍ଯ୍ୟାୟରେ ତାଙ୍କର ପ୍ରତ୍ୟେକ ସାରସ୍ୱତ କୃତିର ଉତ୍ସର୍ଗ ପତ୍ରକୁ ବିଚାର କରାଯାଇପାରେ ।

୧: ଅବକାଶ ମଞ୍ଜରୀ : (୧.୩.୧୯୧୪)

'' ବାମଣ୍ଡା ରାଜକୁମାରୀ ସୁରତରଙ୍ଗିଣୀ ଦେବୀ ମିଡ଼ିଲ୍ ଭର୍ଣ୍ଣାକ୍ୟୁଲାର ପରୀକ୍ଷାରେ ପ୍ରଥମ ବିଭାଗରେ ସର୍ବୋଚ୍ଚସ୍ଥାନ ଅଧିକାର କରିଥିବାରୁ ତାଙ୍କର ଗୌରବରେ ବାମଣ୍ଡାର ନାରୀ ସମାଜ ଗୌରବାନ୍ୱିତ ଏବଂ ଏହି ଶୁଭ ସମ୍ବାଦ ଜନିତ କୃତଜ୍ଞତାର ନିଦର୍ଶନ ରୂପେ ଏ ଗଦ୍ୟ ପଦ୍ୟ ପୁସ୍ତିକା ଉତ୍ସର୍ଗୀତ ।''

୨: ପଦ୍ମିନୀ: (ଦୋଳପୂର୍ଣ୍ଣିମା- ୧୯୩୩ ସାଲ)

ଉତ୍କଳ ଗଜପତି ରାମଚନ୍ଦ୍ର ଦେବଙ୍କ ପଟ୍ଟ ମହିଷୀଙ୍କ ଅନ୍ତରଙ୍ଗ ଅକପଟ ବ୍ୟବହାରର ପବିତ୍ର ସ୍ମୃତିରେ ଉତ୍ସର୍ଗିତ ।

୩: ଚିତ୍ର ବିକାଶ : (୧୯୨୭)

ସାହିତ୍ୟ ଆଗ୍ରହ ଯେଉଁ କୁଳର ପରମ୍ପରା ସେହି ପବିତ୍ର ବାମଣ୍ଡା ରାଜବଂଶର ସଚ୍ଚିଦାନନ୍ଦ ଦେବଙ୍କ ପୁତ୍ରବଧୂ ଖଡିଆଳର ସାହିତ୍ୟ ପ୍ରାଣ ରାଜା ବୀର ବିକ୍ରମଙ୍କ କନ୍ୟା କନକମଞ୍ଜରୀ ଦେବୀଙ୍କ ପ୍ରତି ମାର୍ମିକ ସୌଜନ୍ୟର ନିଦର୍ଶନ ସ୍ୱରୂପ ଉତ୍ସର୍ଗିତ ।

୪: ବଣମଲ୍ଲୀ : (ସାବିତ୍ରୀ ଅମାବାସ୍ୟା ୧୯୩୧)

ସୋନପୁର ରାଜା ବୀର ମିତ୍ରୋଦୟ ଦେବଙ୍କ ମହାରାଣୀ ପାର୍ବତୀ ଦେବୀଙ୍କ ସଦ୍‌ଗୁଣ ସମନ୍ୱିତ ନାମରେ ଉତ୍ସର୍ଗିତ । ସଙ୍ଗୀତ ସାହିତ୍ୟ ଅନୁରକ୍ତା ଏ ମହାରାଣୀ ରେଭେନ୍ସା କଲେଜରେ ଗରିବ ଛାତ୍ରଙ୍କ ସାହାଯ୍ୟ ନିମନ୍ତେ ଏକ ଲକ୍ଷ ବାସ୍ତରୀ ହଜାର ଟଙ୍କା, ଦୁଃସ୍ଥ ମହିଳାଙ୍କ ଉପକାର କଳ୍ପେ ପାଞ୍ଚ ହଜାର ଟଙ୍କା, ସୋନପୁର ହସ୍ପିଟାଲର ସ୍ତ୍ରୀରୋଗ ଓ ପ୍ରସୂତି ବିଭାଗ ପାଇଁ ଏକ ଲକ୍ଷ



Digitized by srujanika@gmail.com

ପଚିଶ ହଜାର ଟଙ୍କା, ବିଭିନ୍ନ ଗ୍ରାମରେ ଜଳଯୋଗାଣ ପାଇଁ ବାଷଠି ହଜାର, ଅନାଥ ବାଳକ ପାଣ୍ଠି ଗଠନରେ କୋଡ଼ିଏ ହଜାର ଏ ରୂପେ ଅନେକ ଆଦର୍ଶମୟ କାର୍ଯ୍ୟ ପାଇଁ ଆର୍ଥିକ ଦାନ କରିଥିବା ଯୋଗୁ ମୁଗ୍ଧା ସୁଲୋଚନା ନିଜର ସାରସ୍ୱତ କୃତଜ୍ଞତା ଜଣାଇଛନ୍ତି।

ଉପର୍ଯ୍ୟୁକ୍ତ ଆଲୋଚନା ସମସ୍ତରୁ ପ୍ରମାଣିତ ହୁଏ ଯେ ସୁଲୋଚନା ଦେଈଙ୍କ କାବ୍ୟ ପ୍ରତିଭା ଆଦର୍ଶମୟୀ ନାରୀ ଚରିତ୍ରକୁ ପ୍ରଣତି ଜଣାଇ ଏକ ସୁନ୍ଦର ନାରୀ ସମାଜ ଗଠନ ଏବଂ ଏହା ଅନ୍ତରାଳରେ ସଂଗଠିତ ଦେଶ ଗଠନର ସ୍ୱପ୍ନ ଦେଖୁଥିଲା । କାରଣ ସେ ବେଶ୍ ବୁଝିଥିଲା ନାରୀର ଉନ୍ନତି ବିନା ପରିବାର ଉନ୍ନତି ଅସମ୍ଭବ ଏବଂ ତଦନୁଯାୟୀ ଦେଶର ଉନ୍ନତି ମଧ୍ୟ ଅସମ୍ଭବ । ଐତିହାସିକ ପରିଧିଭୁକ୍ତ ଚରିତ୍ର ସମୂହକୁ ସାମ୍ପ୍ରତିକୀର ପୋଷାକ ପିନ୍ଧାଇ ଜନଚେତନାକୁ ଉଜ୍ଜିବିତ କରିବା ଏବଂ ଏହାରି ମାଧ୍ୟମରେ ନାରୀପ୍ରତି ସୃଷ୍ଟ ସମସ୍ତ ଉଦାସୀନ ମନୋଭାବକୁ ଦୂରେଇ ସମାଜ ଚକ୍ଷୁରେ ନାରୀର ଏକ ମର୍ଯ୍ୟାଦବନ୍ତ ସ୍ଥାନ ସଂରକ୍ଷିତ କରିବା ଏ ପ୍ରତିଭାର ମୂଳଲକ୍ଷ୍ୟ । ଏପରି ଏକ ଉଦ୍ଦେଶ୍ୟମୂଳକ ଭାବଚେତନାର ମୂର୍ତ୍ତରୂପ ପ୍ରକଟିତ ହୋଇଛି 'ପଦ୍ମିନୀ' କାବ୍ୟରେ । ଫଳରେ କ୍ରମ ପରିବର୍ତ୍ତିତ ନାରୀର ମର୍ଯ୍ୟାଦାକୁ ଏକ ନିର୍ଦ୍ଦିଷ୍ଟ ସାମାଜିକ ସ୍ୱୀକୃତି ଦେବାର ଦୁର୍ବାର ଅଭିଳାଷ ଏଠି ମୁଖ୍ୟ ଭୂମିକା ଗ୍ରହଣ କରେ। ତେଣୁ 'ପଦ୍ମିନୀ' କେବଳ କାବ୍ୟ ମାତ୍ର ହୋଇ ନ ରହି ଏକ ଚେତନା ରୂପେ ଧାରାବତରଣ କରେ ଜାତୀୟ ସଂବେଦନା, ପ୍ରତ୍ୟୟପୂର୍ଣ୍ଣ ନାରୀତ୍ୱ ଓ ଚିରନ୍ତନ ଆଦର୍ଶମୟତାର ଗଙ୍ଗୋତ୍ରୀରେ ।

ପୂର୍ବରୁ ଆଲୋଚିତ ହୋଇଛି ଏହି କାବ୍ୟର ତିନୋଟି ମୁଖ୍ୟ ବିଭବ ହେଲା ଜାତୀୟ ସମ୍ବେଦନା, ପ୍ରତ୍ୟୟପୂର୍ଣ୍ଣ ନାରୀତ୍ୱ ଏବଂ ଚିରନ୍ତନ ଆଦର୍ଶ, ଏବଂ ଏମାନଙ୍କର ତ୍ରିବେଣୀ ସଂଗମର ସ୍ୱାର୍ଥକତା ଉପରେ ଏ କାବ୍ୟର କଳାତ୍ମକ ଯଥାର୍ଥ୍ୟ ନିର୍ଭର କରେ । ପ୍ରଥମତଃ ଏ କାବ୍ୟର ପ୍ରତ୍ୟେକ ସ୍ତରରେ ସୁଲୋଚନା ଦେଈ ନିଜର ମହତ୍ୱପୂର୍ଣ୍ଣ ସମ୍ବେଦନାକୁ ଏ ଜାତିର ଐତିହ୍ୟ ସହିତ ଯୋଡି ଦେଇଛନ୍ତି ଏବଂ ଏକ ସ୍ନେହଶୀଳ ଦୃଷ୍ଟିଭଙ୍ଗୀ ନେଇ ନିରୀକ୍ଷଣ କରିଛନ୍ତି ଏହାର କ୍ରମ ବିବର୍ତ୍ତିତ ରୂପକୁ । ବର୍ତ୍ତମାନର କ୍ଳୀବ ଓଡ଼ିଆତ୍ୱକୁ ପୁଣିଥରେ ପୌରୁଷତ୍ୱର ଦୀପ୍ତିମାନରେ ଦୀପ୍ତିମନ୍ତ କରି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ କରାଇବାର କୌଶଳ ଜନିତ ଏକ ସ୍ୱାଭିମାନୀ ପ୍ରତ୍ୟୟ ସୃଷ୍ଟି କରିବା ଏ କାବ୍ୟର ଉଦ୍ଦେଶ୍ୟ । ଯେଉଁଥିପାଇଁ ଏଜାତି ପ୍ରାଚୀନତାର ଦର୍ପଣରେ ନିଜର ମୁହଁ ଦେଖି ନିଶରେ ହାତ ସାଉଁଳାଇ ଆଣେ ଏବଂ ନିଜର ସନ୍ଧିତ ହୃଦୟକୁ ସାନ୍ତ୍ୱନା ଦିଏ 'ଅପେକ୍ଷାକର', ସବୁକିଛି ହରାଇଥିଲେ ବି ତୋର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି। ଏପରି ଏକ କଳ୍ପନା ସର୍ବସ୍ୱ ଜାତି ମନରେ ପ୍ରତ୍ୟୟ ସଂଚାର ପାଇଁ ନିଜର ନିର୍ବାଚନ ତାଲିକାରେ ସୁଲୋଚନା ଦେଈ ରଖନ୍ତି ସେଇ ଐତିହାସିକ ଚରିତ୍ରମାନଙ୍କୁ ଯେଉଁମାନଙ୍କର ଏକ କାଳାତୀତ



Digitized by srujanika@gmail.com

ସତ୍ତା ରହିଛି । ଏକ ସାର୍ବଜନୀନ ସ୍ୱାତନ୍ତ୍ର୍ୟ ରହିଛି । ଏଣୁ ନିଜର ଭାବଚେତନାକୁ ପରିବ୍ୟାପ୍ତ କରି ନିଜସ୍ୱ ଶୈଳୀରେ ନିଜସ୍ୱ ଉପାଦାନରେ ସେ ଗଢ଼ିଛନ୍ତି ପଦ୍ମିନୀକୁ ଏବଂ ତାରି ଅନ୍ତରାଳରେ ସୁଯୋଗ ଦିଅନ୍ତି ପ୍ରତ୍ୟେକ ଓଡ଼ିଆ ରମଣୀକୁ ନିଜର ଐତିହ୍ୟର ପ୍ରତୀକିତ ରୂପଟିର ସୂକ୍ଷ୍ମାବୟବକୁ ଦର୍ଶନ କରିବାକୁ । ଇତିହାସ ପ୍ରବଣତା ଏଠି ରୂପାନ୍ତରିତ ହୋଇଯାଏ ଏକ ସ୍ୱଚ୍ଛ ସାମାଜିକତାରେ ଦୀପ୍ତ ସାଂପ୍ରତିକତାରେ ।

ପଦ୍ମିନୀ କାବ୍ୟ ବୀର ଏବଂ କରୁଣ ରସାଶ୍ରିତ ଏକ ଆବେଗ ପ୍ରଣୋଦିତ କାବ୍ୟ । ଜାତୀୟତାର ଦୁର୍ବାର ଶପଥ ଝଙ୍କୃତ ; ସ୍ୱାର୍ଥର ସ୍ଥାଣୁତ୍ୱ ପ୍ରକଟିତ ।

ଲତାଗୁଳ୍ମ ରାଜି ବିକାଶେ ସୁଷମା
ପ୍ରାଣହୁଏ ମତୁଆରା ।
ବାଣ୍ଟି ଦେଉଛନ୍ତି ପ୍ରକୃତି ଲଳନା
ବିଭୁ ପ୍ରେମାମୃତ ଧାରା ।
ପାଦଦେଶେ ତା'ର ବୀର ପ୍ରସବିନୀ
ଶୋଭେ ଚିତୋର ନଗରୀ,
ସଦା ହାସ୍ୟମୟୀ ଗର୍ବିତା ସୁନ୍ଦରୀ
ବୀରପୁତ୍ର କୋଳେ ଧରି । (ପଦ୍ମିନୀ- ପୃ-୨)

ଏଠି ବୀରବେଶରେ ସଜ୍ଜିତ ନଦନଦୀ ପ୍ରକୃତି ପ୍ରାନ୍ତର । ଏଠି ପ୍ରତିଟି ଗୋଡି ମାଟିରେ ବୀରତ୍ୱର ବିସ୍ଫୋରଣ । ମଳୟରେ ଆଗ୍ନେୟ ଆହ୍ୱାନ । ଅଥଚ ଏପରି ଏକ ବୀରତ୍ୱ ବ୍ୟଂଜିତ ପୃଷ୍ଠଭୂମିରେ କନ୍ୟା ଯେତେବେଳେ ପିତୃଗୃହ ପରିତ୍ୟାଗ କରି ଶ୍ୱଶୁରାଳୟକୁ ଗମନ କରେ ସେତେବେଳେ ଦୁଃଖାର୍ତ୍ତା ଜନନୀ ସେଇ ଚିରାଚରିତ ଜନନୀ ପ୍ରାଣର ଉଦ୍‌ବେଳନ ପ୍ରକାଶ କରେ ।

ସ୍ନେହ ଭକ୍ତି ସୁଧା ଆଳାପନା ଦ୍ୱାରା
ତୁଷ୍ଟ କଲେ କାନ୍ତ ମନ
କ୍ଷୋଭ ଜାତ ହୋଇ ଛାଡିବ ଦୁର୍ନୀତି
ହେଉ ସେ ଯେତେ ଦୁର୍ଜନ ।
ଶାଶୁ ଶ୍ୱଶୁର ଜେଁ ପିତାମାତା ପ୍ରାୟେ
ଅଟନ୍ତି ଭକ୍ତି ଭାଜନ
ଦେବର ନଣନ୍ଦ ଭାଇଭଗ୍ନୀ ତୁଲ୍ୟ



Digitized by srujanika@gmail.com

ଜାଣି କରିବୁ ଯତନ । (ପଦ୍ମିନୀ- ପୃ-୧୨)

ହିନ୍ଦୁ ନାରୀର ଏକ ବହୁ ପ୍ରତୀକ୍ଷିତ ମୁହୂର୍ତ୍ତ ଏହି ପିତ୍ରାଳୟରୁ ବିଦାୟ ମୁହୂର୍ତ୍ତ । ଏକ ସ୍ନେହଶୀଳ ଶୀତଳ କମନୀୟତା ଦ୍ୱାରା ନାରୀର ଚେତନା ଆଚ୍ଛନ୍ନ, ସିକ୍ତ ଓ ଦ୍ରବୀଭୂତ ହୋଇ ନିବିଡ଼ ଭାବେ ମିଳନ ଏବଂ ବିଚ୍ଛେଦର ଅପୂର୍ବ ନାଟକକୁ ମଞ୍ଚସ୍ଥ କରେ ନିଜର ହୃଦୟରେ । ଏ ବିଚ୍ଛେଦର ଜ୍ୱାଳା କ୍ଷଣିକ ହେଲେ ମଧ୍ୟ ଏହାର ଆଲୋଡନ ସୁଦୂର ପ୍ରସାରୀ ଏବଂ ଚିରସ୍ଥାୟୀ । ଜୀବନର ସାମଗ୍ରିକ ଅନୁଭବ ମଧ୍ୟରେ ତେଣୁତ ଏ ବିଚ୍ଛେଦ ଯନ୍ତ୍ରଣାର ଚିହ୍ନ ଅନ୍ତରଙ୍ଗ ଭାବେ ଖୋଦିତ ଏବଂ ଏଥିପ୍ରତି ଆମର ପାରମ୍ପରିକ ଦୃଷ୍ଟିଭଙ୍ଗୀ ଉଦାସୀନ ନ ହୋଇ ହୋଇଛି ସମ୍ବେଦନଶୀଳ । କାରଣ ମହାକାଳ ବକ୍ଷରେ ଏ ମଣିଷର ସ୍ଥିତି ଅତି ନଗଣ୍ୟ ଏବଂ ଜୀବନ ମଞ୍ଚରେ ଗୋଟିଏ ମୁହୂର୍ତ୍ତର ସ୍ମୃତି ଅତି ମୂଲ୍ୟବାନ । ସୁଲୋଚନାଙ୍କ ଭାଷାରେ-

ନଶ୍ୱର ଅଟଇ ଭବଲୀଳା ଭାଇ
ଭବ ଏହି ରଙ୍ଗାଳୟ,
ଅଛି ପୂର୍ବ ପରି କେତେ ନରନାରୀ
କରିଗଲେ ଅଭିନୟ ।
କାର୍ଯ୍ୟ ଅନୁରୂପେ ତାଙ୍କ ନାମ ଅଛି
ନାଶି ନ ପାରଇ କାଳ,
ଭାଗ୍ୟ ଭୋଗ୍ୟା ଧରା କାହାରି ନୁହେଟି
ମାଟି ତ ମାଟି କେବଳ । (ପଦ୍ମିନୀ- ପୃ- ୧୬)

ଏପରି ଏକ ନିଶ୍ଚିତ ଦୃଶ୍ୟର ଅବତାରଣା କଲାବେଳେ ରାଧାନାଥୀ ବର୍ଣ୍ଣନା ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହୋଇ ଉଠେ-

କେହି ରହି ନାହିଁ ରହିବେ ନାହିଁ ଟି
ଭବରଙ୍ଗ ଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ । (ରାଧାନାଥ)

ଭବରଙ୍ଗାଳୟରେ କେବଳ ମଣିଷ ନୁହେଁ ବରଂ ମଣିଷ କୃତ ପ୍ରତ୍ୟେକ ପଦାର୍ଥ କ୍ଷଣସ୍ଥାୟୀ । ଯେଉଁ ଦିଲ୍ଲୀ ଆର୍ଯ୍ୟ ପରମ୍ପରାର ମହାର୍ଘ ଶିବିର ରୂପେ ଅନେକ ଧର୍ମାନୁଷ୍ଠାନର ମୁକସାକ୍ଷୀ ସେହି ଦିଲ୍ଲୀର ଗୌରବପୂର୍ଣ୍ଣ ମର୍ଯ୍ୟାଦା ଆଜି ଗତାୟୁ ।

ନରରୂପୀ ଧର୍ମ ରାଜ ଯୁଧିଷ୍ଠିର



Digitized by srujanika@gmail.com

କରୁଥିଲେ ରାଜପଣ,
ଏହିଠାରେ ପରା ରାଜସୂୟ ଯଜ୍ଞ
ହୋଇଥିଲା ଅନୁଷ୍ଠାନ ।
ଆର୍ଯ୍ୟଂକ ଗୌରବ ଆର୍ଯ୍ୟଙ୍କ ବିଭବ
ହୋଇଥିଲା ଯା' ବିକାଶ
ଯୁଗଯୁଗାନ୍ତରେ ସର୍ବଧ୍ୱଂସୀକାଳ
କରିପାରୁନାହିଁ ନାଶ । (ପଦ୍ମିନୀ- ପୃ-୧୪)
କାହିଁଗଲା ମୋର ଗୌରବ ବିଭବ
କାହିଁଗଲା ସୁଖରାଶି
ଆର୍ଯ୍ୟ ରାଜାଙ୍କର ଅଭିନେତ୍ରୀ ମୁହିଁ
ଏବେ ଯବନର ଦାସୀ । (ପଦ୍ମିନୀ ପୃ-୧୬)

ଦିଲ୍ଲୀ ନଗରୀର ଏ ଦୁର୍ଯୋଗ ସହିତ ଆର୍ଯ୍ୟ ଗୌରବ ତପନ ଅସ୍ତମିତ । ଏପରି ଏକ ନୈରାଶ୍ୟବାଦର ପରିପ୍ରଚାର ଅନ୍ତରାଳରେ ହୃତ ଐତିହ୍ୟର ପୁନରୁଦ୍ଧାର ନିମନ୍ତେ ଐକ୍ୟ ସଂସ୍ଥାପନ ଏବଂ ଜାତୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣର ତୀବ୍ର ଅଭୀପ୍ସା ପ୍ରଚ୍ଛନ୍ନ ରହିଥିଲା ।

ପଦ୍ମିନୀ କାବ୍ୟର ଦ୍ୱିତୀୟ ମୁଖ୍ୟ ବିଭବ ହେଲା ପ୍ରତ୍ୟୟପୂର୍ଣ୍ଣ ନାରୀତ୍ୱ ସୃଷ୍ଟି । ଅବଶ୍ୟ ଏ କାବ୍ୟର ସୃଷ୍ଟିକୌଶଳକୁ ସାମଗ୍ରିକ ଭାବେ ଏହାହିଁ ନିୟନ୍ତ୍ରିତ କରିଛି । କାବ୍ୟର ବିଷୟବସ୍ତୁ ନିର୍ବାଚନ, ଉତ୍ସର୍ଗପତ୍ର, ପ୍ରଭୃତି ଦିଗରୁ ଏ ପ୍ରସଙ୍ଗର ଯଥାର୍ଥ୍ୟ ହୃଦୟଙ୍ଗମ କରିହୁଏ । ନାରୀ ଜୀବନର ସାମଗ୍ରିକ ସତ୍ତାର ଉନ୍ମୀଳନ ଏବଂ କବିତ୍ୱର ନବସଂଘଟଣ ଚେତନା ଦ୍ୱାରା ଏହାର ସ୍ୱର୍ଗୀୟ ଭାବନାର ବିକାଶ ସାଧନ ପଦ୍ମିନୀ କାବ୍ୟ ପରିପ୍ରେକ୍ଷୀରେ ଅତୀବ ଗୁରୁତ୍ୱପୂର୍ଣ୍ଣ ।

ପ୍ରଥମ ସର୍ଗରେ ସରସ୍ୱତୀଙ୍କୁ କାବ୍ୟୋତ୍କୋର୍ଷ ସାଧନ ନିମନ୍ତେ ଆବାହନ ଠାରୁ ଉପସଂହାରରେ ମାତୃଭୂମି ପ୍ରତି କବିହୃଦୟର କରୁଣ ନିବେଦନ ମଧ୍ୟରେ ସର୍ବତ୍ର ଏକ ମହନୀୟ ନାରୀତ୍ୱର ଶ୍ରେଷ୍ଠତ୍ୱ ସ୍ୱୀକାର କରାଯାଇଛି । ପ୍ରଥମ ସର୍ଗରେ ହିନ୍ଦୁ ରମଣୀର ଅନିବାର୍ଯ୍ୟ ପରିଣତି ବିବାହ ପାଇଁ ଯୋଗ୍ୟ ପାତ୍ର ନିର୍ବାଚନ, ନାରୀର ଶାଶ୍ୱତ ସୌନ୍ଦର୍ଯ୍ୟ ବର୍ଣ୍ଣନା । ଯାହାକି ରାଧାନାଥ ଯୁଗର ପ୍ରଭାବପୁଷ୍ଟ ହୋଇ ନିଜତ୍ୱ ଭାବ ଗାମ୍ଭୀର୍ଯ୍ୟ ସମ୍ପାଦନ କରେ ।

କେହି ପଦ୍ମିନୀର କବରୀ ବାନ୍ଧଇ
କିଏ ବା ଖଞ୍ଜେ କୁସୁମ
ଚନ୍ଦ୍ରାର୍ଦ୍ଧ ଲଲାଟେ ଗୋରଚନା ଦେଖି



Digitized by srujanika@gmail.com

ଶଶା ବୋଲି ହୁଏ ଭ୍ରମ
ସିନ୍ଦୂରର ବିନ୍ଦୁ ସୀମନ୍ତେ ବିରାଜେ
କି ଅବା ପ୍ରଭାତୀ ତାରା
ନୀଳାକାଶ ଭ୍ରମେ ନୀଳକେଶ ମଧ୍ୟେ
ବିରାଜେ ଗରବେ ପରା । (ପଦ୍ମିନୀ - ପୃ-୬)

ଉଲ୍ଲିଖିତ ପଦ୍ୟାଂଶ ରାଧାନାଥଙ୍କ 'ଚନ୍ଦ୍ରଭାଗା' ରୂପ ବର୍ଣ୍ଣନାରୁ ଉପାଦାନ ସଂଗ୍ରହ କରିଥିବାର ଅନୁମିତ ହୋଇଥାଏ ।

'' ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୁର ବିନ୍ଦୁ ରମଇ ଆଖି
ନୁହଇ ସିନ୍ଦୁର, ରହିଛି ସ୍ମର -ହୃଦୟ ଲାଖି ।''(ଚନ୍ଦ୍ରଭାଗା-ରାଧାନାଥ)

ଦ୍ୱିତୀୟ ସର୍ଗରେ ଉଷା ବର୍ଣ୍ଣନାର ସାବଲୀଳତା-

ଶୁଭ ବସ୍ତା ଉଷା ଦୂତୀ ରବି ବାର୍ତ୍ତା କହିଲା କମଳ କର୍ଣ୍ଣେ
ପ୍ରିୟ ଆଗମନେ ଫୁଲ କୁଳରାଣୀ ହସିଲା ହରଷମନେ ।

ସହିତ କନ୍ୟାବିଦାୟ ଜନିତ ଏକ କାରୁଣ୍ୟ ଦୃଶ୍ୟର ଅବତାରଣା ଏବଂ ଚିରନ୍ତନ ମାତୃ ହୃଦୟର ଆଦର୍ଶ ଉପଦେଶ ପାଠକର ହୃଦୟକୁ ସ୍ପର୍ଶ କରେ । ତୃତୀୟ ସର୍ଗରେ ପଦ୍ମିନୀ ରୂପମୁଗ୍ଧ ଯବନ ରାଜାଙ୍କ ପଦ୍ମିନୀ ପ୍ରାପ୍ତି ନିମନ୍ତେ ଚିତୋରକୁ ଦୂତ ପ୍ରେରଣ, ଦୂତର ଭଗ୍ନ ମନୋରଥ ପ୍ରତ୍ୟାବର୍ତ୍ତନ ପରେ ଚିତୋର ଅବରୋଧ । ଦୀର୍ଘଦିନର ଯୁଦ୍ଧ ପରେ ସନ୍ଧି ପ୍ରସ୍ତାବ । ଆଲ୍ଲାଉଦ୍ଦିନ ଥରେ ମାତ୍ର ପଦ୍ମିନୀଙ୍କୁ ଦର୍ଶନ କରି ପ୍ରସ୍ଥାନର ପ୍ରତିଶ୍ରୁତି ଦିଏ । ଚତୁର୍ଥ ସର୍ଗରେ ଭୀମସିଂହଙ୍କ ଦୁଶ୍ଚିନ୍ତା, ଅନ୍ୟନୋପାୟ ହୋଇ ସନ୍ଧି ପାଳନ । ଆଲ୍ଲାଉଦ୍ଦିନ ଦର୍ପଣ ଫଳକରେ ପଦ୍ମିନୀ ରୂପ ସନ୍ଦର୍ଶନରେ ମୋହଗ୍ରସ୍ତ । ପଞ୍ଚମ ସ୍ୱର୍ଗରେ ସନ୍ଧି ଅନୁରୋଧରେ ଆଲ୍ଲାଉଦ୍ଦିନ ଖଳ କୌଶଳରେ ଭୀମସିଂହଙ୍କ ପ୍ରବେଶ । ଆଲ୍ଲାଉଦ୍ଦିନ ଖଳ କୌଶଳରେ ଭୀମସିଂହଙ୍କୁ ବନ୍ଦୀକରି ପଦ୍ମିନୀ ପ୍ରାପ୍ତିରେ ମୁକ୍ତିଦେବାର ସର୍ତ୍ତ ରଖେ । ପଦ୍ମିନୀ କୌଶଳକ୍ରମେ ଅନେକ ସୈନ୍ୟଙ୍କୁ ନାରୀ ବେଶରେ ଧରି ଆଲ୍ଲାଉଦ୍ଦିନଙ୍କୁ ସାକ୍ଷାତ କରିବା ଛଳନାରେ ସ୍ୱାମୀଙ୍କୁ ଉଦ୍ଧାର କରନ୍ତି। ଯବନ ଅବରୁଦ୍ଧ ଭୀମସିଂହ ନିଜ ସୈନ୍ୟଙ୍କୁ ଆହ୍ୱାନ ଦିଅନ୍ତି ଅଗ୍ନୀଗର୍ଭା ବାଣୀରେ:-

''ଭାଷିଲେ, -'' ହେବୀରେ ! ଯବନ ଉଚ୍ଛିଷ୍ଟ
ଭୋଗପୁଷ୍ଟ କଳେବର,
ଯବନ ପ୍ରସାଦ ଧରିବା ଶିରରେ
ତହୁଁ ମୃତ୍ୟୁ ଶ୍ରେୟସ୍କର ।



Digitized by srujanika@gmail.com

ଢ଼ାଳିବା ଏ ଦେହ ସମର କ୍ଷେତ୍ରରେ
କହ କିଏ ସ୍ୱାଧୀନତା,-
ତେଜିଣ ବଞ୍ଚିବ ତୁଚ୍ଛ ଦେହ ବହି
ଯବନର ଅଧୀନତା '' । ( ପଦ୍ମିନୀ- ପୃ- ୪୭)

ଷଷ୍ଠ ସର୍ଗରେ, ରାଜପୁର ରମଣୀ ନିଜ ହାତରେ ସ୍ୱାମୀକୁ ବୀରବେଶରେ ସଜ୍ଜିତ କରି ରଣାଙ୍ଗନକୁ ପ୍ରେରଣ କରିବାର ତ୍ୟାଗପୂତ ବର୍ଣ୍ଣନା ରହିଛି ।

'' କେଉଁ ବୀର ବାମା ସଜଳ ନୟନା
ନିଜ ଚିତ୍ତକୁ ଆଶ୍ୱାସି
ସଜାଉଛି କାନ୍ତେ ସମର ଅସ୍ତ୍ରରେ
ଏକମନେ ବସି ବସି ।
x xxxxxxxxx
କିମ୍ବା ଆହେନାଥ ! ହେଉଛ ଚିନ୍ତିତ
ପାଳିବୁ ଜହର ବ୍ରତ,
ମରିବ ଜାଣେକି ରାଜପୁତ ନାରୀ
ପରାଣେ କି ଏତେ ଭୀତ ?''

ସ୍ୱାମୀଙ୍କୁ ଯୁଦ୍ଧକୁ ପଠାଇ ଦୁର୍ଗବାସିନୀମାନଙ୍କୁ ସମ୍ବୋଧି ପଦ୍ମିନୀ, ଯବନ ବିଳାସୀ ହେବା ଅପେକ୍ଷା ଏ ମର ଶରୀରକୁ ଚିତାନଳେ ଦହନ କରି ସତୀତ୍ୱର ପରାକାଷ୍ଠା ପ୍ରଦର୍ଶନ କରିବାକୁ ଆହ୍ୱାନ ଦେଇଛନ୍ତି । ଅଲ୍ଲାଉଦ୍ଦିନ୍ ଯୁଦ୍ଧ ଜୟ ପରେ ଦୁର୍ଗ ମଧ୍ୟରେ ପ୍ରବେଶ କରି ଅଗ୍ନିଦଗ୍ଧ ପ୍ରସାଦକୁ ଦେଖି ସ୍ତମ୍ଭୀଭୂତ ହୋଇଯାଇଛି-

'' ଏହି ନିମନ୍ତେରେ ଜଗତ ମଧ୍ୟରେ
ହିନ୍ଦୁ ନାରୀ ବରଣୀୟା,
ଧନ୍ୟ ସେ ସାଧନା ତାଙ୍କରି ନିମନ୍ତେ
ମହୀହେଲା ମହନୀୟା ।''

ସପ୍ତମ ସର୍ଗରେ ଯୁଦ୍ଧ କ୍ଷେତ୍ରର କରୁଣ ଦୃଶ୍ୟ, ମାତୃଭୂମି ନିକଟରେ ଏ ଦୁର୍ଦ୍ଦଶା ନିମନ୍ତେ କ୍ଷୋଭ ପ୍ରକାଶ ଏବଂ ପରାଧୀନତାର ଦାରୁଣ ଯନ୍ତ୍ରଣାର ଉପଶମ ନିମନ୍ତେ ପ୍ରାର୍ଥନା କରିଛନ୍ତି ସୁଲୋଚନା ଦେଈ ।

ଏ ସମସ୍ତ ସର୍ଗର ପର୍ଯ୍ୟାୟର କ୍ରମିକ ଅଧ୍ୟାୟନରୁ ସ୍ପଷ୍ଟ ଜଣାଯାଏ ସର୍ବତ୍ର ଏକ ପ୍ରତ୍ୟୟପୂର୍ଣ୍ଣ ନାରୀତ୍ୱ ସୃଷ୍ଟି ହିଁ ସୁଲୋଚନା ଦେଈଙ୍କ ପ୍ରଧାନ ଲକ୍ଷ୍ୟ । ସୌଭାଗ୍ୟ ହେଉ ବା ଦୁର୍ଭାଗ୍ୟର



Digitized by srujanika@gmail.com

ଅସ୍ୱସ୍ତିକର ପରିବେଶ ହେଉ ସବୁଠାରେ ଏକ ମହନୀୟ ଚେତନାର ଉତ୍ତରଣ ଘଟାଇବାକୁ ସେ ବଦ୍ଧ ପରିକର ।

ପୂର୍ବରୁ କୁହାଯାଇଛି ଜାତୀୟ ସମ୍ବେଦନା, ପ୍ରତ୍ୟୟ ପୂର୍ଣ୍ଣନାରୀତ୍ୱ ସହିତ ଚିରନ୍ତନ ଆଦର୍ଶ ପ୍ରଖ୍ୟାପନ ହିଁ ଏ କାବ୍ୟର ମହତ୍ୱ । ଚିରନ୍ତନ ଆଦର୍ଶ ପରିପ୍ରେକ୍ଷୀରେ ସ୍ମରଣ ରଖିବାକୁ ହେବ ଯେ ସୁଲୋଚନା ଦେଈଙ୍କ ଆବିର୍ଭାବ ପରାଧୀନ ଦେଶର ଏକ ସଂଧିକ୍ଷଣରେ ଯେତେବେଳେ ଜାତୀୟ କଂଗ୍ରେସ ଗଠନର ମହାର୍ଘ୍ୟ ଉଦ୍ୟମ ସହିତ ଜନଜାଗରଣର ଭିତ୍ତି ସ୍ଥାପନ ହୁଏ । ଏପରି ଏକ ମୁହୂର୍ତ୍ତରେ ପରାଧୀନତାର କ୍ଷତ ଜର୍ଜର କବିଚିତ୍ତ ସ୍ୱାଧୀନତାର ନାନ୍ଦନିକ ସମ୍ଭାବନାରେ ପୁଲକିତ ହୋଇଉଠେ । ସ୍ଥିତିବାଦୀ ଦର୍ଶନ ପରିପ୍ରେକ୍ଷୀରେ ସ୍ୱାଧୀନତାର ସଂକଳ୍ପ ଏବଂ ଏଥିପ୍ରତି ନିଜସ୍ୱ ଦାୟିତ୍ୱବୋଧ ଏ ଉଭୟ ଉପରେ ଗଭୀର ଆସ୍ଥା ରଖନ୍ତି ସୁଲୋଚନା ଦେଈ । ତେଣୁ ନିଜର କାବ୍ୟଚର୍ଯ୍ୟାରେ ଉଲ୍ଲିଖିତ ଚେତନା ପ୍ରତି ଅନୁରକ୍ତି ପ୍ରକାଶ ଆଦର୍ଶବାଦୀ ଚିନ୍ତାଧାରାର ବାର୍ତ୍ତା ବହନ କରେ । ଏ ଆଦର୍ଶ ସତୀତ୍ୱ, ବୀରତ୍ୱର କାହାଣୀ ସହିତ ସ୍ୱଦେଶ ପ୍ରୀତିର ଆନ୍ତରିକ ନିଷ୍ଠା ପ୍ରକାଶ କରେ । ସାମୟିକ ନୈରାଶ୍ୟ ମଧ୍ୟରେ ପରୀକ୍ଷିତ ଏବଂ ସର୍ବାନ୍ତ କରଣରେ ଉତ୍ତୀର୍ଣ୍ଣ ଏ ଆଦର୍ଶବାଦ ବିକ୍ଷୁବ୍‌ଧ ମନକୁ ଗଭୀର ଭାବେ ଛୁଇଁ ପାରେ । ଏହି ଆଦର୍ଶବାଦକୁ ସାଧାରଣରେ ପହଞ୍ଚାଇ ଦେବା ନିମନ୍ତେ ଉଦ୍ଦିଷ୍ଟ ଏ କାବ୍ୟ ସିଧାସଳଖ ବର୍ଣ୍ଣନା ଶୈଳୀ ସହିତ ସ୍ପର୍ଶକ୍ଷମ ପ୍ରତୀକ ଓ ରୂପକଳ୍ପ ଏବଂ ଜାଗରଣ ସୃଷ୍ଟିକାରୀ ଶବ୍ଦ ବିନ୍ୟାସ ମାଧ୍ୟମରେ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରି ପାରିଛି ।

ରାଧାନାଥ ଯୁଗୀୟ ଓଡ଼ିଆ ସାହିତ୍ୟ ଯେତେବେଳେ ପାଶ୍ଚାତ୍ୟ ଶିଳ୍ପ କୌଶଳ ଓ ବିଷୟବସ୍ତୁର ଆହରଣରେ ନିଜସ୍ୱ ପୁଞ୍ଜି ବୃଦ୍ଧି କରିବାରେ ଲାଗିଥିଲା, ଠିକ୍ ସେତିକିବେଳେ ରାଧାନାଥ ପ୍ରଭାବସିକ୍ତ ବାମଣ୍ଡା ମାଟିରେ ସ୍ୱଚ୍ଛ ଶରଦାକାଶ ପରି କବୟିତ୍ରୀ ସୁଲୋଚନା ଦେଈଙ୍କ ଆବିର୍ଭାବ । ରାଧାନାଥ ସୃଷ୍ଟିକୁ ସଚେତନ ଦୂରତ୍ୱରୁ ପ୍ରଦକ୍ଷିଣ କରି ନିସର୍ଗ ପଲ୍ଲୀ କୋଳରେ ଯାବତୀୟ ପାରଂପରିକ ବାଧାବନ୍ଧନ ସତ୍ତ୍ୱେ ଏକ ପରିଚ୍ଛନ୍ନ ପାହାଡି ଝରଣା ପରି ନିଜସ୍ୱ ସଂଗୀତ ଧ୍ୱନିରେ ଆତ୍ମହରା ଥିଲେ ସେ। ବୁଦ୍ଧିବାଦର ଘୋଡାଦୌଡ, ପାଶ୍ଚାତ୍ୟ ଚେତନାର ମେଘାଚ୍ଛନ୍ନ ପରିବେଶ ମଧ୍ୟରେ ନିଜର ହୃଦୟ ବାଣୀକୁ ଅତି କ୍ଷୀଣ ସ୍ୱରରେ ଅଥଚ ମୌଳିକତାର ସ୍ପର୍ଶରେ ପରିବେଷଣ କରିଯାଇଛନ୍ତି ସୁଲୋଚନା ଦେଈ । ନିଜସ୍ୱ ଭିତ୍ତିଭୂମିରୁ ଏକ ସୂକ୍ଷ୍ମ ନିରୀକ୍ଷଣ ମାଧ୍ୟମରେ ହୃଦୟର ପ୍ରତିକ୍ରିୟାକୁ ଲିପିବଦ୍ଧ କରି ଯାଇଛନ୍ତି । ସାମାଜିକ ଆବେଦନ ଉପରେ କରିଯାଇଛନ୍ତି ହୃଦୟର ସାଦା ସ୍ୱାକ୍ଷରଟିଏ ।

ଆଜି ତାଙ୍କର ସୃଷ୍ଟି ପର୍ଯ୍ୟାଲୋଚନା ବେଳେ ଆଶାକରେ ରାଧାନାଥ ଓ ସତ୍ୟବାଦୀ ଯୁଗର ସନ୍ଧିକ୍ଷଣରେ ଏକ ଆଦର୍ଶମୟୀ ନାରୀ କବି ରୂପେ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇରହିବ ।□□□



Digitized by srujanika@gmail.com

# ମାୟାଧର ମାନସିଂହଙ୍କ ସମ୍ପାଦିତ
# 'ଶଙ୍ଖ' ଓ ସମ୍ବଲପୁରୀ ଭାଷା

କବି ମାୟାଧର ମାନସିଂହ (୧୯୦୫-୭୩) ସମାଲୋଚକ, ନାଟ୍ୟକାର ଓ ସମ୍ପାଦକ ଭାବରେ ଓଡ଼ିଶାର ଜନ ମାନସରେ ପ୍ରତିଷ୍ଠିତ । ତାଙ୍କ ଦରଦୀ ହୃଦୟର ମାର୍ମିକ ଅଭିବ୍ୟକ୍ତି କବିତାରେ ଯେମିତି ପ୍ରତିଫଳିତ, ପ୍ରାଜ୍ଞ ଅନୁଶୀଳନର ଦୃଷ୍ଟିଭଙ୍ଗୀ ସମାଲୋଚନା ସାହିତ୍ୟରେ ସେମିତି ଝଙ୍କୃତ । ଏହି ଦୁଇଧାରାର ସମବାୟରେ ଅଧିଷ୍ଠିତ ସମ୍ପାଦକ ମାନସିଂହ । ଓଡ଼ିଆ ଜାତୀୟତାକୁ ପ୍ରତିବିମ୍ବିତ କରି ସର୍ବଜନୀନ ଆବେଦନ ଦ୍ୱାରା ଓଡ଼ିଶା ଭୂଖଣ୍ଡର ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିବା ମାନସିଂହଙ୍କ ଲକ୍ଷ୍ୟ । ଆନ୍ତର୍ଜାତିକ ସାରସ୍ୱତ ମାନଦଣ୍ଡରେ ଉତ୍କଳୀୟ ସାରସ୍ୱତ ଚର୍ଯ୍ୟାକୁ ପରଖି ନେଇ ସମ୍ପାଦକୀୟ ନିଷ୍କର୍ଷ ଟାଣିବାରେ ମାନସିଂହଙ୍କ ଅନ୍ୟତମ ମାଧ୍ୟମ ଥିଲା 'ଆରତି', 'ଶଙ୍ଖ', 'ସ୍ୱରାଜ୍ୟ' ଆଦି ପତ୍ରପତ୍ରିକା ।

ବାମଣ୍ଡାର ସାରସ୍ୱତ ପରମ୍ପରାର ଶେଷତମ ସ୍ମାରକୀ 'ଶଙ୍ଖ' । 'ସମ୍ବଲପୁର ହିତୈଷିଣୀ' (୧୮୮୯-୧୯୨୩)ର ପ୍ରକାଶନ ବନ୍ଦ ହେଲା ପରେ ୧୯୩୪ରେ ବାମଣ୍ଡା ଶିକ୍ଷକ ସମାଜଦ୍ୱାରା 'ଉପହାର' ପ୍ରକାଶ ଲଭେ । 'ଉପହାର' ଥିଲା ଶିକ୍ଷା ଓ ସଂସ୍କୃତିର ସମୃଦ୍ଧି ସାଧନ ପାଇଁ ଅଭିପ୍ରେତ । ୧୯୪୫ ଆଷାଢ଼ରେ 'ଶଙ୍ଖ' ସହିତ ଏକୀଭୂତ ହୁଏ ଉପହାର । ଏହାକୁ ଶଙ୍ଖ ପୃଷ୍ଠାରେ ଗୌରବର ସହିତ ବିଜ୍ଞାପିତ କରାଯାଏ:- ''The Sankha (with which the UPAHAR has been incorporated), A Highclass and devoted to spread of Art, literature, Education and Culture, Oriya monthly magazine. Published on behalf of the Darbar of Bamra, E.S.A.''(ଶଙ୍ଖ-୧/୧)

ଶଙ୍ଖର କ୍ରୋଡପତ୍ରରେ '' ତମସୋ ମା ଜ୍ୟୋତିର୍ଗମୟ ସତ୍ୟମେବ ଜୟତି, ନାନୃତଂ'' ମୁଦ୍ରିତ ହୋଇ ସତ୍ୟ ସନ୍ଧାନର ଆଭିମୁଖ୍ୟ ପ୍ରକାଶ କରେ । ୧୯୪୫ ବେଳକୁ 'ଉତ୍କଳ ସାହିତ୍ୟ' 'ସହକାର' ବନ୍ଦ ହୋଇସାରିଥାଏ;'ନବଭାରତ', 'ଭଞ୍ଜ ପ୍ରଦୀପ' ନିରବି ଯାଇଥାଏ । ଏମିତି ପତ୍ରିକା କ୍ଷେତ୍ରରେ ଏକ ଶୂନ୍ୟଭୂମିରେ ପରିପୂର୍ଣ୍ଣ ବିକାଶର ଆଶା ରଖି 'ଶଙ୍ଖ' ପ୍ରକାଶ ପାଏ । କେବଳ ସେତିକି ନୁହେଁ, ପ୍ରତିଟି ଲେଖାପାଇଁ ପାଞ୍ଚଟଙ୍କା ପାରିଶ୍ରମିକ ଦେବା ପାଇଁ ଅଙ୍ଗୀକାର ବଦ୍ଧ ହୁଏ 'ଶଙ୍ଖ'। ସାରସ୍ୱତ ପୀଠ ବାମଣ୍ଡା ରାଜାଙ୍କ ଆର୍ଥିକ ସାହାଯ୍ୟରେ ପରିପୁଷ୍ଟ 'ଶଙ୍ଖ' ରାଜା ଭାନୁଗଙ୍ଗଙ୍କର ଋଣକୁ ସ୍ୱୀକାର କରେ 'ବାମଣ୍ଡା



Digitized by srujanika@gmail.com

ନୃପତିଙ୍କ ନିକଟରେ କୃତଜ୍ଞତା' ଶୀର୍ଷକ ସମ୍ପାଦକୀୟ ବକ୍ତବ୍ୟରେ :

''xx ଗୋଟିଏ ମାସିକ ପତ୍ର ପାଇଁ ସାହାଯ୍ୟର ପ୍ରଶ୍ନ ଉଠୁଉଠୁ ଯେଉଁ ଉଦାରମନା ରାଜପୁରୁଷ, ଶଙ୍ଖର ପ୍ରକାଶ ପାଇଁ ସମସ୍ତ ପ୍ରାରମ୍ଭିକ ଭାର ନେଇଛନ୍ତି, ତାଙ୍କ ନିକଟରେ କୃତଜ୍ଞତା ଜ୍ଞାପନ ଆମ୍ଭମାନଙ୍କର ପ୍ରଥମ ପ୍ରୀତିପ୍ରଦ କର୍ତ୍ତବ୍ୟ । ବାମଣ୍ଡାରେ, ନବଯୁଗର ଓଡ଼ିଆ ସାହିତ୍ୟର ଲାଳନ ହୋଇଥିଲା କହିଲେ ଚଳେ । xxxxxx ତରୁଣ ରାଜା ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ ବାମଣ୍ଡାର ସେହି କୀର୍ତ୍ତିମାନ ଗଙ୍ଗବଂଶର ଉପଯୁକ୍ତ ଦାୟାଦ । ତାଙ୍କର ସୌମ୍ୟ ମୂର୍ତ୍ତି ଯେପରି ଆଭିଜାତ୍ୟର ପରିଚାୟକ, ସେହିପରି ସୌଜନ୍ୟର ସୂଚକ । ତାଙ୍କରି ପ୍ରେରଣାରୁ ଶଙ୍ଖର ଜନ୍ମ ।'' (ଶଙ୍ଖ-୧/୧)

ଶଙ୍ଖର ପ୍ରଥମ ସଂଖ୍ୟା ଉତ୍କଳ ପ୍ରିଣ୍ଟିଂ ପ୍ରେସ୍, ସମ୍ବଲପୁରରୁ ୧୯୪୫ରେ ପ୍ରକାଶ ପାଇଥିଲା । ଦ୍ୱିତୀୟ ସଂଖ୍ୟା ମଧ୍ୟ ସେହି ପ୍ରେସରୁ ପ୍ରକାଶିତ । ତୃତୀୟ ସଂଖ୍ୟାଠାରୁ ଏହା ବାମଣ୍ଡା ହିତୈଷିଣୀ ପ୍ରେସରୁ ପ୍ରକାଶ ଲାଭ କରେ । ମାନସିଂହ ଏହାର ସମ୍ପାଦନା ଭାର ଗ୍ରହଣ କଲାବେଳେ ଜ୍ଞାନୀନ୍ଦ୍ର ବର୍ମା ଥିଲେ ପରିଚାଳକ । ପ୍ରଥମ କେତୋଟି ସଂଖ୍ୟା ପରେ ଜ୍ଞାନୀନ୍ଦ୍ର ବର୍ମା ପରିଚାଳକ ନିଯୁକ୍ତ ହୁଅନ୍ତି । ପ୍ରଥମ ବର୍ଷ ଷଷ୍ଠ ସଂଖ୍ୟା ପ୍ରଚ୍ଛଦ ପଟ୍ଟରେ ତାଙ୍କ ନାମ ମୁଦ୍ରିତ ହେବା ବ୍ୟତୀତ ଏ ସମ୍ପର୍କିତ ଅନ୍ୟ କୌଣସି ସୂଚନା ନାହିଁ । ଦ୍ୱିତୀୟ ବର୍ଷ ତୃତୀୟ ସଂଖ୍ୟାରୁ ପତ୍ରିକା ସମ୍ପାଦନା ଜଳନ୍ଧର ଦେବ ଗ୍ରହଣ କରନ୍ତି ଏବଂ ସେହି ବର୍ଷ ପଞ୍ଚମ ସଂଖ୍ୟାଠାରୁ ଜ୍ଞାନୀନ୍ଦ୍ରଙ୍କ ପରିବର୍ତ୍ତେ ବାମଣ୍ଡାର କବି ଲିଙ୍ଗରାଜ ପାଣିଗ୍ରାହୀ ପରିଚାଳକ ରୂପେ ଶେଷଯାଏ ରହନ୍ତି । ତିନି ବର୍ଷର ପ୍ରକାଶନ ପରେ 'ଶଙ୍ଖ' ବନ୍ଦହୁଏ ।

ମାନସିଂହ ଓଡ଼ିଆ ଭାଷାର ଏକନିଷ୍ଠ ପୂଜାରୀ । ସେ ଓଡ଼ିଆ ଭାଷାର ସମୃଦ୍ଧିକଳ୍ପେ ଶଙ୍ଖକୁ ଉତ୍ସର୍ଗ କରି ଦେଇଥିଲେ । ନିର୍ଭୀକ ଭାବେ ସମ୍ପାଦକୀୟରେ ନିଜର ସ୍ୱାଧୀନ ମତ ପ୍ରକାଶ କରୁଥିଲେ । ଲେଖକମାନଙ୍କୁ ଉତ୍କଳର ସମୃଦ୍ଧି ପାଇଁ ଉତ୍କୃଷ୍ଟ ଲେଖା ପଠାଇ ପାରିଶ୍ରମିକ ଗ୍ରହଣ କରିବାକୁ ଆହ୍ୱାନ ଦେଇଥିଲେ । ଉତ୍କଳର ଦାରିଦ୍ର୍ୟ, ବୁଭୁକ୍ଷା ଓ ନଗ୍ନତାର ଚିତ୍ର ପ୍ରଦାନ ନ କରି ଜାତି କିପରି ଏହି ଦୁର୍ଗତି ଓ ଲଜ୍ଜାର ଘୋର ପଙ୍କରୁ ସ୍ୱଚେଷ୍ଟାରେ ଉପରକୁ ଉଠିବ, ତାର ମାର୍ଗଦର୍ଶନ କରାଇବାକୁ ସାହିତ୍ୟିକମାନଙ୍କୁ ସେ ଅନୁରୋଧ କରିଛନ୍ତି । କର୍ମର ପ୍ରଦୀପ ଜାଳି ବର୍ତ୍ତମାନର ଅନ୍ଧକାରକୁ ଅତିକ୍ରମି ଯିବାର ପ୍ରେରଣାଦାୟୀ ରଚନା ପ୍ରତି ସେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ମାନସିଂହଙ୍କ ମତରେ 'ଶଙ୍ଖ' ବିରାଟ ଓଡ଼ିଆ ଜାତିର ପତ୍ରିକା । ଏହା କୌଣସି ଜିଲ୍ଲା ବା ଷ୍ଟେଟ ବା ବିଶିଷ୍ଟ



Digitized by srujanika@gmail.com

ଶ୍ରେଣୀକୁ ସନ୍ତୁଷ୍ଟ କରିବାକୁ ଉଦ୍ଦିଷ୍ଟ ନୁହେଁ । ସାହିତ୍ୟିକ ଉତ୍କର୍ଷ ହିଁ ଲେଖା ପ୍ରକାଶର ମାନଦଣ୍ଡ । ମୌଳିକ ଓ ଉତ୍କୃଷ୍ଟ ରଚନାଗୁଡ଼ିକୁ ସେ ଅଗ୍ରାଧିକାର ଦେଉଥିଲେ । ଶଙ୍ଖ ବିରୋଧରେ ଲିଖିତ ଓ ଅଲିଖିତ ଭାବେ ପହଞ୍ଚୁଥିବା ଅଭିଯୋଗଗୁଡ଼ିକୁ ସେ ନିରପେକ୍ଷ ଭାବେ ସାମ୍ନା କରୁଥିଲେ । ବିଭିନ୍ନ ମହଲରୁ ଗୁଞ୍ଜରିତ ଅଭିଯୋଗ ଓ ତାର ସମାଧାନ ଦିଗରେ ମାନସିଂହଙ୍କ ପ୍ରଚେଷ୍ଟା ସ୍ୱାଗତଯୋଗ୍ୟ ।

ମାନସିଂହଙ୍କ ଉଦ୍ୟମରେ ପ୍ରଥମ କରି 'ଶଙ୍ଖ' ସମ୍ବଲପୁରୀ ଭାଷାକୁ ଲିଖିତ ଭାଷାରୂପେ ମର୍ଯ୍ୟାଦା ପ୍ରଦାନ କରେ । ସମ୍ବଲପୁରୀ ଭାଷାକୁ ଗଳ୍ପ ଓ କବିତାରେ ମାନ୍ୟତା ଦେବାର ଏହି ପ୍ରଚେଷ୍ଟା ଏକ ସରସ୍ୱତ ବିତର୍କକୁ ଜନ୍ମ ଦେଇଥିଲା । 'ଶଙ୍ଖ' ପ୍ରଥମ ବର୍ଷ ତୃତୀୟ ସଂଖ୍ୟାରେ ବିଭୂତିଭୂଷଣ ତ୍ରିପାଠୀଙ୍କ 'ଛାଇ' ଗଳ୍ପରେ ଚରିତ୍ର ମୁହଁରେ ପ୍ରଥମେ ସମ୍ବଲପୁରୀ ଭାଷାର ପ୍ରୟୋଗ ଦେଖାଯାଏ । ପରେ ପରେ ଶ୍ରଦ୍ଧାକର ସୂପକାର ଓ ବିଶ୍ୱନାଥ ସାହୁଙ୍କ ଗଳ୍ପର ଚରିତ୍ରଗୁଡ଼ିକରେ ସମ୍ବଲପୁରୀ ଭାଷା ସଂଯୋଜିତ ହେଲାବେଳେ ନାକଫୁଡ଼ି ପଣ୍ଡାଙ୍କ 'ପାଶରିଦେବୁ କାଏଁନ' କବିତାଟି ସଂପୂର୍ଣ୍ଣ ସମ୍ବଲପୁରୀ ଭାଷାରେ ରଚିତ । ମାନସିଂହଙ୍କ ସମ୍ପାଦିତ ଶଙ୍ଖର ୨ୟ ବର୍ଷ ୨ୟ ସଂଖ୍ୟା ମଧ୍ୟରେ ଏହି ବିତର୍କର ସୃଷ୍ଟି, ବିକାଶ ଓ ବିଲୟ ପରିଲକ୍ଷିତ ହୁଏ । ୨ୟ ବର୍ଷ ୩ୟ ସଂଖ୍ୟାଠାରୁ ଜଳନ୍ଧର ଦେବ 'ଶଙ୍ଖ'ର ସମ୍ପାଦନା ଗ୍ରହଣ କରିବା ପରେ ଏହି ବିତର୍କ ଦୃଷ୍ଟିଗୋଚର ହୁଏ ନାହିଁ । ଜଳନ୍ଧର ମୁଖ୍ୟତଃ ଏକ ମାନକ ଓଡ଼ିଆ ଭାଷା ପ୍ରଚଳନର ପକ୍ଷପାତୀ, ତେଣୁ ସେ ଆଞ୍ଚଳିକତାକୁ ଦୃଢ଼ ଭାବରେ ବିରୋଧ କରୁଥିଲେ ।

'ଶଙ୍ଖ' ପୂର୍ବରୁ ' ସମ୍ବଲପୁର ହିତୈଷିଣୀ' (୩/୧୫)ରେ ସମ୍ବଲପୁର ଅଞ୍ଚଳର ପ୍ରାଚୀନ କବିତା ପ୍ରକାଶ ପାଇ ତାହାର ବିରୋଧରେ କଟାକ୍ଷପୂର୍ଣ୍ଣ ମନ୍ତବ୍ୟ ପ୍ରକାଶିତ ହୋଇଥିଲା । ଏହି ପ୍ରେକ୍ଷାପଟରେ ଶଙ୍ଖରେ ପ୍ରକାଶିତ ସମ୍ବଲପୁରୀ ଭାଷାର ପ୍ରକାଶନ ଓ ତଜ୍ଜନିତ ବିତର୍କକୁ ପର୍ଯ୍ୟାଲୋଚନା କରାଯାଇପାରେ ।

ଶଙ୍ଖ ୧ମ ବର୍ଷ ୩ୟ ସଂଖ୍ୟାରେ ବିଭୂତିଭୂଷଣଙ୍କ 'ଛାଇ' ଗଳ୍ପ ପ୍ରକାଶ ପାଏ । ଏଥିରେ ଛାଇ ଚରିତ୍ରର ସଂଳାପରେ ପ୍ରଥମେ ସମ୍ବଲପୁରୀ ଭାଷା ସଂଯୋଜିତ ହୋଇଛି । ଏହାର କେତୋଟି ଦୃଷ୍ଟାନ୍ତ ଉଦ୍ଧୃତ କରାଯାଇପାରେ:

-ଏଇତ କାମ, ମା' ମୁଇଁ ସବୁ କରିପାରିବି ଯେ- ପଲଟନ କୁଆଁରୁ ପାଣି ଘିଚି ପାରିବି, ବାସନ ମାଜିବି, କପଡା କାଚିବି... କାଠ ବି ଫାଡିପାରେ ତୁମେ ଦେଖିବ ଯେ । (ପୃ-୧୪୦)



Digitized by srujanika@gmail.com

- ବଜାର ବେଳା ଗଡ଼ିଯାଉଛି... ମା, ୫ଟଙ୍କଲା ପଇସା ଦିଅ,

-ପୂଝାରି, ଆଉ କେତେଟା ପାଣି ତୁମର ଦରକାର କହିଲେ ପରା ହେବା xxxxxx ରହ ମା, ବାବୁ ଆସିବା ବେଳ ହେଲାଣି, ମୁଇଁ ଟିକେ ଘରଦ୍ୱାର ବନାଇ ଦିଏଁ... (ପୃ-୧୪୧)

-ସମାଗୁ ଛାଡିଦେ, ଛାଡିଦେ, ମୋ ଛାତି କାହିଁକି ଦବ୍‌ସି ଉଠୁଛି । ( ପୃ-୧୪୫)

- ମା ଗୋ, ମୁଁ ତୁମକୁ ମାବାଗି ଜାଣେ- ମୋ ଦୋଷ ଧରିବ ନେଇଁ- ତୁମେତ ସବୁ ଜାଣ । (ପୃ-୧୪୭)

- ଆଉ ଚିନ୍ତା କଣ ମା, ମୁଇଁ ସବୁ କରମି ଯେ... (ପୃ-୧୫୨)

ଛାଇର ଉପରୋକ୍ତ ସଂଳାପ ଖାଣ୍ଟି ସମ୍ବଲପୁରୀ ନ ହେଲେ ମଧ ଓଡ଼ିଆ ମିଶା ସମ୍ବଲପୁରୀ । ଏଥିରୁ କେତେକ ଶବ୍ଦ ବାଦ ଦେଲେ ଏହା ଶୁଦ୍ଧ ଓଡ଼ିଆ ହୋଇଯିବ । ଗଳ୍ପରେ ଛାଇ ବ୍ୟତୀତ କଟକୀ ଚରିତ୍ର ବିଶ୍ୱମ୍ଭର ମଧ କହୁଛି- ''ଆଇଲେ ତାକୁ ଢିହଲ ପଠାବା ଯେ ରହିଥା'' (ପୃ-୧୪୬) । ଏତଦ୍‌ବ୍ୟତୀତ 'ଇ', ନୁଥୁନୁଥୁଢୁହାଢ, କାଏଁ, ଉଜାଲା, ସଭେଁ, ବାଗି ପ୍ରଭୃତି ପ୍ରୟୋଗ ନିରୋଳା ସମ୍ବଲପୁରୀ ଭାଷାର ଦୃଷ୍ଟାନ୍ତ । ଉପରୋକ୍ତ ଉଦ୍ଧୃତି ସମୂହକୁ ବିଶ୍ଳେଷଣ କଲେ, ବିଭୂତି ଭୂଷଣଙ୍କ 'ଛାଇ' ଗଳ୍ପ ମାଧ୍ୟମରେ ସମ୍ବଲପୁରୀ ଭାଷାକୁ ଲିଖିତ ରୂପ ଦେବାର ପଥ ପରିଷ୍କାର ହୋଇଥିଲା ।

ବିଭୂତିଭୂଷଣଙ୍କ 'ଫେରନ୍ତି' ଗଳ୍ପ ଶଙ୍ଖ (୧/୧୦)ରେ ପ୍ରକାଶିତ । ଏହି ଗଳ୍ପର ଚାକର ଚରିତ୍ରର ସଂଳାପରେ ଗାଳ୍ପିକ ସମ୍ବଲପୁରୀ ଭାଷା ସଂଯୋଜିତ କରିଛନ୍ତି ।

- ମା, ବାବୁଙ୍କ ପାଇଁ ରନ୍ଧା ହେବ ଭାଏଲ ?

- ଆସ ଘାଏ ବୁଲିଆସିବା ।

- ମା, ଖାଇବ ଆସ ବାବୁ ଆଜି ନାଇଁ ଆସନ...

-ଶକୁନ୍ତଲା, କିଏ ଗୁଟେ ସାଇବ ମଟ୍ର ଖାଡ଼କରି ଚାହିଁଛେ.. ପଲାଇ ଆ ।

- ଆଜ୍ଞା ପେଟ୍ରୋଲ ଭରିଦେମି କାଏଁ

ବିଭୂତିଭୂଷଣଙ୍କ ସମ୍ବଲପୁରୀ ଅବିଶୁଦ୍ଧ ନୁହେଁ । ତଥାପି ପ୍ରାରମ୍ଭିକ ପଦକ୍ଷେପ ସ୍ୱାଗତଯୋଗ୍ୟ ।

'ଛାଇ' ଗଳ୍ପ ପ୍ରକାଶ ପରେ ପରେ ନାକଫୁଡି ପଣ୍ଡାଙ୍କ ସଂପୂର୍ଣ୍ଣ ସମ୍ବଲପୁରୀ ଭାଷାରେ ରଚିତ କବିତା 'ପାସ୍‌ରି ଦେବୁ କାଏନ' ଶଂଖ (୧/୪) ସଂଖ୍ୟାରେ ପ୍ରକାଶିତ ହୁଏ । ଏହା ପୂର୍ବରୁ ଡାଲଖାଇ, ରସରକେଲି ପ୍ରଭୃତି କିଛି ଲୋକଗୀତକୁ ଛାଡିଦେଲେ, ଏହାହିଁ ବୋଧେ ପ୍ରଥମ ପ୍ରକାଶିତ ସମ୍ବଲପୁରୀ କବିତା । ଏହି କବିତା ଅନ୍ତରାଳରେ ସମ୍ବଲପୁର



Digitized by srujanika@gmail.com

ଅଞ୍ଚଳର ଲୋକ ସଂସ୍କୃତି ସୁନ୍ଦର ଭାବେ ପ୍ରତିଫଳିତ । ପିଲାଦିନର ସ୍ମୃତିକୁ ନେଇ ନାକଫୁଡ଼ିଙ୍କର ବର୍ଣ୍ଣନା ଉଚ୍ଚାଙ୍ଗ କଳାର ପରିଚୟ ଦିଏ । କବିଙ୍କ ସ୍ମୃତିରେ ନାଚିଉଠୁଛି ପଲ୍ଲୀର ଅନାବିଳ ଝଲକ, ସାଙ୍ଗସାଥୀ, ପ୍ରକୃତି କୋଳରେ ଢଳଢଳ ତରଳ କୈଶୋରର ଅଭୁଲା ମୁହୂର୍ତ୍ତ । ଦୁଇଟି ପଦବିଶିଷ୍ଟ ଏହି କବିତାଟି କବିତାମୋଦିଙ୍କୁ ଆକୃଷ୍ଟ କରିଥିଲା । ସମ୍ବଲପୁରୀ ଭାଷାରେ ନିଜ ଭାବକୁ ପ୍ରକାଶ କରିବାକୁ ଚାହୁଁଥିବା ଲେଖକଗଣ ଉପଯୁକ୍ତ ମାଧ୍ୟମ ପାଇଲେ ।

'ଶଙ୍ଖ' ପ୍ରଥମ ବର୍ଷ ପଞ୍ଚମ ସଂଖ୍ୟାରେ ଶ୍ରଦ୍ଧାକର ସୂପକାରଙ୍କ 'ଛୁଟି' ଗଳ୍ପ ପ୍ରକାଶ ପାଏ । ଛୁଟି ଗଳ୍ପର ଶ୍ରମିକ ଚରିତ୍ର ଉକିଆ ଓ ଖେତୁ ତଥା ଅନ୍ୟାନ୍ୟ ଶ୍ରମିକଙ୍କ ସଂଳାପରେ ଗାଳ୍ପିକ ସମ୍ବଲପୁରୀ ଭାଷା ପ୍ରଦାନ କରିଛନ୍ତି । ବିଭୂତିଭୂଷଣଙ୍କ ଗଳ୍ପର ଭାଷା ଅପେକ୍ଷା ସୂପକାରଙ୍କ ଗଳ୍ପରେ ନିର୍ଭୁଲ ସମ୍ବଲପୁରୀ ଭଷାର ପ୍ରୟୋଗ ଦୃଷ୍ଟିଗୋଚର ହୁଏ । କେତେକ ଉଦାହରଣରୁ ଏହା ସ୍ପଷ୍ଟ ହେବ ।

- ଉଠ, ଉଠ, ଫୁଙ୍ଗା ଦେଲାନେ । (ପୃ-୩୯୩)

-ଆଜି ଗୁଟେ ସପନ୍‌ଟେ ଭେଟୁଥିଲି । ମାଇଝିଟେ ଆସି ମତେ କହୁଛେ, ମୁଇ ପରେ ତୁମର ଶିରୀ । ଆଉ କେତେଦିନ ମତେ ପଣ୍ଡା ବୁଢ଼ାର୍‌ନେ ଛାଡିଦେବ, ଆଉ କାନ୍ଦୁଛେ । ମୁଇଁ ପଣ୍ଡା ବୁଢ଼ାର୍ ନିକି ଯାଇକରି ଟଙ୍କା ଦେଇକରି ଇଷ୍ଟାମ୍ ଫିରେଇ ଆନୁଛେ-ବେଳେ ତୁଇ ମତେ ଉଠେଇ ଦେଲୁ ।'' (ପୃ-୩୨୩)

'ଛୁଟି' ଗଳ୍ପରେ ସମ୍ବଲପୁର ଅଞ୍ଚଳର ପର୍ବପର୍ବାଣୀ ସହିତ ଲୋକ ଜୀବନର ନିବିଡ ସମ୍ପର୍କ ବର୍ଣ୍ଣିତ । ଶିଳ୍ପାଞ୍ଚଳରେ କାର୍ଯ୍ୟରତ ଶ୍ରମିକର ନିଜ ଗାଁ ପ୍ରତି ଥିବା ମମତା, ଆର୍ଥିକ ଅସହାୟତା, ଦୂର ସହରରେ ଅବସ୍ଥାନ ଜନିତ ଦୁଃଖ କଳାତ୍ମକ ଭାବେ ବର୍ଣ୍ଣିତ ।

ଶଙ୍ଖ ୧ମ ବର୍ଷ ୭ମ ସଂଖ୍ୟାରେ ବିଶ୍ୱନାଥ ସାହୁଙ୍କ ' ଚା ବାଗାନର କୁଲି'' ଗଳ୍ପ ପ୍ରକାଶିତ । ମୂଲିଆ ଡମରୁ ଓ ତା'ର ସ୍ତ୍ରୀ ଭିତରେ ଖାଣ୍ଟି ସମ୍ବଲପୁରୀ ଭାଷାରେ କଥୋପକଥନ ଚାଲିଛି । ଗଳ୍ପର ବର୍ଣ୍ଣନା ଓଡ଼ିଆରେ ହୋଇଛି । ସଂଳାପ ଭାଗ ସମ୍ବଲପୁରୀ :

- ଦୁତୀ କହିଲା, ''ଏ କେଂତା ଲୋକ ଗୋ ବୁଆ ।''

- ରାଂଧନା ଘରେ ଥିର ନାଇଁନ କାଏଁ ? ଉଏଲ୍, ମିରଚା-

-ଡମରୁ ପଚାରିଲା ଦୁତୀକି - 'ସାନ ପାଲିଆନ, ଜୋରୁର କନିଆ ସବିଏତ୍ ଜହବେଲୁ କବାରନୁ ଆଇଥିସନ୍, ତୁଇ ଏତ ବେଲ୍ ଯାକେ କେନ୍ ନେ କାଁ କରୁଥିଲୁ ଗା ?



Digitized by srujanika@gmail.com

- ମୁଇଁ ଗଂଉତିଆରନ୍ କବାର ନିହିଁ କରିଯାଏ ଗୋ ବୁଆ ! ଜହବେଲ୍ ହେଲାନ୍, ବେଲ ନିହବାର ତାଲ, ନିହବାର ତାଲ୍ ବୋଲୁଛନ । ମୁଇଁ କାଁ କରିମି ଗୋ ''(ପୃ-୪୫୫)

ଗାଁ ଚୌକିଦାର, କପଡା ଦୋକାନୀ ମାଗୁଆଡି ପ୍ରଭୃତି ଚରିତ୍ରଙ୍କ ସଂଳାପରେ ସମ୍ବଲପୁରୀ ଭାଷା ଖଞ୍ଜା ଯାଇଛି । ନୂଆଁଖାଇ ପାଳନ ପାଇଁ ଡମରୁ ଶେଷକୁ ଚା ବାଗାନର କୁଲି ପାଲଟିଛି । ନିଜ ପ୍ରିୟତମାଠାରୁ ଖୁବ୍ ଦୂରକୁ ଚାଲିଯାଇଛି । ଦୁଃଖାର୍ତ୍ତ ଜୀବନର କରୁଣ ଆତ୍ମଲିପିରେ ଝଂକୃତ ଚା' ବାଗାନର କୁଲି । ବର୍ଣ୍ଣନା ସାବଲୀଳ । ଏହି ଗଳ୍ପରେ ସମ୍ବଲପୁରୀ ପ୍ରୟୋଗ ଉତ୍କର୍ଷର କୋଟୀକୁ ସ୍ପର୍ଶ କରିଛି ।

ଶଙ୍ଖ ୧।୧୦ ସଂଖ୍ୟାରେ ବିଧୁଭୂଷଣ ଗୁରୁଙ୍କ ' ସମ୍ବଲପୁରୀ ନାଚ ଓ ଗୀତର ପ୍ରକୃତ ସ୍ୱରୂପ'' ପ୍ରବନ୍ଧ ପ୍ରକାଶିତ । ଏହି ପ୍ରବନ୍ଧଟି 'ସହକାର'ରେ ବ୍ରଜବନ୍ଧୁ ହୋତାଙ୍କ ''ସମ୍ବଲପୁରୀ ନାଚ ଓ ଗୀତ'' ଶୀର୍ଷକ ପ୍ରବନ୍ଧର ଏକ ପ୍ରକାର ପ୍ରତିବାଦ । ଏଥିରେ ସମ୍ବଲପୁରୀ ଗୀତ, କବିତା ଓ ନାଚର ବିସ୍ତୃତ ଆଲୋଚନା କରାଯାଇଛି । ଶ୍ରୀଯୁକ୍ତ ଗୁରୁ ନିଜସ୍ୱ ମତ ପ୍ରଦାନ କରି କହନ୍ତି, ''ସମ୍ବଲପୁର ଅଞ୍ଚଳର କଥିତ ଭାଷାକୁ ଲିଖିତ ସାହିତ୍ୟ ରୂପରେ ଗ୍ରହଣ କରାଯାଇ ନପାରେ । ତେବେ ସମ୍ବଲପୁରୀ ଭାଷାକୁ ବିଶୁଦ୍ଧ ଓଡ଼ିଆ ଭାଷାରେ ମିଶାଇ କାବ୍ୟ କବିତା ସଂଗୀତ ଲେଖାଗଲେ ଭାଷାର ସଂବୃଦ୍ଧି ସାଧନରେ ଯେ ଯଥେଷ୍ଟ ସୁବିଧା ଜୁଟିବ,ଏଥିରେ ସନ୍ଦେହ ନାହିଁ ।'' (ଶଙ୍ଖ ୧।୧୦)

ମାନସିଂଙ୍କ ପ୍ରୋତ୍ସାହନରେ 'ଶଙ୍ଖ'ରେ ସମ୍ବଲପୁରୀ ଭାଷା ପ୍ରଚଳନର ଉଦ୍ୟମକୁ ଅନେକ ସାହିତ୍ୟିକ ଗ୍ରହଣ କରିପାରି ନାହାନ୍ତି । 'କଥିତ ଭାଷା ଓ ଲିଖିତ ଭାଷା' ଶୀର୍ଷକରେ ବୃନ୍ଦାବନ ନାଥଶର୍ମା ଏହି ପ୍ରସଙ୍ଗ ଉପରେ ବିଶ୍ଲେଷଣ କରିଛନ୍ତି । ବିଭିନ୍ନ ଅଞ୍ଚଳର କଥିତ ଭାଷାରେ ସାହିତ୍ୟ ରଚନା ବିରୁଦ୍ଧରେ ବୃନ୍ଦାବନ ସ୍ୱର ଉତ୍ତୋଳନ କରିଛନ୍ତି । ଆଞ୍ଚଳିକତାର ଊର୍ଦ୍ଧ୍ୱରେ ସାଧୁ ସରଳ ଭାଷାରେ ସାହିତ୍ୟ ରଚନା ଦ୍ୱାରା ଭାଷାର ସମୃଦ୍ଧି ସାଧିତ ହେବ । ଗ୍ରାମ୍ୟ ଭାଷାରେ ସାହିତ୍ୟ ଗଠନ କଲେ ତାହାର ଅସ୍ତିତ୍ୱ ଲୁପ୍ତ ହେବ । ଏହି ପ୍ରେକ୍ଷାପଟରେ ସେ ସମ୍ବଲପୁରୀ ଭାଷା ପ୍ରତି ଆକ୍ଷେପ କରି କହିଛନ୍ତି, '' ଶଙ୍ଖ ପତ୍ର ଯୋଗେ କଥିତ ଭାଷାକୁ ସାହିତ୍ୟରେ ପ୍ରଚଳନ କରିବାର ଗୋଟିଏ ଗୁପ୍ତ ଚେଷ୍ଟା ଲାଗିଅଛି । କେତୋଟି ଲେଖାରେ ପ୍ରାଦେଶିକ ଉତ୍କଟତା ଦେଖାପଡିଲାଣି । ଶ୍ରୀମାନ୍ ସୂପକାର, ଶୀମାନ୍ ପଣ୍ଡା, ଶ୍ରୀମାନ୍ ସାହୁ, ଶ୍ରୀମାନ୍ ତ୍ରିପାଠୀ, ଶ୍ରୀମାନ ଦାସ ପ୍ରଭୃତି ଲେଖକମାନେ କଥିତ ଭାଷାକୁ ସାହିତ୍ୟରେ ସ୍ଥାନ ଦେବାକୁ ଅପୂର୍ବ ଆୟୋଜନ କରୁଅଛନ୍ତି । ସମ୍ବଲପୁରରେ ପ୍ରଚଳିତ କଥିତ ଭାଷାରେ ଗଳ୍ପ, ଉପନ୍ୟାସ, କବିତା ଲେଖିବାକୁ କେହି କେହି ପ୍ରୟାସ



Digitized by srujanika@gmail.com

କରୁଅଛନ୍ତି ।''

(ଶଙ୍ଖ - ୧।୧୧-୧୨, ପୃ-୬୫୪)

ଶଙ୍ଖର ପ୍ରଥମ ବର୍ଷ ଶେଷ ସଂଖ୍ୟାରେ ସମ୍ପାଦକୀୟରେ ' ଆମ ପ୍ରତି ନାନା ଅଭିଯୋଗ' ଶୀର୍ଷକରେ ମାନସିଂ ବୃନ୍ଦାବନଙ୍କ ଅଭିଯୋଗକୁ ଖଣ୍ଡନ କରିଛନ୍ତି, '' ଶଙ୍ଖରେ କୌଣସି ଗୁପ୍ତ ଚେଷ୍ଟା ନାହିଁ । ଶଙ୍ଖରେ ଯାହା କିଛି ପ୍ରକାଶିତ ହୁଏ, ସାହିତ୍ୟ ହିଁ ତାର ଏକମାତ୍ର ମାନଦଣ୍ଡ । କୌଣସି ଜିଲ୍ଲା ବା ବ୍ୟକ୍ତି ବା ଶ୍ରେଣୀ ବିଶେଷକୁ ପ୍ରାଧାନ୍ୟ ଦେବାର କଳ୍ପନା ହିଁ ଆମର ନାହିଁ । **XXXX** '' ଶଙ୍ଖ ବିରାଟ ଓଡ଼ିଆ ଜାତିର ପତ୍ରିକା, ଏହା କୌଣସି ଜିଲ୍ଲା ବା ଷ୍ଟେଟ୍ ବା ବିଶିଷ୍ଟ ଶ୍ରେଣୀକୁ ସନ୍ତୁଷ୍ଟ କରିବା ପାଇଁ ପ୍ରକାଶିତ ହେଉ ନାହିଁ । ସେ ପ୍ରକାର କ୍ଷୁଦ୍ର ଉଦ୍ଦେଶ୍ୟ ଥିଲେ, ଆମେ ଏ ପତ୍ରିକାର ସମ୍ପାଦକତ୍ୱ ଗ୍ରହଣ କରି ନଥାନ୍ତୁ ।'' (ଶଙ୍ଖ ୧।୧୧-୧୨, ପୃ-୭୧୯)

ଗଳ୍ପର ନାୟକ ନାୟିକା ଖାଣ୍ଟି ସମ୍ବଲପୁରୀ ଥିବାରୁ ତାଙ୍କର କଥୋପକଥନ ସମ୍ବଲପୁରୀ ଭାଷାରେ ହେବା ସ୍ୱାଭାବିକ । ସମ୍ବଲପୁରୀ ଗଦ୍ୟ ଓ ପଦ୍ୟକୁ ଉତ୍କଳରେ ପ୍ରଥମଥର ସ୍ଥାନ ଦେଇଥିବାର ଶଙ୍ଖ ଘୋଷଣା କରେ । ମାନସିଂ ନିଜର ଏହି ଉଦ୍ୟମକୁ ସମର୍ଥନ କରି କହନ୍ତି, ' ଆମର ଦୃଢ଼ ଧାରଣା ଯେ ସମ୍ବଲପୁରୀ କଥିତ ଭାଷାରେ ଅନେକ ଉପାଦେୟ ଉପାଦାନ ଅଛି, ଯାହା ଷ୍ଟାଣ୍ଡାର୍ଡ ଓଡ଼ିଆରେ ମିଶିବା ଶ୍ରେୟସ୍କର।'' (ଶଙ୍ଖ୧।୧୧-୧୨) ମାନସିଂ ନିଜର କାର୍ଯ୍ୟକୁ ଉଚିତ ଦର୍ଶାଇ ବୃନ୍ଦାବନ ନାଥଶର୍ମାଙ୍କ ଅଭିଯୋଗକୁ ଭିତ୍ତିହୀନ ବୋଲି ବର୍ଣ୍ଣନା କରିଛନ୍ତି ।

ଶଙ୍ଖ ପ୍ରଥମ ବର୍ଷ ଶେଷ ସଂଖ୍ୟାରେ ପ୍ରକାଶିତ ବୃନ୍ଦାବନ ନାଥଶର୍ମାଙ୍କ ଆଲୋଚନା ଏବଂ ସମ୍ପାଦକୀୟ ଟିପ୍ପଣୀ ଉପରେ ୨ୟ ବର୍ଷ ୨ୟ ସଂଖ୍ୟାରେ ପ୍ରତିବାଦ ପ୍ରକାଶ ପାଇ ଏହି ବାଦାନୁବାଦକୁ ତୀବ୍ରତା ପ୍ରଦାନ କରେ । ବୃନ୍ଦାବନ ନାଥଶର୍ମାଙ୍କ ' ସମ୍ପାଦକଙ୍କୁ ପତ୍ର' ଶ୍ରଦ୍ଧାକର ସୂପକାରଙ୍କ ' କଥିତ ଭାଷା ଓ ସାହିତ୍ୟରେ ବାସ୍ତବବାଦ' ଏବଂ ବଳଭଦ୍ର ବହିଦାରଙ୍କ 'ସାହିତ୍ୟରେ କଥିତ ଭାଷା' ସହିତ ସମ୍ପାଦକଙ୍କ ' କଟକୀ ଭାଷା' ଶୀର୍ଷକ ଟିପ୍ପଣୀ ଦ୍ୱାରା ଏହି ଆଲୋଚନା ପ୍ରତିଆଲୋଚନା ସରଗରମ ହୋଇଉଠିଛି । ' ସମ୍ପାଦକଙ୍କୁ ପତ୍ର'ରେ ବୃନ୍ଦାବନ ନାଥଶର୍ମା ମାନସିଂଙ୍କ ସମ୍ପାଦକୀୟ ଟିପ୍ପଣୀର ପ୍ରତିବାଦ କରିଛନ୍ତି। 'ସାହିତ୍ୟରେ ଗୁପ୍ତ ଚେଷ୍ଟା' ପ୍ରସଙ୍ଗକୁ ନାଥଶର୍ମା ସ୍ପଷ୍ଟ କରିଛନ୍ତି । ସାଧୁ ସରଳ ଭାଷାର ସାହିତ୍ୟକୁ ସମର୍ଥନ କରି ସେ ବିଭିନ୍ନ ଭାଷାର ଶବ୍ଦ ଓଡ଼ିଶାରେ ପ୍ରବେଶ କରିବାକୁ ସମାଲୋଚନା କରିଛନ୍ତି । 'ଶଙ୍ଖ'ର ବିଭିନ୍ନ ରଚନା ତଥା ସମ୍ପାଦକୀୟରେ ଇଂରେଜ



Digitized by srujanika@gmail.com

ଶବ୍ଦର ଅବାଧ ପ୍ରୟୋଗକୁ ସେ ଦୃଷ୍ଟାନ୍ତ ସହ ଦର୍ଶାଇଛନ୍ତି। ଟ୍ୟୁସନ, ଅର୍ଡର, କମନ୍‌ସେନ୍ସ, ଆକସିଡେଣ୍ଟ ପ୍ରଭୃତି ଇଂରେଜ ଶବ୍ଦର ବ୍ୟବହାର ପ୍ରତି ସେ ଦୃଷ୍ଟି ଆକର୍ଷଣ କରିଛନ୍ତି। କାଳିନ୍ଦୀ ପାଣିଗ୍ରାହୀଙ୍କ 'ଚତୁରଙ୍ଗ' ପ୍ରକାଶିତ ଗଳ୍ପରେ ମଧ ଇଂରେଜ ଶବ୍ଦର ଦୃଷ୍ଟାନ୍ତ ଉଦ୍ଧୃତ କରାଯାଇଛି । ଏତଦ୍‌ବ୍ୟତୀତ 'ପାରୁନି', 'ଖାଇନି', 'ଯାଇନି', 'ନି', 'ଥେଲ୍' ପ୍ରଭୃତି ପ୍ରୟୋଗକୁ ସାହିତ୍ୟରେ ଗୁପ୍ତ ଚେଷ୍ଟା ରୂପେ ସେ ଅଭିହିତ କରିଛନ୍ତି। ସମ୍ବଲପୁରୀ ଭାଷା ସପକ୍ଷରେ ମାନସିଂ ବକ୍ତବ୍ୟକୁ ଇଙ୍ଗିତ କରି ବୃନ୍ଦାବନ ଲେଖନ୍ତି, '' ଶଙ୍ଖର ବିଜ୍ଞ ସମ୍ପାଦକ ମହାଶୟ କହିଅଛନ୍ତି, ସମ୍ବଲପୁରୀ କଥିତ ଭାଷାରେ ଅନେକ ଉପାଦେୟ ଉପାଦାନ ଅଛି, ଯାହା 'ଷ୍ଟାଣ୍ଡାର୍ଡ' ଓଡ଼ିଆରେ ମିଶିବାର ଶ୍ରେୟସ୍କର। 'ଷ୍ଟାଣ୍ଡାର୍ଡ' ଶବ୍ଦର ଓଡ଼ିଆ ପରିଭାଷିକ ଶବ୍ଦ ନାହିଁ କି ? ସମ୍ବଲପୁରୀ କଥିତ ଭାଷାରେ ଯେବେ 'ଶଙ୍ଖ' ପତ୍ରିକା ମୁଦ୍ରିତ ଓ ପ୍ରଚାରିତ ହୁଏ, ତେବେ ଅନେକ ଉପାଦେୟ ଉପାଦାନ ବାହାରି ଓଡ଼ିଆ ଭାଷା କଥାସାହିତ୍ୟକୁ ଗୌରବାନ୍ୱିତା ଓ ବିଭବଶାଳିନୀ କରିପାରନ୍ତା । ଏଣୁ ବିଜ୍ଞ ସମ୍ପାଦକଙ୍କୁ ବିନୀତ ନିବେଦନ କରେ 'ଶଙ୍ଖ'କୁ ସମ୍ବଲପୁରୀ ଭାଷାରେ ମୁଦ୍ରିତ କରି ଓଡ଼ିଆ ଭାଷାର ଗୌରବ ବଢ଼ାନ୍ତୁ ଏବଂ ପତ୍ରଟିକୁ ସ୍ଥାୟୀ ଭିତ୍ତିରେ ବସାଇ ଦିଅନ୍ତୁ ।'' (ଶଙ୍ଖ ୨।୨- ପୃ ୧୧୧)

ଶଙ୍ଖର ସେହି ସଂଖ୍ୟାରେ 'କଥିତ ଭାଷା ଓ ସାହିତ୍ୟରେ ବାସ୍ତବବାଦ' ଶୀର୍ଷକ ରଚନାରେ ଶ୍ରଦ୍ଧାକର ସୂପକାର ବୃନ୍ଦାବନ ନାଥଶର୍ମାଙ୍କ (ଶଙ୍ଖ ୧।୧୧-୧୨) ଅଭିମତର ବିରୋଧ କରିଛନ୍ତି । ନାଥଶର୍ମା ସମ୍ବଲପୁରୀ ଭାଷାର ତତ୍ତ୍ୱାନ୍ୱେଷଣ କରିବାକୁ ଯାଇ ଶର୍ମା ମହାଶୟ ଏକ ଭ୍ରାନ୍ତ ଯୁକ୍ତିର ଆଶ୍ରୟ ନେଇଛନ୍ତି ବୋଲି ଆମର ଧାରଣା ।'' ଶ୍ରଦ୍ଧାକର। ସମ୍ବଲପୁରୀ ଭାଷାର ମୂଳ ଲରିଆ ନୁହେଁ, ଓଡ଼ିଆ ବୋଲି ଯୁକ୍ତି ଉପସ୍ଥାପନ କରିଛନ୍ତି। ବରଂ ସମ୍ବଲପୁରୀ ଭାଷା ଉପରେ ଲରିଆ ବା ହିନ୍ଦୀର କିଛି ପ୍ରଭାବ ପରିଲକ୍ଷିତ ହୁଏ। ସମ୍ବଲପୁରୀ ଭାଷାରେ ହିନ୍ଦୀ ବା ଲରିଆ ଅପେକ୍ଷା ଓଡ଼ିଆ ଶବ୍ଦର ପ୍ରାଚୁର୍ଯ୍ୟ ରହିଛି ।

ଶ୍ରଦ୍ଧାକର ନିଜର ପ୍ରତିବାଦରେ ' ପରଜା' ଉପନ୍ୟାସରେ 'ନୁନି' ( ଝିଅ ବା ବାଳିକା) ଶବ୍ଦ, ସବୁଜ କବିତାରେ ବ୍ୟବହୃତ 'ବାଦଲ' ଶବ୍ଦର ଦୃଷ୍ଟାନ୍ତ ଦେଇଛନ୍ତି । ଏଗୁଡିକ ପଶ୍ଚିମ ଓଡ଼ିଶାରେ ପ୍ରଚଳିତ । କାଳିନ୍ଦୀ ପାଣିଗ୍ରାହୀଙ୍କ 'ମାଟିର ମଣିଷ'ରେ 'ଚାଉଳ' ପରିବର୍ତ୍ତେ 'ଚାଉର' ପ୍ରୟୋଗକୁ ଗ୍ରାମ୍ୟ ଶବ୍ଦର ଉଚିତ ପ୍ରୟୋଗ ରୂପେ ଶ୍ରଦ୍ଧାକର ଦର୍ଶାଇଛନ୍ତି । ତାଙ୍କର ଭାଷାରେ-



Digitized by srujanika@gmail.com

' ଛଅ ଜିଲ୍ଲା ଓ ଛବିଶଟି ଗଡଜାତ ନେଇ ଗଢ଼ା ଏ ଓଡ଼ିଶା ପ୍ରଦେଶରେ ସବୁ ଗଳ୍ପ ଉପନ୍ୟାସରେ ଯଦି ଘଟଣାସ୍ଥଳୀ କଟକ ବା ସନ୍ନିକଟସ୍ଥ ଅଞ୍ଚଳ ହୁଏ, ତେବେ ଅନ୍ୟାନ୍ୟ ଅଞ୍ଚଳର ଅସ୍ତିତ୍ୱ ଅନୁଭୂତ ହେବ କିପରି ? ଅତଏବ ଲେଖକ ଯଦି ତା'ର ନାୟକ ନାୟିକାଙ୍କୁ କୋରାପୁଟ ବା ସମ୍ବଲପୁରର କେଉଁ ନିଭୃତ ପଲ୍ଲୀରୁ ବାଛେ, ତେବେ ତଦ୍ୱାରା ସାହିତ୍ୟ ସଂକୀର୍ଣ୍ଣ ଓ ଉତ୍କଟ ନ ହୋଇ ସମୃଦ୍ଧ ଓ ଉଦାର ହେବ । ଗତାନୁଗତିକତାରୁ ସାହିତ୍ୟକୁ ରକ୍ଷା କରିବା ପାଇଁ ଓଡ଼ିଶାର ପୂର୍ଣ୍ଣାଙ୍ଗ ଚିତ୍ର ଦେବା ପାଇଁ ସମ୍ବଲପୁର ଓ କୋରାପୁଟର ଚିତ୍ର ଦେବା ନିତାନ୍ତ ଆବଶ୍ୟକ ।'' (ଶଙ୍ଖ - ୨।୨- ପୃ-୧୧୫)

ସମ୍ବଲପୁରୀ ଭାଷା ପ୍ରଚଳନ ବିରୁଦ୍ଧରେ ଶର୍ମାଙ୍କ ସମାଲୋଚନାରେ ସୂପକାର ମହାଶୟ ଗଭୀର ଦୁଃଖ ପ୍ରକାଶ କରିଛନ୍ତି ।

'ଶଙ୍ଖ'ର ସେହି ସଂଖ୍ୟାରେ 'ଓଡ଼ିଆ ସାହିତ୍ୟରେ କଥିତ ଭାଷା' ଶୀର୍ଷକ ରଚନାରେ ରାଜ୍ୟ ରତ୍ନ ବଳଭଦ୍ର ବହିଦାର ସମ୍ବଲପୁରୀ ଶବ୍ଦ ସମୂହ ସଂସ୍କୃତଜ ଥିବାର ପ୍ରମାଣ କରିଛନ୍ତି । ସମ୍ବଲପୁରୀ ରାମାୟଣର ଦୃଷ୍ଟାନ୍ତ ଦେଇ ହଳନ୍ତଲୁପ୍ତ ଓ ବର୍ଣ୍ଣ ପରିବର୍ତ୍ତିତ କଲେ ଯେ ଏହା ଶୁଦ୍ଧ ଓଡ଼ିଆରେ ରୂପାନ୍ତରିତ ହୁଏ, ଦର୍ଶାଇଛନ୍ତି । ତାଙ୍କ ମତରେ ପାଠ୍ୟପୁସ୍ତକରେ ଦେଶଜ ଶବ୍ଦ ପ୍ରୟୋଗ ବାଞ୍ଛନୀୟ ନୁହେଁ । କାରଣ ସମ୍ବଲପୁରୀ ଦେଶଜ ଶବ୍ଦ କଟକୀଙ୍କୁ ଦୁର୍ବୋଧ, ସେହିପରି କଟକୀ ଦେଶଜ ଶବ୍ଦ ସମ୍ବଲପୁରୀଙ୍କୁ ଦୁର୍ବୋଧ । ନାଥଶର୍ମାଙ୍କ କଟକ ଅଞ୍ଚଳର ଭାଷାକୁ ପାଠ୍ୟପୁସ୍ତକରେ ସ୍ଥାନ ଦେବା ଅଭିଯୋଗକୁ ବହିଦାର ମହୋଦୟ ଯଥାର୍ଥ ଅଭିଯୋଗ ରୂପେ ଅଭିହିତ କରିଛନ୍ତି । ଏହି ଆଲୋଚନାରେ ଅନେକ ଶବ୍ଦର ସଂସ୍କୃତ ଓ ସମ୍ବଲପୁରୀ ରୂପର ଦୃଷ୍ଟାନ୍ତ ପ୍ରଦତ୍ତ ହୋଇଛି । ଏହି ସମସ୍ତ ଆଲୋଚନା ପ୍ରତି ଆଲୋଚନାର ନିଷ୍କର୍ଷ ରୂପେ ସମ୍ପାଦକୀୟରେ ମାନସିଂ ' କଟକୀ ଭାଷା' ଶୀର୍ଷକରେ ମନ୍ତବ୍ୟ ପ୍ରକାଶ କରିଛନ୍ତି । ତାଙ୍କ ମତରେ ସମ୍ବଲପୁରୀ ଭାଷା ଓଡ଼ିଆ ଭାଷାର ଡାୟାଲକ୍ଟ ବା ଉପଭାଷା ମାତ୍ର । ସମ୍ବଲପୁରୀ ଭାଷା ଏକ କଥିତ ଭାଷା, ତାର ନିଜସ୍ୱ ସାହିତ୍ୟ ନାହିଁ । (ଶଙ୍ଖ-୨।୨) ଆଞ୍ଚଳିକତାର ଉର୍ଦ୍ଧ୍ୱରେ ଓଡ଼ିଆ ଭାଷାର ପରମ ବିଭୂତି ପ୍ରଦାନ କରିଛନ୍ତି ମାନସିଂ- 'ଓଡ଼ିଆ ସାହିତ୍ୟକୁ ଯେଉଁ ପ୍ରତିଭାବାନ୍ ପୁରୁଷମାନେ ଗଢ଼ି ଆସିଛନ୍ତି, ସେମାନେ କେବଳ କଟକ ଜିଲ୍ଲାର ନୁହନ୍ତି ସେମାନେ ଓଡ଼ିଶାର ସର୍ବାଞ୍ଚଳର । ଗଞ୍ଜାମ, ବାଲେଶ୍ୱର, ପୁରୀ, କଟକ, ଗଡଜାତ, ସମ୍ବଲପୁର ସବୁ ଅଞ୍ଚଳର ଦାନ ମିଶି ଆଜି ଓଡ଼ିଆ ଭାଷା ଶ୍ରୀମନ୍ତ । ପାରଳାଖେମୁଣ୍ଡିର ଗୋପାଳକୃଷ୍ଣ ଯେଉଁ ଭାଷା ବ୍ୟବହାର କରିଛନ୍ତି, ବାଲେଶ୍ୱରର ଫକୀରମୋହନ, ସମ୍ବଲପୁରର ଗଙ୍ଗାଧର ଓ କଳାହାଣ୍ଡିର ଭୂପତି ପଣ୍ଡିତ



Digitized by srujanika@gmail.com

ସେହି ଭାଷା ହିଁ ବ୍ୟବହାର କରିଛନ୍ତି । ଏହା ଉତ୍କଳ ଜନନୀର ଭାଷା- ପ୍ରତ୍ୟେକ ଓଡ଼ିଆର ମାତୃଭାଷା । ଏହି ଉଦାର ଚିତ୍ରକୁ ପାଶୋରି ଦେଇ ଛୋଟ ଛୋଟ ଜିଲ୍ଲାର କାଳ୍ପନିକ ଭିନ୍ନତାକୁ ବଡ କରି ଧରି ବୃଥା କନ୍ଦଳ ସୃଷ୍ଟି କରିବା ଉଚିତ କି ?'' (ଶଙ୍ଖ ୨।୨, ପୃ-୧୨୪, ୧୨୫)

ଏହି ପ୍ରସଙ୍ଗରେ ମାନସିଂହଙ୍କ ଆହ୍ୱାନ ସର୍ବକାଳୀନ ଓ ସର୍ବଜନନୀ ସତ୍ୟ। ସାହିତ୍ୟରେ ଗାଁ ଗାଁର ପ୍ରଭେଦ ଭୁଲି ବୃହତ୍ତର ମାତୃଭାଷାର ସମୃଦ୍ଧି ନିମନ୍ତେ ସଂକଳ୍ପବଦ୍ଧ ହେବାକୁ ସେ ଉଚିତ ମଣିଛନ୍ତି । ବିଭିନ୍ନ ଅଞ୍ଚଳର ଉପାଦେୟ ଶବ୍ଦ ସମୂହ ଓଡ଼ିଆ ଭାଷାରେ ମିଶିବା ଉଚିତ । 'ଶଙ୍ଖ'ର ସମ୍ପାଦନା ଓଡ଼ିଶା ଓ ଓଡ଼ିଆ ଭାଷାର ସାମୂହିକ କଲ୍ୟାଣ କଳ୍ପେ ଉଦ୍ଦିଷ୍ଟ ।

'ଶଙ୍ଖ' ୨ୟ ବର୍ଷ ୨ୟ ସଂଖ୍ୟା ମାନସିଂଙ୍କ ସମ୍ପାଦିତ ଶେଷ ସଂଖ୍ୟା । ତାଙ୍କର ସ୍ଥାନାନ୍ତର ଯୋଗୁ ତାଙ୍କ ସ୍ଥାନରେ ବାମଣ୍ଡା ଦରବାର ଜଳନ୍ଧର ଦେବଙ୍କୁ ନିଯୁକ୍ତ କରିଥିଲେ । ଜଳନ୍ଧର ଓଡ଼ିଆ ସାହିତ୍ୟର ଜଣେ ସ୍ୱାଧୀନ ଚିନ୍ତକ ଓ ପ୍ରଖ୍ୟାତ ପ୍ରାବନ୍ଧିକ । ସେ ମାନକ ଓଡ଼ିଆ ଭାଷା ସୃଷ୍ଟିର ପକ୍ଷପାତୀ ଥିଲେ । ପ୍ରାବନ୍ଧିକ ଭାଷାରେ 'ନାହିଁ' ସ୍ଥାନରେ 'ନି' ଯଥା ଖାଇନି, କରୁନି ପ୍ରଭୃତି ପ୍ରୟୋଗକୁ ବିରୋଧ କରୁଥିଲେ । ସେ ବିଶ୍ୱାସ କରୁଥିଲେ ଭାଷା ମୈତ୍ରୀ ବନ୍ଧନର ପବିତ୍ର ବାହକ। ବୃହତ୍ତର ଓଡ଼ିଶା ଗଠନ ଦିଗରେ ଏକ ଶୁଦ୍ଧ, ସମୃଦ୍ଧ ଓଡ଼ିଆ ଭାଷାର ପ୍ରଚଳନ ଦିଗରେ ସେ ଉଦ୍ୟମ ଜାରି ରଖିଥିଲେ। ଏଣୁ ସେ ସଜ୍ଞାନ ଚିତ୍ତରେ ଆଞ୍ଚଳିକତାର ଉର୍ଦ୍ଧ୍ୱରେ 'ଶଙ୍ଖର ସମ୍ପାଦନା କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟର 'ଶଙ୍ଖ'ରେ ସମ୍ବଲପୁରୀ ଭାଷାକୁ ପ୍ରକାଶନର ସୁଯୋଗ ଦିଆଯାଇ ନାହିଁ।❑❑❑

## ।। ପରିଶିଷ୍ଟ ।।

## '' ପାସ୍‌ରିଦେବୁ କାଏଁନ''

### ନାକ୍‌ଫୁଡି ପଣ୍ଡା

ପିଲାଦିନର୍ ସାଙ୍ଗ୍ ସର୍‌ସା ପାସ୍‌ରି ଦେବୁ କାଏଁନ,
ମୁଡା ବନ୍ଧର କନ୍ଦା କୁଡା ସୋର୍ ଅଛେ କି ନେଇଁନ,
ସଞ୍ଜ ବେଲର୍ ଲୁକ୍‌କୁନାନି



Digitized by srujanika@gmail.com

ଡାଁଡ୍ ଖୁଲିର 'ଖକ୍'
ଗୁଡି ମଡ୍‌ପର 'ଖୁମା ଖୁମା -ଲୋ'
ଝୁର୍‌କି, ସଇ, ସତ୍,
ନଏଦ୍ ପଁହଁରା, ବାଲିର ଘର
ଦୁଲିଝୁଲା ବଡା ସୁଖ୍,
ଆଏଛ୍ ଦିନକେ ହେତେଇ ଦେଲେ
ଲାଗୁଛେ ବଡା ଦୁଃଖ୍,
ସୋର ଅଛେକି ନେଁଇଁନ
ପିଲାଦିନର ସାଙ୍ଗ୍ ସର୍‌ସା ପାସ୍‌ରି ଦେବୁ କାଏଁନ ।୧।
ଡାଁଡର୍ ଘର୍ ଘର୍ ହେବା ତୋର୍, ନିଜର ଘର୍ ଚଛା
ପରର୍ ବୁଲେ ସାର୍‌ବୁ ଦିନ୍ ନେଁଇଁଚଲେ ତୋର ଇଛା,
କାହିଁର୍ ଚିହ୍ନାର କାହିଁର୍ ଇନାର୍
ପୁଟାଇଦେବା 'ବୁଆ'
ଫୁପ୍‌ଲା ବାହ୍ମନ୍ ହାତ୍ ଧରାବା
ଶୁଲକ୍ ଅଖାଡୁଆ,
କୁକୁର କେଭି ଠାକୁର ବଲି
ମାନବୁ ସବୁ ବେଲେଁ,
କାଏଁ ମାର୍‌ଛୁ ତର୍‌କି ଥିବୁ
ପଚି ଯାବା ଭାଏଲ... ଗାଲେଁ,
ସେନ୍‌କେ ଯିବୁ ଯେଭେଁ
ପିଲାଦିନର୍ ସାଙ୍ଗ୍ ସର୍‌ସା ନେଁଇଁ ଭୁଲ୍‌ବୁ କେଭେଁ । ୨। ('ଶଙ୍ଖ', ୧।୪)

## ଚା' ବାଗାନ୍‌ର କୁଲି

### ବିଶ୍ୱନାଥ ସାହୁ

ଦୁତୀ ଓଦା ସରସର ହେଇ ଦୁଆରେ ପହଞ୍ଚି ଦେଖେ ତ କାଠ ଭାରଟା ଥୁଆ ହେଇଚି ଦୁଆରେ । ଛାତି ତା'ର ଦାଉଁ କିନା ହେଲା । ଡମରୁ କେତେବେଲୁ ଡଂଗରରୁ ଫେରିଲାଣି କେଜାଣି ? ଦୁତୀ ତରତର ହେଇ ତାଟି ଫିଟେଇ ଦେଖେ ତ - ଡମରୁ ଖଟିଆ ଖଂଡେ



Digitized by srujanika@gmail.com

ପକେଇ ଶୋଇପଡ଼ିଚି ହାଲିଆ ହେଇ । ପେଟ ତା'ର ଲାଗିଯାଉଛି ପିଠିରେ ।

କଣ୍ଟ୍ରୋଲ କପଡ଼ା ଖଣ୍ଡକ ଚାଳରୁ ତୋଳି ପିନ୍ଧୁପିନ୍ଧୁ ଦୂତୀ କହିଲା- ''ଏ କେଂତା ଲୋକ, ଗୋ ବୁଆ !''

କ୍ଲାନ୍ତିଭରା ଆଖି ଖୋଲି ଉତ୍ତରରେ ପଚାରି ବସିଲା ଡମରୁ- 'କେନ୍ତା ?''

''ରାଂଧନା ଘରେ ଥିର ନାଇଁନ କାଏଁ ? ଉଏଲ୍ ମିରିଚା –''

କଥାରେ ବାଧା ଦେଇ ଡମରୁ ପଚାରିଲା ଦୁତୀକି – '' ସାନପାଲିଆନ୍, ଢୋଗୁର କନିଆ ସବିଏତ ଜହ ବେଲୁ କବାରନୁ ଆଇଥିସ ନ୍, ତୁଇ ଏତେବେଲ୍ ଯାକେ କେନ୍‌ନେ କାଁ କରୁଥିଲୁ ଗା ?''

ମୁଇଁ ଗଂଉଡିଆରନ୍ କବାର ନିହିଁ କରିଯାଏ ଗୋ ବୁଆ ! ଜହବେଲ୍ ହେଲାନ୍, ବେଲ ନି ହବାର ତାଲ୍, ନି ହବାର ତାଲ୍ ବୋଲୁଛନ୍ । ମୁଇଁ କାଁ କରିମି ଗୋ ?

–ଦୂତୀ କହି ଚାଲିଚି ବିରକ୍ତି ଓ ଅଭିମାନମିଶା ସ୍ୱରେ ।' ପହ୍ଲା ଜଗୁଥିଲ କାଏଁ ?''

''ଉହୁଁ'' – ଓଦା ଲୁଗାଟା ଶୁଖୋଉ ଶୁଖୋଉ ଉତ୍ତର ଦେଲା ଦୁତୀ-'' ଲଟାବଛା ଗୋ ! ଗିଂଗରା ମାଲ୍‌ନେ ।''

ଦୁତୀ ଥିର ଥୋଇଲା ଆଣି ଡମରୁ ପାଇଁ ବଡ଼ ଖୁରୀରେ । ଦନାରେ ଦେଲା ଉଏଲ୍, କଂଚାମରିଚା ନୁନ୍ । ଡମରୁ ଖାଇସାରି ଉଠିଲା । ଭାଂଗଆଣି ବନେଇ ବସିଲା ଗୋଟାଏ ଲମ୍ବା କାହାଳି; ଦୁତୀ ଆଣିଦେଲା ପାସକୁ ତା'ର ଜୁଇ, ଡମରୁ କାହାଳିଟା ପହଟେଇ ପିଇ ପିଇ ଛାଡୁଛି ଧୁଆଁ। ଦୁତୀ ଖାଉଚି ତା'ର ଖୁରିରେ । ଦୁତୀ କ'ଣ କହିବା ପାଇଁ ଡାକିଲା- 'ଏଗୋ !'

ଡମରୁ ସେଇ ଧୁଆଁଳିଆ ବାୟୁମଣ୍ଡଳ ଭିତରେ ବସି କଣ ଭାବୁଥିଲା କେଜାଣି । କ'ଣ ଶୁଣିବ ବୋଲି ମୁହଁ ଫେରେଇ ଚାହିଁଲା ସେ ଦୁତୀ ମୁହଁକୁ । ଦରଫୁଟା ପଦ୍ମ ପରି ମୁହଁଟି ତା'ର । ତୈଳହୀନ ବାଳ କେରାକ ଉଡୁଚି ଫୁର୍‌ର ଫୁର୍‌ର । କଳାକଳା ଆଖି ଦୁଇଟି ତା'ର ଜଳ ବିନ୍ଦୁ ପରି ଢ଼ଳଢ଼ଳ ।

ଶୁଖିଲା ମୁହଁରେ ଟିକିଏ ହସ ଫୁଟେଇ ଦୁତୀ କହିଲା- '' ଏଗୋ ନୂଆଖିଆ ହବା ଯେ ! ମନେ ନାଇଁନ କାଏଁ ?''

ଡମରୁର ମନେପଡ଼ିଲା- ନୂଆଖିଆ । ବରଷକରେ ଗୋଟେ ଦିନ। ଯେତେବାର ଦୁତୀ ତା ଆଗେ କପଡ଼ା ପାଇଁ ଅଭିଯୋଗ କରି ବସିଚି, ସେତେବାର ସେ ମିଆଦ ଦେଇଆସିଚି ଏଇ ନୂଆଖିଆକୁ । ନୂଆଖିଆକୁ ଦୁତୀକି ପିନ୍ଧେଇବ ସେ ନୂଆ କପଡ଼ା । ଡମରୁର ମୁଣ୍ଡ ଘାଉଁରୀ ଗଲା ମଙ୍ଗଳବାର ନୂଆଖିଆ, କାଲି ରବିବାର ବଜାର । ବିଚରା କରେ କଣ ?



Digitized by srujanika@gmail.com

କଣ୍ଟ୍ରୋଲ ଥାନ କି ମିଲ୍‌ଶାଢ଼ୀ କାହିଁରେ ଦୁତୀର ମନ ମାନେନା । କେତେଦିନୁ ସିଏ ଲଗେଇ ଆସିଚି ଖଣ୍ଡେ ନୂଆପାଲିଆ ଫୁଲପକା କପଡା ଲାଗି । ଡମରୁ କରେ କଣ ?

ଡମରୁ ଯୁଆନ । ବଳ ଅଛି , ବୟସ ଅଛି । ଜମିନ୍ ଦି' ଲୋଦର ଅଛି ବି ତା'ର । ବାପ ଅଜା ତା'ର ହାତରେ ଝାର, ଜଙ୍ଗଲ ତାଡି କରିଛନ୍ତି ଏଇ ଜମି । ଝାର ତରାଏ ତରାଏ ସେଇ ସବୁଜ ଗଛପତ୍ର ସଂଗେ ତା'ର ସବୁଜ ଧାନକିଆରୀ । ହାତରେ ମାଟି ତାଡି ସେ ମାଲକୁ କରିଚି ବାହାଲ୍ । ବାହାଲ୍‌କୁ କରିଚି ବେରନା । ତଳେ ତଳେ ବହିଯାଉଚି 'ନରବଦା' । ନାଲିଆ ବୁଢ଼ାଡଙ୍ଗରରୁ ପାଣି ନେଇ । ସେଇ ପାଣି ପାଇ ଡୁଲି ଚାରିଟା ତା'ର ଶ୍ୟାମଳ । କିନ୍ତୁ ଏଥିରେ ଥାଏନି ତା'ର ହକ୍ ଦାବି। ତା'ରି ଦିହର ଲୁଣିଆ ଝାଳରେ ଯେଉଁ ମାଟି ଉର୍ବର । ତା'ର ଦିହର ରକତରେ ଯେଉଁ ମାଟି ସବଳ, ତା'ରି ତପ୍ତ ନିଶ୍ୱାସରେ ଯେଉଁ ମାଟିର ଜଳବାୟୁ ଗଢ଼ା, ସେଠି ଥାଏନି ତା'ର ପୁର୍‌ନ ହକ୍ । ସେଠି ହକ୍‌ଦାର ଆଉ ଛୋଟବଡ କେତେ । ପ୍ରଚଣ୍ଡ ଗ୍ରୀଷ୍ମ । ତାପରେ ଯେଉଁମାନଙ୍କର ଦିହରୁ ବହେନା ବିନ୍ଦୁଏ ମାତ୍ର ଝାଳ। ଅଣଚାଷ ବତାଶରେ ଯେଉଁମାନଙ୍କର କେଶ ବି ହଲେନା କେବେ । ଅଚାନକ ବରଷାରେ ଯେଉଁମାନଙ୍କ ଦେହରେ ପଡେନା ଟୋପାଏ ପାଣି ।

ଡମରୁ କରେ କଣ ! ଦିନ ଦୁଇଟା ପରେ ନୂଆଖିଆ ! କାଲି ତ ବଜାର । ଆଗକାଳ ହେଇଥା'ନ୍ତା କି ! ତାକୁ ବା ଏତେ ଚିନ୍ତା କରିବାକୁ ପଡନ୍ତା କାହିଁକି ? ଟଙ୍କା, ଦି' ତିନିଟା ପକେଇଦେଲେ ମନଇଛା ଶାଢ଼ୀ । ଯୁଦ୍ଧ ତ ସାରିଲା ସବୁ । ଏ ଯୁଦ୍ଧ ତ ଖାଲି ରାଇଜ ସାଙ୍ଗରେ ରାଇଜର ନୁହେ ! ଏଇ ଗରିବ କୁଲି ମୂଲିଆଙ୍କ ସାଙ୍ଗରେ ଅଭାବ ଅସୁବିଧାର । ଭୁଲିଆବୁଣା କପଡାଖଣ୍ଡେ ନିହାତି କମରେ ତ ସାତ ଆଠ ଟଙ୍କା । ତା'ପର ତ ନୂଆଖିଆ ଲାଗି ବଜାର ସଉଦା ଅଛି । ଏମିତି ସେ ମନେ ମନେ ହିସାବ କରିନେଲା ଦଶ, ବାର ଟଙ୍କା ।

ଟଙ୍କା, ଦଶ କି ବାର ! ଦଶ ବାରଟା ପାହୁଲା ବି ଡମରୁ ପାଖରେ ନାହିଁ ! ଟୋଲ , ମହୁଲ, ଚାରମଂଜି ଯା' କିଛି ଘରେ ଥିଲା ସବୁ ତ ବିକା ସରିଛି । ଆଉ ଘରେ ଅଛି କ'ଣ ? ଡମରୁ ବିଚରା ଭାବି ଭାବି କିଛି ଠିକ୍ କରି ପାରିଲାନି ।

ବାହାରେ କିଏ ଜଣେ ବଡପାଟିରେ ଡାକିଲା- '' ଡମରୁବୋ ! ଓ ଡମରୁ ! ଘରେ ନାଇନ କାଏଁ ?

ଗାଁର ଚୌକିଦାର ଧନୁ ଗଣ୍ଡା । ହାତରେ ଚିତେ ଉଂଚର ଠେଙ୍ଗା । ଡମରୁ ଘରୁ ବାହାରୁ ବାହାରୁ ଉତ୍ତର ଦେଲା- ' କାଇଁଥିଲାଗି ହାକୁଚୁଗା ?''



Digitized by srujanika@gmail.com

'' ଆବୋ, ତୋର ଆଜି ବେଗାରୀ ପାଳି । ଫାରମ ବାବୁ ଆଇଛନ୍ ଇହାଦେ କନୁସିଙ୍ଗା ଯିମେ । ତାଙ୍କର ବିସ୍ତରଟା ନେଇଦେବୁ ସେନ୍‌କେ ଘାଏ ।''

ଡମରୁ ମୁଣ୍ଡରେ ତେନ୍ତୁଳିଆ ବିଛା ଚାଲିଗଲା । ବସ୍ତିରେ ଥିଲେ ଗଂଉତିଆ ପାଶକୁ ଯାଇ ଟଙ୍କା ଦଶ ବାରଟା ମାଗିଥାନ୍ତା; କିନ୍ତୁ ଏଣେ ତ ବେଗାରୀ ନ ଗଲେ ନଚଳେ । ନୂଆଖିଆ ବଜାର କାଲି । ବଦଳିଆ ଯିବାକୁ ମଂଗୁଚି ବା କିଏ ? ଚୌକିଦାର ନଛୋଡବନ୍ଧା । ଛାଡ ପିତୃକାର୍ଯ୍ୟ କର ରାଜକାର୍ଯ୍ୟ ।

ଡମରୁ ଭାର ଧରି ବାହାରିଲା । ମନେ ମନେ ଠିକ୍‌କଲା ସଂଜବେଳକୁ ଫେରିଆସିବ ବୋଲି ।

'କେନ ପାଖ ଯାଉଚ ଗୋ ?''- ଦୁତୀ ପଚାରିଲା ସାଗ୍ରହେ ।

'' କନୁସିଂଗା ଗୋ ! ଫାରମ ବାବୁର ବିସ୍ତରା ଦେଇ ।''- ଡମରୁ ଏତକ କହିଗଲା ବଡ ଦୁଃଖରେ । ଅନ୍ତର ନିଗିଡା ତା'ର ଏ ଦୁଃଖ । ତା' ବୁଝିବ କିଏ ? ଯେଉଁମାନେ ଦୁଃଖ ବୁଝିବାକୁ ଆସନ୍ତି, ସେଇମାନେ ଯେ ହେଇପଡନ୍ତି ପ୍ରକୃତ ଦୁଃଖର କାରଣ । ବୋଝ ଉପରେ ନଳିତା ବିଡା । ଏଇ ଗାଁର ଗରିବ ଚାଷୀ ମୂଲିଆ କେବଳ ସଦାଦିନେ ବେଗାରିଆ । ଗାଁର ଗଉଂତିଆ ନୁହେଁ କି ମକଦ୍ଦମ ନୁହେଁ ।

''ଇହାଦେ ନରଦି ଆସିବି''- କହି ଡମରୁ ବାହାରିପଡିଲା। ଦୁତୀ କହିଲା- 'କେନ୍ତା ଗୋ ? ଥିରଥୁରା ଢ଼ୋକେ ନିପିଇବାର, କେନ୍ତା ଯାଉଚ ଗୋ ?''

'' ସରକାରୀ ମାଇଲ୍‌ନେ ବାଟ ମାଇଲ ଚାରି । ଇହାଦେ ଆସିବି ''- କହି ବାହାରିଲା ଡମରୁ ଭାଂଗ ଟିକିଏ ଅଣ୍ଟାରେ ଖୋସି ।

xxx xxx xxx xxx

ମୁହଁସଂଜ ହେଇଆସୁଚି । ସଂଜ ଆସୁଚି ବିଲବାଡି ଗଛଲଟା ସବୁଆଡେ କାଳି ବୋଳି ବୋଳି । ଆକାଶରେ କାରିଗର ଫୁଟୋଉଚି କ୍ଷଣିକରେ ଶତ ଶତ ଫୁଲ । ଡମରୁ କଳ୍ପନା ରାଇଜରେ ବୁଲି ଚାଲିଚି । ମନର ସମସ୍ତ କଳ୍ପନା ଯେ ଆଜି ତା'ର ଚୁର୍‌ମାର୍ ହୋଇଯାଉଚି । ହୃଦୟ ବ୍ୟାକୁଳତର ହେଉ ଉଠୁଛି ତା'ର ।

ଡମରୁ ରାତି ଘଡିକି ପହଞ୍ଚିଲା ଘରେ । ଦୁତୀ ଚାଉଳ ଦିଟା ଫୁଟେଇ ପାଣି ପୁରେଇ ରଖିଥିଲା । ଉଲି, ମିରଚା ଦେଇ ଖାଇବାକୁ ଦେଲା । ଡୁମୁରୁକୁ କି ଆଜି ଆଉ ଖାଇବାକୁ ରୁଚେ ? କ'ଣ ଦିଟା ଖାଇଦେଇ ଉଠିଗଲା ସେ । ଦୁତୀ ଭାବିପାରିଲାନି କିଛି । କାହାଳିଟାଏ ପହଟେଇ ଦେଇ ସେ ଚାଲିଲା ବସ୍ତି ଭିତରକୁ ।

ଦୁତୀ ପଛରୁ ଡାକିଲା- 'କେନେ ଗୋ ?'



Digitized by srujanika@gmail.com

'ଏଇ ବସ୍ତିନୁ ଘାଏ ଆସୁଛି ଗୋ ଇହାଦେ ।' କହି ଡମରୁ ଚାଲିଗଲା ଅନ୍ଧାର ଭିତରେ । କାହାଲିଟା ଜଳୁଥିଲା ଜୁଳୁଜୁଳିଆ ପୋକ ପରି !

ଗୌନ୍ତିଆ ଘର । ସଂଜଧୂପ ଲାଗିଚି । ଚିଲମ ଧୂଆଁରେ ବାୟୁମଣ୍ଡଳ ଭରପୁର । ତା' ସଂଗେ ଚାଲିଚି କେତେ ଦେଶବିଦେଶର ଖବର, କେତେ ସମାଲୋଚନା, କେତେ ସିଦ୍ଧାନ୍ତ । ଭଲା ବେଳାରେ ଆସିଲା ଡମରୁ । ଆଉ ଘଡିଏ ଆଗରୁ ଆସିଥିଲେ ଯାହା ଆସ୍ତିନାସ୍ତି ବାଣୀ ପଦେ ହେଲେ ଶ୍ରୀମୁଖରୁ ଶୁଣିଥା'ନ୍ତା । ବିଚରା ଦାଣ୍ଡଦୁଆରୁ ଫେରିଲା ନିରାଶ ହୋଇ !

ବାଟରେ ଶେଖରାଜର ଗୋଦାମ । ନୂଆଖିଆ ବଜାର ଲାଗି କପଡା ସଜଡା ଲାଗିଛି । ଡମରୁ ଦୋକାନ ଦୁଆରେ ଠିଆ ହୋଇ ଦେଖୁଚି କେତେ କପଡା କେତେ ଭଳି । କେଉଁ ଖଣ୍ଡକ ଦୁତୀର ମନଲାଖି ହୁଅନ୍ତା । କିନ୍ତୁ ଟଙ୍କା କାହିଁ । 'ଆଲୋ ମଉସା, ଜଡ ପଇସା ।'

ମାରୁଆଡି ବୁଢ଼ା କପଡା ସଜାଡୁ ସଜାଡୁ ପଚାରିଲା-'' କିବୋ ଡମରୁ ! କେଂତାବୋ ? ନୂଆଖିଆ କେନ୍ତା କରୁଚୁଗା ?''

'' କାଁ କର୍‌ମି ବୁଆ ! ପଇସାର ସବୁ ପିଆରା ଆଏ ।''- ମନଦୁଃଖରେ କହିଲା ଡମ୍ବରୁ ।

'' ମାଇକି ବୁଆ ! ଏବାରେ ମୁଇଁ ବାକିବୁକା ସବୁ ବନ୍ଦକରି ଦେଇଚି । କୋଟା କପଡାରେ ଫାଇଦା ନଇଁବୋ ! ଇହାଦେ ଛିଟ ଥାନ ଥାନ, କିଏ ଘିନିମ ବୋଲ ତ ? କଣ୍ଟ୍ରୋଲ ସବୁ ସାଇଲା ଗା !''

ଡମରୁ ପ୍ରାଣରେ ଜଳି ଉଠିଲା ହତାଶାର ନିଆଁ । ମାରୁଆଡି ବୁଢ଼ା କେବେ ଖଣ୍ଡେ ଜିନିଷ ନ ରଖିଲେ ବାକିବୁକା ଦିଏନି । ଡମରୁ କଣ ଦେଇ ଏଥର ତା'ର ଗୁଜୁରାଣ ମେଣ୍ଟେଇବ ? କିଛି ଭାବିପାରିଲାନି । ଦୁତୀ ନାକର ଗୁଣା ତ ବନ୍ଧା ପକେଇ ଟଙ୍କା କେତେଟା ନେଇ ଖରଚ କରିସାରିଚି । ଆଉ ଅଛି କଣ ? ଘରେ ଜିନିଷ ବୋଲି ଦିଖଣ୍ଡ ଖୁରୀ ଗିନା । ମନେ ମନେ ଡମରୁ ନିଜର ପୁରୁଷପଣିଆକୁ ଶତଧିକାର କଲା ।

ଗାଁ ମୁଣ୍ଡ ପିପଲ ଗଛର ପାଖେ ଡେରା ଘର । କୁଲି ସର୍ଦ୍ଦାର ଆଜି ସେଠି ଡେରା ପକେଇଛନ୍ତି । ପ୍ରତି ହାଟପାଳି ସେ ଆସନ୍ତି ଏଠିକି କୁଲି ସଂଗ୍ରହ କରି । ମାଲଗାଡିରେ ପଠେଇ ଦିଅନ୍ତି ମାଲ୍ ପରି ଏଇ ଜୀଅନ୍ତା ଜୀବଗୁଡାଙ୍କୁ । ଡେରାଘରର ଆଲୁଅକୁ ଲକ୍ଷ କରି ଡମରୁ ଚାଲିଲା ।

xxx xxx xxx xxx



Digitized by srujanika@gmail.com

ରାତି ଅଧସରିକି । ଅଷ୍ଟେଇଁ ଜହ୍ନ ଉଇଁଲାଣି ପୁରୁବ ଆକାଶପଟେ ପତଳା ବାଦଲ ତଳେ । ଡମରୁ ଏତେ ରାତିରେ ଫେରେ ଘରକୁ । ତାଟି ଫିଟେଇ ପସିଲା ଘରେ । ଖପର ଚାଳର ଫାଙ୍କେ ଫାଙ୍କେ ମଳିନ ଜହ୍ନର ଝାପ୍ସା ଆଲୁଅ । ଡମରୁ ଖଟିଆଟା ବାରିନେଇ ଶୋଇପଡିଲା ।

ଖଟିଆର ଖଟଖଟରେ ଦୁତୀର ଚାଉଁକା ନିଦ ଭାଙ୍ଗିଗଲା ଚାଉଁକିନା । ସେ ଅଳସମିଶା ସୁରେ ପଚାରିଲା- ''ଏତେ ରାତିଯାକେ କେନ୍‌ଥିଲ ଗୋ ?''

'' ଡେରା ଘରନେ ।''

ଡମରୁ ପାଟିରୁ ମହୁଲିର ବାସନା ଭଣ୍ କରି ବାହାରି ବାଜିଲା ଦୁତୀର ନାକପୁଡାରେ । ସେ ବିରକ୍ତ ହେଇ ମୁହଁ ଫେରେଇ ନେଇ କହିଲା- ''ଡେରା ଘରନେ ? କେତେ ଘା ବୋଲିମି ଗୋ ? ସବୁବେଲେ ଭାଟିନେ ଯାଇ ମଦ ଖାଇଲେ ପଇସା କେନୁ ଆସିବ ଗୋ ?''

'' ନୂଆଖିଆ ନେ ତୁଇ ଘାଏଁ ନିଖାଇବୁ କାଏଁ ? - ଡମରୁ କହିଲା ଆନନ୍ଦରେ । '' ମୁଇଁ ଭାଟିନେ ନିଯିବାର ଗୋ ! ଡେରା ଘର୍‌ନେ ସର୍ଦ୍ଦାରବାବୁ ଘାଏ -''

କଥାରେ ବାଧାଦେଇ ଦୁତୀ ପଚାରି ବସିଲା, '' କାଲି ବଜାର । ଟଙ୍କା କେନ୍‌ଠୁ ଆନ୍‌ଲ କାଏଁ ?''

'' ହଁ ଗୋ ! '' - ଡମରୁ ଭାରି ଖୁସି ।

ଦୁତୀ ବି ତା' ସଂଗେ ସଂଗେ ଖୁସି ।

ନିଦ୍ରା ଜଗତକୁ ଚାଲିଲେ ଦିହେଁ ଜୀବନର ସମସ୍ତ ଦୁଃଖସୁଖ ଭୁଲି ।

xxx xxx xxx xxx

କାଲି ନୂଆଖିଆ । ଦୁତୀ ହାଟରୁ ମନଇଚ୍ଛା ବାଛି ବାଛି କିଣି ଆଣିଚି ଖଣ୍ଡେ ନୂଆପାଲିଆ କପଡା- ଦାମ୍ ଛଅଟଙ୍କା ବାରଣା । ଆଉରି ପୁଣି କେତେ ଜିନିଷ ନୂଆଖିଆ ପାଇଁ । ଦୁତୀର ଆନନ୍ଦ କହିଲେ ନସରେ । ଡମରୁବି ଦୁତୀର ହସହସ ମୁଖ ଦେଖି ଭୋଳ ।

ଜାଲନାବାଟେ ଦିଶୁଚି କଅଁଳ ସକାଳର କୋମଳ ଆଲୋକ ଧାରା । ଖଟିଆରେ କର ଲେଉଟାଇ ଦୁତୀ ପଚାରିଲା- 'ଗଉଁଟିଆ କେଂତା ଟଙ୍କା ଦେଲା ମୁଇଁ ଭାବ୍‌ସି ।''

'ଉହୁଁ- କହି ଡମରୁ କି ଏକ ଗଭୀର ଚିନ୍ତା ମଗ୍ନ ହେଲାପରି ଜଣାପଡିଲା । ଦୁତୀ ଉଦ୍‌ବେଗର ସହିତ ଚାହିଁରହିଚି ଶୁଣିବ- ବୋଲି ଟଙ୍କା କିପରି ଆଣିଲା ଡମରୁ କେଉଁଠୁ । ଡମରୁର ଛାତି ଫାଟିଗଲା ପରି ଜଣାପଡିଲା । ଏତେବେଳକେ ତା' ମୁଣ୍ଡରେ ଚେତା ପସିଲା । ସେ କେଉଁଠୁ ଟଙ୍କା ଆଣିଚି କାହିଁକି ? କାହା ଟଙ୍କାରେ ଦୁତୀଲାଗି କିଣିଚି



Digitized by srujanika@gmail.com

ଶାଢ଼ୀ । କାହାକୁ ସେ ଦେଖିବ କାଲି ନୂଆଖିଆରେ ନୂଆ ଶାଢ଼ୀଟି ପିନ୍ଧେଇ । ରକ୍ତପଦମ୍ ପାଖୁଡ଼ାପରା ଶାଢ଼ୀଟି ମଧ୍ୟରେ କାହାର ମୁଖ କେଶରରେ ସେ ପାଗଳ ଭ୍ରମର ପରି ଖୋଜିବ ମଧୁ । କେଡେ ପାଗଳ ସେ ସତେ ? ଆନନ୍ଦ ମରିଚୀକା ପଛେ ପଛେ ଧାଇଁପାଇଚି ସେ କ'ଣ ?

ଦୂରରେ ଶୁଭିଲା ଗୋଟେ ଟ୍ରକର ଘଁ ଘଁ ଶବ୍ଦ । ବାହାରେ କିଏ ଆସି ଡାକିଲା - 'ଡମରୁ ? ଡମରୁବୋ ?' ଡମରୁ ଧୀରେ ଧୀରେ ଉଠି କପଡାଖଣ୍ଡ ଦିହରେ ଜାକେଇ ବାହାରିପଡିଲା ଯନ୍ତଚଳିଲା ଭଳି । ଦୁତୀ ଉଠି ପଚାରିଲା ଆଶ୍ଚର୍ଯ୍ୟ ହୋଇ, ''ଏତେ ସକାଳୁ ଏ କୁକୁଡା ଡକାନୁ କେନେ ଗୋ ?''

ଡମରୁ କଣ ଉତ୍ତରଦେବ ? ବାହାରୁ ପୁଣି ଆସିଲା ଡାକ । ସେଇ ଡାକର ପୁନରାବୃତ୍ତି ସଂଗେ ଯୋଗ କରି - '' ଗାଡୀ ଆଇଲାନ, ନିଶୁଭିବାର କାଏଁ ?''

'' ନି ବୋଲୁଚ କେଂତାଗୋ ? କେନେ ଯିମ ମଟର୍ ଗାଡିନେ ?'' - ଦୁତୀ ପଚାରିଲା ଆତୁର ହେଇ- ' କାଲି ନୂଆଖିଆ ମନେନାଇନ କାଏଁ ?''

ଡମରୁର ଆଖି ଲୁହ ଛଳଛଳ । ବହୁତ କଷ୍ଟରେ ଉତ୍ତର ଦେଲା- '' ମୁଇଁ କବାର କରବାକେ ଯାଉଚି ଗୋ।''

'' କାଇଁ କବାର ଗୋ ?''

ପୁଣି ସେଇ ଡାକ ଉପରେ ଡାକ । ଅଦୂରେ ମଟରଗାଡ଼ିର ଘଁ ଘଁ ଶବ୍ଦ ସଂଗେ ପେଁ ପେଁ ହରନ୍ ।

ଡମରୁ ଆଉ ରହିପାରେନା । ରହିବାର ବଳ ଆଜି ତା'ର ନାଇଁ । ଡମରୁ ଆଉ ଡମରୁ ନୁହେଁ । ସେ ଚା' ବାଗାନ୍‌ର କୁଲି । **(ଶଙ୍ଖ-୧।୭)**

## କଥିତ ଭାଷା ଓ ଲିଖିତ ଭାଷା

### ବୃନ୍ଦାବନ ନାଥଶର୍ମା

କଥିତ ଭାଷା, ଲିଖିତ ଭାଷା ସ୍ୱତନ୍ତ ପଦାର୍ଥ। ଘରେ ଘରେ, ଦେଶେ ଦେଶେ, ଗ୍ରାମେ ଗ୍ରାମେ, ସ୍ୱତନ୍ତ୍ର ଭାଷା ବୋଲାଯାଇଥାଏ, ମାତ୍ର ଲିଖିତ ଭାଷା ଗୋଟିଏ ରୀତିରେ ଚଳିବା ଉଚିତ। ଆମ୍ଭ ଦେଶରେ କହନ୍ତି- '' ଦେଶକେ ଫାଙ୍କ୍, ନଈକେ ବାଙ୍କ୍ ।'' ଲିଖିତ ଭାଷା ମାର୍ଜିତ ସୁରୁଚିସମ୍ପନ୍ନ କମନୀୟ ଓ ମଧୁମୟ ହେବା ଉଚିତ । ବ୍ୟାକରଣ ଶାସ୍ତ୍ରକୁ ମାନ୍ୟକରି ଚଳିବା ଶ୍ରେୟସ୍କର । ସଂସ୍କୃତରୁ ସାଧୁ ଶବ୍ଦ ଆସି ଆମ୍ଭର ସାହିତ୍ୟକୁ ଗଠନ କରିଅଛି । ପ୍ରାକୃତ ତଥା ସାଧୁଶବ୍ଦର ସମାବେଶରେ ଆମ୍ଭର ସାହିତ୍ୟ ଗଠିତ ତଥା ନିର୍ମିତ । ବଙ୍ଗ,



Digitized by srujanika@gmail.com

ମୈଥିଳୀ, ଆସାମୀ, ଗୁଜୁରାଟୀ, ଓଡ଼ିଆ ପ୍ରଭୃତି ଭାଷାଗୁଡିକର ମୂଳ ଶବ୍ଦଗୁଡିକ ଏକ ଭାବାପନ୍ନ, ସେହି ସଂସ୍କୃତରୁ ଆଗତ। ଭାଷାଗୁଡିକ ମଧ୍ୟରେ ପ୍ରାଦେଶିକ ଯାବନିକ ଶବ୍ଦର ସଂମିଶ୍ରଣ ଅଛି । ଏବେ ଭାଷାରେ କ୍ରମେ କ୍ରମେ ପାଶ୍ଚାତ୍ୟ ଶବ୍ଦର ପ୍ରୟୋଗ ଦେଖାଯାଉଅଛି । ସଂପୂର୍ଣ୍ଣ ସାଧୁଭାଷାରେ ସାହିତ୍ୟ ଲେଖାଗଲେ ଅନ୍ୟାନ୍ୟ ଦେଶର ଲୋକେ ବୁଝିବାକୁ ସହଜ ସୁବୋଧ ହେବ । ପ୍ରାଦେଶିକ ଗୃହଚଳିତ ଭାଷାରେ ସାହିତ୍ୟ ଗଠିତ ହେଲେ ଅନ୍ୟ ଦେଶରେ ଆମ୍ଭର ସାହିତ୍ୟର ସ୍ଥାନ ରହିବ ନାହିଁ । ଅନ୍ୟ ଦେଶର କଥା ଛାଡ, ସମ୍ବଲପୁରୀ ଭାଷାରେ ଯଦି ସାହିତ୍ୟ ଲେଖାଯାଏ ତେବେ କଟକୀ ଓଡ଼ିଆ ତାହା ପଢ଼ିବେ କି ? ଯଦି ପଢ଼ନ୍ତି ତାଙ୍କ ପକ୍ଷେ ସୁବୋଧ ହେବ କି ? ଓଡ଼ିଶାରେ କେତୋଟି ଜିଲ୍ଲା ଅଛି । ପ୍ରତି ଜିଲ୍ଲାର କଥିତ ଭାଷା ସ୍ୱତନ୍ତ୍ର ଭାବାପନ୍ନ । ବାଲେଶ୍ୱରର କଥିତ ଭାଷା କଟକରେ ଚଳେ ନାହିଁ । କଟକର ଭାଷା ପୁରୀରେ ଚଳେ ନାହିଁ । ଗଂଜାମ, ସମ୍ବଲପୁରର କଥିତ ଭାଷା ଭିନ୍ନ ଭିନ୍ନ ଭାବରେ କଥିତ ହୋଇଥାଏ । ସିଂହଭୂମି ଓଡ଼ିଆ ଘରେ ଯେପରି ଓଡ଼ିଆ ବ୍ୟବହାର କରେ ସେପରି ଭାଷା ଓଡ଼ିଶାରେ ଅନ୍ୟତ୍ର ଦେଖାଯାଏ ନାହିଁ । ଗଡଜାତଗୁଡିକରେ ସ୍ୱତନ୍ତ୍ର ସ୍ୱତନ୍ତ୍ର କଥିତ ଭାଷା ବ୍ୟବହୃତ ହୋଇଥାଏ । ଏ ବିଷୟରେ ବିସ୍ତାରିତ ଭାବେ ଆଲୋଚନା କରିବାର ପ୍ରୟୋଜନ ନାହିଁ । ବଙ୍ଗ ଦେଶରେ ପୂର୍ବବଙ୍ଗର କଥିତଭାଷା ପଶ୍ଚିମବଙ୍ଗର କଥିତ ଭାଷାଠାରୁ ସ୍ୱତନ୍ତ୍ର । ଚଟ୍ଟଗ୍ରାମର ଲୋକେ ଘରେ ଯେଉଁ ଭାଷାରେ କଥା କହନ୍ତି, ବର୍ଦ୍ଧମାନର ଲୋକେ ତାହା ବୁଝିବେ ନାହିଁ । ପ୍ରତି ଜିଲ୍ଲାରେ ସ୍ୱତନ୍ତ୍ର କଥିତ ଭାଷା ପ୍ରଚଳିତ ଅଛି । କଥିତ ଭାଷା ସର୍ବତ୍ର ସମାନ ନୁହେଁ । ହିନ୍ଦୀ ଭାଷୀଙ୍କ ମଧ୍ୟରେ କଥିତ ଭାଷା ଭିନ୍ନ ଭିନ୍ନ ଆକାରରେ ପ୍ରଦର୍ଶିତ ହେଉଅଛି । ସେମାନଙ୍କର କଥିତ ଭାଷାରେ ଯେଉଁ କ୍ଲିଷ୍ଟତା ତଥା କାଠିନ୍ୟ ଦେଖାଯାଏ, ଲିଖିତ ସାଧୁ ଭାଷାରେ ତାହା ଥାଏ ନାହିଁ । ସରଳ ମଧୁର ସାଧୁ ଭାଷାରେ ମୈଥଳୀ ପଣ୍ଡିତ କଥା କହିଲେ ଓଡ଼ିଆ ଅକ୍ଲେଶରେ ବୁଝିବ । ମାତ୍ର ଗୃହ ପ୍ରଚଳିତ ଭାଷାରେ ମୈଥଳୀ ପଣ୍ଡିତ କଥା କହିଲେ ଓଡ଼ିଆ ବୁଝିବ କି ?

ସାଧୁ ଭାଷାରେ ଓଡ଼ିଆ ସାହିତ୍ୟ ଲେଖାଗଲେ ବା କହିଲେ, ଭିନ୍ନ ଭାଷୀମାନେ ଅକ୍ଲେଶରେ ବୁଝିପାରିବେ । ମାତ୍ର ଗୃହ ପ୍ରଚଳିତ କଥିତ ଭାଷାରେ ସାହିତ୍ୟ ଲେଖାଗଲେ ଅନେକ ତାହା ବୁଝିବାକୁ କ୍ଷମ ହେବେ ନାହିଁ। ଯେଉଁମାନେ କଥିତ ଭାଷାରେ ସାହିତ୍ୟକୁ ଚଳାଇବାକୁ ଇଚ୍ଛା କରନ୍ତି ସେମାନେ ଦିବ୍ୟ ଚିତ୍ତରେ ତାହା ବିଚାର କରିବା ଦରକାର । କଥିତ ଭାଷାରେ ସାହିତ୍ୟ ଲେଖାଗଲେ ଭାଷା ସଂକୀର୍ଣ୍ଣ, ଅନୁଦାର ହୋଇ ରହିବ ।



Digitized by srujanika@gmail.com

କ୍ରମେ କ୍ରମେ ଏପରି ଦୁର୍ଦ୍ଦଶାରେ ପଡିବ ଯେ ତାହା କହିବା ସମ୍ଭବପର ହେବ ନାହିଁ । ଯଦି ଓଡ଼ିଆ ନିଜର ସାହିତ୍ୟକୁ ସରଳ ସାଧୁ ଭାଷାରେ ଚଳାଇବାକୁ ସଚେଷ୍ଟ ରହେ ତେବେ ତାର ଭବିଷ୍ୟତ ଉଜ୍ଜ୍ୱଳ ତେଜୋମୟ ହେବ । ଯଦି ଗ୍ରାମ୍ୟ ଭାଷାରେ ସାହିତ୍ୟକୁ ଗଠନ କରାଯାଏ ତେବେ ତାହାର ଅସ୍ତିତ୍ୱ ଲୁପ୍ତ ହେବା ଅସମ୍ଭବ ହେବ ନାହିଁ । ସାହିତ୍ୟ ଯଦି ସାଧୁ ସରଳ ଭାଷାରେ ଲେଖାଯାଏ, ତେବେ ସେହି ସାହିତ୍ୟ ଦିନେ କଥିତ ଭାଷାକୁ ଦମନ କରି ନିଜର ଗୌରବ ବଢ଼ାଇବ । ଶିକ୍ଷିତ ବ୍ୟକ୍ତି କଥା କହିଲାବେଳେ ସାଧୁ ଶବ୍ଦ ବ୍ୟବହାର କରିଥାଏ । ବକ୍ତୃତା ଦେଲାବେଳେ ମନୋରମ ତେଜୋବ୍ୟଂଜକ କଥା କହି ଶ୍ରୋତାଙ୍କୁ ମୋହିତ ଚମକିତ କରି ଭାଷାକୁ ତଥା ସାହିତ୍ୟକୁ ଉତ୍କର୍ଷ ଆଡକୁ ଟାଣିନିଏ । ଭାରତରେ ହିନ୍ଦୀକୁ ରାଷ୍ଟ୍ରଭାଷା କରିବାକୁ ନାଗରୀ ଲିପିକୁ ଭାରତୀୟ ସାର୍ବଜନୀନ ଲିପି ରୂପେ ଚଳାଇବାକୁ ଚେଷ୍ଟା ଲାଗିଅଛି । ଯଦି ସାଧୁ, ମାର୍ଜ୍ଜିତ ଭାବାପନ୍ନ ରୂପେ ହିନ୍ଦୀ ଭାଷା ବା ସାହିତ୍ୟକୁ ପ୍ରଚଳନ କରାଯାଏ, ତେବେ ଭାରତର ଅଧିକାଂଶ ବ୍ୟକ୍ତି ଅକ୍ଲେଶରେ ବୁଝିପାରିବେ । ଯଦି କଥିତ ଭାଷାରେ ହିନ୍ଦୀ ସାହିତ୍ୟକୁ ଗଠନ କରାଯାଏ ତେବେ ଭାରତରେ ଭାଷା ବିପ୍ଳବ କଦାକାର ରୂପେ ଦଣ୍ଡାୟମାନ ରହିବ। ଅନେକେ ପ୍ରାଦେଶିକ ସଂକୀର୍ଣ୍ଣତାକୁ ହେୟ ଚକ୍ଷୁରେ ଦେଖିଥାନ୍ତି । ପୁଣି କେହି କେହି ପ୍ରାଦେଶିକ ସଂକୀର୍ଣ୍ଣତାକୁ ବଜାୟ ରଖିବାକୁ ସଚେଷ୍ଟ ଥାଇ ପ୍ରାଦେଶିକତାର ମୋହରେ ମଜ୍ଜିତ ରହି ସାର୍ବଜନୀନ ଉଦାରଭାବ ଉପରେ ପଦାଘାତ କରିବାର ଦେଖାଯାଇଥାଏ । ସେମାନଙ୍କର ଲକ୍ଷ୍ୟ ବା ଉଦ୍ଦେଶ୍ୟ କ'ଣ, ତାହା ସର୍ବସାଧାରଣ ଜାଣିବା ଉଚିତ ନୁହେଁ କି ? କଟକ ଓଡ଼ିଶାର ରାଜଧାନୀ । କଟକୀ ଓଡ଼ିଆ ଯେଉଁ ଭାଷାରେ କଥା କହେ ସେହି ଗ୍ରାମ୍ୟ ଭାଷାକୁ ସାହିତ୍ୟ ଭିତରେ ରଖି କଟକୀ ଭାଷାର ପ୍ରଚଳନ କରିବାକୁ ଯେଉଁମାନେ ସଚେଷ୍ଟ ସେମାନଙ୍କର ବୁଦ୍ଧିବୃତ୍ତିକୁ ପ୍ରଶଂସା କରାଯିବ ନା ଯେଉଁମାନେ ସରଳ ସାଧୁ ମଧୁର ଭାଷାରେ ସାହିତ୍ୟ ଗଠନ କରି ସମଗ୍ର ପ୍ରଦେଶରେ ଗୋଟିଏ ସାହିତ୍ୟିକ ଢେଉ ଖେଳାଇବାକୁ ସଚେଷ୍ଟ ଅଛନ୍ତି ସେମାନଙ୍କୁ ପ୍ରଶଂସା କରାଯିବ । ତାହା ଥରେ ଭାବିବାର କଥା । ଯଦି ଓଡ଼ିଶାରେ ସରଳ ମଧୁର ଭାଷାରେ ସାହିତ୍ୟ ଲେଖାଯାଏ ତେବେ ଓଡ଼ିଆ ଭାଷାର ମହତ୍ତ୍ୱ ସ୍ୱଦେଶରେ ତଥା ଭିନ୍ନ ଦେଶରେ ଦେଖାପଡିବ । ଯଦି ଗ୍ରାମ୍ୟ ଭାଷାରେ ସାହିତ୍ୟ ଚଳେ ତେବେ ଓଡ଼ିଆ ସାହିତ୍ୟ ପଙ୍ଗୁ ଅକର୍ମଣ୍ୟ ରୂପେ ପ୍ରତିଭାତ ହେବ ନାହିଁ କି ?

'ଶଙ୍ଖ' ପତ୍ର ଯୋଗେ କଥିତ ଭାଷାକୁ ସାହିତ୍ୟରେ ପ୍ରଚଳନ କରିବାର ଗୋଟିଏ ଗୁପ୍ତ ଚେଷ୍ଟା ଲାଗିଅଛି । କେତୋଟି ଲେଖାରେ ପ୍ରାଦେଶିକ ଉତ୍କଟତା ଦେଖା ପଡିଲାଣି ।



Digitized by srujanika@gmail.com

ଶ୍ରୀମାନ୍ ସୂପକାର, ଶ୍ରୀମାନ୍ ପଣ୍ଡା, ଶ୍ରୀମାନ ସାହୁ, ଶ୍ରୀମାନ ତ୍ରିପାଠୀ, ଶ୍ରୀମାନ ଦାସ ପ୍ରଭୃତି ଲେଖକମାନେ କଥିତ ଭାଷାକୁ ସାହିତ୍ୟରେ ସ୍ଥାନ ଦେବାକୁ ଅପୂର୍ବ ଆୟୋଜନ କରୁଅଛନ୍ତି । ସମ୍ବଲପୁରରେ ପ୍ରଚଳିତ କଥିତ ଭାଷାରେ ଗଳ୍ପ, ଉପନ୍ୟାସ, କବିତା ଲେଖିବାକୁ କେହି କେହି ପ୍ରୟାସ କରୁଅଛନ୍ତି। ସମ୍ବଲପୁରରେ କଥିତ ଗ୍ରାମ୍ୟ ଭାଷାର ଉତ୍ପତ୍ତି କେଉଁଠାରୁ ? ତାହାର ପାରିପାର୍ଶ୍ୱିକ ଅବସ୍ଥା କିପରି ? ତାହା ଅନୁମୋଦକ ଲେଖକମାନେ ଭାବିବାର ସୁବିଧା ପାଇ ନାହାଁନ୍ତି ପରା ? ସମ୍ବଲପୁର ଅଞ୍ଚଳରେ କଥିତ, ପ୍ରଚଳିତ ଗ୍ରାମ୍ୟ ଭାଷାର ମୂଳତତ୍ତ୍ୱ ଆଲୋଚନା କଲେ ଦେଖାଯିବ, ଏହି ଭାଷା ସାଧୁ ଓଡ଼ିଆ ଭାଷାରୁ ଉଦ୍ଭୂତ ହୋଇନାହିଁ । ଏହାର ମୂଳପିଣ୍ଡ ଛତିଶଗଡିଆ ହିନ୍ଦୀରୁ ଆଗତ । 'ଲରୀହା' ଭାଷା ନାମରେ ଗୋଟିଏ ଭାଷା ମଧ୍ୟ ପ୍ରଦେଶରେ ପ୍ରଚଳିତ ଅଛି । ଏହା ଓଡ଼ିଆ ଭାଷା ନୁହେଁ । କଥିତ ହିନ୍ଦୀ ଭାଷାରୁ ଏହା ସୃଷ୍ଟି ହୋଇଅଛି । ଏହି ଭାଷାରେ ହିନ୍ଦୀ ସାହିତ୍ୟ ଲେଖାଯାଏ ନାହିଁ । ଏହି 'ଲରୀହା' ହିନ୍ଦୀକୁ ଅମାର୍ଜିତ ଭାଷା ବୋଲିବା ଅସଂଗତ ହେବ ନାହିଁ । ଯଦି ସମ୍ବଲପୁରରେ ଏହି ଭାଷା ପ୍ରଚଳନର ଚେଷ୍ଟା ହୁଏ, ପୁଣି ଏହି ଭାଷାକୁ ଆଦର କରାଯାଏ, ତେବେ ସମ୍ବଲପୁରକୁ ଓଡ଼ିଶାରେ ସଂଯୁକ୍ତ କରି ରଖିବାର କୌଣସି ଆବଶ୍ୟକ ନାହିଁ । ହିନ୍ଦୀ ଭାଷୀଙ୍କୁ ସମ୍ବଲପୁର ଜିଲ୍ଲା ଛାଡିଦେବା ଉଚିତ । ଭାଷା ସୂତ୍ରରେ ପ୍ରଦେଶ ଗଠନ ହେବ ବୋଲି ଗୋଟିଏ ନୂତନ ସ୍ୱର ଶୁଣାଗଲାଣି । ସମ୍ବଲପୁରରେ ଯଦି ହନ୍ଦୀ 'ଲରୀହା' ଭାଷା ସମସ୍ତଙ୍କର କାମ୍ୟ ହୁଏ, ତେବେ ସମ୍ବଲପୁର ଓଡ଼ିଶା ଭିତରେ ରହିବ କାହିଁକି ? ମହାମନା ଏଣ୍ଡ୍ରୁର ଫ୍ରେଜରଙ୍କର ଶୁଭ ଚେଷ୍ଟା ଉପରେ ଯେଉଁମାନେ ଧୂଳି ନିକ୍ଷେପ କରିବାର ଚେଷ୍ଟା କରୁଅଛନ୍ତି, ସେମାନଙ୍କୁ ଦିବ୍ୟ ଚିତ୍ତରେ ସମସ୍ତ ବିଷୟ ଆଲୋଚନା କରିବାକୁ ବିନୀତ ପ୍ରାର୍ଥନା କରାଯାଇପାରେ ।

ଅନେକ ଭାଷା ସଂସ୍କାରକ ପାଠ୍ୟପୁସ୍ତକରେ କଟକୀ ପ୍ରଚଳିତ କଥିତ ଭାଷାକୁ ସ୍ଥାନ ଦେବାକୁ ଚେଷ୍ଟା କରୁଅଛନ୍ତି । କଟକର ପ୍ରଚଳିତ ଭାଷାର ପ୍ରକୃତ ଅର୍ଥ କଣ ତାହା ବୁଝିବାକୁ ସମ୍ବଲପୁରୀ, ଗଞ୍ଜାମୀ ଛାତ୍ରଙ୍କୁ କଟକ ଯିବାକୁ ପଡିବ ନା ନୀରବରେ ରହି ତାହା ସହ୍ୟ କରିବାକୁ ପଡିବ । ଭାଷାକୁ ବିଶ୍ରୀ, ଅଙ୍ଗହୀନ ଓ ସୌନ୍ଦର୍ଯ୍ୟହୀନ କରିବାକୁ ଯେଉଁମାନେ ଇଚ୍ଛୁକ, ସେମାନେ ତାହା କରନ୍ତୁ । ଓଡ଼ିଶା ସୀମା ନେଇ ବିକଳାଙ୍ଗ ଥିଲା । ତାକୁ ସୌନ୍ଦର୍ଯ୍ୟଯୁକ୍ତ ନ କରି ପୁଣି ବିକଳାଙ୍ଗ କରିବାର ପ୍ରୟାସ ହେଉଥିବା ଅତୀବ ଦୁଃଖର କଥା ନୁହେଁ କି ?



Digitized by srujanika@gmail.com

ସମ୍ବଲପୁର ବହୁଦିନ ହେଲା ଓଡ଼ିଶା ସହିତ ମିଶିଲାଣି, ଯଦି ସମ୍ବଲପୁରରେ ଶୁଦ୍ଧ ଓଡ଼ିଆ ଭାଷାର ପ୍ରଚଳନ ଦେଖାଯାଉ ନାହିଁ ତେବେ ମନେ କରିବାକୁ ହେବ ଯେ ଏ ଜିଲ୍ଲାରେ ଶିକ୍ଷା ପ୍ରଚାର ଆଜି ନିମ୍ନ ସ୍ତରରେ ଅଛି । କଥିତ ଭାଷା କଥିତାକାରରେ ଥାଉ, ତାକୁ ନେଇ ଆନ୍ଦୋଳନ ନ କରି ସରଳ ସାଧୁ ଭାଷାର ପ୍ରଚଳନ ଚେଷ୍ଟା କରାଯାଉ । କ୍ରମେ କଥିତ ଭାଷା ମ୍ଳାନ ହୋଇଯିବ, ସାଧୁ- ସରଳ ଭାଷାର ପ୍ରଚଳନ ବଢ଼ିବ । ଗ୍ରାମ୍ୟ କଥିତ ଭାଷା, ସାଧୁ ଭାଷାର ବ୍ୟବହାରର ଉପକାରିତା ଓ ଅପକାରିତା ସମ୍ବନ୍ଧେ ବ୍ୟକ୍ତିଗତ ଅଭିଜ୍ଞତାମୂଳକ ଗୋଟିଏ ଯୋଡିଏ ଘଟଣା ଏହିଠାରେ ବିବୃତ କରି ଏ ପ୍ରସ୍ତାବ ଶେଷ କରାଯାଉ-

ଆଜକୁ ୧୪।୧୫ ବର୍ଷ ପୂର୍ବେ ବଙ୍ଗ ରାଜଧାନୀ କଲିକତା ନଗରୀକୁ ଏହି ଲେଖକ ଯାଇଥିଲା । ଏକଦିନ ଚିତ୍ତରଞ୍ଜନ ଏଭିନ୍ୟୁସ୍ଥ ଅସ୍ଥାୟୀ ବାସଭବନରୁ ଭବାନୀପୁର ଆଡକୁ ଦେଖିବାକୁ ଯିବାକୁ ପଡିଥିଲା, ଭବାନୀ ପୁରସ୍ଥ ଚକ୍ରବେଡ଼ ରୋଡସ୍ଥ ଗୋଟିଏ ଭବନରେ ଅଳ୍ପକ୍ଷଣ ରହି ବସ୍ ଯୋଗେ ପୁଣି ଅସ୍ଥାୟୀ ଭବନକୁ ଫେରିଆସିବାକୁ ହୋଇଥିଲା । ଗୋଟିଏ ବସ୍‌ରେ ଆମେ ତିନିଜଣ ଉତ୍କଳଭାଷୀ ଥିଲୁଁ, ଆଉସବୁ ବଙ୍ଗୀୟ, ଆମ୍ଭେ ଦୁଇଜଣ ଏକତ୍ରରେ ବସିଥିଲୁଁ, ଅନ୍ୟ ଜଣକ ଆମ୍ଭର ପଶ୍ଚାତ୍ ଦିଗରେ ବସିଥିଲେ । ଆମ୍ଭେ ଦୁଇଜଣ ସାର ୍ ଆଶୁତୋଷଙ୍କ ଜୀବନ ଚରିତ, ସୁଖ୍ୟାତି ଆଲୋଚନା କରୁଥାଉଁ, କାରଣ ଭବାନୀପୁରସ୍ଥ ଆଶୁତୋଷ ବାସଭବନ ଦେଖି ଆସିଥିଲୁଁ । ଆମ୍ଭେ ଦୁଇଜଣ ସରଳ ସାଧୁ ଭାଷାରେ ଆଳାପ କରୁଥାଉ- ଗ୍ରାମ୍ୟ କଥିତ ଭାଷା ବ୍ୟବହାର ହେଉ ନଥାଏ । ଆମ୍ଭର ପାଶ୍ଚାତ୍ ଦିଗରେ ଆମ୍ଭର ସହଯାତ୍ରୀ ବସିଥାନ୍ତି, ତାଙ୍କ ନିକଟରେ ଜଣେ ବଙ୍ଗୀୟ ଭଦ୍ରଲୋକ ବସିଥାନ୍ତି, ଆମ୍ଭର ସହଯାତ୍ରୀଙ୍କୁ ବଙ୍ଗୀୟ ମନେ କରି କହିଲେ ଏହି ଦୁଇଜଣ ଭଦ୍ରଲୋକ କେଉଁ ଦେଶର ? ଆମ୍ଭର ସହଯାତ୍ରୀ ବଙ୍ଗଳାରେ ଉତ୍ତର ଦେଲେ ଏମାନେ ଉତ୍କଳ ଦେଶର । ଭଦ୍ରଲୋକ କହିଲେ, କଟକୀ ଓଡ଼ିଆ ଅସଂଖ୍ୟ କଲିକତାରେ ଅଛନ୍ତି, ସେମାନଙ୍କର ଭାଷା ସହିତ ଏହି ଭାଷା ତୁଳନାରେ ପାର୍ଥକ୍ୟ ମନେହୁଏ । ସେମାନଙ୍କର କ୍ରିୟାପଦ ସହ ଏମାନଙ୍କର କ୍ରିୟାର ସାଦୃଶ୍ୟ ରହୁ ନାହିଁ । ସରଳ ସାଧୁ ଭାଷାରେ କଥା ହେଉଥିବାରୁ ଆମ୍ଭେ ସବୁ ବୁଝୁଅଛୁଁ। ଆମ୍ଭଙ୍କୁ ଏହି ଭାଷା ମଧୁର, ସୁଶ୍ରାବ୍ୟ ମନେ ହେଉଛି ।

ପରଦିନ ସକାଳେ ମ୍ୟୁନିସିପାଲ୍ ମାର୍କେଟ୍ ଦେଖିବାକୁ ଗଲୁଁ। ଆମ୍ଭେ ତିନିଜଣ ବନ୍ଧୁ ଏକତ୍ରରେ ଥାଉଁ, ବଜାର ମଧରେ ଗୋଟିଏ ସାହେବ ଟୋପୀ ବିକ୍ରୟ ହେଉଥିବା ଦୋକାନ ପାଖରେ ଦଣ୍ଡାୟମାନ ରହିଲୁଁ, ଆମ୍ଭର ସହଯାତ୍ରୀ ଜଣେ ଗୋଟିଏ ଟୋପୀ ଖରିଦ୍ କରିବାକୁ



Digitized by srujanika@gmail.com

ଚେଷ୍ଟା କଲେ । ଆମ୍ଭେ ଦୁଇଜଣ ବାରଣ୍ଡାରେ ଦଣ୍ଡାୟମାନ ହୋଇ ନାନାବିଧ ଗଳ୍ପ କରିଥାଉଁ । ଟୋପୀ ଦୋକାନରେ ୫।୭ ଜଣ ବଙ୍ଗୀୟ ଭଦ୍ରଲୋକ ଥିଲେ, ସେମାନଙ୍କ ମଧ୍ୟରୁ କେହି କେହି ଆମ୍ଭର କଥୋପକଥନ ଶୁଣୁଥାନ୍ତି, ସେମାନଙ୍କ ମଧ୍ୟରୁ ଜଣେ ଭଦ୍ରଲୋକ ଆମ୍ଭର ପାଖକୁ ଆସି କହିଲେ, ଆପଣମାନେ କେଉଁ ଦେଶର ଲୋକ ? ଆମ୍ଭେ ସାଧୁ ଭାଷାରେ ଓଡ଼ିଆରେ ଉତ୍ତର ଦେଲୁ ଉତ୍କଳ ଦେଶର, ଯେଉଁ ଦେଶରେ ଶ୍ରୀଜଗନ୍ନାଥ ବିଦ୍ୟମାନ ରହିଅଛନ୍ତି । ତତ୍‌କ୍ଷଣାତ୍ ସେହି ଭଦ୍ରଲୋକ କହିଲେ ନା, କଟକ, ପୁରୀ ଅଞ୍ଚଳର ଭାଷା ଆମ୍ଭେମାନେ ଶୁଣିଅଛୁଁ । ଆପଣଙ୍କର ଭାଷା ମଧୁର ସୁଶ୍ରାବ୍ୟ ପ୍ରାଦେଶିକ ଉତ୍କଟତା ଆପଣଙ୍କ ଭାଷାରେ ଦେଖାଯାଉ ନାହିଁ । ଉତ୍କଳର କେଉଁ ଅଞ୍ଚଳରେ ଆପଣମାନଙ୍କର ନିବାସ ? ଆମ୍ଭେ ଉତ୍ତର ଦେଲୁଁ, ଗୋଟିଏ ସ୍ୱାଧୀନ ଦେଶୀୟ ରାଜ୍ୟରେ। ସେ ତତ୍‌କ୍ଷଣାତ୍ କାଷ୍ଠାସନ ଆଣି ଆମ୍ଭମାନଙ୍କୁ ଆଦରରେ ବସାଇଲେ, ପାନ ଇତ୍ୟାଦି ଦେଇ ମୁଗ୍ଧ କଲେ ।

ଆଜକୁ ପଚିଶ ବର୍ଷ ପୂର୍ବେ ବିହାରରୁ ଜଣେ ଯୁବକ ଭ୍ରମଣକାରୀ ବାମଣ୍ଡାକୁ ଆଗମନ କରିଥିଲେ । ସେ ଜଣେ ପ୍ରଚାରକ। ସ୍ଥାନୀୟ ଗୋଟିଏ ଘରରେ ଗୋଟିଏ ଭାଷଣ ଦେଇଥିଲେ, ହିନ୍ଦୀ ଭାଷାରେ ପ୍ରାୟ ଦୁଇଘଣ୍ଟା ସମୟ ଅତିବାହିତ ହୋଇଥିଲା, ସମସ୍ତ ଶ୍ରୋତା ଉତ୍କଳଭାଷୀ । ୨।୫ ଜଣ ବଙ୍ଗୀୟ ଭଦ୍ରଲୋକ ଥିଲେ । ସେହି ମଧୁର ଅଭିଭାଷଣ ଶୁଣି ସମସ୍ତେ ଆନନ୍ଦିତ ହେଲେ, ହିନ୍ଦୀଭାଷାକୁ ପ୍ରଶଂସା କଲେ, କହିଲେ ହିନ୍ଦୀ ଭାଷାରେ ଏପରି ମଧୁର- ସାଧୁଶବ୍ଦ ଅଛି, ଆମ୍ଭମାନଙ୍କର ଜଣା ନଥିଲା, ଏପରି ଅଭିଭାଷଣ ଆମ୍ଭମାନଙ୍କୁ ମୁଗ୍ଧ ଆନନ୍ଦିତ କରିଅଛି, ଆମ୍ଭେ ସବୁ ବୁଝିଅଛୁଁ । ସରଳ ମଧୁର ସାଧୁଭାଷାର ସାରତା ଦେଖାଗଲା, ପ୍ରାଦେଶିକ ଗ୍ରାମ୍ୟ ଭାଷା ସମ୍ବନ୍ଧେ ଦୁଇକଥା କହି କାର୍ଯ୍ୟ ଶେଷ କରାଯାଉ ।

କଟକର ଜଣେ ଗଉଡୁଣୀକୁ କବି ଫକୀରମୋହନ କହିଲେ- କାଲି ଆସିବୁ ତୋର ପଇସା ଚୁକେଇ ଦେବି । ଏହି ଭାଷା ଶୁଣି ଗଉଡୁଣୀ ସେନାପତିଙ୍କ ପାଖରୁ ବାହାରିଗଲା । ଏପରି ଅସଭ୍ୟ ଭାଷା କହିବେ ନାହିଁ ବୋଲି କହିଲା । ଏହି ଘଟଣା କବି ଫକୀରମୋହନ ଏହି ଲେଖକକୁ କହିଥିଲେ ।

ଜଣେ କଟକୀ ଭଦ୍ରଲୋକ ସମ୍ବଲପୁରକୁ ଆସି କାର୍ଯ୍ୟ କରୁଥିଲେ । ଦିନେ ଚାକରକୁ କହିଲେ, ଏକାଦଶୀ କରିବା ଛେନା ଦୁଇ ଚାରିଅଣାର ଆଣିବୁ, ପରଦିନ ଚାକର ଶୁଷ୍କ ଗୋବର କେତେଗୁଡିଏ ଖରିଦ କରି ଆଣି କହିଲା ହଜୁର ଛେନା ରଖନ୍ତୁ, ସମ୍ବଲପୁର ଆଡେ ଶୁଷ୍କ ଗୋବରକୁ ରଖି ଜାଳ ରୂପେ ବ୍ୟବହାର ହୁଏ, ତାହାକୁ ଛେନା ବୋଲି କହନ୍ତି, ବାବୁ ଆଚମ୍ବିତ, ଚିନ୍ତାଯୁକ୍ତ ହୋଇ ରହିଲେ । **(ଶଙ୍ଖ ୧।୧୧-୧୨)**



Digitized by srujanika@gmail.com

## ଆମପ୍ରତି ନାନା ଅଭିଯୋଗ

ଶ୍ରୀଯୁକ୍ତ ବୃନ୍ଦାବନ ନାଥଶର୍ମା ଶଂଖର ଏହି ସଂଖ୍ୟାରେ ପ୍ରକାଶିତ ତାଙ୍କର ପ୍ରବନ୍ଧରେ ଅଭିଯୋଗ କରିଛନ୍ତି ଯେ କଥିତ ଭାଷାକୁ ସାହିତ୍ୟରେ ପୁରେଇବା ପାଇଁ 'ଶଙ୍ଖ'ରେ ଏକ 'ଗୁପ୍ତ' ଚେଷ୍ଟା ଚାଲିଛି ।

ନାଥଶର୍ମାଙ୍କର ଏ ଧାରଣା ଏକାନ୍ତ ଅମୂଳକ । ଆମ୍ଭମାନଙ୍କର ସମସ୍ତ ଚେଷ୍ଟା ପ୍ରକାଶିତ- 'ଗୁପ୍ତ' କିଛି ନାହିଁ । ଏବଂ ଏ ଦିଗରେ ଆମର କୌଣସି 'ଚେଷ୍ଟା' ଅଛି ବୋଲି ମଧ୍ୟ ଆମର ଧାରଣା ନାହିଁ ।

ଶଙ୍ଖରେ ଯାହାକିଛି ପ୍ରକାଶିତ ହେଉଛି ସାହିତ୍ୟ ହିଁ ତା'ର ଏକମାତ୍ର ମାନଦଣ୍ଡ । କୌଣସି ଜିଲ୍ଲା ବା ବ୍ୟକ୍ତି ବା ଶ୍ରେଣୀ ବିଶେଷକୁ ପ୍ରାଧାନ୍ୟ ଦେବାର କଳ୍ପନା ହିଁ ଆମର ନାହିଁ। 'ଶଙ୍ଖ' ବାହାରିବାର ପ୍ରଥମ  ଅବସ୍ଥାରେ ଆମେମାନେ ନାନା ଆଡୁ ଧମକ ପାଇବାକୁ ଲାଗିଲୁ ।

ଅଭିଯୋଗ ହେଲା ଯେ, ଆମେ 'କଟକୀ'- ତେଣୁ ସମ୍ବଲପୁରୀ ଲେଖକମାନଙ୍କୁ ଆମେ ଖାତିର କରୁନା, କେବଳ 'କଟକୀ'ମାନଙ୍କର ଲେଖାହିଁ ପ୍ରକାଶ କରବା ଆମର ସ୍ୱଭାବ ।

ଅଭିଯୋଗ ହେଲା ଯେ, ଓଡ଼ିଶାର ସମ୍ପାଦକମାନେ କେବଳ ତାଙ୍କର ଜଣାଶୁଣା ଲୋକଙ୍କର ଲେଖା ହିଁ ପ୍ରକାଶ କରନ୍ତି ।

ଅଭିଯୋଗ ପାଇଲୁ ଯେ, ତରୁଣ ଲେଖକମାନଙ୍କୁ ଉତ୍ସାହ ଦିଆଯାଉନି, ସମ୍ପାଦକମାନେ କେବଳ ଜଣାଶୁଣା ଲେଖକମାନଙ୍କର ଲେଖାକୁ ନ ପଢ଼ି ଛାପି ଦିଅନ୍ତି ।

ଏବେ ନିକଟରେ ଏକ ଧମକ-ପତ୍ର ବାମଣ୍ଡାରୁ ଆସିଛି ଯେ, ଶଙ୍ଖ ବାମଣ୍ଡା ଦରବାରର ଟଙ୍କାରେ ଚାଳିତ, କିନ୍ତୁ ବାମଣ୍ଡାର ଲେଖକ ଶଙ୍ଖରେ କାହାନ୍ତି ?

ଏ ସମସ୍ତ ଅଭିଯୋଗ ଭିତରେ 'ଶଙ୍ଖ'ର ସମ୍ପାଦକ ଅଟଳ ।

ସେ ମନେ କରନ୍ତି ଯେ, 'ଶଙ୍ଖ' ବିରାଟ ଓଡ଼ିଆ ଜାତିର ପତ୍ରିକା, ଏହା କୌଣସି ଜିଲ୍ଲା ବା ଷ୍ଟେଟ୍ ବା ବିଶିଷ୍ଟ ଶ୍ରେଣୀକୁ ସନ୍ତୁଷ୍ଟ କରିବା ପାଇଁ ପ୍ରକାଶିତ ହେଉନାହିଁ । ସେ ପ୍ରକାର କ୍ଷୁଦ୍ର ଉଦ୍ଦେଶ୍ୟ ଥିଲେ, ଆମେ ଏ ପତ୍ରିକାର ସମ୍ପାଦକତ୍ୱ ଗ୍ରହଣ କରିନଥାନ୍ତୁ ।

ଯେହେତୁ ଏ ପତ୍ରିକା ସମଗ୍ର ଓଡ଼ିଆ ଜାତିର, ପ୍ରାପ୍ତ ଲେଖାମାନ ବିଚାର କରିବାରେ ଆମ୍ଭମାନଙ୍କର ଏକମାତ୍ର ମାନଦଣ୍ଡ ଆମେ ଧରି ନେଉଛୁ, ସାହିତ୍ୟିକ ଉତ୍କର୍ଷ । ଏ ମାନଦଣ୍ଡକୁ ଯେ ସନ୍ତୁଷ୍ଟ କଲା, ତାର ଲେଖା ପ୍ରକାଶିତ ହେଲା ଓ ସେ ପୁରସ୍କୃତ ହେଲା। ଅନ୍ୟ କୌଣସି ବିଚାର ଆମ୍ଭମାନଙ୍କୁ ବିଚଳିତ କରି ପାରିନି ।



Digitized by srujanika@gmail.com

ଫଳରେ ଏବେ ବର୍ଷ ଶେଷରେ ଦେଖୁଛୁଁ ଯେ ଏ ବର୍ଷ ଭିତରେ ଯେତେ ଲେଖା ଶଙ୍ଖରେ ବାହାରିଛି, ତାର ଅଧିକାଂଶ ଲେଖକ ସମ୍ପାଦକଙ୍କର ସମ୍ପୂର୍ଣ୍ଣ ଅପରଚିତ । ସେମାନେ ସମ୍ବଲପୁରର ହୋଇପାରନ୍ତି, କଟକର ହୋଇପାରନ୍ତି ବୟସ୍କ ଓ ପ୍ରସିଦ୍ଧ ହୋଇପାରନ୍ତି, ତରୁଣ ଓ ଅଜ୍ଞାତନାମା ବି ହୋଇପାରନ୍ତି – ସମ୍ପାଦକ ସେ ସବୁକୁ ଆଖିବୁଜି ଦେଇଛନ୍ତି । ବସ୍ତୁତଃ, ଶଙ୍ଖରେ ଏପରି ଅନେକ ଲେଖକ ଓ ଲେଖିକାମାନଙ୍କର ଲେଖା ବାହାରିଛି, ଯାହାଙ୍କର ନାମ ପୂର୍ବେ କେବେ ସାହିତ୍ୟ- ଜଗତରେ ଶୁଣାଇ ନ ଥିଲା ।

ଶଙ୍ଖରେ ମଧ୍ୟ ଉତ୍କଳ- ପତ୍ରିକା ଇତିହାସରେ ପ୍ରଥମଥର ପାଇଁ ଖାଣ୍ଟି ସମ୍ବଲପୁରୀ ଭାଷାକୁ ଗଦ୍ୟ ଓ ପଦ୍ୟରେ ପ୍ରକାଶ କରିବାକୁ ଦିଆଯାଇଛି । ଏହା ସମ୍ବଲପୁର ଭାଇମାନଙ୍କର ଧମକ ଭୟରେ ନୁହେଁ, କି ସେମାନଙ୍କୁ ସନ୍ତୁଷ୍ଟ କରିବାର ପ୍ରୟାସରୁ ନୁହେଁ । ଏଥିରେ ମଧ୍ୟ ସେହି ସାହିତ୍ୟିକ ମାନଦଣ୍ଡ ହିଁ କାର୍ଯ୍ୟ କରିଛି । ଶ୍ରୀ ଶ୍ରଦ୍ଧାକର ସୂପକାରଙ୍କ ଗଳ୍ପକୁ ପ୍ରଥମେ ଗଳ୍ପ ଭାବରେ ବିଚାର କରାଯାଇଛି ଓ ଶ୍ରୀ ନାକଫୁଡି ପଣ୍ଡାଙ୍କ ସମ୍ବଲପୁରୀ କବିତାକୁ କବିତା ଭାବରେ ବିଚାର କରାଯାଇଛି। ସେ ବିଚାରରେ ସନ୍ତୋଷଜନକ ହେବାରୁ ହିଁ ସେଗୁଡିକୁ ଶଙ୍ଖରେ ସ୍ଥାନ ଦିଆଯାଇଛି। ଅନ୍ୟ କୌଣସି 'ଗୁପ୍ତ ଚେଷ୍ଟା' ଯୋଗୁଁ ନୁହେଁ ।

ଗଳ୍ପର ନାୟକ ନାୟିକା ଖାଣ୍ଟି ସମ୍ବଲପୁରୀ ଥିବାରୁ ତାଙ୍କର କଥୋପକଥନ ସମ୍ବଲପୁରୀ ଭାଷାରେ ହେବା ସ୍ୱାଭାବିକ ଓ ସମୀଚୀନ । ଏମାନଙ୍କ ମୁହଁରେ ସାଧୁ ଓଡ଼ିଆ ଅତ୍ୟନ୍ତ ଅସ୍ୱାଭାବିକ ହୁଅନ୍ତା ନାହିଁ କି ?

ସଂସ୍କୃତ ନାଟକମାନଙ୍କରେ ପୁରୁଷମାନଙ୍କ କଥୋପକଥନ ଖାଣ୍ଟି ସଂସ୍କୃତରେ ଥାଏ, କିନ୍ତୁ ସ୍ତ୍ରୀ ଚରିତ୍ର ଓ ନୀଚଶ୍ରେଣୀର ଲୋକମାନଙ୍କର କଥୋପକଥନ ପ୍ରାକୃତିକ ଭାଷାରେ ଘଟିଥାଏ । ତାର କାରଣ ବୋଧହୁଏ ଏଇ ଯେ ପୂର୍ବେ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ବା ଅଶିକ୍ଷିତମାନଙ୍କର ଭାଷା ଭିନ୍ନ ଭିନ୍ନ ଥିଲା ଏବଂ ସ୍ୱାଭାବିକତା ଦୃଷ୍ଟିରେ ସଂସ୍କୃତ କବିମାନେ ଭିନ୍ନ ଭିନ୍ନ ଚରିତ୍ର ମୁଖରେ ଭିନ୍ନ ଭିନ୍ନ ଭାଷା ଦେଇଛନ୍ତି ।

ଅସମ୍ବଲପୁରୀ ଓଡ଼ିଆମାନେ ସମ୍ବଲପୁରୀ ଭାଷା ସଂଗେ କ୍ରମେ କ୍ରମେ ପରିଚିତ ହେବା ନିତାନ୍ତ ଉଚିତ । ଆମର ଦୃଢ଼ ଧାରଣା ଯେ ସମ୍ବଲପୁରୀ କଥିତ ଭାଷାରେ ଅନେକ ଉପାଦେୟ ଉପାଦାନ ଅଛି ଯାହା ଷ୍ଟାଣ୍ଡାର୍ଡ ଓଡ଼ିଆରେ ମିଶିବାର ଶ୍ରେୟସ୍କର ।

ସ୍କଟିଶ୍ କବି ବର୍ଣ୍ଣସ୍ ତାଙ୍କର ପ୍ରାଦେଶିକ ଭାଷାରେ କବିତା ଲେଖିଛନ୍ତି । କିନ୍ତୁ ସେଗୁଡିକର ପରମ ଉତ୍କର୍ଷ ଯୋଗୁ ପ୍ରତ୍ୟେକ ଇଂରେଜି କବିତା -ସଂଗ୍ରହରେ ସେଗୁଡିକ ସ୍ଥାନ ପାଇଆସୁଛି।



Digitized by srujanika@gmail.com

ଖାଣ୍ଟି ସମ୍ବଲପୁରୀ ଭାଷାରେ ଲିଖିତ ହୋଇଥିଲେ ହେଁ ନାକଫୁଡି ପଣ୍ଡାଙ୍କର କବିତାଟି ସର୍ବତ୍ର ଆଦୃତ ହୋଇଥିବାର ଆମ୍ଭେମାନେ ଖବର ପାଇଛୁ । ତେଣୁ ତାକୁ ପ୍ରକାଶ କରିବା ଦ୍ୱାରା 'ଶଙ୍ଖ'ର ସମ୍ପାଦକ କୌଣସି ଅନ୍ୟାୟ କରିଛନ୍ତି ବୋଲି ମନେ କରନ୍ତି ନାହିଁ ।

ଏବଯାଏଁ ଅନେକ ସମ୍ବଲପୁରୀ ଭାଷା- ଲିଖିତ ବା ସମ୍ବଲପୁରୀ ଭାଷା ବହୁଳ ଗଳ୍ପ ଓ କବିତା ପାଇ ଆସୁଛୁ । କିନ୍ତୁ ସେଗୁଡିକ ପ୍ରକାଶ କରିବାକୁ ଆମେ ବାଧ ନୋହୁଁ ବା ଆମର ଇଚ୍ଛା ବି ନୁହେଁ । କାରଣ ସବୁଗୁଡ଼ିକର ସାହିତ୍ୟିକ ମୂଲ୍ୟ ନାହିଁ । ତେଣୁ ଶଙ୍ଖର ସମ୍ପାଦକ ମନେ କରନ୍ତି ଯେ ଶ୍ରୀ ବୃନ୍ଦାବନ ନାଥ ଶର୍ମାଙ୍କର ଅଭିଯୋଗର କୌଣସି ଭିତ୍ତି ବା ଯୁକ୍ତି ନାହିଁ

**(ଶଙ୍ଖ-୧।୧୧-୧୨)**

## ସମ୍ପାଦକଙ୍କୁ ପତ୍ର

### ବୃନ୍ଦାବନ ନାଥଶର୍ମା

'' ଶଙ୍ଖ''ର ପ୍ରଥମଭାଗ -ଶେଷ ସଂଖ୍ୟାରେ ମୋର ଗୋଟିଏ ପ୍ରବନ୍ଧ ବାହାରି ଅଛି । ସେଥିରେ ଗୋଟିଏ ସ୍ଥଳରେ ଲେଖିଅଛି ''ଶଙ୍ଖ'' ପତ୍ର ଯୋଗେ କଥିତ ଭାଷାକୁ ସାହିତ୍ୟରେ ପ୍ରଚଳନ କରିବାର ଗୋଟିଏ '' ଗୁପ୍ତ ଚେଷ୍ଟା'' ଲାଗିଅଛି । ଏହି ଗୁପ୍ତ ଚେଷ୍ଟା କଥାଟି ଆପଣଙ୍କୁ ଅସହ୍ୟ କରିପକାଇଅଛି । ଆପଣ ସମ୍ପାଦକୀୟ ଆଲୋଚନାରେ ମୋର କଥାର ଆଲୋଚନା କରି ମୋର କଥାକୁ ' ଅମୂଳକ ' ବୋଲି କହିଅଛନ୍ତି । ପୁଣି ମୋର ଲେଖାର କୌଣସି '' ଭିତ୍ତି ବା ଯୁକ୍ତି ନାହିଁ'' ବୋଲି ବ୍ୟକ୍ତ କରିଅଛନ୍ତି । ମୋର ଲେଖାର ଯଦି କୌଣସି ମୂଲ୍ୟ ନ ଥିଲା ତେବେ ତାହା ଆପଣ ''ଶଙ୍ଖ''ରେ ମୁଦ୍ରିତ କଲେ କାହିଁକି ? ଆପଣ ଶଙ୍ଖର ମୂଲ୍ୟବାନ ସ୍ଥାନ ନଷ୍ଟ କରି ଯେଉଁ କ୍ଷତି କରିଅଛନ୍ତି ତାହା ଅପୂରଣୀୟ ନୁହେଁ କି ? 'ଶଙ୍ଖ' ପତ୍ରରେ '' ଅମୂଳକ'', ପୁଣି ଯୁକ୍ତିହୀନ ପ୍ରବନ୍ଧ ବାହାରେ, ଏହା କହିବା ଦୋଷାବହ ହେବ ନାହିଁ ।

'' ଗୁପ୍ତଚେଷ୍ଟା'' ଲାଗିଅଛି ଏ କଥାର ସରଳ ଅର୍ଥ ଆପଣଙ୍କ ପରି ବିଦ୍ୱାନ, ଶିକ୍ଷାତତ୍ତ୍ୱବିଦ୍, ପୁଣି ବିଲାତ ପ୍ରତ୍ୟାଗତ ବିଚକ୍ଷଣ ସମ୍ପାଦକଙ୍କୁ ବୁଝାଇବାକୁ ପଡିବ, ତାହା ସ୍ୱପ୍ନରେ ସୁଦ୍ଧା ମୁଁ ଭାବି ନାହିଁ । ମୁଁ କି ଅର୍ଥରେ ''ଗୁପ୍ତଚେଷ୍ଟା' ବାକ୍ୟ ବ୍ୟବହାର କରିଅଛି, ତାହା ନିମ୍ନରେ ବିବୃତ କଲି ।

ସଂସାରର ବିଭିନ୍ନ କ୍ଷେତ୍ରରେ ଦେଖାଯାଏ ଧୀରେ ଧୀରେ ବିଭିନ୍ନ ସ୍ଥାନରେ ଯଥା- ସାହିତ୍ୟ ଓ ସମାଜର ବିବିଧ କ୍ଷେତ୍ରରେ ନୂତନତ୍ୱର ଆରୋପ କରିବାର ଗୋଟିଏ ପ୍ରୟାସ ଥାଏ । ସେହି ପ୍ରୟାସ ବା କର୍ମକୁ ''ଗୁପ୍ତଚେଷ୍ଟା'' ବୋଲି କେହି କେହି କହିଥାନ୍ତି । ସମାଜରେ ପ୍ରଚଳିତ



Digitized by srujanika@gmail.com

ବିବିଧ ସଂସ୍କାରର ଇତିବୃତ୍ତ ପାଠ କଲେ ତଥା ଉପଲବ୍ଧି କଲେ ତାହା ସହଜେ ଅନୁମିତ ହୁଏ । ଆମ୍ଭମାନଙ୍କର ଦେଶରେ ଗୋଟିଏ ପ୍ରବାଦ ଅଛି-''ହାତ ପଶୁପଶୁ ବାହା ପଶେ'' ।

କ୍ରମେ କ୍ରମେ ପୁରାତନ ଭିତରେ ନୂତନର ସ୍ଥାନ ନିର୍ଦ୍ଦେଶ ଘଟିଥାଏ । ଏ କଥାର ପ୍ରମାଣ ସର୍ବତ୍ର ଦେଖାଯାଉଅଛି । ତାହା ପ୍ରମାଣ ବା ଉଦାହରଣ ଦେଇ ଦେଖାଇବା ଅନାବଶ୍ୟକ । ଗୋଟିଏ ପ୍ରମାଣ ସଂକ୍ଷେପରେ ବିବୃତ କରାଯାଉ- ଆମ୍ଭମାନଙ୍କ ଦେଶରେ ସାଧୁ ସରଳ ଭାଷାରେ ସାହିତ୍ୟ ଲେଖିବା ପ୍ରୟାସ ବରାବର ଥିଲା । ଏହି ଚେଷ୍ଟା ଭିତରେ କ୍ରମେ କ୍ରମେ ବିଭିନ୍ନ ଦେଶର ବାକ୍ୟ, ଶବ୍ଦ, ପଦର ବ୍ୟବହର ଆରମ୍ଭ ହୋଇ କ୍ରମେ କ୍ରମେ ସେଗୁଡିକ ଆମ୍ଭ ସାହିତ୍ୟ ଭିତରେ ସ୍ଥାନ ପାଇବସିଲାଣି । ଇଂରାଜୀ ଭାଷାର ଗୋଟିଏ ଗୋଟିଏ ଶବ୍ଦ ଆମ୍ଭମାନଙ୍କ ଲେଖାରେ ଦେଖାଯାଉଅଛି । ସେହି ଶବ୍ଦଗୁଡିକ ଆମ୍ଭ ସାହିତ୍ୟରେ ବା ଭାଷାରେ ଥାଉ ଥାଉ କାହିଁକି ବ୍ୟବହାର ହେଉଅଛି ? ଥରେ ଭାବିବାର କଥା । ବଙ୍ଗ ସାହିତ୍ୟରେ ଦେଖାଯାଏ ଇଂରାଜୀ ଶବ୍ଦ ଉପନ୍ୟାସ ଗଳ୍ପରେ ପ୍ରଚଳିତ ହୋଇ ବର୍ତ୍ତମାନ ଗୋଟିଏ ଗୋଟିଏ ବାକ୍ୟ ଅବାଧରେ ପ୍ରବେଶ କରି ବଙ୍ଗ ସାହିତ୍ୟ ସଂଗେ ସମାନ ଆସନ ପାଇଲାଣି । ଓଡ଼ିଆ ଜାତି ଅନୁକରଣପ୍ରିୟ ଜାତି, ତାର ନିଜସ୍ୱ କିଛି ନାହିଁ । ସେ ବାହ୍ୟାଡମ୍ବର ଅନୁକରଣରେ ମତ୍ତ ଥାଏ । ଅତଏବ ନିଜର ରଚନା ଭିତରେ ବଙ୍ଗାନୁକରଣରେ ଗୋଟିଏ ଗୋଟିଏ ଇଂରାଜୀ ଶବ୍ଦ ନିଜ ଲେଖା ଭିତରେ ଚଳାଇବା ପାଇଁ ସଚେଷ୍ଟ ରହିଲାଣି । ଏଥର ଉଦାହରଣ ଗୋଟିଏ ଦୁଇଟି ଦେଖାଇ ନ ଦେଲେ ପାଠକେ ମୋର ଅଭିପ୍ରାୟ ବୁଝିପାରିବେ ନାହିଁ । ପ୍ରଥମ ବର୍ଷର ଶେଷ ସଂଖ୍ୟା 'ଶଙ୍ଖ'ରେ ସମ୍ପାଦକ ଲେଖିଅଛନ୍ତି- ''ସେମାନଙ୍କ ଏତିକି କମନସେନ୍ସ ଥିବା ଉଚିତ ।'' ସେମାନେ ବ୍ୟୁସନ ବ୍ୟସ୍ତ ''ଏହି ଅର୍ଡର ଯୋଗୁ'' । ଶଙ୍ଖର ଅନ୍ୟତମା ସୁଲେଖିକା ଲବଙ୍ଗଲତା ଦେବୀ ସେହି ସଂଖ୍ୟାର ''ଚିତ୍ର'' ଗଳ୍ପରେ ଲେଖିଅଛନ୍ତି- ''ଆକ୍ସିଡେଣ୍ଟକୁ'' ବିଚାର ଭିତରକୁ ଅଣାଯାଇପାରେ କି ନା ? ଓଡ଼ିଶାର ବିଖ୍ୟାତ ଗଳ୍ପ ଲେଖକ ଶ୍ରୀଯୁକ୍ତ ପାଣିଗ୍ରାହୀ ''ଚତୁରଙ୍ଗ'' ପତ୍ରର ପ୍ରଥମ ସଂଖ୍ୟାରେ ''ଜୟହିନ୍ଦ୍'' ଗଳ୍ପରେ ଲେଖିଅଛନ୍ତି- ''ଏକାବେଳକେ''ସୁଇସାଇଡ୍'' କରିବାକୁ ଯାଉଅଛି । ଏତେବଡ ବିଷମ କଥା ।'' ଏସବୁ ପ୍ରୟୋଗର ଉଦ୍ଦେଶ୍ୟ କ'ଣ ? ଭାଷା ସାହିତ୍ୟ ଭିତରେ ଏବଂବିଧ ପ୍ରାୟାଗକୁ ଗୁପ୍ତ ଚେଷ୍ଟା ଲାଗିଅଛି ବୋଲି କହିବା ଅସଙ୍ଗତ କି ? ଅତି ସାବଧାନ ସହିତ ଶହେଟି ଉତ୍କଳ ପ୍ରଚଳିତ ଶବ୍ଦ ଭିତରେ ଗୋଟିଏ ଗୋଟିଏ ଇଂରାଜୀ ଶବ୍ଦ ବା ଯାବନିକ ଶବ୍ଦ ବ୍ୟବହାର କରି ନିଜ ଭାଷା ବା ସାହିତ୍ୟ ଭିତରେ ଏହା ଚଳାଇବାକୁ ଉଦ୍ୟମ ଥିଲେ, ଏପରି ଉଦ୍ୟମକୁ ଗୁପ୍ତ ଚେଷ୍ଟା ବୋଲି କହିବା ଅସଙ୍ଗତ ହେବ କି ?

ଆମ୍ଭମାନଙ୍କ ଦେଶରେ ତଥା ସମାଜରେ ଖାଦ୍ୟରେ, ବ୍ୟବହାର କ୍ଷେତ୍ରରେ ଚାଲିଚଳଣରେ, ନାନା ବିଷୟ ଗୁପ୍ତରେ ପ୍ରବେଶ କରି ଆମ୍ଭର କୃଷ୍ଟିଗତ ହେବାକୁ ତାହା ବସିଅଛି । ଯେଉଁମାନେ ଏହିସବୁ କର୍ମର ସୂତ୍ରପାତ କରିଥାନ୍ତି, ସେମାନଙ୍କ ଚେଷ୍ଟାକୁ ଗୁପ୍ତଚେଷ୍ଟା ବୋଲିବା କଦାପି



Digitized by srujanika@gmail.com

ଅସଙ୍ଗତ ହେବ ନାହିଁ । ସଂସ୍କାର ପ୍ରୟାସୀ ବ୍ୟକ୍ତିମାନେ ଏହି ଗୁପ୍ତ ଚେଷ୍ଟା ବରାବର କରିଥାନ୍ତି । କେତେଦିନ ପରେ ଦେଖାଯାଏ ସେହି ଚେଷ୍ଟା ବଳବାନ ରୂପେ ଚଳିଯାଉଅଛି । ଏହି କେତୋଟି ବର୍ଷ ଭିତରେ ଉତ୍କଳ ସାହିତ୍ୟ ଭିତରେ ନବ୍ୟ ସଂସ୍କାରକଙ୍କ ଚେଷ୍ଟାରେ କେତେଗୁଡ଼ିଏ ଶବ୍ଦ ଅବାଧରେ ଚଳିଲାଣି । ପୂର୍ବେ ଏପରି ଶବ୍ଦ ବ୍ୟବହାର ଉତ୍କଳ ସାହିତ୍ୟରେ ନ ଥିଲା । ''ପାଗୁନି'', ''ଖାଇନି'', ''ଯାଇନି'' ''ବି'' ଓ ''ଥେଇ'' । ଇତ୍ୟାଦି କେତୋଟି ଶବ୍ଦ ଉଲ୍ଲେଖଯୋଗ୍ୟ । ଯେଉଁମାନେ ସରଳ ମଧୁର ସାଧୁ ଶବ୍ଦ ଯୁକ୍ତ ସାହିତ୍ୟ ଭିତରେ ସୀମାବଦ୍ଧ କଥିତ ଭାଷାକୁ ପ୍ରବେଶ କରିବାର ଚେଷ୍ଟା କରୁଅଛନ୍ତି ସେମାନଙ୍କ ଚେଷ୍ଟାକୁ ''ଗୁପ୍ତଚେଷ୍ଟା'' ବୋଲିବା ଯଦି ଅସଙ୍ଗତ ହୁଏ ତେବେ ମୁଁ ନାଚାର ।

ସମ୍ବଲପୁରବାସୀ ଲେଖକ ସମ୍ବଲପୁରରେ ଘଟିଥିବା ଘଟଣାକୁ ଯଦି ସମ୍ବଲପୁର ପ୍ରଚଳିତ ଗ୍ରାମ୍ୟ ଭାଷାରେ ବିବୃତ କରିବାକୁ ଚାହାଁନ୍ତି, ତେବେ ସମଗ୍ର ବୃତ୍ତାନ୍ତଟି ସମ୍ବଲପୁରୀ କଥିତ ଭାଷାରେ ବିବୃତ କରି ସତ୍ ସାହସର ପରିଚୟ ଦିଅନ୍ତୁ । ସମାଜରେ ତାହା କିପରି ଗୃହୀତ ତଥା ପ୍ରଚଳିତ ହେବ, ତାହା ସହଜେ ଦେଖାପଡ଼ିବ । କେତେକ ବର୍ଷ ପୂର୍ବେ ସତ୍ୟବାଦୀ ଦଳ ନୂତନ ଭାଷା ସୃଷ୍ଟି କରି ତାହା ପ୍ରଚଳନର ଚେଷ୍ଟା କରିଥିଲେ । ତାହାର ପରିଣାମ କଣ ହେଲା ? ସେ କାଳର ''ଆଶା'' ପତ୍ରିକା ଏହି ନୂତନ ଭାଷା ଚଳାଇବାକୁ ଆରମ୍ଭ କରି ପତ୍ରିକାକୁ ଯେଉଁ ହଟହଟାରେ ପକାଇଥିଲେ, ତାହା ଅନେକଙ୍କ ସ୍ମରଣ ଥିବ । ''ଶଙ୍ଖ''ର ବିଜ୍ଞ ସମ୍ପାଦକ ମହାଶୟ କହିଅଛନ୍ତି- ସମ୍ବଲପୁରୀ କଥିତ ଭାଷାରେ ଅନେକ ଉପାଦେୟ ଉପାଦନ ଅଛି । ଯାହା ''ଷ୍ଟାଣ୍ଡାର୍ଡ'' ଓଡ଼ିଆରେ ମିଶିବାର ଶ୍ରେୟସ୍କର । ''ଷ୍ଟାଣ୍ଡାର୍ଡ'' ଶବ୍ଦର ଓଡ଼ିଆ ପାରିଭାଷିକ ଶବ୍ଦ ନାହିଁ କି ? ସମ୍ବଲପୁରୀ କଥିତ ଭାଷାରେ ଯେବେ ''ଶଙ୍ଖ'' ପତ୍ରିକା ମୁଦ୍ରିତ ଓ ପ୍ରଚାରିତ ହୁଏ, ତେବେ ଅନେକ ଉପାଦେୟ ଉପାଦାନ ବାହାରି ଓଡ଼ିଆ ଭାଷା ତଥା ସାହିତ୍ୟକୁ ଗୌରାବାନ୍ୱିତ ଓ ବିଭବଶାଳୀନୀ କରିପାରନ୍ତା । ଏଣୁ ବିଜ୍ଞ ସମ୍ପାଦକଙ୍କୁ ବିନୀତ ନିବେଦନ କରେ ''ଶଙ୍ଖ''କୁ ସମ୍ବଲପୁରୀ ଭାଷାରେ ମୁଦ୍ରିତ କରି ଓଡ଼ିଆ ଭାଷାର ଗୌରବ ବଢ଼ାନ୍ତୁ ଏବଂ ପତ୍ରଟିକୁ ସ୍ଥାୟୀ ଭିତ୍ତିରେ ବସାଇ ଦିଅନ୍ତୁ । କିମଧିକଂ । (ଶଙ୍ଖ-୨।୨)□□□



Digitized by srujanika@gmail.com

# ଓଡ଼ିଆ ସାହିତ୍ୟରେ ଅଶ୍ଳୀଳତା

ଦେହ ନିର୍ବିକଳ୍ପ ସମାଧିର ଅନିର୍ବାଣ କ୍ଷେତ୍ର ପୁଣି ଦେହ ଦେହାତୀତ ଭୋଗ ଓ ଯୌବନର ଉଲଙ୍ଗ ପ୍ରବୃତ୍ତିର ଲୀଳାଭୂମି । ଆଦିମ ପ୍ରବୃତ୍ତି ସାଧନର ଶ୍ରେଷ୍ଠ ସାମଗ୍ରୀ ଯେଉଁ ଦେହ ତାହା ମାନସୋତ୍ତର ପୁଣ୍ୟ ତାତ୍ତ୍ୱିକତାରେ ଭାରାକ୍ରାନ୍ତ । ସମୟ ଓ ପରିବେଶ, ରୁଚି ଓ ସଂସ୍କାରର ଅନବଦ୍ୟ ପ୍ରେକ୍ଷାରେ ଦେହ ଦେଉଳର ଉଦ୍ଭାସନ ବହୁ ଶାସ୍ତ୍ରର ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ । ସର୍ବକାଳୀନ ସାହିତ୍ୟରେ ଦେହକୁ ନେଇ ବିଚାର ବିମର୍ଶର ଅନ୍ତ ନାହିଁ । ସୌନ୍ଦର୍ଯ୍ୟ ସୃଷ୍ଟିର ଗନ୍ତାଘର ରୂପେ ଏହାର ଉପାସନା ଯୁଗ ଯୁଗ ଧରି ଚାଲିଆସିଛି । ସ୍ଥାନକାଳ ଓ ପ୍ରେକ୍ଷାପଟର ପରିବର୍ତ୍ତନରେ ଏହା ରୁଚିଶୀଳ ପୁଣି ରୁଚିଗର୍ହିତ, ଶ୍ଳୀଳ ପୁଣି ଅଶ୍ଳୀଳ । ଦେହ ଦେଉଳର ପୃଷ୍ଠ ପୀଠିକାରେ ବିରଚିତ ନାନ୍ଦନିକ ଭାସ୍କର୍ଯ୍ୟସମୂହ ଦୃଷ୍ଟି ଭେଦରେ କଳାତ୍ମକ ପୁଣି ଅଶ୍ଳୀଳ । ଜର୍ମାନ କବି ନୋଭେଲିସଙ୍କ ଉକ୍ତିରେ - There is but one temple in the universe and that is the body of man.ଦୋହାକୋଷର ଏକ ଦୋହାରେ ସରହପା'ଙ୍କ ବର୍ଣ୍ଣନା ଯୋଗ ଓ କାୟାସାଧନର ଅପୂର୍ବ ବିଭୂତି।

ଏଥୁ ସେ ସୁର ସରି ଯମୁଣା ଏଥୁସେ ଗଙ୍ଗା ସାଅରୁ
ଏତ୍ଥୁ ପଆଗ ବଣାରସି ଏତ୍ଥୁ ସେ ଚନ୍ଦ ଦିବାଅରୁ
ଖେତ୍ତୁ ପୀଠ ଉପପୀଠ ଏତ୍ଥୁ ମଇଂ ଉମଇ ପରିତ୍ଥଓ
ଦେହା ସରିସସ୍ ତିତ୍ଥ ମଇଂ ସୁହ ଅତୀତତା ଦିଥ୍ଥଓ ।

ଏହି ଶରୀର ମଧ୍ୟରେ ଗଙ୍ଗାଯମୁନା, ଏହି ଶରୀର ମଧ୍ୟରେ ଗଙ୍ଗା ସାଗର ସଙ୍ଗମ । ସେହି ଦେହରେ ପ୍ରୟାଗ, ବାରଣାସୀ ଏବଂ ଚନ୍ଦ୍ର ସୂର୍ଯ୍ୟ ଚିର ବିଦ୍ୟମାନ । ଏହି ଦେହରେ ବିଭିନ୍ନ ପୀଠ ଉପପୀଠ ଅବସ୍ଥିତ ।

ବେଦ, ବେଦାନ୍ତ ତଥା ପୁରାଣ ସାହିତ୍ୟରେ ଦେହକୁ ମନ୍ଦିର ପରି ପବିତ୍ର ସ୍ଥାନ କରାଯାଇଛି । ନାରୀ- ପୁରୁଷ ସମ୍ପର୍କକୁ ଉଚ୍ଚକୋଟୀର ସ୍ଥାନ ପ୍ରଦାନ କରାଯାଇଛି । ନାରୀ ରୂପ ବର୍ଣ୍ଣନା ଦ୍ୱାରା ଉଚ୍ଚାଙ୍ଗ କଳାତ୍ମକ ବ୍ୟାପ୍ତି ଓ ଆବେଗିକ ଉଦ୍ଭାସନ ହିଁ ପୁରାଣ ସାହିତ୍ୟର ଲକ୍ଷ୍ୟ ହୋଇଛି । ଏପରି ଏକ ଦିବ୍ୟ ଭାବନାକୁ ଶ୍ଳୀଳ ଅଶ୍ଳୀଳ ମାପଦଣ୍ଡରେ କଳଙ୍କିତ କରିବାର ଅପଚେଷ୍ଟା ଖୁବ୍ ଅର୍ବାଚୀନ ମନେହୁଏ । ଏହି ଅର୍ବାଚୀନ ସାହିତ୍ୟିକ ଅପଚେଷ୍ଟାର ଐତିହ୍ୟ ନିର୍ଦ୍ଧାରଣ ଓଡ଼ିଆ ସାହିତ୍ୟ ପ୍ରେକ୍ଷାରେ ସଂଶିତ ନିବନ୍ଧର ଲକ୍ଷ୍ୟ ।


Digitized by srujanika@gmail.com

ଯାହା ଶ୍ଳୀଳନୁହେଁ ତାହା ଅଶ୍ଳୀଳ । ଶ୍ଳୀଳର ଆଭିଧାନିକ ଅର୍ଥ ଶ୍ରୀଯୁକ୍ତ, ଶୋଭନ, ସୌଭାଗ୍ୟଶାଳୀ, ଭବ୍ୟତା ସଂପନ୍ନ, ଭଦ୍ର, ରୁଚିସଂଗତ, ସାଧୁ, ଶିଷ୍ଟ ହେଲାବେଳେ ଏହାର ବିପରୀତ ଅର୍ଥ ଦ୍ୟୋତକ ଅଶ୍ଳୀଳ । ପ୍ରେକ୍ଷା ଅନୁସାରେ ଶ୍ଳୀଳ ବା ଅଶ୍ଳୀଳ ଭାବର ଉଦ୍ରେକ ହୁଏ । କାବ୍ୟରେ ଯାହା ଶ୍ଳୀଳ ନାଟକରେ ତାହା ଅଶ୍ଳୀଳ ହୋଇପାରେ । ଏଣୁ ଏହା ସମାଜନିର୍ଭର, ବ୍ୟକ୍ତିନିର୍ଭର ଓ ପରିପ୍ରେକ୍ଷୀ ନିର୍ଭର । ମଣିଷର ରୁଚି, ମାନସିକତା ଓ ସଂସ୍କାର ସହିତ ଏହା ସମ୍ପର୍କିତ ।

ସାରଳା ଦାସଙ୍କ ମହାଭାରତରେ ନାରୀପୁରୁଷ ସଙ୍ଗମ ଓ ନାରୀର ଦେହବର୍ଣ୍ଣନାର ରାଶି ରାଶି ଉଦାହରଣ ରହିଛି । ଗ୍ରାମବାସୀଙ୍କ ଉପସ୍ଥିତିରେ ପୁରାଣ ପଣ୍ଡା ଉଚ୍ଚସ୍ୱରରେ ଏହାକୁ ପଢୁଥିଲେ ମଧ୍ୟ କେହି ଅଶ୍ଳୀଳ କହନ୍ତି ନାହିଁ । ପୁରାଣ ନାଁରେ ଅଶ୍ଳୀଳତା ଧର୍ତ୍ତବ୍ୟ ନୁହେଁ । ସାରଳା ଦାସ ଥିଲେ ନିରୁତା କବି। ସେ ଅଳଙ୍କାର ଶାସ୍ତ୍ର ପଢ଼ିନଥିଲେ । ସ୍ୱତଃସ୍ଫୁର୍ତ୍ତ କାବ୍ୟିକ ଧାରାରେ ଶ୍ଳୀଳ ଅଶ୍ଳୀଳର ସୀମା ନ ଥିଲା ।

ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଅଶ୍ଳୀଳତାର ଦୁହା ଉଠିଲା । Victorian morality ଆସିଲା । ନୀତି ରୁଚି ସଂସ୍କାର ଉପରେ ଗୁରୁତ୍ୱ ଦିଆଗଲା । ସ୍ୱତଃସ୍ଫୁର୍ତ୍ତ ଉଲଙ୍ଗ କବିତାର ଧାରାରେ ଅର୍ଗଳୀ ଲାଗିଲା । ରାଣୀ ଭିକ୍ଟୋରିଆଙ୍କୁ ଖୁସି କରିବା ପାଇଁ Morality code ର ପ୍ରଚଳନ ହେଲା । ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଇଂରେଜମାନଙ୍କୁ ଖୁସି କରିବା ପାଇଁ ଅଶ୍ଳୀଳତା ବିରୋଧୀ ଅଭିଯାନ ଆରମ୍ଭ କଲେ । ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରମୁଖଙ୍କ ନେତୃତ୍ୱରେ ଅଶ୍ଳୀଳତା ବିରୋଧୀ ଅନୁଷ୍ଠାନମାନ ଗଢ଼ିଉଠିଲା । ଏପରି ଏକ ଚିନ୍ତ ବିପ୍ଲବର ସନ୍ଧିକ୍ଷଣରେ ଯେଉଁ ଅଶ୍ଳୀଳତାକୁ ନେଇ ଆନ୍ଦୋଳନ ସୃଷ୍ଟି ହେଲା ତାହା କେବଳ ସମାଜ ସଂସ୍କାରର ଉଦ୍ଦେଶ୍ୟକୁ ସଫଳ କରୁନଥିଲା ବରଂ ସ୍ୱାର୍ଥ ସାଧନର ଅନ୍ୟତମ ମାଧ୍ୟମ ଥିଲା ।

ଉନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଆ ପାଠ୍ୟପୁସ୍ତକ ରଚନା ପ୍ରତି ବୁଦ୍ଧିଜୀବୀଙ୍କ ଦୃଷ୍ଟି ଆକର୍ଷିତ ହୋଇଥିଲା । ରାଧାନାଥଙ୍କୁ କେନ୍ଦ୍ରକରି ପାଠ୍ୟପୁସ୍ତକ ସୃଷ୍ଟିର ବ୍ୟୂହ୍ୟ ରଚିତ ହୋଇଥିଲା । ଅନ୍ୟପକ୍ଷରେ ବିଭିନ୍ନ ସଂସ୍ଥା ଆନୁକୂଲ୍ୟରେ ପ୍ରାଚୀନ ପୁସ୍ତକ ତାଳପୋଥିରୁ ଉଦ୍ଧାର କରି ପୁସ୍ତକମାନ ପ୍ରକାଶିତ ହେବାକୁ ଲାଗିଲା । ଭଞ୍ଜ, ଦୀନକୃଷ୍ଣଙ୍କ ରଚନା, ବିଚିତ୍ର ରାମାୟଣ, ନପୋଇ, ବିଭିନ୍ନ ଚଉତିଶା ଲୋକଲୋଚନକୁ ଆସିଲା। ଏହି ପୁସ୍ତକ ସମୂହକୁ ପାଠ୍ୟ ଅନ୍ତର୍ଭୁକ୍ତ କରିବାକୁ ପ୍ରଚେଷ୍ଟା ହେଲା। ଉଲ୍ଲିଖିତ ପୁସ୍ତକଗୁଡିକ ନିର୍ବାଚିତ ହେଲେ ଆଧୁନିକ ଲେଖକଙ୍କ ସୃଷ୍ଟି ଅଳ୍ପ ନିର୍ବାଚିତ ହେବ। ଏଣୁ ୧୮୮୪-୮୫ରେ ବାଲେଶ୍ୱର ସ୍କୁଲ ପାଇଁ ନିର୍ବାଚନ କମିଟି ବିଚିତ୍ର ରାମାୟଣ, ନପୋଇ ଓ ବା ଚଉତିଶା



Digitized by srujanika@gmail.com

ପୁସ୍ତକକୁ ନିର୍ବାଚନ କରିବାରୁ ବୈକୁଣ୍ଠନାଥ ଦେ ରାଧାନାଥଙ୍କ ପ୍ରରୋଚନାରେ ଏହି ପୁସ୍ତକଗୁଡ଼ିକ ଅଶ୍ଳୀଳ ଓ କୋମଳମତି ଛାତ୍ରମାନଙ୍କୁ ବିପଥଗାମୀ କରିବ ଦର୍ଶାଇ ଛୋଟଲାଟଙ୍କ ନିକଟଙ୍କୁ ଏକ ଆବେଦନପତ୍ର ପଠାଇଥିଲେ। ପତ୍ରଟିରେ ପୁସ୍ତକଗୁଡ଼ିକର କିଛି ଅଶ୍ଳୀଳ ଅଂଶ ଇଂରାଜୀରେ ଅନୂଦିତ ହୋଇଥିଲା। ଇଂରାଜୀ ପତ୍ରଟିକୁ ସର୍ବସାଧାରଣରେ ମଧ୍ୟ ପ୍ରଚାର କରାଯାଇଥିଲା। ଏହି ପ୍ରସଙ୍ଗକୁ ଉତ୍କଳ ଦର୍ପଣ, ଶିକ୍ଷାବନ୍ଧୁ, ସମ୍ବାଦ ବାହିକା ଓ ଉତ୍କଳ ଦୀପିକା ପ୍ରଭୃତି ପତ୍ରିକା ବହୁ ପ୍ରଚାରିତ କରିଥିଲେ। ବାଦାନୁବାଦ ମଧ୍ୟରେ ଅଶ୍ଳୀଳତା ଆନ୍ଦୋଳନର ମୂଳଦୁଆ ଓଡ଼ିଶାରେ ପଡିଲା । ଦୀପିକା ଦୃଢ଼କଣ୍ଠରେ ବୈକୁଣ୍ଠନାଥ ଦେ' ଓ ରାଧାନାଥଙ୍କ ଚକ୍ରାନ୍ତକୁ ଲୋକଲୋଚନକୁ ଆଣିଥିଲା ।

'ଶିକ୍ଷାବନ୍ଧୁ' ରାଧାନାଥ ଓ ବୈକୁଣ୍ଠନାଥ ଦେ'ଙ୍କ ଉଦ୍ୟମକୁ ପ୍ରଶଂସା କରିଥିବାରୁ ଦୀପିକା ଲେଖିଥିଲା-'' ସହଯୋଗୀଙ୍କ ବିଚାରରେ ରହସ୍ୟର ବିଷୟ ଏହି ଯେ ବିଚିତ୍ର ରାମାୟଣ ହେଲା ମନ୍ଦ ଆଉ ମେଘଦୂତ ହେଲା ଉତ୍ତମ । କାହିଁକି ଶେଷ ଲିଖିତ ପୁସ୍ତକକୁ ବାବୁ ରାଧାନାଥ ରାୟ ରଚନା ଏବଂ କୁମାର ବୈକୁଣ୍ଠନାଥ ଦେ ପ୍ରକାଶ କଲେ ବୋଲି ପରା! ଆମ୍ଭେମାନେ ତାହାଙ୍କୁ ଅନୁରୋଧ କରୁଁ ଯେ ଥରେ ମେଘଦୂତକୁ ଭଲ କରି ପାଠ କରି ଆପଣା ଛାତିରେ ହାତ ଦେଇ କହନ୍ତୁ ଯେ ଉକ୍ତ ମହାତ୍ମାଦ୍ୱୟଙ୍କର ଉକ୍ତ ପୁସ୍ତକ ପ୍ରକାଶ ଏବଂ ବର୍ତ୍ତମାନ ଅଶ୍ଳୀଳତାର ପ୍ରତିବାଦ ସଙ୍ଗେ କେମନ୍ତ ସୁନ୍ଦର ସାମଞ୍ଜସ୍ୟ ରହିଅଛି। ଅପର ପୁସ୍ତକ ସମ୍ପର୍କରେ ଏତିକି ବୋଲିବା ଯଥେଷ୍ଟ ଯେ ବୈକୁଣ୍ଠର ଶୋଭା ଏକା ରାଧାନାଥଙ୍କ ହେତୁରୁ ।'' (ଦୀପିକା ୮.୮.୧୮୮୫)

ଏ ଆନ୍ଦୋଳନର ପ୍ରତିବାଦରେ ଗୋଲକଧନ୍ଦା, ଦେବଗୁରୁ, ଉଚିତବକ୍ତା, An observer, A genuine uriya ପ୍ରମୁଖ ଛଦ୍ମନାମରେ ନିଜ ମତ ପ୍ରକାଶ କରିଥିଲେ । ସାହିତ୍ୟରେ ଯୌନବର୍ଣ୍ଣନା ଏକ କଳାତ୍ମକ ଅଙ୍ଗ । ସେହି ସ୍ୱାଭାବିକ ବର୍ଣ୍ଣନାକୁ ଉଦ୍ଦେଶ୍ୟ ପ୍ରଣୋଦିତ ଭାବରେ ମାଧ୍ୟମ କରି ନିଜ ତଥା ନିଜ ସମର୍ଥକଙ୍କ ପୁସ୍ତକ ନିର୍ବାଚନ, ପ୍ରାଚୀନ ପୁସ୍ତକର ବର୍ଜନ ଏବଂ ଦେ' ପ୍ରେସରେ ପ୍ରକାଶିତ ପୁସ୍ତକକୁ ଅଗ୍ରାଧିକାର ପ୍ରଦାନ ରାଧାନାଥଙ୍କ ମୁଖ୍ୟ ଉଦ୍ଦେଶ୍ୟ । ଏହି ସ୍ୱାର୍ଥଜଡିତ ଉଦ୍ଦେଶ୍ୟ ଏକ ନିରର୍ଥକ ଆନ୍ଦୋଳନକୁ ଜନ୍ମଦେଇ ନୀତି ଅନୀତି ରୁଚି ଅରୁଚିର ମାନଦଣ୍ଡରେ ଓଡ଼ିଆ ସାହିତ୍ୟକୁ ବିକାଳଙ୍ଗ କଲା । ଏପରି ଏକ ଜାତୀୟ କଳଙ୍କକୁ ମୋଚନ କରିବା ପାଇଁ ସାହିତ୍ୟଠାରୁ ନିରାପଦ ଦୂରତା ରକ୍ଷା କରୁଥିବା



Digitized by srujanika@gmail.com

ଉତ୍କଳ ଗୌରବ ମଧୁବାବୁ ମଧ୍ୟ ବାଧ୍ୟହୋଇ 'A genuine Uriya' ଛଦ୍ମନାମରେ ନିଜର ବଳିଷ୍ଠ ପ୍ରତିବାଦ ଦୀପିକା ପୃଷ୍ଠାରେ ଜଣାଇଛନ୍ତି ଯାହା ବେଶ୍ ପ୍ରଣିଧାନଯୋଗ୍ୟ -

To,

The Editor of the Dipika.

Sir,

At present there is a very great quoth agitation going on with regard to the selection of prize -books in the Balasore District out of the primary grant of this year. The Honourable Kumar Baikuntanath De, I hear, sent to Govt. officials printed pamphlets containing passages from Bichitra Ramayana, Bauchatisa, Napoi together with translation in English of those passages. His translation are, it is said garbled and dressed in such Languages as to shock one's feelings. I request the commissioner to take... of the fact that the Honorable Gentleman, who had the monopoly in the matter of supplying prize-books in Balasore, has been out of his honour, bacause of the small number of books purchased this year from his press. If an enquiry is to be made, that enquiry ought to be shifting and extend over 4 or 5 years and be conducted by officers who have no connection with the Education department.

Suppose several copies of the Bible and shakespear's works are selected as prize books for distribution to the pupils of the grammer schools in London. What will Englishmen think of a book -seller who sends to the lord Mayor the followings extracts from the Bible and shakespear, and informs him that the School -authorities have acted a miss.

And they called unto lot, and said unto him, where are the men which came unto thee this night ? Bring them out unto us that we may know them !

Genesis Chap-XIX-5

'Know' means to have sexual intercourse (Vide Chamber's Dictionary)" I have two daughers which have not known man." (Known= had sexual inter course with).

Genesis chap- XIX -8



Digitized by srujanika@gmail.com

" come let us make our father drink wine and we will be with him, that we may preserve seed of our father."

Do Do - 32

" the first-born went in and lay with her, and he perceived not when she lay down , nor when she arose ."-

Do Do - 33

"Lucrece", quoth he, this night I must enjoy thee: if thou deny, then force must work my way."-

The Rape of Lucrece -Shakespear

" Ten kisses short as one and one long as twenty - Venus and adonis."

Shakespear.

" I will be a pack, and though shalt be my deer Feed where thou wilt, on mountain or on date:

Graze on my lips; and if those lips be dry, stray lower, where the pleasent fountains lie,

within this limit is relief enough

sweet bottom- grass, and high delightful plain,

Round rising hillocks, brakes obscure and rough.

Do Do

Is there any body in orissa who denies that Bichitra Ramayana, Bachoutish and Napoi are popular works and that the first is regarded as a religious book by the Rajas and remindears ? Then why this out cry ? Does it not originate in selfishness, and nothing but selfishness ?

A word of apology to the christians. The above extracts from the Bible are not intended to throw discredit on the scriptures. In almost all religious books of Old day we find the poets describing every incident. Faith fully, and the inspired writers were no exceptions to it. As for myself I have a great regard for the Bible, and my respect and love for it are no less than theirs. It is also my teacher and guide.

Yours truly

Agenuine Uriya.



Digitized by srujanika@gmail.com

(ଉତ୍କଳଦୀପିକା -୨୦/୩୩, ୧୫-୮-୧୮୮୫ ପୃ-୨୬୩)

ଏହି ଆନ୍ଦୋଳନ ମଧୁବାବୁ ବା ଅନ୍ୟାନ୍ୟ ବୁଦ୍ଧିଜୀବୀଙ୍କ ହସ୍ତକ୍ଷେପ ଦ୍ୱାରା ପ୍ରଶମିତ ହୋଇନାହିଁ ବରଂ ଉଗ୍ରରୂପ ଧାରଣ କରିଛି । ବୈକୁଣ୍ଠନାଥ ଦେ'ଙ୍କ ଆବେଦନ ପତ୍ରର ଶୁଣାଣୀ କରି ଛୋଟଲାଟ ସାହେବ ଏହି ସତ୍କାର୍ଯ୍ୟ ପାଇଁ ବୈକୁଣ୍ଠନାଥଙ୍କୁ ଧନ୍ୟବାଦ ଦେଇଛନ୍ତି ଓ ବାଲେଶ୍ୱର ଡେପୁଟି ଇନ୍‌ସପେକ୍ଟର ବାବୁ ପ୍ୟାରୀମୋହନ ସେନ, ଇଂରାଜୀ ସ୍କୁଲର ହେଡମାଷ୍ଟର ବାବୁ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ବିଚିତ୍ର ରାମାୟଣ ଏବଂ ବା ଚୌତିଶା ପାଠଶାଳାରେ ବିତରଣ ନିମିତ୍ତ ନିର୍ବାଚନ କରିଥିବାରୁ ସେମାନଙ୍କର ପଦୋନ୍ନତି ସ୍ଥଗିତ ରହିବାର ଦଣ୍ଡବିଧାନ କରିଛନ୍ତି । (ଉତ୍କଳଦୀପିକା- ୨୫-୭-୧୮୮୫) ଏହି ଆନ୍ଦୋଳନର ଛିଟା ପରବର୍ତ୍ତୀ ପର୍ଯ୍ୟାୟରେ ଭଞ୍ଜ ସାହିତ୍ୟକୁ ସଂକ୍ରମିତ ହୋଇଛି । ରାଧାନାଥ ଶିକ୍ଷା ବିଭାଗର ଉଚ୍ଚସ୍ଥାନ ମଣ୍ଡନ କରିଥିବାରୁ ତାଙ୍କୁ ସନ୍ତୋଷ କରିବାକୁ ଅନେକ ଆଲୋଚକ ଏହି ସମୟ ଖଣ୍ଡରେ ଭଞ୍ଜ ସାହିତ୍ୟର ଅଶ୍ଳୀଳତା ଦୋଷ ଦର୍ଶାଇ ରାଧାନାଥ ସାହିତ୍ୟର ଉତ୍କର୍ଷତା ପ୍ରଦର୍ଶନରେ ଆଗଭର ହୋଇଛନ୍ତି । ରାଧାନାଥ ନିଜସ୍ୱ ଉଦ୍ଦେଶ୍ୟ ସାଧନ ପାଇଁ ପ୍ରଥମେ ବୈକୁଣ୍ଠନାଥ ଦେ'ଙ୍କୁ ବ୍ୟବହାର କରିଥିଲେ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ମୟୂରଭଞ୍ଜ ଓ ବାମଣ୍ଡା ରାଜଦରବାରର ସହାୟତା ଲୋଡିଥିଲେ ।

ଆଧୁନିକ ଦୃଷ୍ଟିଭଙ୍ଗୀର ଉଦ୍‌ବର୍ତ୍ତନ ସମୟରେ ଭଞ୍ଜକାବ୍ୟକୁ ଅସାର ରୂପେ ପ୍ରତିପାଦିତ କରିବାର ଯେଉଁ ଉନ୍ମୁଖତା ପ୍ରକାଶ ପାଇଲା ତହିଁରେ ଏକ ବଳିଷ୍ଠ ସ୍ୱର୍ଶ ଦେଲା ' ଉତ୍କଳ ପ୍ରଭା' । 'ପ୍ରଭା'ମୟୂରଭଞ୍ଜ ରାଜା ରାମଚନ୍ଦ୍ର ଭଞ୍ଜଙ୍କ ଅର୍ଥାନୁକୂଲ୍ୟରେ ପ୍ରକାଶ ଲଭିଥିଲା । ପ୍ରଥମରୁ ଏହି ପତ୍ରିକା ସମାଜର ଉନ୍ନତିକଳ୍ପେ ସତ୍‌ପୁସ୍ତକର ପ୍ରଚାର ଉପରେ ଗୁରୁତ୍ୱାରୋପ ସହିତ ଭଞ୍ଜ ସାହିତ୍ୟ ପ୍ରତି ନିଜର ବିମୁଖତା ପ୍ରକାଶ କରିଛି । ପ୍ରଭା ମତରେ 'ଭଞ୍ଜ କବି ସ୍ୱୀୟ ଗ୍ରନ୍ଥମାନଙ୍କରେ ଆଦି ରସ ରୂପ ହଳାହଳ ସମୁଦ୍ର ମନ୍ଥନ କରିଅଛନ୍ତି । ଏଭଳି ଗ୍ରନ୍ଥ ସମାଜର ବୈଗୁଣ୍ୟ ଜନ୍ମାଇବାକୁ ହିଁ ସକ୍ଷମ । ଏହି ମତର ପୋଷକତା କରି ପଣ୍ଡିତ ଲାଲା ରାମନାରାୟଣ ରାୟଙ୍କ ଯୁଗାନ୍ତକାରୀ ଆଲୋଚନା କବି ଉପେନ୍ଦ୍ର ଭଞ୍ଜ " ଉତ୍କଳପ୍ରଭା" ୧/୯ରୁ ଧାରାବାହିକ ପ୍ରକାଶ ଲାଭକଲା । ଏଥିରେ ଭଞ୍ଜଙ୍କ ବୈଦେହୀଶ ବିଳାସ କାବ୍ୟର ସମାଲୋଚନା କରିଛନ୍ତି ଲାଲା । " ସେ ଯାହା ହେଉ ପୁସ୍ତକ ଖଣ୍ଡିକ ଆମୂଳଚୂଳ ପାଠ କରି ଏକ ମାତ୍ର ଆଦିରସର ବାହୁଲ୍ୟ ଦର୍ଶନ କଲୁ । ଅନ୍ୟାନ୍ୟ ରସ ଯାହା ଅଳ୍ପ ପରିମାଣରେ ଲକ୍ଷିତ ହେଲା, ଶବ୍ଦ କାଠିନ୍ୟ ଓ ଅର୍ଥ କୃଚ୍ଛ୍ରତା ପ୍ରଭୃତି ଦୋଷରୁ ସେମାନଙ୍କର ଭାବସଞ୍ଚାରିଣୀ ଶକ୍ତି ଏକାବେଳକେ ବିଲୁପ୍ତ ହୋଇଥିବାର ଅନୁମିତ ହେଲା। ପୁଣି କବି ଆଦି ରସକୁ



Digitized by srujanika@gmail.com

କୁତ୍ସିତ ଭାବରେ ଅବତାରଣା କରିଥିବାର ଦେଖି ଆନ୍ତରିକ ଦୁଃଖିତ ହେଲୁଁ । ଏହାକୁ ଆମ୍ଭମାନଙ୍କ ଜାତୀୟ ସାହିତ୍ୟର କଳଙ୍କ ବୋଲିବାକୁ ହେବ ।'' (ଉତ୍କଳ ପ୍ରଭା)

ଲାଲା ଭଞ୍ଜ ସାହିତ୍ୟର ଆଦିରସାତ୍ମକ ନିମ୍ନ ପଂକ୍ତି ସମୂହ ଉଦ୍ଧୃତିକରି ଦର୍ଶାଇଛନ୍ତି -

୧ : ୧୯ଶ ଛନ୍ଦରେ ରାମଚନ୍ଦ୍ର ଅନ୍ତର୍ଲିପି ଦ୍ୱାରା ସୀତାଦେବୀଙ୍କୁ କହୁଛନ୍ତି ''ରେ ବଲ୍ଲଭୀ ପଣ୍ଡିତା ସାର, ବୀପରୀତ ଦାନ କର ''

୨ : ବହିଲୁ ଶଙ୍କା ଚଉଁରୀ ଦେଇ
ବଜାଇବେ ରଚିବାକୁ କି ପୁରୁଷାୟିତ
ବୋଲିବାକୁ ନାହିଁ ତାହି
ବୋଇଲା ବଚନ ଆନ ହୋଇଛି ମୋ କାହିଁ ।

ଅର୍ଥାତ୍ ମୃଗ ଚଉଁରୀ ଦେଇ ବିପରୀତ ରତି (ପୁରୁଷାୟିତ) ରଚିବାକୁ କହିବି ବୋଲି ଶଙ୍କା କରୁଛୁକି । ମୋ କହିବା କଥା କେବେ ଅନ୍ୟଥା ହୋଇଛି କି ?

୩: ବିବସନ କରିନଖ ଚାଳନ୍ତି କିଞ୍ଚିତ
ବିବଶରୁ ହେବି କି ଏ ରୂପେ ରୋମାଞ୍ଚିତ ?

ଏହି ସମାଲୋଚନାର କଟୁତିକ୍ତ ବକ୍ତବ୍ୟ ଭଞ୍ଜ ପ୍ରେମୀଙ୍କୁ କ୍ଷତାକ୍ତ କରିଛି ଏବଂ ଓଡ଼ିଆ ସାହିତ୍ୟରେ ସୃଷ୍ଟି କରିଛି ଏକ ଯୁଗାନ୍ତକାରୀ ଝଡ । ଏହି ଆଲୋଚନାକୁ ଉତ୍କଳ ଦୀପିକା ତା ୨୭।୫।୧୮୯୩ ପୃଷ୍ଠାରେ 'ଗୋଲକ ଧନ୍ଦା' ସମାଲୋଚନା କରି ଭଞ୍ଜ କବିଙ୍କର ଉତ୍କର୍ଷତା ପ୍ରତିପାଦନର ଚେଷ୍ଟା କରିଛନ୍ତି 'ଗୋଲକ ଧନ୍ଦା'ଙ୍କ ପତ୍ରର ଉତ୍ତର ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ଦେଇଛନ୍ତି ରାମନାରାୟଣ । ଏହି ବାଦାନୁବାଦ ଫଳରେ ଉତ୍କଳ ଦୀପିକା ଓ ସମ୍ବଲପୁର ହିତୈଷିଣୀ ପରସ୍ପର ବିରୁଦ୍ଧରେ ଠିଆ ହୋଇଛନ୍ତି । ଓଡ଼ିଶାର କୃତବିଦ୍ୟ ସାହିତ୍ୟିକ ଗଣ ଦୁଇଟି ଶିବିରରେ ବିଭକ୍ତ ହୋଇଗଲେ । ଏକ ଦଳ ଭଞ୍ଜ ସପକ୍ଷରେ ଦୀପିକା ପୃଷ୍ଠାରେ ସଂଗ୍ରାମ କଲାବେଳେ ଅନ୍ୟଦଳ ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ଭଞ୍ଜବିରୁଦ୍ଧରେ ଓ ଆଧୁନିକ ସାହିତ୍ୟ ସପକ୍ଷରେ ଯୁଦ୍ଧ ଘୋଷଣା କଲେ । ପ୍ରଥମ ଦଳରେ ଗୌରୀଶଙ୍କର ରାୟଙ୍କ ନେତୃତ୍ୱରେ ଗୋଲକଧନ୍ଦା, ଯୁବରାଜ, ପ୍ରୀତିଆ ପ୍ରଭୃତି ଅଜସ୍ର ଛଦ୍ମନାମଧାରୀ ଥିଲାବେଳେ ଦ୍ୱିତୀୟପକ୍ଷରେ ବିଦ୍ୟାରତ୍ନ, ଦାମୋଦର ମିଶ୍ର, ଲାଲା ରାମନାରାୟଣ ରାୟ, ଦାଶରଥି ରାଉତ, ଜଗଦାନନ୍ଦ ଦାସ, ବିଶ୍ୱନାଥ କର, ରାମକୃଷ୍ଣ ସାହୁ ପ୍ରମୁଖ ଲେଖନୀ ଚାଳନା କରୁଥିଲେ । ଏହି ବାଦାନୁବାଦର ପ୍ରବାହକୁ ଉଚିତ ପଥ ପ୍ରଦର୍ଶନ ପାଇଁ ଦୀପିକାର ଉପପତ୍ର 'ଇନ୍ଦ୍ରଧନୁ' ଓ 'ହିତୈଷିଣୀ'ର ଉପପତ୍ର 'ବିଜୁଳୀ' ଯଥାକ୍ରମେ ୧୮୯୩ ମସିହା ଅଗଷ୍ଟ ଓ ସେପ୍ଟେମ୍ବର



Digitized by srujanika@gmail.com

ମାସରେ ପ୍ରକାଶ ପାଇଥିଲା । 'ଇନ୍ଦ୍ରଧନୁ' ଓ 'ବିଜୁଳୀ'ର ଆବିର୍ଭାବ ଫଳରେ ସାରସ୍ୱତ କଳହ ତୀବ୍ର ରୂପ ଧାରଣ କରିଥିଲା । ଏହି କଳହ ବ୍ୟକ୍ତିଗତ କୁତ୍ସାରଟନା ସ୍ତରକୁ ଖସିଆସିଥିଲା । ଦୀପିକା ୧୫-୭-୧୮୯୩ ସଂଖ୍ୟାରେ ବିଜୁଳୀ ଦଳର ରାମକୃଷ୍ଣ ସାହୁଙ୍କୁ ଗୋଲକଧନ୍ଦା ଓ ଯୁବରାଜଙ୍କ ଆକ୍ଷେପ ଏହାର ଜ୍ୱଳନ୍ତ ନିଦର୍ଶନ । ଏଥିରେ କବିଭୂଷଣ ରାମକୃଷ୍ଣ ସାହୁଙ୍କୁ ସମ୍ବୋଧନ କରି ରାଧାନାଥ ସାହିତ୍ୟର ଅଶ୍ଲୀଳ ପଂକ୍ତି ଓ ତାଙ୍କ ଆଖିଦୋଷ ଯୋଗୁ କଣାରୂପେ ଆକ୍ଷେପ କରାଯାଇଛି ।

'' କି କଲି କି କଲି କି ବୁଦ୍ଧି ହୁଡିଲି
ବେନି ନେତ୍ର ଥାଉଁ କଣା ମୁଁ ହୋଇଲି ।
କି କଲି କି କଲି କି ବୁଦ୍ଧି ହୁଡିଲି
ମୃତ ଉପଇନ୍ଦ୍ର କାହିଁକି ରସିଲି ।
ଚାଲୁଣି ପରାୟ କାହିଁକି ନୋହିଲି
ଦୋଷଛାଡି ଗୁଣ କାହିଁକି ଖୋଜିଲି
'' ନୀତମ୍ବ ସୁବେଣୀ'' ଦେଖି ନ ପାରିଲି
''ଇଷି ଇଷି ଭାଷ'' ଶୁଣି ନ ପାରିଲି
ପର୍ଯ୍ୟଙ୍କ ପାଖକୁ ଯାଇ ନ ପାରିଲି
କେଳିପୁର ରସ ପିଇ ନ ପାରିଲି ।'' (ଗୋଲକ ଧନ୍ଦା)

ଯୁବରାଜ (ଦାମୋଦର ପଟ୍ଟନାୟକ)ଙ୍କ କବିତାରେ ବ୍ୟକ୍ତିଗତ କୁତ୍ସାର ସ୍ୱର ଆହୁରି ତୀବ୍ର -

ଶତ ବାର ଚୁମ୍ବେ ତବ ମୁଖ ଆନନ୍ଦରେ
ହେ କବି ଭୂଷଣ ! ଆଧୁନିକ ଉତ୍କଳର
ଏହା ମହାଶ୍ମଶାନେ ଉତ୍କଳ ସାହିତ୍ୟର
କି ରଙ୍ଗେ ନିନ୍ଦିଲ ଆହା ! ରାମ ନାରାୟଣେ
ବାମଣ୍ଡା ଧରା ମୁକୁଟେ ! ଚିତ୍ରୋତ୍ପଳା ଲାଗି
ଟେକ କବି ଭଞ୍ଜେବସି ସଙ୍ଗ ସୁଖ ମେଳେ
ଚିତ୍ରୋତ୍ପଳା ତଟବାସୀ କଟକ ହର୍ମ୍ୟରେ
ତୋଷି ନବ୍ୟ ସଭ୍ୟ ଯୁବାଦଳକୁ ଆକଣ୍ଠେ
'ଲାବଣ୍ୟବତୀ'ର ମଧୁଶଯ୍ୟା ପର୍ଯ୍ୟଙ୍କରୁ



Digitized by srujanika@gmail.com

ସେ 'ରସେ' ସେ ରସହୀନ ହୁଅଇ ତୁଳନେ
ଆଦ୍ୟ ପ୍ରାନ୍ତ ରସଚଖା ତବସୁଖ ଦ୍ୱାରା
ବାମଣ୍ଡା ପୂର୍ବପୁରୁଷ - ବଂଶ- ଆବତଂସ
ଗଙ୍ଗେଶ୍ୱର କୌଶଲ୍ୟାଙ୍କ ଜନକ କନ୍ୟାର
'' ହୁଁ କୃତି'' '' ଇଷିଭାଷଣ'' '' ପର୍ଯ୍ୟଙ୍କ ରଞ୍ଜନ''
ଶବଦ ବିହୀନ ଧୀର ପ୍ରଣୟ ନିଃଶୃତ
ଗୁପ୍ତଲୀଳା - ରସସୁଦ୍ଧା ଭକ୍ଷଣ ସଙ୍ଗତେ ... ।''

(ସମାଲୋଚକ କବିଭୂଷଣ - ଯୁବରାଜ)

ଏହି କବିତା ଦ୍ୱୟର ଏକ କୌତୁହଳପ୍ରଦ ପ୍ରତିବାଦ ସମ୍ବଲପୁର ହିତୈଷିଣୀ (୨-୮-୧୮୯୩) ପୃଷ୍ଠାରେ ଦେଖାଯାଏ-

'' ସାବଧାନ ସାବଧାନ ! ହେ କବିଭୂଷଣ
ଦିଅ ନାହିଁ ପଛଘୁଞ୍ଚା ଲାଙ୍ଗୁଳ ଲୁଚାଇ
ନହୁଅ ନହୁଅ ଦୁଃଖୀ ହେ କବି ଭୂଷଣ
ଶୁଣି ଓଡ଼ିଶ୍ୟା ଗୋଲକ ଯୁବରାଜ କଥା
ହେ ଗୋଲକ ଅଭାବ କାହିଁର ! ଦେଇଛନ୍ତି
ସବୁଦ୍ରବ୍ୟ କେଳି ଗୁରୁ କବି ଚନ୍ଦ୍ର ଉପଇନ୍ଦ୍ର ବୀର ।''

'ଇନ୍ଦ୍ରଧନୁ' ଓ 'ବିଜୁଳୀ' ଥିଲା ଅନିୟମିତ ପତ୍ର । ଏହି ପତ୍ରିକା ଦ୍ୱୟର ଉଦ୍ଦେଶ୍ୟ ସମ୍ପର୍କରେ ସମ୍ବଲପୁର ହିତୈଷିଣୀର ବକ୍ତବ୍ୟ ପ୍ରଣିଧାନ ଯୋଗ୍ୟ - '' ଆଜିକାଲି ଉତ୍କଳରେ ଇନ୍ଦ୍ରଧନୁ ଓ ବିଜୁଳୀ ନାମରେ ଦୁଇଖଣ୍ଡି ଅସାମୟିକ ପତ୍ର ଆଡମ୍ବର ସହିତ ପ୍ରକାଶିତ ହେବାକୁ ଆରମ୍ଭ ହୋଇଅଛି । ଏକା ଉପେନ୍ଦ୍ର ଭଞ୍ଜ ବିଷୟ ନେଇ ପତ୍ରିକା ଦ୍ୱୟ ପ୍ରକାଶିତ ହେଉଥିଲେ ହେଁ, ଉଭୟ ପତ୍ରର ଉଦ୍ଦେଶ୍ୟଗତ ପାର୍ଥକ୍ୟ ରହିଅଛି । ଏକପକ୍ଷ ଉପେନ୍ଦ୍ର ଭଞ୍ଜଙ୍କ ଦୋଷଗୁଡିକୁ ଦେଖାଇଦେବାକୁ ଉଦ୍ୟତ ଅପରପକ୍ଷ ତାଙ୍କର ଦୋଷକୁ ଗୁଣରୂପେ ବ୍ୟକ୍ତ କରିବାକୁ ବଦ୍ଧ ପରିକର । ଏହି ସୂତ୍ରରେ ଉତ୍କଳର ଶିକ୍ଷିତ ବ୍ୟକ୍ତିମାନେ ପ୍ରଧାନତଃ ତିନିଶ୍ରେଣୀରେ ବିଭକ୍ତ ହୋଇଛନ୍ତି । ଏକଦଳ ଲୋକ ଉଭୟ ପକ୍ଷର କାର୍ଯ୍ୟକୁ ଅନୁମୋଦନ କରନ୍ତି ନାହିଁ; ଅପର ଦୁଇଦଳର ଏକ ଦଳ ସପକ୍ଷରେ ଏବଂ ଏକଦଳ ବିପକ୍ଷରେ । ନିଜ ପକ୍ଷ ସମର୍ଥନ ସକାଶେ ଯେ ଯାହା କୁହନ୍ତୁନା କାହିଁକି ବର୍ତ୍ତମାନ ଭଞ୍ଜ କାବ୍ୟକୁ ଆଦର୍ଶକାବ୍ୟ ରୂପେ ସ୍ଥାପନ କରିବା କଦାପି ଯେ କର୍ତ୍ତବ୍ୟ ନୁହେ ଏହା ଆମ୍ଭମାନଙ୍କର ଧ୍ରୁବ ଧାରଣା ।



Digitized by srujanika@gmail.com

ନବ ପ୍ରକାଶିତ ପତ୍ରିକା ଦ୍ୱୟରୁ ''ଇନ୍ଦ୍ରଧନୁ'' କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ପ୍ରେସରେ ମୁଦ୍ରିତ ହୋଇ ଦୁଇ ପଇସା ମୂଲ୍ୟରେ ଏବଂ 'ବିଜୁଳୀ 'ବାମଣ୍ଡା ପ୍ରେସରେ ମୁଦ୍ରିତ ହୋଇ ବିନାମୂଲ୍ୟରେ ପ୍ରଚାରିତ ହେଉଅଛି ।'' (ସମ୍ବଲପୁର ହିତୈଷିଣୀ - ୧୩-୯-୧୮୯୩)

ବିଜୁଳୀ ୧୪ଟି ସଂଖ୍ୟା ପରେ ବନ୍ଦ ହୋଇଯାଇଥିଲା । ବିଜୁଳୀ ବନ୍ଦ ହେବା ପରେ ଇନ୍ଦ୍ରଧନୁ ଏକ ପରିଚ୍ଛନ୍ନ ସାହିତ୍ୟ ପତ୍ର ରୂପେ କୁତ୍ସିତ ସମାଲୋଚନା ଧାରାକୁ ପରିହାର କରିଥିଲା । 'ବିଜୁଳୀ' ବର୍ତ୍ତମାନ ଦୁଷ୍ପ୍ରାପ୍ୟ କିନ୍ତୁ ଇନ୍ଦ୍ରଧନୁର ପ୍ରାୟ ଅର୍ଦ୍ଧ ଶତାଧିକ ସଂଖ୍ୟା ମଧ୍ୟରୁ ୧୫ଟି ସଂଖ୍ୟା ସଂକଳିତ କରି ବିଶିଷ୍ଟ ଗବେଷକ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ପାଠକଙ୍କୁ ଭେଟି ଦେଇଛନ୍ତି । ଏହି ପତ୍ରିକା ଦୁଇଟିର ଅବର୍ତ୍ତମାନରେ ଏକ ଉଚ୍ଚାଙ୍ଗ ଆନ୍ଦୋଳନର ପୃଷ୍ଠଭୂମି ସମ୍ପର୍କରେ ଆଲୋଚନା ପୂର୍ଣ୍ଣାଙ୍ଗ ନୁହେଁ । ବରଂ ଦୀପିକା, ହିତୈଷିଣୀ, ବାହିକା, ନବସମ୍ବାଦ ପ୍ରଭୃତିରୁ ଏହାର ଏକ ମୋଟାମୋଟି ଆକଳନ କରାଯାଇପାରେ ।

ଇନ୍ଦ୍ରଧନୁ, ବିଜୁଳୀ ସାରସ୍ୱତ କଳହ ଯେତେବେଳେ ଚରମ ସୀମାରେ ପହଞ୍ଚିଥିଲା। ସେତେବେଳେ ରାଧାନାଥ ପରିସ୍ଥିତିର ତାଡନାରେ ଏକ ଏଗାର ଅନୁଚ୍ଛେଦ ବିଶିଷ୍ଟ ଦୀର୍ଘ ପତ୍ର ଲେଖି ୧୮୯୪ ମାର୍ଚ୍ଚ ୧୪ 'ଓଡ଼ିଆ ଓ ନବ ସମ୍ବାଦ'ରେ ପ୍ରକାଶ କଲେ । ଏଥିରେ ସେ ଭଞ୍ଜଙ୍କ ପ୍ରଧାନ ଅନୁକାରୀ ବୋଲି ସ୍ୱୀକାର କରିଥିଲେ । ଏମିତି ଅନ୍ୟ ଅନେକ କାରଣ ନେଇ ବିଜୁଳୀ ପ୍ରକାଶନ ବନ୍ଦ ରହିଥିଲା।

'ବିଜୁଳୀ' ପ୍ରକାଶନ ବନ୍ଦର ବର୍ଷକ ପରେ ସେଥିରେ ପ୍ରକାଶିତ ଭଞ୍ଜୀୟ ଦୋଷ ସମୂହକୁ ସଂକଳିତ କରି ଏବଂ କିଛି ନୂତନ ସଂଯୋଗ କରି ବିଜୁଳୀର ମେନେଜର ଦାମୋଦର ମିଶ୍ର 'ଦୋଷ ଦର୍ଶନ' ପୁସ୍ତକ ପ୍ରକାଶ କରନ୍ତି । ୩୮ ପୃଷ୍ଠା ବିଶିଷ୍ଟ ଏହି କ୍ଷୁଦ୍ର ପୁସ୍ତିକା ବାମଣ୍ଡା ସୁଢ଼ଳ ପ୍ରେସରୁ ୧୮୯୫ରେ ମୁଦ୍ରିତ ହୁଏ । ଏହା ଥିଲା ଓଡ଼ିଆ ସାହିତ୍ୟରେ ଭଞ୍ଜ ସାହିତ୍ୟେ ଆଲୋଚନାର ପ୍ରଥମ ପ୍ରକାଶିତ ପୁସ୍ତକ । ଏହି ପୁସ୍ତକ ପ୍ରଣୟନର ଉଦ୍ଦେଶ୍ୟ ସମ୍ପର୍କରେ ଦାମୋଦର ମିଶ୍ର ପ୍ରକାଶ କରନ୍ତି - '' ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ କାବ୍ୟ ନିଚୟ ବିବିଧ ଦୋଷାଶ୍ରିତ ଥିବାରୁ ତହିଁର ବ୍ୟବହାର ବିଷୟରେ ବିଶେଷ ସତର୍କତା ଅବଲମ୍ବନ କରିବା ଏବଂ ତଦନୁକରଣରେ କବିତା ନ କରିବା ବିଷୟରେ 'ବିଜୁଳି' ପତ୍ରିକାରେ ବିଶେଷ ଆଲୋଚନା ହୋଇଯାଇଅଛି । ବିଜୁଳୀ ପ୍ରକାଶିତ ଭଞ୍ଜୀୟ କାବ୍ୟର ଦୋଷାଂଶ ସଂଗ୍ରହ କରି ଏବଂ ନୂତନ କେତେକ ଦୋଷ ଯୋଗକରି ବର୍ତ୍ତମାନ ମୁ ଏହି 'ଦୋଷଦର୍ଶନ'ପ୍ରକାଶ କଲି । ବିଜ୍ଞ ପାଠକମାନେ ଏହି ରୀତିରେ ଭଞ୍ଜୀୟ କାବ୍ୟ ସମାଲୋଚନା କଲେ ତହିଁର ପ୍ରକୃତ ପରିଚୟ ପାଇ ପାରିବେ। ୩୧/୭/୧୮୯୫'' (ଭୂମିକା)



Digitized by srujanika@gmail.com

'ଦୋଷ ଦର୍ଶନ'ରେ ସଂସ୍କୃତ କାବ୍ୟାଦର୍ଶ ଅନୁସରଣରେ ଭଞ୍ଜ କାବ୍ୟରେ 'ଅସଙ୍ଗତ ବର୍ଣ୍ଣନ', 'ଅସମର୍ଥ କଥନ', 'କୁତ୍ସିତ ବର୍ଣ୍ଣନ' 'ଅଶ୍ଳୀଳ ବର୍ଣ୍ଣନ', 'ନିରର୍ଥକ କଥନ', 'ନିକୃଷ୍ଟ ବର୍ଣ୍ଣନ' ପ୍ରଭୃତି ପ୍ରଦର୍ଶିତ ହୋଇଛି । ପଣ୍ଡିତ ମମ୍ମଟଙ୍କ ଏକାଦଶ ଶତାବ୍ଦୀରେ ରଚିତ ' କାବ୍ୟ ପ୍ରକାଶ' ଗ୍ରନ୍ଥରେ ଦୋଷ ନିରୂପଣ ଅଧ୍ୟାୟରେ ଅଶ୍ଳୀଳତାକୁ ତିନିପ୍ରକାର କୁହାଯାଇଛି -

'' ଦୁଷ୍ଟଂପଦଂ ଶ୍ରୁତିକଟୁ ଚ୍ୟୁତ ସଂସ୍କୃତ୍ୟ ପ୍ରଯୁକ୍ତମ ସମର୍ଥକମ ।

ନିହିତାର୍ଥ ମନୁଚିତାର୍ଥଂ ନିରର୍ଥକମବାଚକଂ ତ୍ରିଧାଶ୍ଳୀଳମ ।''

ଅଶ୍ଳୀଳ ତିନିପ୍ରକାର ଯଥା ବ୍ରୀଡା, ଜୁଗୁପ୍‌ସା (ଘୃଣା) ଓ ଅମଙ୍ଗଳ । ଏହି ତିନି ପ୍ରକାର ଅଶ୍ଳୀଳତା ପ୍ରଥମ ଓଡ଼ିଆ ଅଳଙ୍କାର ପୁସ୍ତକ ବାସୁଦେବ ସୁଢ଼ଳଦେବଙ୍କ ରଚିତ '' ଅଳଙ୍କାର ବୋଧୋଦୟ''ରେ ମଧ୍ୟ ଆଲୋଚିତ । ଏହାରି ଅବଲମ୍ବନରେ ଦାମୋଦର ବିଭିନ୍ନ ଦୋଷ ସହିତ ଅଶ୍ଳୀଳତା ଦୋଷକୁ ପ୍ରଦର୍ଶନ କରିଛନ୍ତି । ଅଶ୍ଳୀଳତା ଦୋଷଯୁକ୍ତ ଲାବଣ୍ୟବତୀ, ରସଲେଖା, ପ୍ରେମସୁଧାନିଧି, ସୁଭଦ୍ରା ପରିଣୟ ଓ ବୈଦେହୀଶ ବିଳାସରୁ ସାତୋଟି ପଂକ୍ତି ଏହି ପୁସ୍ତକରେ ପ୍ରଦର୍ଶିତ ହୋଇଛି ଯଥା-

ଯେଉଁ ଆଖି ଦେଖିନାହିଁ ବାଳା ବିବସନ
ଆଖିରେ ନ ଦେଖି ଶିଖି ଚନ୍ଦ୍ରକ ସମାନ
ରତି ଉଛବେ କିଙ୍କିଣୀ କିଣି କିଣି ଯେଉଁ
କର୍ଣ୍ଣ ଶୁଣିନାହିଁ, ବିଳ ଉପମାକୁ ପାଉ । (ରସଲେଖା)
ବା- କୁଚାଗ୍ରେ କର୍ଣ୍ଣେ ସମଗ୍ରେ ବୁଲାଇ ରସନା
ସେହି କ୍ରମେ କ୍ରମେ ଦେଲା ବୁଡାଇ ଚେତନା
ନୀବି ଫିଟାଇବା କାଳେ ଧରେ କର କରେ
ବାରଣ ରହଇ ନିକି ମୃଣାଳ ସୂତ୍ରରେ ।
ଫିଟିଗଲା ମଦନ ସଦନର କବାଟ
ତୁଟିଗଲା ସସନ୍ଧି ବିରହୀ ଘୋର କଷ୍ଟ ।
ମହାମହା ଉତ୍ସବ ସୁରତି ଆରମ୍ଭିଣ
ବଡ ସୁଖ ପାଇ ବୁଝି ହୁଅଇ ଇକ୍ଷଣ ଯେ । (ରସଲେଖା)

ଇତ୍ୟାଦି-



Digitized by srujanika@gmail.com

'ଦୋଷଦର୍ଶନ' ପ୍ରକାଶର ପାଞ୍ଚବର୍ଷ ପରେ ମୟୂରଭଞ୍ଜ ଷ୍ଟେଟ ପ୍ରେସରୁ ୧୯୦୦ ମସିହାରେ 'ଗୁଣାଦର୍ଶ' ପୁସ୍ତକ ପ୍ରକାଶ ଲଭେ । ସାନଖେମୁଣ୍ଡିର ସିଦ୍ଧେଶ୍ୱର ଗ୍ରାମ ନିବାସୀ ପଣ୍ଡିତ ବୁଦ୍ଧିନାଥ ଶର୍ମା ମୟୂରଭଞ୍ଜରେ ଶିକ୍ଷକତା କଲାବେଳେ 'ଦୋଷ ଦର୍ଶନ' ପ୍ରଦର୍ଶିତ ଦୋଷ ସମୂହକୁ ପ୍ରକ୍ଷ୍ୟାଳନ କରି ଭଞ୍ଜକାବ୍ୟର ଗୁଣାଦର୍ଶ ପ୍ରଚାର କରିବାର ଚେଷ୍ଟା କରିଛନ୍ତି। ବୁଦ୍ଧିନାଥ ସୁରତାରମ୍ଭରେ ଅଶ୍ଳୀଳ ବର୍ଣ୍ଣନ ଦୋଷ ନ ହୋଇ ଗୁଣ ହୁଏ ବୋଲି ଦର୍ଶାଇଛନ୍ତି । ଏଥିପାଇଁ ସେ ବିଭିନ୍ନ ସଂସ୍କୃତ କାବ୍ୟର ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି ।

'ଗୁଣାଦର୍ଶର ସମାଲୋଚନା' କ୍ରମରେ ଗୁଣାଦର୍ଶ ପୁସ୍ତକର ଏକ ତାତ୍ତ୍ୱିକ ଆଲୋଚନା ସମ୍ବଲପୁର ହିତୈଷିଣୀ ୩୦-୧-୧୯୦୧ ରୁ ୨୦-୨-୧୯୦୧ ସଂଖ୍ୟା ମଧ୍ୟରେ ଦାମୋଦର ମିଶ୍ର କରନ୍ତି । ଏହି ସମାଲୋଚନାରେ ବଳିଷ୍ଠ ଯୁକ୍ତିଦ୍ୱାରା ଗୁଣାଦର୍ଶର ବକ୍ତବ୍ୟକୁ ଦାମୋଦର ଖଣ୍ଡନ କରିଛନ୍ତି । ଗୁଣାଦର୍ଶର ସମାଲୋଚନା ପ୍ରକାଶ ପରେ ଏକ ଦୀର୍ଘ ପ୍ରତିବାଦ ପତ୍ର ବୁଦ୍ଧିନାଥ ଶର୍ମା ହିତୈଷିଣୀକୁ ପଠାଇଥିଲେ । ହିତୈଷିଣୀ ସମ୍ପାଦକ 'ବୁଦ୍ଧିନାଥ ଶର୍ମାଙ୍କ ପ୍ରତିବାଦ ସମ୍ବନ୍ଧେ'' ଶୀର୍ଷକରେ ତାହାର ସୂଚନା ଦେଇ ଉପଯୋଗୀ ହୋଇ ନ ଥିବାରୁ ପ୍ରକାଶ କରି ନ ଥିଲେ ।

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରୁ ବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ଅଶ୍ଳୀଳତା ବିରୁଦ୍ଧରେ ଏକ ତୀବ୍ର ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଏହି ଆନ୍ଦୋଳନର କେନ୍ଦ୍ରକୁ ଅଯଥା ଭାବେ ଭଞ୍ଜ ଟାଣିହୋଇ ଆସିଥିଲେ। ବିଜୁଳୀ - ଇନ୍ଦ୍ରଧନୁ ମସୀଯୁଦ୍ଧ ଏହାର ଥିଲା ଶୀର୍ଷବିନ୍ଦୁ ଓ ପାଠ୍ୟପୁସ୍ତକ ନିର୍ବାଚନ ଜନିତ ଅଭିସନ୍ଧି ଥିଲା ଏହାର ପ୍ରେକ୍ଷାପଟ । ଏହାରି ଫଳରେ ଅମୃତମୟ ସୃଜନର ବୀଜସୂତ୍ର 'କାମ'କୁ ସାହିତ୍ୟରୁ ନିର୍ବାସନ ଦିଆଗଲା- ଉଚ୍ଚତମ ମାନବିକ ଆବେଗର ସୂକ୍ଷ୍ମ ପରିପ୍ରକାଶ ପ୍ରେମକୁ ବାସନ୍ଦ କରାଗଲା । ମାନବ ଜୀବନର ହୃଦ୍ୟ ବର୍ଣ୍ଣନାରେ ମୁଖରିତ ସାହିତ୍ୟ ସୃଜନର ଆଦ୍ୟବିନ୍ଦୁ ଶୃଙ୍ଗାରକୁ ଛାଡି କେମିତି ସଫଳକାମ ହେବ ? ଯେଉଁ କାମକୁ ଶାସ୍ତ୍ରକାରମାନେ ଦେବତା ରୂପେ ବନ୍ଦନା କରନ୍ତି ସେହି କାମ ଭାବନାକୁ ସାହିତ୍ୟରୁ ନିର୍ବାସିତ କରିବା କେତେଦୂର ଯୁକ୍ତିଯୁକ୍ତ

''ଯତଃ ସର୍ବେ ପ୍ରସୂୟନ୍ତେ ହ୍ୟଙ୍ଗୋତ୍ମାଙ୍ଗ ଦେହୀନଃ
ଉନ୍ମାଦାଃ ସର୍ବ ଭୂତାନାଃ ତସ୍ମୈ କାମାତ୍ମନୈଃ ନମଃ ।''

ଗ୍ରୀସ୍ ସଭ୍ୟତାରେ ଲିଙ୍ଗ ପୂଜାର ପ୍ରଚଳନ, ଆମର ଶିବଲିଙ୍ଗ, ମିଶରରେ ଯୌନ ଦେବତା, ଜାପାନର ଲିଙ୍ଗାକୃତି 'ଝୁନାତୋ' ପୂଜା ଏକ ଅମ୍ଳାନ ପରଂପରାର ବାହକ । ତ୍ରିଶୂଳ, କ୍ରସ, ଶିବଶକ୍ତି, ଲଙ୍ଗଳ ପ୍ରଭୃତି ଯୌନତାର ପ୍ରତୀକ । ଏ ସମସ୍ତଙ୍କୁ ବହୁଯୁଗରୁ



Digitized by srujanika@gmail.com

ପୂଜା କରି ମାନବ ସଭ୍ୟତା ମହିମାମଣ୍ଡିତ । ସଭ୍ୟତାର ସୃଷ୍ଟିବୀଜ ଶୃଙ୍ଗାର ଚେତନା ମାନବ ଜୀବନକୁ ଶ୍ରେଷ୍ଠତମ ସୋପାନରେ ଅଧିଷ୍ଠିତ କରେ । ଏହା ମାନବ ଚେତନାକୁ ପ୍ରସାରିତ, ଦୀପ୍ତ, ଆହ୍ଲାଦମୟ, ଶୁଦ୍ଧ ଓ ରମଣୀୟ କରେ ।

ଯୌବନ ବର୍ଣ୍ଣନା  ସାରସ୍ୱତ ଶରୀରର ଦୁଷ୍ଟବ୍ରଣ ନୁହେଁ ବରଂ ଏକ ଉଲ୍ଲସିତ ଉତାଣର ଛବି। ଯାହା ଜୀବନକୁ ଉଚ୍ଚାଙ୍ଗ କଳାତ୍ମକ ବ୍ୟାପ୍ତି ପ୍ରଦାନ କରେ । ସମର୍ଥ ସାରସ୍ୱତ ଶିଳ୍ପୀ ଯୌନ ବର୍ଣ୍ଣନାକୁ ମଣିଷ ଜୀବନର ଏକ ମହନୀୟ ଅନୁଭବ ରୂପେ ପ୍ରତିଷ୍ଠା ଦିଏ । ରାଧାନାଥଙ୍କ ସମୟରୁ ଅଶ୍ଳୀଳତା ବିରୁଦ୍ଧରେ ସ୍ୱାର୍ଥାନ୍ୱେଷୀ ଆନ୍ଦୋଳନ ଓଡ଼ିଆ ସାହିତ୍ୟକୁ କବଳିତ କରିଥିଲା କିନ୍ତୁ ସେହି ରାଧାନାଥଙ୍କ 'ପାର୍ବତୀ' 'ଯଯାତିକେଶରୀ' ପ୍ରଭୃତି କାବ୍ୟରେ ଶୃଙ୍ଗାର ରସର ଶ୍ରେଷ୍ଠତମ ଦୃଷ୍ଟାନ୍ତ ପାଠକ ପ୍ରାଣକୁ ଆନନ୍ଦ ପ୍ଲାବିତ କରେ । ବଳିଷ୍ଠ ସାରସ୍ୱତ ପ୍ରାଣର ଯୌନ ବର୍ଣ୍ଣନା 'ମହାନିର୍ବାଣ' ପରି ମହନୀୟ କଳାତ୍ମକ ସ୍ୱାକ୍ଷର ଆଙ୍କିଲାବେଳେ ନିଷ୍ପ୍ରାଣ ଲେଖନୀ 'ବାଉଁଶବଣରେ ରାତି' ପରି ସହଜ ଅସମର୍ଥ ଚିତ୍ର ପ୍ରଦାନରେ ସମାଲୋଚିତ ହୁଏ । ବରକନ୍ୟାଙ୍କ ମଧୁଶଯ୍ୟା ରାତ୍ରିର ରୋମାଞ୍ଚିତ ଅନୁଭବ ସାରା ଜୀବନର ଗତିପଥକୁ ଉଲ୍ଲସିତ ଓ ପୁଷ୍ପିତ କଲାପରି କଳାତ୍ମକ ଯୌନ ବର୍ଣ୍ଣନା ସାହିତ୍ୟର ଅଙ୍ଗପୁଷ୍ଟି ସହ ଏକ ଉଚ୍ଚାଙ୍ଗ କଳାର ବାର୍ତ୍ତା ପ୍ରଦାନ କରେ । ଜୀବନର ଏକ ଅଙ୍ଗ ଭଳି, ପ୍ରକୃତିର ଏକ ଅବିଚ୍ଛେଦ୍ୟ ଅଂଶ ଭଳି ଶୃଙ୍ଗାର ରସ ମଧ୍ୟ ସାହିତ୍ୟର ଏକ ଅନାବିଳ ଓ ଆହ୍ଲାଦକ ଅଙ୍ଗ । ଏହା ବିନା ଜୀବନ ଅସଂପୂର୍ଣ୍ଣ, ସାହିତ୍ୟ ମଧ୍ୟ ଅସଂପୂର୍ଣ୍ଣ । ❑❑❑



Digitized by srujanika@gmail.com

# ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ପ୍ରଦତ୍ତ ସ୍ମାରକପତ୍ର

ଓଡ଼ିଶା ଇଂରେଜ ଶାସନଭୁକ୍ତ ହେବା ଏକ ଐତିହାସିକ ଘଟଣା। ଓଡ଼ିଶାର ସମାଜନୀତି, ରାଜନୀତି ତଥା ସାହିତ୍ୟ-ସଂସ୍କୃତି ଇଂରେଜ ଶାସନ କାଳରେ ଲାଭ କରିଥିଲା ନୂତନ ଆୟାମ । କୁସଂସ୍କାର ଓ ପୌତ୍ତଳିକତାର ଉପବନ ଓଡ଼ିଶା ରୂପରେ ବିଦିତ ଭୂମିଖଣ୍ଡ ଏହି କାଳଖଣ୍ଡରେ ବିଶୋଧିତ ହୋଇଥିଲା । ଶିକ୍ଷା ଓ ସଂସ୍କୃତିର ଦିଗନ୍ତ ପରିବ୍ୟାପ୍ତ ହୋଇଥିଲା। ମିଶନାରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାରର ଉଦ୍ଦେଶ୍ୟ ରଖି ଓଡ଼ିଶାରେ ନୂତନ ଶିକ୍ଷା ପ୍ରଦାନର ପ୍ରଚେଷ୍ଟା କରିଥିଲେ । ଏହି କ୍ଷେତ୍ରରେ ସେମାନେ ମାତୃଭାଷାର ଉପଯୋଗିତା ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ । (୧)

ଇଂରେଜ ଶାସନ ପୂର୍ବରୁ ଓଡ଼ିଶାର ଶିକ୍ଷାକ୍ଷେତ୍ର କେବଳ ଚାଟଶାଳୀ ଓ ଟୋଲ ଭିତରେ ସୀମିତ ଥିଲା । ନଅଙ୍କ ଦୁର୍ଭିକ୍ଷ (୧୮୬୬) ପର୍ଯ୍ୟନ୍ତ ଏହି ଚିତ୍ରରେ କୌଣସି ଆଖିଦୃଶିଆ ପରିବର୍ତ୍ତନ ଦୃଷ୍ଟିଗୋଚର ହୋଇ ନ ଥିଲା । ଶିକ୍ଷା ଅଭାବରୁ ଲୋକେ ନିଜର ଅବସ୍ଥାକୁ ଠିକ୍ ରୂପେ ପରିବେକ୍ଷଣ ନ କରିବାରୁ ଏପରି ଏକ ବିରାଟ ଦୁର୍ଗତି ଓ ଲକ୍ଷ ଲକ୍ଷ ଲୋକଙ୍କ ପ୍ରାଣହାନି ଘଟିଥିବାର ସରକାର ଅନୁଭବ କଲେ । ଏହି କ୍ଷତିର ଯଥାର୍ଥ ଭରଣା ନିମନ୍ତେ ଇଂରେଜ ସରକାର ଓଡ଼ିଶାରେ ଶିକ୍ଷାର ପ୍ରସାର ଦିଗରେ ଉଚିତ ପଦକ୍ଷେପ ଗ୍ରହଣ କଲେ ।(୨)

ଓଡ଼ିଶାରେ ଏକ କ୍ରମବର୍ଦ୍ଧିଷ୍ଣୁ ଶିକ୍ଷିତ ଗୋଷ୍ଠୀ ଯେଉଁମାନେ ଓଡ଼ିଆ ଭାଷାର ଜୀବନ୍ମୃତ ସଙ୍କଟ କାଳରେ ଯାହାକିଛି ମୌଳିକ ଉତ୍କଳୀୟତା ତାହାରି ନେତୃତ୍ୱ ନେଇଥିଲେ । ନଅଙ୍କ ଦୁର୍ଭିକ୍ଷର ପ୍ରଚଣ୍ଡ ଧକ୍କାରେ ଅତୀତର ଏହି କୃତବିଦ୍ୟ ଶିକ୍ଷାଜାତି ଯେପରି ଅର୍ଦ୍ଧମୃତ ହୋଇଥିଲା, ଦୁର୍ଭିକ୍ଷ ପରବର୍ତ୍ତୀ କାଳରେ ଶ୍ମଶାନ ଏବଂ ଧ୍ୱଂସର ଚିତାନଳ ମଧ୍ୟରୁ ସେହିପରି ଏକ ସ୍ୱାଭିମାନୀ ଦୃଢ଼ ପ୍ରତିଜ୍ଞ ଜାତିର ଅଭ୍ୟୁଦୟ ଘଟିଥିଲା । (୩)

ରାଜତନ୍ତ୍ରର ଢାଞ୍ଚାରେ ଗଠିତ ଓଡ଼ିଶାର ସମାଜ ଜୀବନ ବ୍ରିଟିଶମାନଙ୍କ ଶାସନାଧୀନରେ ଗଣତନ୍ତ୍ର ପଦ୍ଧତି ଆଡକୁ ପରିବର୍ତ୍ତିତ ହୋଇଥିଲା। ନୂତନ ଶିକ୍ଷା ଓ ସଂସ୍କୃତିର ଅଭ୍ୟୁତ୍ଥାନ ଫଳରେ ଗଢ଼ି ଉଠିଥିଲା ଏକ ଶିକ୍ଷିତ ସମାଜ। ଏହି ସମାଜ ନିଜର ଅସ୍ମିତାକୁ ଦୃଢ଼ମୂଳ ଭାବେ ରୋପିତ କରିବାର ଉଦ୍ୟମ ଜାରି ରଖିଥିଲା। ଏପରି ଏକ ପରିବର୍ତ୍ତିତ ଚିତ୍ତବୃତ୍ତିର ସନ୍ଧିକ୍ଷଣ ଓ ଔପନିବେଶିକ ପରିବେଶରେ ଗଢ଼ି ଉଠିଲା ସିଭିଲ୍ ସୋସାଇଟି। ଏହି ସମାଜ



Digitized by srujanika@gmail.com

ନିଜର ଆତ୍ମ ପରିଚୟକୁ ସାବ୍ୟସ୍ତ କରିବାକୁ ବିଭିନ୍ନ ମାଧ୍ୟମର ଆଶ୍ରୟ ନେଲା । ଇଂରେଜମାନଙ୍କ ଔପନିବେଶିକ ଶାସନ ପଦ୍ଧତିରେ ଆବେଦନ ନିବେଦନ ଓ ପ୍ରତିବେଦନର ପରଂପରା ସୃଷ୍ଟି କରିଥିଲା -ଶିକ୍ଷିତ ସମାଜ ନିଜର ଅଭାବ ଅସୁବିଧା ଓ ଅସଙ୍ଗତିକୁ ସ୍ମାରକପତ୍ର ମାଧ୍ୟମରେ ଶାସନମୁଖ୍ୟଙ୍କ ଦୃଷ୍ଟିକୁ ଆଣିଲା । ସ୍ମାରକପତ୍ର ପ୍ରଦାନର ପରମ୍ପରା ଦୁଇଟି କାରଣ ଉପରେ ପ୍ରତିଷ୍ଠିତ ପ୍ରଥମତଃ ନିଜର ଜାତୀୟ ଅସ୍ମିତା ସମ୍ପର୍କରେ ସଚେତନତା ଓ ଦ୍ୱିତୀୟରେ ନିଜର ଯଥାର୍ଥ ଦାବି ଉପସ୍ଥାପନା ।

ରାଜଭାବନାରେ ବଶୀଭୂତ ଓଡ଼ିଆ ସମାଜ ଦେଶ ପରିଚାଳନାରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରୁନଥିଲା । ଇଂରେଜମାନଙ୍କ ଆଗମନ ପରେ ଦେଶର ଉନ୍ନତି ପାଇଁ ଜନତା ସାମୂହିକ ଭାବେ ଉଦ୍‌ବୁଦ୍ଧ ହୋଇଥିଲେ । ବ୍ୟକ୍ତି ଓ ଗୋଷ୍ଠୀର ହିତସାଧନ ପାଇଁ ଶାସକମାନଙ୍କ ସହିତ ଜନସାଧାରଣ ମଧ୍ୟ ଏହି ସମୟରେ ସଚେତନ ହୋଇଥିଲେ । ଜନ ସାଧାରଣଙ୍କ ସଂଯୋଗ ଦ୍ୱାରା ହିଁ ଦେଶର ସର୍ବାଙ୍ଗୀନ ଉନ୍ନତି ସମ୍ଭବ, ଏପରି ଏକ ବିଶ୍ୱାସ ଦୃଢ଼ୀଭୂତ ହୋଇଥିଲା। ଶାସନ କଳର ସୁପରିଚାଳନା ଲୋକଙ୍କ ଅଂଶଗ୍ରହଣ ମାଧ୍ୟମରେ ସଫଳକାମ ହେବ ବୋଲି ଧାରଣା ଜନ୍ମିଲା । ଆଧୁନିକ ଶିକ୍ଷାର ପ୍ରସାର ଥିଲା ସାଧାରଣ ଚିତ୍ତବୃତ୍ତି ଅଭ୍ୟୁଦୟର ଯଥାର୍ଥ ମାଧ୍ୟମ । ଲୋକବଳର ଅଭ୍ୟୁଦୟ ଜନଜାଗରଣ ସଂଗଠନ କରିବାରେ ସଫଳ ହୋଇଥିଲା । ଆଧୁନିକ ଶିକ୍ଷାର ଫଳପ୍ରସୂ ରୂପେ ସାଂସ୍କୃତିକ ଅନୁଷ୍ଠାନ, ମୁଦ୍ରାଯନ୍ତ୍ର, ପତ୍ରପତ୍ରିକା ଗଢ଼ିଉଠିଲା । ଏହି ଅନନ୍ୟ ମାଧ୍ୟମଗୁଡ଼ିକ ଦେଶର ଜନମତ ସଂଗଠିତ ଓ ପ୍ରଚାରିତ କରିବାରେ ଅଭିନବ ଭୂମିକା ସମ୍ପାଦନ କରିଥିଲେ । ଆଧୁନିକ ଶିକ୍ଷା ଜ୍ଞାନର ବାତାୟନକୁ ଉନ୍ମୋଚନ କରି ପାଶ୍ଚାତ୍ୟ ଜ୍ଞାନବିଜ୍ଞାନ ଓ ସାହିତ୍ୟର ପରିବେଷଣ ଓ ତଜ୍ଜନିତ ଏକ ସ୍ୱତନ୍ତ୍ର ଶିକ୍ଷିତ ସମ୍ପ୍ରଦାୟ ସୃଷ୍ଟିରେ ସହାୟକ ହୋଇଥିଲା । ଏହି ଶିକ୍ଷିତ ସମ୍ପ୍ରଦାୟ ଦେଶର ଭାଗ୍ୟ ନିୟନ୍ତ୍ରଣ ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଏକ ଶିକ୍ଷିତ ଶ୍ରେଣୀର ଅଭ୍ୟୁଦୟ ସହିତ ସେମାନେ ଜାତିର ଯଥାର୍ଥ ଦାବି ଉପସ୍ଥାପନ କ୍ଷେତ୍ରରେ ନିଜର ସାମର୍ଥ୍ୟ ପ୍ରଦର୍ଶନ କରିଥିଲେ । ଦାବି ଉପସ୍ଥାପନର ବଳିଷ୍ଠ ମାଧ୍ୟମ ରୂପେ ସାଂସ୍କୃତିକ ଅନୁଷ୍ଠାନ ଗଠନ ଏବଂ ସ୍ମାରକପତ୍ର ପ୍ରଦାନ ବିବେଚିତ ହୋଇଥିଲା । ଆସୋସିଏଶନ, କ୍ଲବ, ସାଂସ୍କୃତିକ ଅନୁଷ୍ଠାନ ଗଠନର ପ୍ରାବଲ୍ୟ ଉନ୍ନବିଂଶ ଶତାବ୍ଦୀରେ ଦେଖାଯାଏ । ଏହି ଅନୁଷ୍ଠାନ ମାଧ୍ୟମରେ ଶିକ୍ଷିତ ଯୁବଗୋଷ୍ଠୀ ଯେଉଁ ଦୁଇଟି ପ୍ରମୁଖ ଦାବି ଉପସ୍ଥାପନକରି ସଫଳକାମ ହୋଇଥିଲେ ତାହା ହେଲା ୧: ଓଡ଼ିଶାରେ ରେଳ ରାସ୍ତା ନିର୍ମାଣ ଓ ୨: ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ । (୪) ଏହି ପ୍ରସଙ୍ଗରେ



Digitized by srujanika@gmail.com

ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କିତ ସ୍ମାରକପତ୍ର ଉପରେ ସୂକ୍ଷ୍ମ ବିଶ୍ଳେଷଣ ହିଁ ସଂଶିତ ନିବନ୍ଧର ଲକ୍ଷ୍ୟ ।

ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ, ଭାଷା ଆନ୍ଦୋଳନ ଓ ସର୍ବୋପରି ଓଡ଼ିଆ ଭାଷା ଭିତ୍ତିକ ପ୍ରଦେଶ ଗଠନ ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡିତ । ନଅଙ୍କ ଦୁର୍ଭିକ୍ଷ ପରେ ବ୍ରିଟିଶ ଶାସକ ଗଣ ଓଡ଼ିଶାର ଦୂରବସ୍ଥାକୁ ଅନୁଭବ କଲେ ଏବଂ ଏହାକୁ ବଙ୍ଗରୁ ବିଚ୍ଛିନ୍ନ କରିବାକୁ ପ୍ରସ୍ତାବ ଦେଲେ । ଏହି ପ୍ରସଙ୍ଗରେ ୧୮୬୮ରେ ସାର୍ ଷ୍ଟାଫର୍ଡ ନର୍ଥକୋଟ ଭାରତ ସରକାରଙ୍କ ସଚିବଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ସେ ନଅଙ୍କ ଦୁର୍ଭିକ୍ଷ ପରିସ୍ଥିତିକୁ ନିୟନ୍ତ୍ରଣ କରିବାରେ ବଙ୍ଗ ସରକାରଙ୍କ ଅପାରଗତାକୁ ଦର୍ଶାଇ ଏହାର ସୀମାକୁ କମାଇବା ଓ ଆସାମ ଓ ଓଡ଼ିଶାକୁ ବଙ୍ଗରୁ ବିଚ୍ଛିନ୍ନ କରିବାର ପ୍ରସ୍ତାବ ଦେଇଥିଲେ। (୫) ଭାରତ ସରକାରଙ୍କ ଆକାଉଣ୍ଟାଣ୍ଟ ଜେନେରାଲ ଜର୍ଜ ଚେସନି ମଧ ଭୌଗୋଳିକ ଅବସ୍ଥିତିର ଦୁରାଗମ୍ୟତା ଦର୍ଶାଇ ଉଲ୍ଲିଖିତ ମନ୍ତବ୍ୟକୁ ସମର୍ଥନ କରିଥିଲେ । (୬)

ଓଡ଼ିଆ ଭାଷା ସୁରକ୍ଷା ଓ ଭାଷାଭିତ୍ତିକ ପ୍ରଦେଶ ଗଠନ ଏକ ପ୍ରଲମ୍ବିତ ଆନ୍ଦୋଳନ। ଏହାର ପଶ୍ଚାତରେ କିଛି ବ୍ରିଟିଶ ଶାସକଙ୍କ ସମର୍ଥନ, ଦେଶୀୟ ଲୋକଙ୍କ ଉଦ୍ୟମ ନିହିତ । ୧୮୪୫ରେ ପ୍ରଥମେ ସିଂହଭୂମିର ଲୋକେ ବିଦ୍ୟାଳୟରେ ଓଡ଼ିଆ ଶିକ୍ଷା ଓ ଓଡ଼ିଶା ସହିତ ତାଙ୍କର ବିଶ୍ରଣ ପାଇଁ ସରକାରଙ୍କ ନିକଟରେ ଦାବି କରିଥିଲେ । (୭) ଅନ୍ୟାନ୍ୟ ଅଞ୍ଚଳର ଓଡ଼ିଆମାନେ ନଅଙ୍କ ଦୁର୍ଭିକ୍ଷ ପରେ ଅନୁଭବ କଲେ ବିଚ୍ଛିନ୍ନତା ହିଁ ଓଡ଼ିଆମାନଙ୍କ ସର୍ବଶ୍ରେଷ୍ଠ ଦୁଃଖ । ଭାଷା ଆନ୍ଦୋଳନ ସମୟରେ ଏହି ଅନୁଭବ ଅଧିକ ଦୁର୍ବିସହ ହୋଇଉଠିଥିଲା । ଏଥିପାଇଁ ପତ୍ରପତ୍ରିକା ପୃଷ୍ଠାରେ ପ୍ରତିବାଦ ସହ ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ ଯୋଗୁ ଏହି ଭୂଖଣ୍ଡର ଉନ୍ନତି ସମ୍ଭବ ବୋଲି ଲୋକଚିତ୍ତରେ ଧାରଣା ଜନ୍ମିଥିଲା । ଏହି ଦୁଃଖଦ ଅନୁଭୂତିକୁ ସ୍ୱଭାବ ସୁଲଭ ଢ଼ଙ୍ଗରେ ଉତ୍କଳ ଦୀପିକା 'ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ' ଶୀର୍ଷକରେ ପରିବେଷଣ କରିଥିଲ ।

ତେବେ ଉତ୍କଳ ଭାଷା ଉନ୍ନତି ପ୍ରତି କି ବ୍ୟାଘାତ ଅଛି । ଆମ୍ଭମାନଙ୍କର ବିଶ୍ୱାସ ଏହି ଯେ ବର୍ତ୍ତମାନ ଉତ୍କଳ ଭାଷା 'ତିନି ଥେଁଟିୟା କାକୁଡି ବାଡି' ପ୍ରାୟ ତୁଚ୍ଛାକୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନି ଗଭର୍ଣ୍ଣମେଣ୍ଟ ହୋଇଅଛନ୍ତି । ଏକଭାଗ ବଙ୍ଗଳା ଗଭର୍ଣ୍ଣମେଣ୍ଟ ହସ୍ତେ ଏକ ଭାଗ ମଧ୍ୟପ୍ରଦେଶର ଗଭର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକ ଭାଗ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ହସ୍ତେ ପଡିବାରୁ ଏହାର ସର୍ବାଙ୍ଗ ସମାନ ରୂପେ ଗଠନ ହେଉନାହିଁ । ଏକ ଏକ ସ୍ଥାନରେ ଏକ ଏକ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାର



Digitized by srujanika@gmail.com

ପୁସ୍ତକ ପଠିତ ହୁଅଇ ନିୟମ ଭଲ ଅବା ମନ୍ଦ ଜାଣିବାର ଉପାୟ ନାହିଁ ସୁତରାଂ ଉତ୍କଳ ଭାଷା ଦୁଇଘର କୁଣିୟା ହୋଇ ଉପବାସ ଶୋଉ କେହି ଏହାର ଚର୍ଚ୍ଚା ଅଛି କରିବାକୁ ନାହିଁ ଏ ଗପ ଅବସ୍ଥା ଅତି ଶୋଚନୀୟ ଓ ଆମ୍ଭମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବାର ଉଚିତ । (୮)

ଦୀପିକାର ସ୍ୱର ସହିତ ସ୍ୱର ମିଳାଇ ସମ୍ବାଦ ବାହିକା, ସମ୍ବଲପୁର ହିତୈଷିଣୀ ପ୍ରମୁଖ ସମ୍ବାଦପତ୍ର ଦେଶ ମିଶ୍ରଣ ସପକ୍ଷରେ ବିଭିନ୍ନ ସମୟରେ ମତ ପ୍ରଦାନ କରିଛନ୍ତି । ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ଉଚ୍ଛେଦ (୧୮୯୪-୯୫) ପ୍ରସଙ୍ଗରେ ସମ୍ବଲପୁର ହିତୈଷିଣୀର ପ୍ରତିବାଦ ବେଶ୍ ଶାଣିତ ଓ ଯୁକ୍ତିପୂର୍ଣ୍ଣ । (୯) ଏହି ପର୍ଯ୍ୟାୟରେ ସମ୍ବଲପୁର ହିତୈଷିଣୀର ଘୋଷଣା ପ୍ରଣିଧାନ ଯୋଗ୍ୟ 'ଯଦି ଭାଷା ପରିବର୍ତ୍ତନ ନ କଲେ ମଧ୍ୟ ପ୍ରଦେଶ ଅଧୀନରେ ଏ ଜିଲାର ଶାସନ ବିଚାର କାର୍ଯ୍ୟ ଚଳି ନ ପାରେ ତେବେ ଏ ଜିଲ୍ଲାକୁ ମଧ୍ୟପ୍ରଦେଶରୁ ବାହାର କରି ଓଡ଼ିଶା ସହିତ ମିଶାଇ ଦେଲେ ଭାଷା ପରିବର୍ତ୍ତନ ନ କଲେ ମଧ୍ୟ କାର୍ଯ୍ୟ ଚଳିପାରେ ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥିତ ବିଷୟ ହେବା ଉଚିତ ।''(୧୦)'ସମ୍ବଲପୁର ଭାଷା ସଙ୍କଟ' ଶୀର୍ଷକରେ ପ୍ରୋକ୍ତ ପତ୍ରିକା ପୁଣିଥରେ ଓଡ଼ିଆ ଭାଷା ଅଞ୍ଚଳର ଏକତ୍ରୀକରଣ ପାଇଁ ଦାବି ଉପସ୍ଥାପିତ କରିଛି, ''ଆମ୍ଭମାନଙ୍କ ଏପରି ବିଶ୍ୱାସ ଥିବାରୁ କହୁଅଛୁଁ ଯେ ସମ୍ବଲପୁର, ଗଞ୍ଜାମ ଏବଂ ଏକତ୍ରରେ ଏକ ଚିଫ୍ କମିଶନରଙ୍କ ଅଧୀନରେ ରଖିବା ବିଷୟକ ପୂର୍ବ ପ୍ରସ୍ତାବର ସଫଳ ଚେଷ୍ଟା କଲେ ସେହି ସାଧୁ ସଂକଳ୍ପ ସିଦ୍ଧ ହୋଇପାରେ।''(୧୧)

କେବଳ ଭାଷା ଯୋଗୁଁ ନୁହେଁ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଦୃଷ୍ଟିକୋଣରୁ ଏହି ସମସ୍ତ ଅଞ୍ଚଳର ଓଡ଼ିଶା ସହିତ ମିଶ୍ରଣକୁ ସମକାଳୀନ ପତ୍ରପତ୍ରିକା ସମସ୍ୱରରେ ନିବେଦନ କରିଥିଲେ । ସମ୍ବଲପୁର ଓ ଗଞ୍ଜାମ ଅଞ୍ଚଳ ଓଡ଼ିଶା ସହିତ ମିଶ୍ରଣଦ୍ୱାରା ବୃହତ୍ତର ଓଡ଼ିଶା ପ୍ରଦେଶ ଗଠନ ଓ ତଦ୍‌ଜନିତ ଓଡ଼ିଆ ଭାଷାର ଉନ୍ନତି ସାଧନ ସମ୍ଭବ ହେବ। ଏହି ମତ ପ୍ରଦାନରେ ବାହିକା, ଦୀପିକା, ଉତ୍କଳପୁତ୍ର, ସମ୍ବଲପୁର ହିତୈଷିଣୀ ପ୍ରମୁଖ ସମ୍ବାଦପତ୍ର ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ- ଏକ ବିଶାଳ ଜନ ସଚେତନତା ସୃଷ୍ଟିରେ ସମ୍ବାଦପତ୍ରଗୁଡିକ ସଫଳ ହୋଇଥିଲେ । ଏକତ୍ରୀକରଣ ପାଇଁ ବିଭିନ୍ନ ସ୍ତରରୁ ବିଭିନ୍ନ ପ୍ରେକ୍ଷାପଟରେ ଦାବି ହୋଇଥିଲା । ବିଭିନ୍ନ ବ୍ୟକ୍ତି ବିଶେଷ ଓ ଅନୁଷ୍ଠାନ ତରଫରୁ ସରକାରଙ୍କୁ ସ୍ମାରକପତ୍ର ପ୍ରଦାନ କରାଯାଇଥିଲା ।

ଗଞ୍ଜାମ- ଉତ୍କଳ- ହିତବାଦିନୀ ସଭା ତରଫରୁ ୧୮୬୯ରେ ପ୍ରଥମେ ଦେଶ ମିଶ୍ରଣ ପାଇଁ ଆବେଦନ କରାଯାଇଥିବାର ଜଣାଯାଏ । ଉକ୍ତ ସଭାର ସଭାପତି କାଟିଂଗା ରାଜା



Digitized by srujanika@gmail.com

ଶ୍ରୀ ବେଙ୍କଟଶ ବେଉ ୧୮୭୩ରେ ଉତ୍କଳ ଦୀପିକାରେ ଏକ ପତ୍ର ଲେଖି ଉଲ୍ଲିଖିତ ବିଷୟର ପୁଷ୍ଟି କରନ୍ତି । ବାବୁ କାଳୀପଦ ବନ୍ଦ୍ୟୋପାଧାୟ ବିଲାତର ଆୟବ୍ୟୟ ସଭାରେ ସାକ୍ଷ୍ୟ ଦେବାକୁ ଯାଉଥିବାର ଶୁଣି ତାଙ୍କୁ ପ୍ରାର୍ଥିତ ବିଷୟ ମହାରଣୀଙ୍କଠାରେ ନିବେଦନ କରିବାକୁ ବେଙ୍କଟଶ ଅନୁରୋଧ କରିଛନ୍ତି । ସେ ଲେଖିଥିଲେ- ଯେବେ ଚନ୍ଦ୍ରୋଦୟ ହୁଅନ୍ତି ବନରେ କିମ୍ୱା ଭବନରେ ସମାନ ରଶ୍ମି ବିତରଣ କରନ୍ତି ତେବେ ସାରାସାର ବିବେକ ପ୍ରଭୁର ସମୀପରେ ପ୍ରଜାମାନେ ଯଦ୍ୟପି ଆପଣାର ଦୁଃଖ ଆବେଦନ କରିବେ ସେକି ନ ଶୁଣିବେ ଏମନ୍ତ ଅଭିମତରେ ଗତ ସନ ୧୮୬୯ ମସିହାରେ ଗବର୍ଣ୍ଣରଙ୍କ ସମୀପ ଚାରୋଟି ବିଷୟରେ ଅଙ୍ଗୀକୃତ କରିବା ନିମିତ୍ତ ବିନୟ ଜଣାଇ ପତ୍ରିକା ପ୍ରେରିତ କରିଥିଲେ ଯଥା ୧-ଏ ଜିଲା ରାଜା ଓ ପ୍ରଜା ଶୁଦ୍ଧ ଓଡ଼ିଆ ହୋଇଥିବାରୁ ଓଡ଼ିଆମାନଙ୍କଠାରୁ ଓଡ଼ିଆ ଲିପିରେ ଦରଖାସ୍ତାଦି ମଞ୍ଜୁର କରିବାକୁ ୨-ରିକର୍ଡ ଓଡ଼ିଆରେ ରଖିବାକୁ ୩-ପରୀକ୍ଷା ପ୍ରଥମାବଧି ଯେଉଁପରି ତେଲଙ୍ଗୀ ଭାଷାରେ ଅଙ୍ଗୀକୃତ କରିଅଛନ୍ତି ସେହିପରି ଓଡ଼ିଆରେ ସମ୍ମତ କରିବାକୁ ୪- ପ୍ରତ୍ୟେକ ସ୍କୁଲରେ ଓଡ଼ିଆ କ୍ଲାଶ ରଖିବାକୁ ଆବେଦନ କରିଥିଲେ ।'' (୧୨) ଏହି ଆବେଦନର ଶେଷ ଦୁଇଟି ପ୍ରାର୍ଥନାକୁ ମଞ୍ଜୁର କରାଯାଇଥିଲା । ଅନ୍ୟ ଦୁଇଟି ପ୍ରାର୍ଥନା ସମ୍ପର୍କରେ ବିଲାତରେ ଉଦ୍ୟମ କରିବାକୁ ଏହି ପତ୍ରରେ ବେଉ କାଳୀପଦ ବାବୁଙ୍କୁ ଅନୁରୋଧ କରିଛନ୍ତି ।

ଜନବୀମସ ଓଡ଼ିଶାର କମିଶନର ଥିଲାବେଳେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ଓଡ଼ିଆମାନେ ନିବେଦନ କରିଥିଲେ । (୧୩) ବାଲେଶ୍ୱରବାସୀ ଲେଫ୍‌ଟନେଣ୍ଟ ଗଭର୍ଣ୍ଣର ରିଚାର୍ଡ ଟେଂପଲଙ୍କ ଓଡ଼ିଶା ଗସ୍ତ ସମୟରେ ଦେଶ ମିଶ୍ରଣ ଓ ଅନ୍ୟାନ୍ୟ ସମସ୍ୟା ସମ୍ପର୍କରେ ଦାବିପତ୍ର ପ୍ରଦାନ କରିଥିଲେ । ଏହି ପତ୍ରରେ ଉପସ୍ଥାପିତ ବିଷୟ ଓ ଗଭର୍ଣ୍ଣରଙ୍କ ଉତ୍ତର ''ବାଲେଶ୍ୱର ବାସିନ୍ଦା ପ୍ରାର୍ଥନା ପ୍ରତି ଲେଫଟନେଣ୍ଟ ଗଭର୍ଣ୍ଣରଙ୍କ ଉତ୍ତର''ଶୀର୍ଷକରେ ଦୀପିକା ପୃଷ୍ଠାରେ ପ୍ରକାଶିତ ହୋଇଥିଲା । ଏହି ପତ୍ରରେ ସର୍ବମୋଟ ନଅଟି ପ୍ରାର୍ଥନା କରାଯାଇଥିଲା । ୧- କଲିକତାରୁ ମେଦିନୀପୁର ଓ କୋକନଦା ଦେଇ ମାନ୍ଦ୍ରାଜକୁ ରେଳପଥ ନିର୍ମାଣ - ୨ - ଗଞ୍ଜାମ ଓ ସମ୍ୱଲପୁରକୁ ଓଡ଼ିଶାରେ ମିଶ୍ରଣ ୩- ପ୍ରତ୍ୟେକ ସବଡିଭିଜନରେ ବିଶ୍ୱବିଦ୍ୟାଳୟ ପ୍ରବେଶିକା ପରୀକ୍ଷା ଉପଯୋଗୀ ସରକାରୀ ବିଦ୍ୟାଳୟ ସ୍ଥାପନ ୪- ଗଡଜାତର ଶିକ୍ଷା ବିସ୍ତାର ୫- ଉତ୍କଳୀୟ ବଙ୍ଗାଳୀମାନଙ୍କ ମାତୃଭାଷା ଶିକ୍ଷା ପାଇଁ ବିଦ୍ୟାଳୟ ପ୍ରତିଷ୍ଠା ୬- ବୁଢ଼ାବଳଙ୍ଗ ନଦୀ ମୁହାଁଣ ଗଭୀର କରିବା ୭- ବାଲେଶ୍ୱର ଲବଣ ମାସୁଲ ଉଣା କରିବା ୮- ଓଡ଼ିଶା ଭୂମିର ଚିରସ୍ଥାୟୀ ବନ୍ଦୋବସ୍ତ , ୯- ରାଜସ୍ୱ



Digitized by srujanika@gmail.com

ଆଦାୟ ନିମିତ୍ତ ପ୍ରଜାଙ୍କ ଉପରେ ନିୟମ ପ୍ରଣୟନ। ଏହି ସମସ୍ତ ନିବେଦନ ମଧ୍ୟରୁ ୧,୩,୫,୬ ଓ ୭ ନମ୍ବର ପ୍ରାର୍ଥନାର ଉତ୍ତର ଦିଆଯାଇଛି । ଏହି ପ୍ରାର୍ଥନାର ମୁଖ୍ୟ ଦାବି ଦେଶ ମିଶ୍ରଣକୁ ଲେଫଟନେଣ୍ଟ ଗବର୍ଣ୍ଣର ଚତୁରତାର ସହିତ ଏଡାଇ ଯାଇଥିଲେ । ଏହି ପର୍ଯ୍ୟାୟରେ ଦୀପିକାର ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ- '' ବାଲେଶ୍ୱର ନିବାସୀଙ୍କର ୯ଟି ପ୍ରାର୍ଥନା ମଧ୍ୟରୁ ୫ଟି XXXXଉତ୍ତର ଦେଇ ଅଛନ୍ତି ବାକି ଚାରୋଟି ବିଷୟରେ କିଛି କହିନାହାନ୍ତି ମାତ୍ର ଉତ୍ତରର ଆରମ୍ଭରେ ଲେଖାଅଛି କି ' ଏ ଲିପିରେ ଏପରି ଅନେକ ଅନେକ ବିଷୟ ଅଛିକି ଯାହା ମାନ୍ୟବର ମନୋଯୋଗ ପୂର୍ବକ ବିବେଚନା କରିବେ' । ଏଥିରୁ ବୋଧହୁଅଇ କି ଯେସବୁ ବିଷୟର ଉତ୍ତର ଦେଇ ନାହାନ୍ତି ତାହା ମାନ୍ୟବର ମନୋଯୋଗ ପୂର୍ବକ ବିବେଚନା କରୁଅଛନ୍ତି ।'' (୧୪)

୧୮୭୯ ସେପ୍ଟେମ୍ବର ମାସରେ ଲେଫ୍ଟନାଣ୍ଟ ଗଭର୍ଣ୍ଣର ଟେଂପଲ ସାହେବଙ୍କ କଟକ ଅବସ୍ଥାନ ସମୟେ ଦୁଇଟି ଆବେଦନ ପତ୍ର ପ୍ରଦାନ କରାଯାଇଥିଲା । ଏହି ସ୍ମାରକପତ୍ର ନିଷ୍ଫଳ ହେବା କଥା ' ସରକାରୀ ବ୍ୟୟ ଲାଘବ' ଶୀର୍ଷକ ସମ୍ବାଦରେ ଦୀପିକା ଘୋଷଣା କରିଥିଲା ।

ସମ୍ବଲପୁର ଓଡ଼ିଶାର ଏକ ଅଂଶ ଏବଂ କଟକ ଓ ସମ୍ବଲପୁର ମଧ୍ୟରେ ବାଣିଜ୍ୟ ଇତ୍ୟାଦିରେ ବିଶେଷ ସମ୍ପର୍କ ଓ ପରସ୍ପର ଉପକାର । ତେବେ ଶାସନରେ ସମ୍ବଲପୁର କାହିଁକି ଓଡ଼ିଶାରୁ ବିଛିନ୍ନ ରହିବ ? ସମୁଦାୟ ଉତ୍କଳଦେଶ ଏକ ଶାସନାଧୀନ ହେବାର ବିଧେୟ ଓ ଆବଶ୍ୟକ ବ୍ରହ୍ମପୁର ଓ ଗଞ୍ଜାମ ଓଡ଼ିଶାର ଅନ୍ତର୍ଗତ ହେଲେ ଆହୁରି ଲାଭ ହେବାର ସମ୍ଭାବନାXXXX ।ବାଲେଶ୍ୱର ଓ କଟକରୁ ଏ ବିଷୟରେ ଦୁଇଖଣ୍ଡ ଆବେଦନପତ୍ର ଦିଆ ହୋଇଥିଲା ମାତ୍ର ସେସବୁ ନିଷ୍ଫଳ ହେଲା । ବର୍ତ୍ତମାନ ଏହି ସୁଯୋଗରେ ତଦ୍ରୂପ ଆବେଦନ ହେଲେ ସଫଳ ହେବାର ସମ୍ଭାବନା । ଅତଏବ ଓଡ଼ିଶାବାସିମାନେ ଏ ବିଷୟ ବିବେଚନା କରି ଆବେଦନ ଚେଷ୍ଟା କରନ୍ତୁ । ଆମ୍ଭେମାନେ ଭରସା କରୁଁ ଆମ୍ଭମାନଙ୍କ ବାଲେଶ୍ୱରସ୍ଥ ସହଯୋଗୀମାନେ ଏ ପ୍ରସ୍ତାବର ପୋଷାକତା କରିବେ । (୧୫)

The Oriya Movement ପୁସ୍ତକରେ ୧୮୭୬ରେ ରାଜା ବୈକୁଣ୍ଠ ନାଥ ଦେ ଓ ବିଚିତ୍ରାନନ୍ଦ ସିରସ୍ତାଦାର ସମସ୍ତ ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ ପାଇଁ ସରକାରଙ୍କୁ ସ୍ମାରକପତ୍ର ଦେବା କଥା ଘୋଷଣା କରନ୍ତି । (୧୬) ଏହି ତଥ୍ୟକୁ ଅନେକ ଐତିହାସିକ ଗ୍ରହଣ କରି ନେଇଥିଲେ ମଧ୍ୟ ସ୍ମାରକପତ୍ର ସମ୍ପର୍କରେ କୌଣସି ତଥ୍ୟ ବା ସ୍ୱରୂପ ଦୃଷ୍ଟିଗୋଚର ହୁଏ ନାହିଁ । ସମକାଳୀନ ପତ୍ରପତ୍ରିକାରେ ମଧ୍ୟ ଏହାର ସୂଚନା ମିଳେ ନାହିଁ ।



Digitized by srujanika@gmail.com

ଓଡ଼ିଶାର ରାଜନୈତିକ ଓ ସାମାଜିକ ସମସ୍ୟା ସମୂହର ସମାଧାନ ପାଇଁ ୧୮୮୨ରେ କଟକଠାରେ 'ଉତ୍କଳ ସଭା' ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ଅନେକ ସମାଲୋଚକ 'ଉତ୍କଳ ମଧୁପ' (୧୮୭୮) ପତ୍ରିକାର ପ୍ରକାଶକ 'ଉତ୍କଳ ସଭା'କୁ ଏହି ଉତ୍କଳ ସଭା ସହିତ ସମାନ ଭାବି ଭ୍ରାନ୍ତିର ଶୀକାର ହୁଅନ୍ତି । ବିଭିନ୍ନ କାରଣରୁ ୧୮୮୦ ମସିହା ବେଳକୁ ୧୮୭୮ରେ ଗଠିତ ଉତ୍କଳ ସଭା ଭାଙ୍ଗିଯାଇ ଉତ୍କଳ ମଧୁପ ପ୍ରକାଶନ ବନ୍ଦ ହୋଇଯାଇଥିଲା । (୧୭) ଦ୍ୱିତୀୟ ଉତ୍କଳ ସଭା ୧୮୮୨ରେ ପ୍ରତିଷ୍ଠିତ ହୋଇଥିଲା ଓ ଏହାର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ଥିଲେ ମଧୁସୂଦନ ଦାସ । ଗୌରୀଶଙ୍କର, ନନ୍ଦକିଶୋର ଦାସ ପ୍ରମୁଖ ଏହି ସାଂସ୍କୃତିକ ମଞ୍ଚର ନିୟାମକ ଥିଲେ। ୧୮୮୭ର ପରବର୍ତ୍ତୀ ପର୍ଯ୍ୟାୟରେ ମଧୁବାବୁ ଉତ୍କଳସଭାର ସଭାପତି ରୂପେ ଏହାର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିଥିଲେ । ଉତ୍କଳ ସଭା ଆନୁକୂଲ୍ୟରେ ବଙ୍ଗଳାର ଛୋଟଲାଟ ସାର ଷ୍ଟୁଆର୍ଟ କେଲଭିନଙ୍କୁ ୧୭-୧୧-୧୮୮୮ରେ ଏକ ଅଭିନନ୍ଦନ ପତ୍ର ପ୍ରଦାନ କରାଯାଇଥିଲା। ଏଥିରେ ଓଡ଼ିଶାର ଏକତ୍ରୀକରଣ ପ୍ରସଙ୍ଗକୁ ଦୃଢ଼ ଭାବରେ ଉପସ୍ଥାପନ କରିଥିଲେ ମଧୁସୂଦନ।

At a time when it is proposed to transfer a portion of the central provinces to Bombay presidency, we feel it our duty to solicity your honor's attention to the fact that the tract of the country where the uriyas reside is anomalously placed under the administration of the madras Bengal and the Central provinces Governments. We would therefore ask your honor to place the territorial limits where the oriya language is spoken under one administration and thus knit together under one administration a large population who speak one language and have the same tradition and customs. (୧୮)ଏହି ବିରଳ ସ୍ମାରକପତ୍ର ଉପରେ ସରକାର କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିବାର ଜଣାଯାଏ ନାହିଁ।

୧୮୫୪ ଖ୍ରୀ:ରେ ସମ୍ବଲପୁର ଛୋଟନାଗପୁର କମିଶନରଙ୍କ ଶାସନାଧୀନ ଥିଲା । ପ୍ରୋକ୍ତ ସମୟରେ ଅଦାଲତର ଭାଷା ଥିଲା ହିନ୍ଦୀ କିନ୍ତୁ ୧୮୬୦ ଖ୍ରୀ:ରେ ସମ୍ବଲପୁର ଓଡ଼ିଶା ଅନ୍ତର୍ଗତ ହେବାରୁ କଚେରୀ ଏବଂ ସରକାରୀ କାର୍ଯ୍ୟ ଓଡ଼ିଆ ଭାଷାରେ ହେଲା । ମାତ୍ର ୧୮୬୨ଖ୍ରୀ.ରେ ସମ୍ବଲପୁର ଜିଲ୍ଲା ପୁଣି ମଧ୍ୟପ୍ରଦେଶର ଶାସନାଧୀନ ହେଲା ଓ ୧୮୯୫ ପର୍ଯ୍ୟନ୍ତ ସରକାରୀ ଭାଷା ରୂପେ ଓଡ଼ିଆ ପ୍ରଚଳିତ ଥିଲା । (୧୯) ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହେବା ଦ୍ୱାରା ସରକାରୀ କାର୍ଯ୍ୟରେ ହିନ୍ଦୀ ଭାଷାର ପ୍ରଭାବ ଅନୁଭୂତ ହେଲା।



Digitized by srujanika@gmail.com

ବଦଳି କ୍ଷେତ୍ରରେ ଅସୁବିଧା ସୃଷ୍ଟି ହେଲା । ହିନ୍ଦୀ ଭାଷୀମାନେ ଓଡ଼ିଆ ଅଞ୍ଚଳକୁ ଓଡ଼ିଆମାନେ ହିନ୍ଦୀ ଅଞ୍ଚଳକୁ ବଦଳି ହୋଇଯିବାକୁ କୁଣ୍ଠାବୋଧ କଲେ। ଏହି ସମାଧାନ ପାଇଁ ୧୯.୧.୧୮୯୫ ମଧ୍ୟପ୍ରଦେଶ ଗେଜେଟରେ ଚିଫ୍ କମିଶନର ଜାନୁୟାରୀ୧ ତାରିଖ ୧୮୯୬ରୁ ସମ୍ବଲପୁରରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ସରକାରୀ ଭାଷା ରୂପେ ପ୍ରଚଳନ ହେବ ବୋଲି ବିଜ୍ଞାପନ ପ୍ରକାଶ କଲେ। (୨୦) ଏହି ସମସ୍ୟାର ବିଜ୍ଞାପନ ପ୍ରକାଶର ବହୁ ପୂର୍ବରୁ 'ସମ୍ବଲପୁର ହିତୈଷିଣୀ' ଆଶଙ୍କା ପ୍ରକାଶ କରି ସମସ୍ତଙ୍କୁ ସତର୍କ କରି ଦେଇଥିଲା, ''ସମ୍ବଲପୁର ମାତୃଭାଷାର ଉଚ୍ଛେଦ ସାଧନ କରି ହିନ୍ଦୀ ଭାଷା ଚଳାଇବା ସକାଶେ କର୍ତ୍ତୃପକ୍ଷମାନେ ଆଗ୍ରହାନ୍ୱିତ। ଯେହେତୁ ଏଥିରେ ଏକମାତ୍ର ଓଡ଼ିଆମାନଙ୍କର କ୍ଷତି ଅସୁବିଧା ଛଡା ଅନ୍ୟମାନଙ୍କର କ୍ଷତି ବା ଅସୁବିଧା ନାହିଁ।'' (୨୧)ଓଡ଼ିଆ ଭାଷାର ବିଲୋପ ଚେଷ୍ଟା ଶୀର୍ଷକରେ ହିତୈଷିଣୀ ଉଚ୍ଚ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଛି। ସମ୍ବଲପୁରରେ ହିନ୍ଦୀ ଚଳାଇବା କେବେହେଁ ଉଚିତ ନୁହେଁ। ଏହାଦ୍ୱାରା ସରକାରୀ କାର୍ଯ୍ୟରେ ବାଧା ଉପୁଜିବ । ଯେବେ ଓଡ଼ିଆ ପ୍ରଚଳନରେ ଅସୁବିଧା ଅନୁଭୂତ ହୁଏ ତେବେ ଏ ଜିଲ୍ଲାକୁ ମଧ୍ୟପ୍ରଦେଶରେ ନ ରଖି ଓଡ଼ିଶାରେ ସାମିଲ କରାଯାଉ। (୨୨)

ସମ୍ବଲପୁରର ଏହି ଭାଷା ସଙ୍କଟ ସମୟରେ ସମ୍ବଲପୁର ହିତୈଷିଣୀ ହିଁ ଲୋକ ଚେତନା ଜାଗ୍ରତ କରିବାରେ ଅତନ୍ଦ୍ର ପରିଶ୍ରମ କରିଛି। ୧୮୯୪-୯୫ର ହିତୈଷିଣୀ ଅନେକ ପୃଷ୍ଠାରେ ଏହି ଆନ୍ଦୋଳନକୁ ଉପଯୁକ୍ତ ଇନ୍ଧନ ଯୋଗାଇଛି । ହିନ୍ଦୀ ଭାଷାର ପ୍ରଶୟ ଲାଭ, ଭାଷା ପରିବର୍ତ୍ତନ ସମ୍ବନ୍ଧେ ଡେପୁଟୀ କମିଶନର ସାହେବଙ୍କ ମତ, ମାତୃଭାଷାର ବିଲୋପ, ସମ୍ବଲପୁର ଭାଷା ସଙ୍କଟ, ଓଡ଼ିଆ ଭାଷାର ଅନାଦର ଶୀର୍ଷକରେ ହିତୈଷିଣୀ ଦୃଢ଼ମତ ପ୍ରକାଶ କରି ଜନ ସଚେତନତା ସୃଷ୍ଟି କରିବାରେ ସଫଳ ହୋଇଛି । ହିତୈଷିଣୀ ଓଡ଼ିଆ ଭାଷା ପ୍ରଚଳନ ସପକ୍ଷରେ ନିଜସ୍ୱ ମତ କେବଳ ପ୍ରଦାନ କରିନାହିଁ ବରଂ ବୁଦ୍ଧିଜୀବୀ ଗୋଷ୍ଠୀଙ୍କ ପ୍ରତିକ୍ରିୟା ମଧ୍ୟ ପ୍ରକାଶ କରିଛି । ଉଲ୍ଲିଖିତ ପ୍ରସଙ୍ଗରେ ଗଙ୍ଗାଧର ମେହେରଙ୍କ ଭାରତୀ ରୋଦନ (୨୩) ଓ ଉତ୍କଳ ଭାରତୀଙ୍କ ନିବେଦନ (୨୪) ଜଳନ୍ଧର ଦେବଙ୍କ ଉତ୍କଳ ଭାରତୀଙ୍କ କ୍ଷୋଭ (୨୫) ଓ ନିବେଦନ (୨୬) ଭାଗିରଥି ରଥଙ୍କ ଭାଷା ବିଭ୍ରାଟ (୨୭) କବିତା ସହିତ ଅନେକ ଲେଖକଙ୍କ ଛଦ୍ମନାମରେ ପ୍ରକାଶିତ ପତ୍ର, କବିତା, ଆଲୋଚନା ପ୍ରଭୃତି ଏହି ଆନ୍ଦୋଳନକୁ ଗତିଶୀଳ କରିଥିଲା ।

୧୩ ଜୁଲାଇ ୧୮୯୪ରେ ସମ୍ବଲପୁର ମିଶନାରୀ ପୁସ୍ତକାଳୟଠାରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ଏଥିରେ ପଣ୍ଡିତ ଶ୍ରୀକୃଷ୍ଣ ମିଶ୍ର ସଭାପତିତ୍ୱ କରିଥିଲେ ଏବଂ



Digitized by srujanika@gmail.com

ସୋମନାଥ ବାବୁ ସଭାର ଉଦ୍ଦେଶ୍ୟ ବର୍ଣ୍ଣନା କରିଥିଲେ । ସମ୍ବଲପୁର ଅଞ୍ଚଳର ଅନେକ ବୁଦ୍ଧିଜୀବୀଙ୍କ ଉପସ୍ଥିତିରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ ବିରୁଦ୍ଧରେ ଏକ ସ୍ମାରକପତ୍ର ଚିଫ୍ କମିଶନରଙ୍କୁ ଦେବା ପାଇଁ ସିଦ୍ଧାନ୍ତ ହୋଇଥିଲା । ସ୍ମାରକପତ୍ରଟି ପଣ୍ଡିତ ଧରଣୀଧର ମିଶ୍ର ପଢ଼ିବା ପରେ ସଭାର ଅନୁମୋଦନ ଲାଭ କରିଥିଲା । ଏହି ସଭାର ସିଦ୍ଧାନ୍ତ (Resolution) ସ୍ମାରକପତ୍ର (୨୪.୭.୧୮୯୪) ସହିତ ସଂଯୁକ୍ତ ହୋଇଥିଲା । ସଭାରେ ଦୁଇଟି ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା ।

1. That the people of Sambalpur have learn with great concern that Hindi Language is going to be introduced as the court language of the District and they there fore earnestly pray that his Honour the chief commissioner will be graciously pleased to stop ... introduction and to allow the Urya... to continue as before.

Proposed by Sri Dharanidhar Mishra.

Seconded by Sri madhusudan Guru. and carried by acclamation.

2. That if the prayer embodied in the 1st resolution be not granted the chief commissioner will be pleased to kindly recommend that sambalpur be alienated from central province and be attached to Orissa.

Proposed bu Sri Kripasindhu Mishra

Seconded by Sri Basudeo Guru and carried by acclamation. (୨୮)

ସମ୍ବଲପୁରବାସୀଙ୍କ ଏହି ସ୍ମାରକପତ୍ର ମୁଖ୍ୟତଃ ପୋଲିସ ବିଭାଗରେ ହିନ୍ଦୀ ଭାଷା ପ୍ରଚଳନ ବିରୁଦ୍ଧରେ ପ୍ରଦାନ କରାଯାଇଥିଲା । ଆଶଙ୍କା ପ୍ରକାଶ କରାଯାଇଥିଲା ଯେ ଉକ୍ତ ବିଭାଗର ସାମାନ୍ୟ କେତେକ ଚାକିରିଆଙ୍କ ଉଦ୍ଦେଶ୍ୟ ପୂର୍ତ୍ତି ପାଇଁ ଏକ ସଂସ୍କୃତି ସଂପନ୍ନ ଭାଷା ମୂଳରେ କୁଠାରାଘାତ କରାଯାଇଛି । ସମ୍ବଲପୁରବାସୀ ଶିକ୍ଷା ଦିଗରୁ ଓଡ଼ିଶାର ଅନ୍ୟାନ୍ୟ ଜିଲା ଅପେକ୍ଷା ପଶ୍ଚାତ୍‌ପଦ । ସେମାନେ ନିଜର ଗୁଜୁରାଣ ମେଣ୍ଟାଇବା ପାଇଁ ଓଡ଼ିଆ ଭାଷାରେ ଶିକ୍ଷା ଲାଭ କରିଛନ୍ତି । ସାମାନ୍ୟ ଚାକିରି ପାଇଁ ହିନ୍ଦୀ ଶିକ୍ଷା କରିବା କଷ୍ଟପ୍ରଦ । ପୁନଶ୍ଚ ପିତାମାତା ଚାକିରୀ ଆଶାରେ ଶିଶୁମାନଙ୍କୁ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଶିକ୍ଷାଦେବେ ଏବଂ ଓଡ଼ିଆ ସ୍କୁଲ ପରିବର୍ତ୍ତେ ଚତୁର୍ଦ୍ଦିଗରେ ହିନ୍ଦୀ ସ୍କୁଲ ଗଢ଼ି ଉଠିବ ଫଳରେ ଓଡ଼ିଆ



Digitized by srujanika@gmail.com

ଭାଷା କାଳକ୍ରମେ ନିଶ୍ଚିହ୍ନ ହୋଇଯିବ । ଏହି ବିଷୟ ଗର୍ଭିତ ସ୍ମାରକପତ୍ରଟି ଧରଣୀଧର ମିଶ୍ର ଓ ୩୮୬ ଜଣ ଅନ୍ୟ ସଭ୍ୟଙ୍କ ଦ୍ୱାରା ସ୍ୱାକ୍ଷରିତ ହୋଇଥିଲା। ସେମାନେ ଓଡ଼ିଆ ଭାଷାର ପ୍ରଚଳନ ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଥିଲେ । ଅନ୍ୟଥା ସମ୍ବଲପୁରକୁ କେନ୍ଦ୍ରାଞ୍ଚଳରୁ ବିଚ୍ଛିନ୍ନ କରି ଓଡ଼ିଶା ସହିତ ମିଶ୍ରଣ କରିବା ପାଇଁ ନିବେଦନ କରିଥିଲେ।

To day order is issued for the use of Hindi Language in the police, tomorrow it will be introduced into the cutcherry, then it will be adopted in the settlement department and lastly Hindi instead of Urya schools will have to be established. People take to learning in order to earn their livelihood. When they will see that they cannot be helped in getting employments by learning urya and that a knowledge in Hindi is requisit there is no reason why the guardians should not prefer to teach their children Hindi from their boyhood. That this will spoil the education itself need not be shown again, and in the course of some years there will be an increase in the number of Hindi schools and a decrease in the number of urya schools and urya language will go to the wall. This is a very hard blow directed upon the petitioners, under which they connot but be crushed. x x x x x x x x x

x x xx x x x x x x x x x

That in consideration of the language manners and customs of the people here, Sambalpur has always received a special treatment hitherto, and if any inconvenience is experienced in connection with the administration of the district for its being the only urya district in the central provinces, it ought to be alienated from the central provinces and annexed to orissa Rumours had been more than twice afloat that on the dismemberment of the central provinces, Sambalpur should be attached to Orissa, but it was never carried into effect. (୨୯)

ଏହି ସ୍ମାରକପତ୍ରଟି RAB ଚାପମେନ ଡେପୁଟି କମିଶନର ସମ୍ବଲପୁରଙ୍କ ମନ୍ତବ୍ୟ ସହିତ ପତ୍ର ନଂ. ୩୯୧୭ ତା ୪।୯।୧୮୯୪ରେ ଚିଫକମିଶନର କେନ୍ଦ୍ରାଞ୍ଚଳକୁ ପ୍ରେରଣ କରାଯାଇଥିଲା । ଏହି ସ୍ମାରକପତ୍ରର ମୂଳ ବିଷୟବସ୍ତୁ ହେଲା କେନ୍ଦ୍ର ପ୍ରଦେଶର ପୋଲିସ ଆଇ.ଜିଙ୍କ ପତ୍ର ନଂ. ୩୨୩୬ ତା ୩୧ ମାର୍ଚ୍ଚ ୧୮୯୪ରେ ସମ୍ବଲପୁର ପୋଲିସ



Digitized by srujanika@gmail.com

ବିଭାଗରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଚଳିବାର ପ୍ରସ୍ତାବ ଦେଇଥିଲେ । କମିଶନର ଛତିଶଗଡଙ୍କ ପତ୍ର ନଂ. ୩୨୦୫ ତା ୨୧।୪।୧୮୯୪ରେ ଏହି ପ୍ରସ୍ତାବକୁ ମଞ୍ଜୁରୀ ଦିଆଯାଇଥିଲା ଏବଂ ରାଜସ୍ୱ ବିଭାଗ ଓ ଅଦାଲତରେ ହିନ୍ଦୀ ପ୍ରଚଳନ ସମ୍ପର୍କରେ ସମ୍ବଲପୁର ଡେପୁଟି କମିଶନରଙ୍କ ମତ ଆହ୍ୱାନ କରାଯାଇଥିଲା । ମଦନମୋହନ ମିଶ୍ର ଏବଂ ଅନ୍ୟାନ୍ୟ ପ୍ରାର୍ଥୀ ସମ୍ବଲପୁରଙ୍କ ୨୪ ଜୁଲାଇ ୧୮୯୪ ସ୍ମାରକପତ୍ରରେ ହିନ୍ଦୀ ପ୍ରଚଳନ ବିରୁଦ୍ଧରେ ଦାବିକୁ ଛତିଶଗଡ ଡିଭିଜନ କମିଶନରଙ୍କ ପତ୍ର ନଂ. ୫୫୯୮ ତା ୧୩।୮।୧୮୯୪ରେ ପ୍ରେରଣ କରାଗଲା ଏବଂ ପ୍ରାର୍ଥୀମାନଙ୍କ ସ୍ମାରକପତ୍ର ଉପରେ ସମୟ ଆସିଲେ ବିଚାର କରାଯିବ ବୋଲି ଜଣାଇ ଦିଆଗଲା । (୩୦) ସଂଶିତ  ସ୍ମାରକପତ୍ରଟି ତଳୁ ଉପର ସମସ୍ତ ଦପ୍ତର ଭ୍ରମଣ କରି ଶେଷରେ ନିରାଶାର ସ୍ୱାଦ ଚାଖିଥିଲା ।

ଏହି ସ୍ମାରକପତ୍ରର ପ୍ରଥମ ସ୍ୱାକ୍ଷରକାରୀ ଧରଣୀଧର ମିଶ୍ର ଥିଲେ ମଧ୍ୟ ସରକାରୀ ଫାଇଲରେ ମଦନମୋହନ ମିଶ୍ର ଓ ଅନ୍ୟମାନେ ବୋଲି ସବୁ ସମୟରେ ସୂଚୀତ- ହୋଇଛି ଏହି ସ୍ମାରକପତ୍ରକୁ ପ୍ରାର୍ଥୀମାନଙ୍କର ଭାବୋଚ୍ଛ୍ୱାସପୂର୍ଣ୍ଣ ଆବେଗ ପ୍ରଣୋଦିତ ଲେଖା ଭାବରେ ଚିଫ କମିଶନର ଏଡାଇଗଲେ ।

ସମ୍ବଲପୁର ଜିଲ୍ଲାର ଅଦାଲତ ସମୂହରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଭାଷା ୧୮୯୬ ଜାନୁୟାରୀ ପହିଲାରୁ ପ୍ରଚଳିତ ହେବାର ଆଦେଶ ପ୍ରଚାରିତ ହେଲାପରେ ସମ୍ବଲପୁରବାସୀ ମ୍ରିୟମାଣ ହୋଇ ପଡିଥିଲେ । ପଣ୍ଡିତ ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ ଏକ ବିରାଟ ସାଧାରଣ ସଭା ୧୩ ଜୁନ୍ ୧୮୯୫ରେ ସୋମେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ସୋମନାଥ ବାବୁ ସଭାପତିତ୍ୱ କରିଥିଲେ । ଏହି ସଭାରେ ଧରଣୀଧର ମିଶ୍ରଙ୍କ ପ୍ରସ୍ତୁତ ଏକ ବିରାଟ ସ୍ମାରକପତ୍ର ଭାଇସରାୟ ଲର୍ଡଏଲଗିନଙ୍କ ଉଦ୍ଦେଶ୍ୟରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଏହି ଇଂରାଜୀ ସ୍ମାରକପତ୍ରର ଓଡ଼ିଆ ସଂସ୍କରଣକୁ ପ୍ରତି କମିଟି ପ୍ରତି ଗ୍ରାମରେ ପ୍ରଚାର କରି ଲୋକଙ୍କୁ ବୁଝାଇ ଦିଆଗଲା ଏହି ଆନ୍ଦୋଳନ ପାଇଁ ପ୍ରତି ଅଞ୍ଚଳର ଲୋକେ ମୁକ୍ତ ହସ୍ତରେ ଅନୁଦାନ ପ୍ରଦାନ କଲେ ।(୩୧)

ଏହି ସ୍ମାରକପତ୍ରରେ ଓଡ଼ିଆ ଭାଷାର ପ୍ରାଚୀନତା ପ୍ରଦର୍ଶନ କରାଯାଇଛି । କପ୍ତାନ ବୃକ ସାହେବ  ଓଡ଼ିଆ ଅମଲାମାନଙ୍କ 'ମହାପ୍ରସାଦ' ବସିବା କଥାକୁ ଅତିରଞ୍ଜନ କରି କହିଛନ୍ତି ମହାପ୍ରସାଦ ବସିବାଦ୍ୱାରା ସରକାରୀ କାର୍ଯ୍ୟରେ ବ୍ୟାଘାତ ଘଟିଥାଏ । ଏହି ପରି ହାସ୍ୟାସ୍ପଦ ଯୁକ୍ତି  ସମୂହକୁ ସ୍ମାରକ ପତ୍ରରେ ଖଣ୍ଡନ କରାଯାଇ ବୃକ ସାହେବଙ୍କ ପରସ୍ପର ବିରୋଧୀ ମନ୍ତବ୍ୟକୁ ଦର୍ଶାଇ ଦିଆଯାଇଛି। ଆସାମ ପ୍ରଦେଶରେ ଆସାମୀ ଅପେକ୍ଷା ବଙ୍ଗ



Digitized by srujanika@gmail.com

ଭାଷା ଅଧିକ ଲୋକ ବ୍ୟବହାର କରନ୍ତି ଅଥଚ ସେଠାରେ ସରକାର ଆସାମୀ ଭାଷା ପ୍ରଚଳନର ଆଦେଶ ଦେଇଛନ୍ତି । କିନ୍ତୁ ସମ୍ବଲପୁରରେ ଓଡ଼ିଆ ଭାଷୀ ଲୋକ ସମଗ୍ର ଆସାମ ପ୍ରଦେଶର ଆସାମ ଭାଷୀ ଲୋକଙ୍କଠାରୁ ଦୁଇଲକ୍ଷ ଅଧିକ ଅଥଚ ଏଠାରେ ଓଡ଼ିଆ ଭାଷା ଉଚ୍ଛେଦ କରିବା ସଂପୂର୍ଣ୍ଣ ଅନ୍ୟାୟ । ସମ୍ବଲପୁରବାସୀ ଉପରେ ଯଦି ଦୁଇଟି ବିଦେଶୀ ଭାଷା ହିନ୍ଦୀ ଓ ଇଂରେଜୀ ଲଦି ଦିଆଯାଏ ତେବେ ଅଚିରେ ଓଡ଼ିଆ ଭାଷା ଲୋପ ପାଇବ ଯେତେବେଳେ ଓଡ଼ିଶାରେ ବଙ୍ଗ ଭାଷା ପ୍ରଚଳନର ଚକ୍ରାନ୍ତ ଚାଲିଥିଲା ସେତେବେଳେ ସରକାର ଓଡ଼ିଆ ଭାଷାର ଐତିହ୍ୟକୁ ସ୍ୱୀକାର କରି ଓଡ଼ିଶାବାସୀଙ୍କ ପ୍ରତିବାଦ ଗ୍ରହଣ କରି ଓଡ଼ିଆ ଭାଷା ପ୍ରଚଳନର ଆଦେଶ ଦେଇଥିଲେ । ସେହି କ୍ରମରେ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ କରାଯାଉ ଓ ଓଡ଼ିଶା ସହିତ ସଂଯୋଗ ସମ୍ପର୍କରେ ସ୍ମାରକପତ୍ରର ଶେଷରେ ପ୍ରାର୍ଥନା କରାଯାଇଛି-

ସମ୍ବଲପୁରଠାରୁ କଟକର ଦୂରତ୍ୱ ରାଏପୁରରୁ ଅଧିକ ନୁହେଁ । ପୂର୍ବେ ସମ୍ବଲପୁରରୁ କଟକ ପର୍ଯ୍ୟନ୍ତ ପଥ ବିପଦସଙ୍କୁଳ ଥିଲା ମାତ୍ର ବର୍ତ୍ତମାନ ସେ ସମସ୍ତ ଅଧିକ ପରିମାଣରେ ତିରୋହିତ ହୋଇଅଛି। ଆହୁରି ମଧ ଓଡ଼ିଶ୍ୟାର ସହିତ ଏ ଦେଶ ରେଳପଥ ଦ୍ୱାରା ସଂଯୁକ୍ତ ହେବାର ପ୍ରସ୍ତାବ ଧାର୍ଯ୍ୟ ହୋଇଯାଇଅଛି । ଏପରି ଅବସ୍ଥାରେ ୧୭୦୨୭୩୨ ସଂଖ୍ୟକ ଲୋକଙ୍କୁ ଭାଷା ପରିବର୍ତ୍ତନ ଜନିତ କଷ୍ଟ ନ ଦେଇ ଯେଉଁମାନଙ୍କ ସଙ୍ଗରେ ସେମାନଙ୍କର ସ୍ୱାଭାବିକ ସଂଯୋଗ ସେମାନଙ୍କ ସହିତ ଯୁକ୍ତ କରିବା ପ୍ରାର୍ଥନୀୟ । ଅତ୍ୟନ୍ତ ବିନୀତ ଭାବରେ ଆବେଦନକାରୀମାନେ ପ୍ରାର୍ଥନା କରୁଅଛନ୍ତି ଯେ ଶ୍ରୀଛାମୁ ଅନୁକଂପାପୂର୍ବକ ଚିଫ୍ କମିଶନର ବାହାଦୂରଙ୍କ ଭାଷା ପରିବର୍ତ୍ତନର ଆଦେଶ ରହିତ କରି ପୂର୍ବବତ ଓଡ଼ିଆ ପ୍ରଚଳିତ ହେବାର ଆଦେଶ ଦାନ କରନ୍ତୁ ଅଥବା ସମ୍ବଲପୁର ଏବଂ ତାହାର ଗଡଜାତମାହାଲମାନଙ୍କୁ ଓଡ଼ିଶ୍ୟା ସହିତ ସଂଯୁକ୍ତ କରି ଦେଉନ୍ତୁ ।(୩୩)

ଏହି ସ୍ମାରକପତ୍ର ବହୁ ସଂଖ୍ୟାରେ ବଣ୍ଟନ କରାଯାଇଥିଲା । ତାର ପ୍ରତିଲିପି ସମ୍ବଲପୁର ହିତୈଷିଣୀ (୭/୨-୩) ପୃଷ୍ଠାରେ ପ୍ରକାଶିତ।

ସମ୍ବଲପୁରବାସୀଙ୍କ ଏହି ଆନ୍ଦୋଳନକୁ ଆତ୍ମିକ ସମର୍ଥନ ଜଣାଇଥିଲା କଟକର ଓଡ଼ିଶା ଏସୋସିଏସନ ( ଉତ୍କଳ ସଭା) । ୨୦ ଜୁନ୍ ୧୮୯୫ରେ ଓଡ଼ିଶା ଏସୋସିଏସନର ସଭାପତିଙ୍କ ସ୍ୱାକ୍ଷର ସମ୍ବଳିତ ୪୫ ଅନୁଚ୍ଛେଦ ବିଶିଷ୍ଟ ଏକ ସ୍ମାରକପତ୍ର ଏଲଗିନଙ୍କୁ ପଠାଯାଇଥିଲା। ଏହି ସ୍ମାରକପତ୍ରରେ ଓଡ଼ିଆ ଭାଷାର ସାମର୍ଥ୍ୟ, ସଂସ୍କୃତ ସହିତ ନିକଟ ସମ୍ବନ୍ଧ ପ୍ରଦର୍ଶିତ ହୋଇଛି । ବ୍ରିଟିଶ ସରକାରଙ୍କ ନ୍ୟାୟ ଯୋଗୁ ୧୮୬୯ ମସିହାରେ



Digitized by srujanika@gmail.com

ବଙ୍ଗଳା ଭାଷା ଆକ୍ରମଣରୁ ଓଡ଼ିଆ ଭାଷାର ବିଜୟ ଏବଂ ଗଞ୍ଜାମ ଅଞ୍ଚଳରେ ଓଡ଼ିଆ ଭାଷାର ସରକାରୀ ଭାଷା ରୂପେ ସ୍ୱୀକୃତି ପ୍ରଦାନକୁ ସ୍ମରଣ କରାଯାଇଛି । ସେହି ବ୍ରିଟିଶ ଶାସନାଧୀନ ସମ୍ବଲପୁରରେ ଓଡ଼ିଆ ଭାଷା ଉଚ୍ଛେଦ କରିବା ଅନ୍ୟାୟ ହୋଇଛି । କେନ୍ଦ୍ର ପ୍ରଦେଶର ଚିଫ କମିଶନରଙ୍କ ପଦକ୍ଷେପକୁ ଏହି ସ୍ମାରପତ୍ରରେ ସମାଲୋଚନା କରି ଓଡ଼ିଆ ପ୍ରଚଳନର ଆଦେଶ ଦେବାକୁ ପ୍ରାର୍ଥନା କରାଯାଇଥିଲା ।

ସେ ଯାହେଉ ଭାରତ ସରକାର ଏହି ସ୍ମାରକପତ୍ର ଉପରେ କୌଣସି ପଦକ୍ଷେପ ଗ୍ରହଣ ନ କରି ବରଂ ଏହାକୁ କେନ୍ଦ୍ର ପ୍ରଦେଶ ଚିଫ୍ କମିଶନରଙ୍କ ମନ୍ତବ୍ୟ ପାଇଁ ପ୍ରେରଣ କରିଥିଲେ । (୩୫)

ଉଲ୍ଲିଖିତ ସ୍ମାରକପତ୍ର ସମୂହ, ସମ୍ବଲପୁର ହିତୈଷିଣୀ ପତ୍ରିକା, ସମ୍ବଲପୁର ବୁଦ୍ଧିଜୀବୀଙ୍କ ଆନ୍ତରିକ ଉଦ୍ୟମ ଓ ସାର ଏଣ୍ଡ୍ର ଫ୍ରେଜରଙ୍କ ପ୍ରଚେଷ୍ଟା ଫଳରେ ୧୯୦୩ ଜାନୁୟାରୀ ୧ ତାରିଖ ସମ୍ବଲପୁର ଜିଲ୍ଲାର ଅଦାଲତ ସମୂହରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ ହେବାର ଆଦେଶ ପ୍ରଦତ୍ତ ହେଲା । ଏହି ସମ୍ବାଦକୁ ଅତ୍ୟନ୍ତ ଆନନ୍ଦର ସହିତ ସମ୍ବଲପୁର ହିତୈଷିଣୀ ସମ୍ବଲପୁରରେ 'ଓଡ଼ିଆ ଭାଷା' ଶୀର୍ଷକରେ ଘୋଷଣା କରିଥିଲା । (୩୬)

୧୫ ଡିସେମ୍ବର ୧୯୦୨ରେ ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେ ବାହାଦୁର ଉତ୍କଳ ଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଏକ ସ୍ମାରକପତ୍ର ବଡଲାଟ ଲଡକର୍ଜନଙ୍କୁ ପ୍ରେରଣ କରିଥିଲେ। ଏହି ସ୍ମାରକପତ୍ରରେ ଓଡ଼ିଶାର ପ୍ରାଚୀନତା, ଓଡ଼ିଶାର ପବିତ୍ରତା, ଐତିହାସିକ ଗୁରୁତ୍ୱ, ଓଡ଼ିଶାର ପ୍ରାଚୀନ ସୀମା, ଓଡ଼ିଆ ଭାଷା ପ୍ରଚଳିତ ଭୂମିଖଣ୍ଡ, ଓଡ଼ିଶାରେ ପ୍ରଥମ ବ୍ରିଟିଶ ବନ୍ଦୋବସ୍ତ, ସରକାରଙ୍କ ଅଧୀନରେ ଓଡ଼ିଶାର ଉନ୍ନତି, ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣର ଉଦ୍ଦେଶ୍ୟ ଶୀର୍ଷକରେ ଯୁକ୍ତିପୂର୍ଣ୍ଣ ତଥ୍ୟ ଉପସ୍ଥାପିତ ହୋଇଥିଲା। (୩୭)

ଏହି ସ୍ମାରକପତ୍ରରେ ବୈକୁଣ୍ଠନାଥ ଦେ ଦର୍ଶାଇଛନ୍ତି -

That Uriya is at present the common dialect in the northern half of the carnatic, including Ganjam, Berhampur, Chicacole, Gumlsur , Parlakimidi, Khalicote etc. Orissa including its 18 dependencies the Garjats, Southern portion of the District of Midnapur, and the eastern portion of the central provinces including Chhatisgar, Raipur, Bilaspur, Sambalpur, Bamara, Raigar, Kalahandy,Rerhakhol, Saranggur, Sonepur etc. and a part of the chhotnagpur Division...



Digitized by srujanika@gmail.com

Their manners, customs and modes of living were almost the same through out. But they have under gone changes to some extent in those portions of the area which are under the direct administration of the British Govt. The whole uriya speaking nation is governed by the same Mitakshara School of Hindu Law. This also testifics to the fact that the people were at one time under one common administration of the kings of Orissa.(38)

ଏହି ପ୍ରାଚୀନ ଐତିହାସିକ ଖଣ୍ଡବିଖଣ୍ଡିତ ଓଡ଼ିଆଭାଷା ଭୂଖଣ୍ଡର ଏକତ୍ରୀକରଣ ଦ୍ୱାରା ହିଁ ଓଡ଼ିଆ ଜାତିର ଉନ୍ନତି ସମ୍ଭବ ଅନ୍ୟଥା ଏହି ଜାତି କାଳ ଗର୍ଭରେ ଲୋପପାଇବ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗଞ୍ଜାମର ଓଡ଼ିଶା ସହିତ ମିଶ୍ରଣ ନେଇ ଆଗ୍ରହ ପ୍ରକାଶ ପାଇଲା । ୧୯୦୨ରେ ଲର୍ଡ଼ କର୍ଜନଙ୍କୁ ଗଞ୍ଜାମ ମିଶ୍ରଣ ସମ୍ପର୍କିତ ସ୍ମାରକପତ୍ର ଗଞ୍ଜାମବାସୀଙ୍କ ତରଫରୁ ପ୍ରଦାନ କରାଯାଇଥିଲା । ଏଥିରେ ରାଜା, ଜମିଦାର ଏବଂ ସାଧାରଣ ଲୋକ ଶହ ଶହ ସଂଖ୍ୟାରେ ସ୍ୱାକ୍ଷର କରିଥିଲେ । (୩୯)

ସେହି ସ୍ମାରକପତ୍ରରେ ଶରୀରରୁ ବିଚ୍ଛିନ୍ନ ଅଙ୍ଗ ପରି ଗଞ୍ଜାମବାସୀଙ୍କ ଅବସ୍ଥା ବର୍ଣ୍ଣନା କରାଯାଇଛି । ଏହି ଅସୁବିଧା ଦୂରୀକରଣ ପାଇଁ କୌଣସି ସାମୟିକ ପଦକ୍ଷେପ ନୁହେଁ ବରଂ ଦୀର୍ଘସ୍ଥାୟୀ ପଦକ୍ଷେପ ଗ୍ରହଣ ପାଇଁ ଭାରତ ସରକାରଙ୍କୁ ଅନୁରୋଧ କରାଯାଇଛି । ବିଭିନ୍ନ ଉପାନ୍ତ ଅଞ୍ଚଳରେ ବିଚ୍ଛିନ୍ନ ଥିବା ଓଡ଼ିଆଭାଷୀଙ୍କୁ ଏକତ୍ରକରି ପୂର୍ଣ୍ଣାଙ୍ଗ ଉତ୍କଳ ଗଠନ ପାଇଁ ଆବେଦନ କରାଯାଇଥିଲା । (୪୦)

ଗଞ୍ଜାମବାସୀଙ୍କ ଏହି ଆବେଦନକୁ ଯଥାର୍ଥ ଏବଂ ଯୁଗୋପଯୋଗୀ ଭାବେ ଅଭିହିତ କରିଛି ଉତ୍କଳଦୀପିକା । 'ଉତ୍କଳ ଖଣ୍ଡର ରାଜକୀୟ ସଂଯୋଗ' ଶୀର୍ଷକରେ ଦୀପିକା ଘୋଷଣା କରେ-

> ''xxx ଗଞ୍ଜାମ ଜିଲାକୁ ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ଅଧୀନ ଓଡ଼ିଶା ସଙ୍ଗେ ଯୋଗକରି ଏକ ଶାସନାଧୀନରେ ରଖିବା କାରଣ ମହାମାନ୍ୟ ଗବର୍ଣ୍ଣର ଜେନେରାଲ୍‌ଙ୍କଠାରେ ଆବେଦନ କରିଅଛନ୍ତି । ସେମାନଙ୍କ ଗୁହାରୀ ଯଥାର୍ଥ ଏଥିରେ ସନ୍ଦେହ ନାହିଁ ଏବଂ ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ମହାମତି ଲର୍ଡକର୍ଜନ ବାହାଦୁର ଯେମନ୍ତ ସୁବିଚାରପୂର୍ବକ ସମ୍ବଲପୁର ଓଡ଼ିୟାଙ୍କ ଦୁଃଖ ଦୂର କରିଅଛନ୍ତି ତେମନ୍ତ ଗଞ୍ଜାମ ଓଡ଼ିଆଙ୍କର ଦୁର୍ଦ୍ଦଶା ମୋଚନ ଏବଂ ଉନ୍ନତିର ମାର୍ଗ ପ୍ରଶସ୍ତ କରିବାର ସୁବିଚାର କରିବେ । (୪୧)



Digitized by srujanika@gmail.com

ଗଞ୍ଜାବାସୀଙ୍କ ସ୍ମାରକପତ୍ର ଉପରେ ୨୨.୪.୧୯୦୩ ରେ 'ଉତ୍କଳ ସଭାର ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା ଏହି ସଭାରେ ପାଞ୍ଚଟି ନିର୍ଦ୍ଧାରଣ କରାଯାଇଥିଲା ।

୧) ଗଞ୍ଜାମ ଜିଲାର ଅଧିବାସୀଙ୍କ ଆବେଦନପତ୍ର ପ୍ରତି ସଂପୂର୍ଣ୍ଣ ସହାନୁଭୂତି ।

୨) ଓଡ଼ିଆ ଭାଷୀଙ୍କୁ ଗୋଟିଏ ଶାସନ ଓ ଶିକ୍ଷା ପ୍ରଣାଳୀ ଅଧୀନରେ ରଖିବା ।

୩) ଏହି ସଭାରୁ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଏକ ଆବେଦନପତ୍ର ପଠାଯାଇ ଯେଉଁଥିରେ (କ) ସମ୍ବଲପୁର, ଛୋଟନାଗପୁର, ଗଞ୍ଜାମ, ବିଶାଖାପଟନମ ଏବଂ ମେଦିନୀପୁର ଜିଲାମାନଙ୍କର ଓଡ଼ିଆ ଭାଷୀ ବିଭାଗର ଓଡ଼ିଶା ସହିତ ମିଶ୍ରଣ (ଖ) ଆସାମ ପରି ଓଡ଼ିଶାକୁ ଗୋଟିଏ ଭିନ୍ନ ଚୀଫ୍ କମିଶନରସିପ୍ ଗଠିତ କରାଯାଇ କଲିକତା ହାଇକୋର୍ଟର ବିଚାରାଧୀନ ଓ କଲିକତା ବିଶ୍ୱବିଦ୍ୟାଳୟ ଶିକ୍ଷାଧୀନ ରଖାଯାଉ ।

୪) ଆବେଦନପତ୍ର ପ୍ରସ୍ତୁତ ପାଇଁ ମଧୁସୂଦନ ଦାସ, ରାମଶଙ୍କର ରାୟ, ପାଦ୍ରି ଜି.ଏଚ୍. ହାଉଏଲ୍ ସାହେବ, ପାଦ୍ରି ଜି.ଏଚ୍ ହୁଆଇଟ ସାହେବ ଓ ଗୋକୁଳାନନ୍ଦ ଚୌଧୁରୀଙ୍କୁ ନେଇ ଏକ ଶାଖା ସମିତି ଗଠିତ ହେଉ ।

୫) ଏହି ଆବେଦନପତ୍ର ଗବର୍ଣ୍ଣର ଜେନେରାଲ୍‌ଙ୍କୁ ପ୍ରଦାନ ପାଇଁ ଉତ୍କଳ ସଭାକୁ ଭାର ଦିଆଯାଉ । (୪୨)

ଏହି ସଭାରେ ଓ କଟକସ୍ଥ ବୁଦ୍ଧିଜୀବୀଙ୍କ ବ୍ୟତୀତ ଅନେକ ଖ୍ରୀଷ୍ଟିୟାନ ସାହେବ ଓ ପଦସ୍ଥ କର୍ମଚାରୀ ଯୋଗ ଦେଇଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ପୃଷ୍ଠ ପୀଠିକାରେ ଅନେକ ବ୍ୟକ୍ତିବିଶେଷ, ଅନୁଷ୍ଠାନ ଓ ଅଞ୍ଚଳର ଉତ୍ସର୍ଗୀତ ଉଦ୍ୟମ ପ୍ରଚ୍ଛନ୍ନ । ୧୯୦୩ ବେଳକୁ ଗଞ୍ଜାମ ଜାତୀୟ ସମିତି ଗଠନ ଓ ପରେ ପରେ ମଧୁବାବୁଙ୍କ ଉଦ୍ୟମରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲା । ଏହି ଜାତୀୟ ଆନ୍ଦୋଳନକୁ ଉଲ୍ଲିଖିତ ସ୍ମାରକପତ୍ର ବ୍ୟତୀତ ଆହୁରି ଅନେକ ଅଜ୍ଞାତ ସ୍ମାରକପତ୍ର ଗୁରୁତ୍ୱମନ୍ତ କରିଥିଲା । ଓଡ଼ିଶା ପ୍ରଦେଶ ଗଠନ ଇତିହାସରେ ସ୍ମାରକପତ୍ରଗୁଡିକର ଭୂମିକା ସର୍ବାଦୌ ସ୍ମରଣୀୟ । ଓଡ଼ିଆମାନଙ୍କର ବାରଂବାର ଆପତ୍ତି ଅଭିଯୋଗ ଆବେଦନ ନିବେଦନ ଓ ଜନଜାଗରଣର ଫଳସ୍ୱରୂପ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ଭବ ହୋଇଥିଲା । ୧୯୦୩ ପୂର୍ବବର୍ତ୍ତୀ ନିର୍ବାଚିତ କିଛି ସ୍ମାରକପତ୍ରର ପୃଷ୍ଠଭୂମି ବିଶ୍ଳେଷଣ ଦ୍ୱାରା ଊନବିଂଶ ଶତାବ୍ଦୀର ଏକ ଅଭୂତପୂର୍ବ ଜନଜାଗରଣର ସ୍ୱରୂପ ଏଠାରେ ସ୍ପଷ୍ଟ



Digitized by srujanika@gmail.com

ହୋଇଉଠିଛି । ଏହି ଜନଜାଗରଣ ଆହୁରି ତିନି ଦଶନ୍ଧି ପରେ ଆଶାନୁରୂପ ଫଳ ପ୍ରସବ କରିଥିଲା । ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ପରେ ଯେଉଁ ଆନ୍ଦୋଳନ ଉଚିତ ଦିଗ୍‌ଦର୍ଶନ ଲାଭ କରିଥିଲା ତାର ପ୍ରାରମ୍ଭିକ ରୂପ ଥିଲା ଅତୀବ ବୈଚିତ୍ର୍ୟମୟ । ସେହି ବୈଚତ୍ର୍ୟମୟ ରୂପ ଉଲ୍ଲିଖିତ ସ୍ମାରକପତ୍ର ଅନ୍ତରାଳରେ ସହଜ ଲଭ୍ୟ ।□□□

## ଉପାଦାନ ପଞ୍ଜିକା :


୧) Amos sutton: Orissa and its evangelization ଉଦ୍ଧୃତ - ମିଶ୍ର, ଶ୍ରୀନିବାସ : ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ ୧୯୯୫ (୧୯୭୮) : ପୃ-୩୧

୨) Mohanty, Nivedita: Oriya Nationalism quest for a united Orissa, 1982, Manohar publication New Delhi. PP-17-18

୩) ମିଶ୍ର, ଗୋପାଳ ଚନ୍ଦ୍ର : ଓଡ଼ିଶାର ବିକାଶରେ ପତ୍ରପତ୍ରିକାର ପ୍ରଭାବ ୧୯୭୯: ପୃ-୨୧, ଗ୍ରନ୍ଥ ପ୍ରକାଶନୀ, କଟକ

୪) ସାମନ୍ତରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ -୧୯୮୩ (୧୯୬୪)- ପୃ-୨୧, ଗ୍ରନ୍ଥାଳୟ, ଭୁବନେଶ୍ୱର ।

୫) Risley circular of 3 December 1903, No-3678 Para-2

୬) George chesney, Indian Polity, pp-118, London. Quated, Patra, S.C., Formation of the province of Orissa, 1979, Punthi Pustak, Calcutta.

୭) ତତ୍ରୈବ - ପୃ- ୧୨୩

୮) ଉତ୍କଳ ଦୀପିକା ୪/୧୧, ୧୩.୩.୧୮୬୯ ।

୯) ନନ୍ଦ, ଫଣୀନ୍ଦ୍ରଭୂଷଣ, ସମ୍ବଲପୁର ହିତୈଷିଣୀ : ଏକ ଅଧ୍ୟୟନ ୨୦୦୨, ପୃ-୬୯, ଅପୂର୍ବା- ଭୁବନେଶ୍ୱର

୧୦) ସମ୍ବଲପୁର ହିତୈଷିଣୀ ୬/୩୪, ୨୩-୧-୧୮୯୫ ।

୧୧) ତତୈବ ୬/୩୮, ୨୦-୨-୧୮୯୫ ।

୧୨) ଉତ୍କଳ ଦୀପିକା ୮/୪୧, ୧୮-୧୦-୧୮୭୩ ପୃ-୧୬୪ ।

୧୩) ସମ୍ବାଦବାହିକା - ୧୬-୧୦-୧୮୭୩ ।

୧୪) ଉତ୍କଳ ଦୀପିକା - ୨୭-୨-୧୮୭୫( ପୃ-୩୬)

୧୫) ଉତ୍କଳ ଦୀପିକା - ୪-୧୦-୧୮୭୯ ପୃ-୧୫୯

୧୬) Two Bachelors of Arts : The Oriya Movement 1996(1919) . PP-32, Bharat Bharati, Cuttack.

୧୭) ଦାଶ, ଦେବେନ୍ଦ୍ର କୁମାର (ସଂ) ୨୦୦୫: ଉତ୍କଳ ସମ୍ମିଳନୀ (୧୯୦୩-୧୯୩୬) ପ୍ରଥମ ଭାଗ : ପୃ-ଣ, ପ୍ରଗତି ଉତ୍କଳ ସଂଘ, ଗାଉରକେଲା ।

୧୮) ଉତ୍କଳ ଦୀପିକା ୨୩।୪୫, ୨୪-୧୧-୧୮୮୮, ପୃ- ୩୫୯

୧୯) ଓଡ଼ିଶାର ବିକାଶରେ ପତ୍ରପତ୍ରିକାର ପ୍ରଭାବ, ପୃ-୩୧

୨୦) ସମ୍ବଲପୁର ହିତୈଷିଣୀ ୬/୩୫, ୩୦।୧।୧୮୯୫

୨୧) ତତ୍ରୈବ ୬/୩୪, ୨୩-୧-୧୮୯୫




Digitized by srujanika@gmail.com

୨୨) ତତ୍ରୈବ ୬/୧୨,୨୨-୮-୧୮୯୪
୨୩) ତତ୍ରୈବ, ୬-୧୦-୧୮୯୪
୨୪) ତତ୍ରୈବ,୬-୩-୧୮୯୫
୨୫) ତତ୍ରୈବ,୬-୨-୧୮୯୫
୨୬) ତତ୍ରୈବ,୧୩-୨-୧୮୯୫
୨୭) ତତ୍ରୈବ,୧୩-୨-୧୮୯୫
୨୮) Central Provinces secretariate (General) - 1894 No -3917 dt 4-9-1894
୨୯) ତତ୍ରୈବ
୩୦) Letter No - 5599 dt. 13th August - 1894 forwarded to the Deputy Commissioner Sambalpur from commissioner Chhatisgarh Division.
୩୧) ଉତ୍କଳ ଦୀପିକା ୬-୭-୧୮୯୫
୩୨) ସମ୍ବଲପୁର ହିତୈଷିଣୀ ୭/୨-୩, ୧୨-୧୯-ଜୁନ୍-୧୮୯୫ ।
୩୩) ତତ୍ରୈବ ।
୩୪) ଉତ୍କଳ ଦୀପିକା ୨୨-୬-୧୮୯୫
୩୫) Mishra, P.K. The political History of Orissa (1900-1936) , 1979, Oriental Publishers & Distributors, New Delhi, PP-27
୩୬) ସମ୍ବଲପୁର ହିତୈଷିଣୀ ୧୪।୫, ୩୦-୭-୧୯୦୨
୩୭) ରାୟ, ଦୁର୍ଗାଚରଣ, ରାଧାନାଥ - ଜୀବନୀ, ୧୯୯୮ (୧୯୪୧) ପୃ-୪୪୧-୪୪୭, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।
୩୮) ତତ୍ରୈବ - ପୃ- ୪୪୪-୪୪୫ ।
୩୯) ତତ୍ରୈବ- ପୃ- ୧୩୦ ।
୪୧) ଉତ୍କଳ ଦୀପିକା - ୨୪-୧-୧୯୦୩ ।
୪୨) ତତ୍ରୈବ - ୨୫-୪-୧୯୦୩ ।



Digitized by srujanika@gmail.com

# ବିସ୍ମୃତ ପତ୍ରିକା : ଉତ୍କଳ ମଧୁପ

ବିଂଶ ଶତାବ୍ଦୀର ପ୍ରଥମ ତିନିଦଶକରେ ଅତ୍ୟନ୍ତ ଲୋକପ୍ରିୟ ହୋଇଥିବା 'ଉତ୍କଳ ମଧୁପ' ସମ୍ପ୍ରତି ବିସ୍ମୃତ ପ୍ରାୟ । ଓଡ଼ିଶାର ସାହିତ୍ୟ ଜଗତରେ ଦୁଇଟି ଉତ୍କଳ ମଧୁପ ଦେଖାଯାଇଥିଲା । ପ୍ରଥମଟି ୧୮୭୮ମ.ରେ ରାମଶଙ୍କର ରାୟଙ୍କ ପୃଷ୍ଠପୋଷକତାରେ କଟକ ପ୍ରିଣ୍ଟିଙ୍ଗ୍ କମ୍ପାନୀ ଆନୁକୂଲ୍ୟରେ, ଦ୍ୱିତୀୟଟି ୧୯୦୦ମ.ରେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ବାମଣ୍ଡା ରାଜାଙ୍କ ସୁଢ଼ଳ ପ୍ରେସ ଆନୁକୂଲ୍ୟରେ ପ୍ରକାଶ ପାଇଥିଲା ।

ଉତ୍କଳ ମଧୁପ ପ୍ରଥମର ପ୍ରଥମ ସମ୍ପାଦକ ଉତ୍କଳ ସଭାର ତତ୍କାଳୀନ ସମ୍ପାଦକ ଗୋପାଳ ଚନ୍ଦ୍ର ଦତ୍ତ ।୧୮୭୯ ମ.ରେ ପତ୍ରିକାର ଦ୍ୱିତୀୟ ଭାଗର ପ୍ରଥମ ସଂଖ୍ୟାଠାରୁ ସମ୍ପାଦନା କାର୍ଯ୍ୟ କୃଷ୍ଣଚନ୍ଦ୍ର ପଟ୍ଟନାୟକ ଓ ଅଭିନ୍ନ ନାୟକ ନିର୍ବାହ କରନ୍ତି। ଏହା ମାସିକ ପତ୍ରିକା ଓ ସମାଲୋଚନା ରୂପେ ନିଜର ଆଭିମୁଖ୍ୟ ପ୍ରକାଶ କରିଥିଲେ ହେଁ ପ୍ରାୟ ଦୁଇମାସରେ ପ୍ରକାଶ ଲଭୁଥିଲା । ପତ୍ରିକାର ପ୍ରଚ୍ଛଦର ଚାରିଦିଗରେ ନିମ୍ନ ଶ୍ଳୋକର ଚାରିଟି ଧାଡି ମୁଦ୍ରିତ ହୋଇ ତା'ର ଉତ୍କର୍ଷ ପ୍ରତିପାଦନ କରୁଥିଲା ।

କାବ୍ୟୋତ୍କୃଷ୍ଟାଙ୍ଗ ଚକ୍ରୋଲ୍ଲସିତ କୁବଳୟାଦେଶ ନିର୍ହୃତ୍ୟ ସାରଂ
କ୍ଲିଷ୍ଟାଙ୍ଗୀ କେତକୀ ମାକଳିତା ସୁରଚିରା ମୁଞ୍ଚହତ୍ତାଂ ପଦାଳୀଂ।
ପ୍ରାପ୍ତୋତ୍ସାହୋତ୍କଳା ନାମପି ଲଳିତ କର୍ଲୈ ର୍ନନ୍ଦୟିତ୍ବେ ବଚାୟଂ ସଦଂବ୍ଶାଦେଃ
ପ୍ରସୂତୋ ବିଜୟତୁ ମଧୁପଃ ସିଞ୍ଚତେ ହୃଦ୍‌ଗୁହାୟାଂ ।''

୧୮୭୯ମ. ଉତ୍କଳ ମଧୁପର ୨ୟ ଭାଗରେ ଉଲ୍ଲିଖିତ ଶ୍ଳୋକ ପରିବର୍ତ୍ତେ ନିମ୍ନୋକ୍ତ ଶ୍ଳୋକଟି ମୁଦ୍ରିତ ହୋଇଥିଲା ।

'' ଖ୍ୟାତୋତ୍କଳୀୟ କବି କାବ୍ୟ ପ୍ରସୂନ ସଂଘାତ୍
ପୀତ୍ୱା ମଧୁନି ମଧୁରାଣି ପ୍ରଫୁଲ୍ଲଚିତ୍ତଃ
ସଂଖ୍ୟାବତାଂ ସୁର ସଭାବବିଦାଂ ସମାଜେ
ବମ୍ଭମ୍ୟତେ ହି ମଧୁପୋ ନବଜାତ ପକ୍ଷଃ ।''

ଉତ୍କଳ ମଧୁପର ପ୍ରତି ପୃଷ୍ଠାରେ ସୁଲେଖକ ରାମଶଙ୍କରଙ୍କର ମାର୍ଜିତ ରୁଚିର ପ୍ରତିଫଳନ ସୁସ୍ପଷ୍ଟ । ଓଡ଼ିଆ ସାହିତ୍ୟ, ଶିକ୍ଷା, ଧର୍ମ, ଦର୍ଶନ, ସମାଜ ଓ ସଂସ୍କୃତିରେ ଆଦର୍ଶ ରୁଚିର



Digitized by srujanika@gmail.com

ପ୍ରଚଳନ ହିଁ " ଉତ୍କଳ ମଧୁପ'ର ଆଭିମୁଖ୍ୟ । ଏ ପତ୍ରିକାରେ ରାମଶଙ୍କରଙ୍କର 'ସୌଦାମିନୀ' ଉପନ୍ୟାସ, ଭଞ୍ଜଙ୍କର 'ଲାବଣ୍ୟବତୀ', 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ଟୀକା ସହ ଧାରାବାହିକ ପ୍ରକାଶ ଲଭୁଥିଲା । ରାମଶଙ୍କରଙ୍କର 'ପ୍ରେମତରୀ ଗାଥା' ଓ ମଧୁରାଓଙ୍କ 'ଜୀବନ ଚିନ୍ତା' ପରି ଉଚ୍ଚକୋଟୀର କବିତା ଏ ପତ୍ରିକାର ମୂଲ୍ୟ ବଢ଼ାଇଥିଲା । ଦୁଇବର୍ଷରେ କିଛି ସଂଖ୍ୟା ପ୍ରକାଶ ପରେ ଏ ପତ୍ରିକାର ପତନ ଘଟିଥିଲା । (୧)

ଓଡ଼ିଶାର ସାରସ୍ୱତ ପୃଷ୍ଠ ପିଠିକାରେ ୧୯୦୦ ଜୁନ୍‌ରେ ବିଦ୍ୟାରତ୍ନଙ୍କ ସମ୍ପାଦନାରେ ଭିନ୍ନ ଆଭିମୁଖ୍ୟର ବିବିଧ ବିଷୟକ ପତ୍ରିକା 'ଉତ୍କଳ ମଧୁପ'( ଏହା ପରଠାରୁ କେବଳ ମଧୁପ) ବାମଣ୍ଡା ସୁଡ଼ଳ ପ୍ରେସରୁ ପ୍ରକାଶ ଲଭିଥିଲା । ଏହି ଦ୍ୱିତୀୟୋକ୍ତ 'ମଧୁପ'ର ସୂକ୍ଷ୍ମ ବିଶ୍ଳେଷଣ ହିଁ ଏ ଆଲୋଚନାର ଲକ୍ଷ୍ୟ ।

'ମଧୁପ'ର ଆବିର୍ଭାବରେ ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ଆନନ୍ଦ ଲହରୀ ଖେଳିଯାଇଥିଲା । ' ସମ୍ବଲପୁର ହିତୈଷିଣୀ' ନିଜର ଭଗିନୀକୁ ନିମ୍ନ ପ୍ରକାରେ ସମ୍ବର୍ଦ୍ଧିତ କରିଥିଲା ।'

" ବାମଣ୍ଡା ରାଜଧାନୀରୁ 'ଆଲୋଚନା' ନାମ୍ନୀ ମାସିକ ପ୍ରକାଶିତ ହେବାର ଠିକ୍ ତିନି ମାସ ପରେ ପୁଣି 'ଉତ୍କଳ ମଧୁପ' ନାମକ ଖଣ୍ଡିଏ ମାସିକ ପତ୍ରିକା ପ୍ରକାଶିତ ହେବାର ଦେଖି ବିଶେଷ ପ୍ରୀତିଲାଭ କରିଅଛୁ । ଶେଷୋକ୍ତ ପତ୍ରିକାର ସମ୍ପାଦକ ଶ୍ରୀ ନୀଳମଣି ବିଦ୍ୟାରତ୍ନ କାର୍ଯ୍ୟାଧକ୍ଷ ରସାନନ୍ଦ ପ୍ରଧାନ । ପତ୍ରିକାର କଳେବର ରଏଲ ଆଠପେଜି ଏକ ଫର୍ମା ମୂଲ୍ୟ ମାସୁଲ ସମେତ ଏଗାର ଅଣା ମାତ୍ର । x x x ଯେଉଁମାନଙ୍କର ନାନାବିଧ ପୁସ୍ତକ ପତ୍ରିକା ପାଠ କରିବାର ସମୟ ବା ସୁବିଧା ନାହିଁ ସେମାନେ ଏହି ପତ୍ରିକା ପାଠ କଲେ ବହୁ ପରିମାଣରେ ଉପକୃତ ହୋଇପାରିବେ ସନ୍ଦେହ ନାହିଁ । ଉତ୍କଳର ହିତ କାମନାରେ ଏହି ପତ୍ରିକା ପ୍ରକାଶ କରିଥିବା ହେତୁ ପରିଚାଳକମାନଙ୍କୁ ଧନ୍ୟବାଦ ପ୍ରଦାନ କରି ପତ୍ରିକାର ଦୀର୍ଘ ଜୀବନ କାମନା କରୁଅଛୁ ।" (୨)

ମଧୁପ ବିବିଧ ବିଷୟକ ପତ୍ର ଓ ସମାଲୋଚନା ରୂପେ ନିଜର ଆଭିମୁଖ୍ୟ ପ୍ରକାଶ କରିଥିଲା । ୧ମ ଭାଗ ୧ମ ସଂଖ୍ୟାର ପ୍ରଚ୍ଛଦରେ ପ୍ରକାଶ କାଳ, ପତ୍ରିକାର ନାମ, ସମ୍ପାଦକ, କାର୍ଯ୍ୟାଧକ୍ଷଙ୍କ ନାମ ସହ ସୂଚୀପତ୍ର ପ୍ରଦତ୍ତ ହୋଇଛି । ପ୍ରଚ୍ଛଦ ପୃଷ୍ଠାର ଭିତର ପାଖରେ ମଧୁପର ନିୟମାବଳୀ ଛପାଯାଇଅଛି । ଉତ୍କଳର ପ୍ରକୃତ ହିତାକାଂକ୍ଷୀ ଓ ବଡଲୋକମାନଙ୍କ ଆନୁକୂଲ୍ୟ ପ୍ରତି ମଧୁପ ନିର୍ଭର କରେ । ଏହା ପ୍ରତ୍ୟେକ ଇଂରାଜୀ ମାସର ପ୍ରଥମ ସପ୍ତାହରେ ପ୍ରକାଶ ପାଇବ । ପତ୍ରିକା ଲାଭର ଆଶାରେ ପ୍ରକାଶ



Digitized by srujanika@gmail.com

କରାଯାଇନାହିଁ ବରଂ ଏହାର ଆୟବ୍ୟୟ ସମୟେ ସମୟେ ପତ୍ରିକାରେ ପ୍ରକାଶ କରାଯିବ । ଏ ସମସ୍ତ ମୁଖ୍ୟ ନିୟମାବଳୀ ସହିତ ବିଜ୍ଞାପନ ମୂଲ୍ୟ, ଲେଖା ଓ ଯୋଗାଯୋଗ ସମ୍ପର୍କରେ ଜ୍ଞାତବ୍ୟ ବିଷୟ ସନ୍ନିବେଶିତ ହୋଇଛି । ମଧୁପର ପ୍ରଥମ ଭାଗ ପ୍ରଥମ ସଂଖ୍ୟାର ପ୍ରଥମ ପୃଷ୍ଠାରେ ନିମ୍ନ ସଂସ୍କୃତ ଶ୍ଳୋକଟି ନାନ୍ଦୀ ଶ୍ଳୋକ ରୂପେ ପ୍ରଦତ୍ତ ହୋଇଛି ।

ଅନନ୍ତ ଶାସ୍ତ୍ରଂ ବହୁବେଦିତବ୍ୟଂ ସ୍ୱଳ୍ପଶ୍ଚକାଲୋ ବହବଶ୍ଚବିଘ୍ନାଃ

ଯତ୍ ସାରଭୁତଂ ମଧୁପ ସ୍ତଦସ୍ମାଦ୍ ଗୃହଣାତି ପୁଷ୍ପାଦିବ ପୁଷ୍ପସାରଂ ।

ମଧୁପର ପ୍ରଥମ ପୃଷ୍ଠାରେ ଉଲ୍ଲିଖିତ ଶ୍ଳୋକଟି ଦେବନାଗରୀ ଲିପିରେ ଲେଖାଯାଉଥିଲା । ୨ୟ ସଂଖ୍ୟାଠାରୁ ଏହି ଶ୍ଳୋକ ପ୍ରଥମ ପୃଷ୍ଠାରେ ରହିବା ସହିତ ପ୍ରଚ୍ଛଦରେ ଭାଗବତର ନିମ୍ନ ଶ୍ଳୋକ ସହିତ ତାର ଅନୁବାଦ ଲିପିବଦ୍ଧ ହେଉଥିଲା-

'' ଅଣୁଭ୍ୟଶ୍ଚ ମହଦ୍ଭ୍ୟଶ୍ଚ ଶାସ୍ତ୍ରେଭ୍ୟଃ କୁଶଳୋ ନରଃ

ସର୍ବତଃ ସାରମାଦଦ୍ୟାତ୍ ପୁଷ୍ପେଭ୍ୟ ଇବ ଷଟ୍ ପଦଃ ।''

''ଭୃଙ୍ଗ ଯେପରି ସକଳ ପୁଷ୍ପରୁ ସାର ଗ୍ରହଣ କରେ, ତଦ୍ରୂପ ଧୀର ବ୍ୟକ୍ତି କ୍ଷୁଦ୍ର ଓ ମହତ ସକଳ ଶାସ୍ତ୍ରରୁ ସାର ଗ୍ରହଣ କରିବେ ।'' ଭାଗବତ - ୧୧।୮।୧୦ ମୁଦ୍ରିତ ହୋଇଛି । ମଧୁପ ୧ମ ଭାଗ /୩ୟ ସଂଖ୍ୟାର ମନ୍ତବ୍ୟରେ ରାଧାନାଥ ରାୟ କହିଥିଲେ, '' ଜ୍ଞାନର ପେଡା, ସଭିଙ୍କି ଲୋଡା, ସଭିଏଁ ପାଇବେ ଥୋଡା ଥୋଡା ।'' ମୋହୋ ମତରେ 'ଉତ୍କଳ ମଧୁପ'ର ଏହାହିଁ ଲକ୍ଷ୍ୟ ହେବାର ଉଚିତ । (୩) ରାଧାନାଥଙ୍କ ଏ ବକ୍ତବ୍ୟକୁ ସମ୍ମାନ ଜଣାଇ ପରବର୍ତ୍ତୀ ସଂଖ୍ୟାଗୁଡ଼ିକରେ ନାନ୍ଦୀଶ୍ଳୋକ ସହ ଏ ପଦଟି ପ୍ରଥମ ପୃଷ୍ଠାରେ ମୁଦ୍ରିତ ହେବାର ଗୌରବ ଲଭେ ।

'ମଧୁପ' ପ୍ରଥମ ସଂଖ୍ୟାରେ ପ୍ରଚ୍ଛଦ ବ୍ୟତିରେକେ ଆଠପୃଷ୍ଠାର ବିଭିନ୍ନ ବିଷୟକ ଜ୍ଞାତବ୍ୟ ତଥ୍ୟ ମୁଦ୍ରିତ ହୋଇଥିଲା । ସେଗୁଡିକ ନାମାବଳୀ, ଜୀବନର ଦଶନିୟମ, କୃଷିତତ୍ତ୍ୱ, ବାର ବିଶେଷରେ ଜାତଫଳ, ସୁବାକ୍ୟ ଭଣ୍ଡାର, ସ୍ୱାସ୍ଥ୍ୟ ପ୍ରସଙ୍ଗ, ଚକ୍ଷୁର ଭାଷା, ସହଜ ଚିକିତ୍ସା, ବିଚିତ୍ର ସଂଗ୍ରହ, କୌତୁକ ପ୍ରସଙ୍ଗ, ଚା, ଡକାୟତି ସମ୍ବାଦ, ଉପାସନାର ଆବଶ୍ୟକତା, ଦେବାଦିତୀର୍ଥ, ଉଦାହରଣ ଶ୍ଳୋକମାଳା, ରାଜାମାନଙ୍କର ଦୈନିକ ଆୟ ଏବଂ ଚକ୍ଷୁ ରକ୍ଷାର ଉପାୟ ।(୪)

ଏ ସମସ୍ତ ବିଷୟ ବିଭିନ୍ନ ସୂତ୍ରରୁ ସଂଗ୍ରହ ହୋଇ ବୃହତ୍ତର ପାଠକ ଗୋଷ୍ଠୀର ମଙ୍ଗଳ କାମନାରେ ପ୍ରଦତ୍ତ । ପରବର୍ତ୍ତୀ ପର୍ଯ୍ୟାୟରେ ମଧୁପର ବିଷୟ ସଜ୍ଜା ଆହୁରି ବୈଚିତ୍ର୍ୟମୟ ହୋଇଛି । ମଧୁପର ଲକ୍ଷ୍ୟକୁ ବିଦ୍ୟାରତ୍ନ କବିତା ମାଧ୍ୟମରେ ସ୍ପଷ୍ଟ କରନ୍ତି-



Digitized by srujanika@gmail.com

''ନାନାବିଧ ଶ୍ରେଷ୍ଠ ଗ୍ରନ୍ଥ ଆଲୋଡ଼ନ
ବିବିଧ ଭାଷାର ପତ୍ରିକା ପଠନ
କଲେ ଯାହା ଲାଭ ହେବ ସାର ଧନ
ବାଣ୍ଟିବ 'ମଧୁପ' ସ୍ୱଦେଶ ହିତେ;
ଦେଶେ ଅଛି ପୂରି ଗ୍ରନ୍ଥ କୋଟି କୋଟି
ପାଠେ ନ ଅଣ୍ଟିବ ଏ ଜୀବନ ଗୋଟି
ଗ୍ରନ୍ଥ ପାଠ ଫଳ ଯାହା ମୋଟାମୋଟି
କ୍ରମେ ଭେଟି ଦେବି ସହର୍ଷ ଚିତ୍ତେ ।'' (୫)

ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମ ତିନିଦଶକ ମଧ୍ୟରେ ଅଜସ୍ର ପୁସ୍ତକର ପ୍ରଣେତା ରୂପେ ନୀଳମଣି ବିଦ୍ୟାରତ୍ନ ଆଦର୍ଶ ଉତ୍କଳ ଜାତି ଗଠନର ଲକ୍ଷ୍ୟ ଗ୍ରହଣ କରିଥିଲେ । ଫଳତଃ ତାଙ୍କର ସାହିତ୍ୟ ସୃଷ୍ଟି ବିଭିନ୍ନ ବିଷୟକ ଶିକ୍ଷଣୀୟ ଉପାଦାନରେ ପରିପୁଷ୍ଟ । ଶିକ୍ଷାରୁ ବାଣିଜ୍ୟ, ସ୍ୱାସ୍ଥ୍ୟରୁ ଶାସ୍ତ୍ର ଦେଇ ଏକ ପରିବ୍ୟାପ୍ତ ବିଷୟକୁ ନେଇ ସେ ଶତାଧିକ ପୁସ୍ତକ ପ୍ରଣୟନ କରିଛନ୍ତି ।(୬) ତାଙ୍କ ସୃଷ୍ଟିର ସଫଳତମ ନିର୍ଯାସ ହେଲା ମଧୁପ । ମଧୁପ ଅନ୍ତରାଳରେ ବିଦ୍ୟାରତ୍ନ ପ୍ରତିଭାର ସମୁଚ୍ଚ ଦର୍ଶନ ପ୍ରକାଶ ଲଭିଛି । ମଧୁପ ପ୍ରକାଶରେ ଓଡ଼ିଶାର କୃତବିଦ୍ୟ ରାଜନ୍ୟ ମଣ୍ଡଳୀ, ବୁଦ୍ଧିଜୀବୀ, ପାଠକ ସାମୟିକ ସାହାଯ୍ୟ/ ପ୍ରଶଂସା ପ୍ରଦାନ କରିଛନ୍ତି ସିନା କିନ୍ତୁ ପ୍ରକୃତରେ ମଧୁପ ଗଢ଼ି ଉଠିଛି ବିଦ୍ୟାରତ୍ନଙ୍କ ଏକନିଷ୍ଠ ପତ୍ରିଭାର ପବିତ୍ର ଛାଞ୍ଚରେ ।

ଏ ବକ୍ତବ୍ୟର ସତ୍ୟତା ମଧୁପର ପ୍ରତିଟି ସଂଖ୍ୟାକୁ ନିରୀକ୍ଷଣ କଲେ ଜଣାପଡେ । ମଧୁପର ପ୍ରତି ପୃଷ୍ଠା ସୁପାଠ୍ୟ ଓ ଶିକ୍ଷଣୀୟ ରଚନାରେ ପରିପୂର୍ଣ୍ଣ । ଗତାନୁଗତିକ କବିତା, ଗଳ୍ପ, ପ୍ରବନ୍ଧର ପାରମ୍ପରିକ ଦୃଷ୍ଟିଭଙ୍ଗୀକୁ  ପରିହାର କରି 'ମଧୁପ'କୁ ପାଠକର ଦରକାରୀ ବିଷୟବସ୍ତୁର ଭଣ୍ଡାର ରୂପେ ବିଦ୍ୟାରତ୍ନ ପରିବେଷଣ କରନ୍ତି । କବି ଭାଗୀରଥି ରଥଙ୍କ ମତରେ 'ଉତ୍କଳ ମଧୁପ' ଉତ୍କଳରେ ଏକ ମହାନ୍ ସୃଷ୍ଟି ଏଥିରେ ନାନା ବିଷୟର ଅବତାରଣା କରାଯାଇଥିବାରୁ ଏହା ବିଭିନ୍ନ ରୁଚିର ସକଳ ଶ୍ରେଣୀର ଲୋକଙ୍କ ପକ୍ଷରେ ନିଶ୍ଚୟ ଉପଯୋଗୀ ହେବାର ବିଶ୍ୱାସ କରୁ । (୭)

ସମାଜ ସଂସ୍କାର  ସହିତ ଆଦର୍ଶ ମାନବ ଜୀବନ ଗଠନ ଲକ୍ଷ୍ୟରେ 'ମଧୁପ'ର ରଚନାବଳୀ ଉତ୍ସର୍ଗୀକୃତ । ୧ମ ଭାଗ/ ୧ମ ସଂଖ୍ୟାରେ ପ୍ରକାଶିତ ଜୀବନର ଦଶନିୟମ, ସୁବାକ୍ୟଭଣ୍ଡାର ପ୍ରଭୃତିକୁ ଏ ପ୍ରସଙ୍ଗରେ ସ୍ମରଣ କରାଯାଇପାରେ । ମଧୁପର ରଚନା



Digitized by srujanika@gmail.com

ସର୍ବଜନୀନ ଓ ସର୍ବକଲ୍ୟାଣକାରୀ । ପତ୍ରିକାର ଦୁଷ୍ପ୍ରାପ୍ୟତା ଦୃଷ୍ଟିରୁ କିଛି ଅଂଶ ପାଠକଙ୍କ ଅବଗତି ନିମନ୍ତେ ଉଦ୍ଧାର କରାଯାଇପାରେ ।

ବିଦ୍ୟାରତ୍ନଙ୍କ କାବ୍ୟିକ ଉଚ୍ଛ୍ୱାସର ଆବେଗିକ ପରିପ୍ରକାଶ 'ମଧୁପ'କୁ ସୁଖପାଠ୍ୟ କରିଛି ।

'' କେବଳ ରସନା ହିଁ ଭାବ ବ୍ୟକ୍ତିର ଉପାୟ ନୁହେଁ । ରସନା ଯେତେ ଭାବ ବ୍ୟକ୍ତ କରେ, ଚକ୍ଷୁ ତାହା ଅପେକ୍ଷା ଅନେକ ଅଧିକ ପ୍ରକାଶ କରେ । ଚକ୍ଷୁର ଅଶବ୍ଦ ଭାଷାର ଶକ୍ତି- ରସନାର ଶକ୍ତି ଅପେକ୍ଷା ତେଜସ୍ୱିନୀ । ଚକ୍ଷୁ ନୀରବରେ ଯେତେ କଥା କହେ, ରସନା ତାହାର ଅନେକାଂଶର ଅନୁବାଦ କରିପାରେ ନାହିଁ । ଚକ୍ଷୁର ଭାଷା ହିଁ ଦିଗ୍ମାତ୍ର- ଓଡ଼ିଆ, ବଙ୍ଗଳା ପ୍ରକୃତି ବିଭିନ୍ନ ଭାଷାରେ ଅନୁବାଦ ହୋଇ ପ୍ରକାଶିତ ହୁଏ । ପ୍ରେମ- ବିଲୋଳ ଚକ୍ଷୁ, ରୋଷକଷାୟିତ ଲୋଚନ, ପ୍ରତିଭାଦୃପ୍ତ ଦୃଷ୍ଟି, ଲଜ୍ଜିତ ନୟନ, କେତେ ସୁଖ, କେତେ ଗରଳ, କେତେ ସ୍ୱର୍ଗ, କେତେ ନରକ, କେତେ ଜଳ, କେତେ ସ୍ଥଳ ପ୍ରକାଶ କରେ । ଚକ୍ଷୁ କେତେବେଳେ ସୁଧାର ଢ଼ଳ ଢ଼ଳ କେତେବେଳେ ବା ବିଶ୍ୱନାଶୀ ଆଗ୍ନେୟସମ ଲାଭା ଉଦ୍‌ଗୀରଣ କରେ ।(୮) ବିଦ୍ୟାଳୟ ପାଠ ନିଜର ବ୍ୟାବହାରିକ ଗୁଣ ହରାଉଥିବାରୁ ମଧୁପ ଦୁଃଖ ପ୍ରକାଶ କରିଛି । ବିଦ୍ୟାଳୟ ସମୂହରେ ସାହିତ୍ୟ, ଗଣିତ, ବିଜ୍ଞାନ ପ୍ରଭୃତି ବିବିଧ ବିଷୟ ଶିକ୍ଷା ପ୍ରଦତ୍ତ ହେଉଅଛି । ସହର ମୋଫସଲ ସର୍ବତ୍ର ଶିକ୍ଷିତ ବ୍ୟକ୍ତି ସୁଲଭ ହୋଇଅଛନ୍ତି । ସେମାନଙ୍କ ଦ୍ୱାରା ଗୁରୁତର ସମସ୍ୟାମାନ ସହଜରେ ସମାଧାନ ହେବା ସମ୍ଭବପର ହୋଇଅଛି କିନ୍ତୁ ସେମାନଙ୍କର ବ୍ୟାବହାରିକ ବିଷୟରେ ଜ୍ଞାନର ଏକାନ୍ତ ଅଭାବ ପରିଲକ୍ଷିତ ହୁଏ । ସେମାନଙ୍କୁ ସେମାନଙ୍କର ନିତ୍ୟ ବ୍ୟବହୃତ ଦ୍ରବ୍ୟର ଦୋଷଗୁଣ ସମ୍ବନ୍ଧରେ ଜିଜ୍ଞାସା କଲେ ସେମାନେ ପ୍ରକୃତ ଉତ୍ତର ଦାନରେ ଅସମର୍ଥ ହୋଇଥାନ୍ତି । ଏହାବଡ ଦୁଃଖର ବିଷୟ ।''(୯)

ଭଙ୍ଗୁର ସଂସାର ଭିତରେ ପ୍ରାକୃତିକ ଅନବଦ୍ୟ କୃତି ସମୂହ ଯେ ମନୋମୁଗ୍ଧକର ଏହା ମଧୁପ ସ୍ୱୀକାର କରେ । ଜାଗତିକ ସୌନ୍ଦର୍ଯ୍ୟ ଉର୍ଦ୍ଧ୍ୱରେ ଶାଶ୍ୱତ ଏବଂ ଶିଳ୍ପ ନୈପୁଣ୍ୟ ହିଁ ନଗରର ସୌନ୍ଦର୍ଯ୍ୟ । ମନକୁ ଯେତେ ଅଧିକ ଆକର୍ଷଣ କଲେ ମଧ ତାହା ମଧରେ କୋମଳତା- ମଧୁରତା କିଛି ଥାଏ ନାହିଁ । ସ୍ରଷ୍ଟାଙ୍କ ସ୍ୱହସ୍ତ ରଚିତ ପ୍ରକୃତିର ସୌନ୍ଦର୍ଯ୍ୟ ଯେପରି ହୃଦୟକୁ ଆକର୍ଷଣ କରେ ସେହିପରି ପ୍ରାଣକୁ ମୁଗ୍ଧ କରେ । ସୁତରାଂ ମନର ଉନ୍ନତି ସକାଶେ ନଗର ଏବଂ ହୃଦୟର ଉନ୍ନତି ସକାଶେ ବନ, ଉପବନ, ପ୍ରାନ୍ତର ଉପଯୋଗୀ ।'' (୧୦)



Digitized by srujanika@gmail.com

୧୮୯୫ରେ ସମ୍ବଲପୁର ଅଞ୍ଚଳରେ ସରକାରୀ ସ୍ତରରୁ ଓଡ଼ିଆ ଭାଷାର ଉଚ୍ଛେଦ ପରିପ୍ରେକ୍ଷୀରେ ବିଦ୍ୟାରତ୍ନ 'ସମ୍ବଲପୁର ହିତୈଷିଣୀ' ଅନ୍ତରାଳରେ ସଂଗ୍ରାମ କରି ସଫଳ ହୋଇଥିଲେ । ସେହି ବିଦ୍ୟାରତ୍ନ ଯେଉଁଠି ସାମାନ୍ୟ ସୁଯୋଗ ପାଇଛନ୍ତି, ମାତୃଭୂମି ଓ ମାତୃଭାଷାର ସର୍ବାଦୌ ଉନ୍ନତି କାମନା କରିଛନ୍ତି । ଏ ପ୍ରସଙ୍ଗରେ 'ମଧୁପ'ର କ୍ଷୀଣ କଳେବର ଭିତରେ ଓଡ଼ିଆ ଭାଷା ପ୍ରଚାର କଳ୍ପେ ଉଦ୍‌ବେଗ ପ୍ରକାଶ ପାଇଛି ।

'' ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଏଫ୍‌ଏ ଏବଂ ବିଏ ପରୀକ୍ଷାରେ ଓଡ଼ିଆ ଭାଷା ବ୍ୟବହୃତ ହେଉଥିବା ସ୍ଥଳେ କଲିକତା ବିଶ୍ୱବିଦ୍ୟାଳୟ ଉକ୍ତ ଭାଷା ବ୍ୟବହାର କରିବାକୁ ଅନିଚ୍ଛା ପ୍ରକାଶ କରିଛନ୍ତି । କଟକ ରେଭେନ୍ସା କଲେଜର ଓଡ଼ିଆ ଛାତ୍ରମାନେ ଓଡ଼ିଆ ଭାଷା ବ୍ୟବହାରର ଆଦେଶ ଦେବା ସକାଶେ ବଙ୍ଗେଶ୍ୱରଙ୍କ ନିକଟକୁ ଖଣ୍ଡିଏ ସୁଯୁକ୍ତିପୂର୍ଣ୍ଣ ଆବେଦନ ପତ୍ର ପଠାଇଛନ୍ତି । ଆଶା କରୁଁ ବଙ୍ଗେଶ୍ୱର ସେମାନଙ୍କର ପ୍ରାର୍ଥନା ପୂରଣ କରିବେ ।'' (୧୧)

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସମ୍ବାଦ ସରବରାହ ବ୍ୟାପକ ନ ଥିଲା ବା ଜନସାଧାରଣଙ୍କୁ ବୌଦ୍ଧିକ ସହାୟତା ଯୋଗାଇବାର ମାଧ୍ୟମ ସେତେ ଉନ୍ନତି କରି ନ ଥିବାବେଳେ 'ମଧୁପ'ର ପରିବେଷଣ ଭଙ୍ଗୀ ଏକ ଅପରିହାର୍ଯ୍ୟ ଆବଶ୍ୟକତା ମେଣ୍ଟାଉଥିଲା । ବିଭିନ୍ନ ଭାଷାର ବିଭିନ୍ନ ପତ୍ରପତ୍ରିକାରୁ ଚମତ୍କାର ଓ ଶିକ୍ଷଣୀୟ ସମ୍ବାଦ ଏହାର କଳେବର ପୂର୍ଣ୍ଣ କରୁଥିଲା । 'ମଧୁପ'ରେ ପ୍ରକାଶିତ ଅନେକ ମୌଳିକ ରଚନା ବୈଜ୍ଞାନିକ ସିଦ୍ଧାନ୍ତରେ ପର୍ଯ୍ୟବସିତ ଏବଂ ପ୍ରାମାଣିକ ମଧ୍ୟ । ମଧୁପର ସମ୍ବାଦ ପରିବେଷଣ ଓ ସଂଯୋଜନାରେ ବିଦ୍ୟାରତ୍ନଙ୍କ ଏକକ ଭୂମିକା ଅନନ୍ୟସାଧାରଣ ଓ ଆଶ୍ଚର୍ଯ୍ୟଜନକ । ସାମ୍ପ୍ରତିକ ଉନ୍ନତ ମେଡିଆ ପରିପ୍ରେକ୍ଷୀରେ ମଧ୍ୟ ଏପରି ଏକ ପତ୍ରିକା ପ୍ରଚଳନ ପାଇଁ ସାମୂହିକ ଉଦ୍ୟମ ଆବଶ୍ୟକ । କିନ୍ତୁ ଏ ଶତାବ୍ଦୀର ପ୍ରାରମ୍ଭରେ ମଧୁପ ପରି ପତ୍ରିକାକୁ ବିଭିନ୍ନ ବିଷୟକ ରଚନାରେ ମଣ୍ଡିତ କରି ପ୍ରକାଶ କରିବା ବିଦ୍ୟାରତ୍ନଙ୍କ ବହୁଶାସ୍ତ୍ରଦର୍ଶୀ ଉଚ୍ଚାଙ୍ଗ ପ୍ରତିଭାର ପରିଚୟ ପ୍ରଦାନ କରେ । କୃଷି ପ୍ରସଙ୍ଗ, ସ୍ୱାସ୍ଥ୍ୟ ପ୍ରସଙ୍ଗରେ ପ୍ରଦତ୍ତ ତାଙ୍କର ତଥ୍ୟାବଳୀକୁ ଆଧୁନିକ ''ଜ୍ଞାନଦ୍ୱାରା' ପ୍ରମାଣିତ କରାଯାଇପାରେ । ଏ ପ୍ରସଙ୍ଗରେ ବିଦ୍ୟାରତ୍ନଙ୍କ ରଚିତ ଜ୍ୱର ଚିକିତ୍ସା, ସହଜ ଚିକିତ୍ସା, ଗୋ ଚିକିତ୍ସା, ସର୍ବବିଷ ଚିକିତ୍ସା ଓ ବିସୂଚିକା ଚିକିତ୍ସା ପ୍ରଭୃତି ପୁସ୍ତକର ସହଜ ଲଭ୍ୟ ଚିକିତ୍ସା ଓ ପ୍ରତିଷେଧ ବ୍ୟବସ୍ଥାକୁ ଅନେକ ଚିକିତ୍ସକ ପ୍ରଶଂସା କରିଥିବା ସ୍ମରଣ କରାଯାଇପାରେ । 'ବିସୂଚିକା ଚିକିତ୍ସା'ର ବହୁଳ ପ୍ରଚାର



Digitized by srujanika@gmail.com

ଫଳରେ ବାମଣ୍ଡାରେ ଏ ରୋଗକୁ ନିୟନ୍ତ୍ରିତ କରାଯାଇଥିବା ସାର୍ ସୁଢ଼ଳ ଦେବ ସ୍ୱୀକାର କରନ୍ତି । (୧୨)

ସୁ-ସାହିତ୍ୟିକ ବିଜୟ ଚନ୍ଦ୍ର ମଜୁମଦାରଙ୍କ ମନ୍ତବ୍ୟ ଏ ପରିପ୍ରେକ୍ଷୀରେ ବେଶ୍ ପ୍ରଣିଧାନଯୋଗ୍ୟ ।

" It will be impudent on my part. If I offer my opinion on a subject I know nothing of. I read over some pages of your book to my friend Mr. M.L. Mitra Asst. Sergeon Raipur C.P. and have now great pleasure to communicate to you that he expressed good opinion in respect of some of the medicines you have prescribed.

-yours truely- B.C. Majumdar

Headmaster Sambalpur High School.(୧୩)

ମଧୁପ ନିଜର ଦୀର୍ଘଦିନର ପ୍ରକାଶନ ମାଧ୍ୟମରେ ଯେଉଁ କେତୋଟି ଜାତୀୟ କର୍ତ୍ତବ୍ୟ ସମ୍ପାଦନ କରିଥିଲା, ତାକୁ ନିମ୍ନ ଶ୍ରେଣୀଭୁକ୍ତ କରାଯାଇପାରେ-

କ: ଶିକ୍ଷାର ଉନ୍ନତି, ସୁଶିକ୍ଷାର ପ୍ରସାର ଓ ସତ୍ ପୁସ୍ତକ ପଠନ ।

ଖ: ଅନ୍ଧ ବିଶ୍ୱାସ ଓ କୁସଂସ୍କାର ଦୂରୀକରଣ ।

ଗ: ନିଶା ନିବାରଣ ।

ଘ: ମାତୃଭାଷା ପ୍ରତି ଆଦର ସୃଷ୍ଟି ।

ଏ ସମସ୍ତ ଦିଗରେ ମଧୁପର ଭୂମିକା ସ୍ମରଣଯୋଗ୍ୟ । ମଧୁପର ପ୍ରତିଟି ସଂଖ୍ୟାକୁ ବିଶ୍ଳେଷଣ କଲେ ଏହାର ସତ୍ୟତା ସ୍ପଷ୍ଟ ହେବ । ମଧୁପର ସଫଳତାର କାହାଣୀ ତତ୍କାଳୀନ ସୁଧୀ ମଣ୍ଡଳୀଙ୍କ ପ୍ରଶଂସା ପତ୍ରରୁ ପ୍ରମାଣିତ ହୋଇଥାଏ ।

୧: ଫକୀରମୋହନ ସେନାପତି: '' x x x ଆପଣଙ୍କର ଅଦମ୍ୟ ଉତ୍ସାହ ଅବିଶ୍ରାନ୍ତ ପରିଶ୍ରମରେ ମଧୁପ ଆଶାତିରିକ୍ତ ଉନ୍ନତି ଲାଭ କରିଥିବାର ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି ।'' (୧୪)

୨: ମଧୁସୂଦନ ରାଓ : '' ଏପରି ସୁଲଭ ପତ୍ରିକା ଓଡ଼ିଶାରେ ଏତେ ଶୀଘ୍ର ବାହାରିବ ଏହା ମୋର ସ୍ୱପ୍ନର ଅଗୋଚର ଥିଲା, ଏହାର (ମଧୁପର) ଉଦ୍ଦେଶ୍ୟ ସାର ସଂଗ୍ରହ, ଉତ୍କୃଷ୍ଟ ବଚନ ସଂକଳନ ଓ ସଂକ୍ଷେପରେ ନାନା ବେଦିତବ୍ୟ ବିଷୟର ପ୍ରକାଶ। ଉଦ୍ଦେଶ୍ୟ ସୁମହତ ଏବଂ ମୋର ଆଶା ଯେ ସମ୍ପାଦକ ମହାଶୟ ଆପଣାର ଦାୟିତ୍ୱର ଗୁରୁତ୍ୱ ଉପଲବ୍ଧି



Digitized by srujanika@gmail.com

କରିଅଛନ୍ତି। ନୂତନ ପ୍ରବନ୍ଧ ଲେଖିବା ଅପେକ୍ଷା ସାର ସଂଗ୍ରହ କରିବା ଉଣା ସହୃଦୟତା ଏବଂ ସଦ୍‌ବିବେକର କାର୍ଯ୍ୟ ନୁହେଁ । ମୁଁ ଆଶା କରେ ସମ୍ପାଦକ ମହାଶୟଙ୍କ ଦ୍ୱାରା ଦିନକୁ ଦିନ ପତ୍ରିକାର ଉନ୍ନତି ହେବ ଏବଂ ଅବିଳମ୍ବେ ତାହା ସର୍ବତ୍ର ସମାଦୃତ ହେବ ।''(୧୫)

୩: ଗଙ୍ଗାଧର ମେହେର: '' ମଧୁପର ସୁବାକ୍ୟ ଭଣ୍ଡାର ଓ ଉପଦେଶ ବାକ୍ୟମାନ ମୋର ହୃଦୟକୁ ପ୍ରଫୁଲ୍ଲିତ କରେ ।'' (୧୬)

୪: ଦୀନବନ୍ଧୁ ପ୍ରଧାନ:

'' କି ବର୍ଣ୍ଣିବି ତୋ ମହିମା ଉତ୍କଳ ମଧୁପ
ଅଟୁ ତୁ ସାହିତ୍ୟାକାଶେ ବିମଳ ଉଡୁପ
ଧରଣୀ ଜନନୀ ମୁଖ ଉଜ୍ଜ୍ୱଳ କରଣେ
ତୋହ ସମ ଅଛି କିଏ ଉତ୍କଳ ଭୁବନେ ।

x x x  x x x  x x x

ଅଟୁ ତୁହି ନୀତି ବାକ୍ୟ ରତନ ଆଗାର
ପଠନେ ଅମୃତଭାବ ହୁଅଇ ସଂଚାର ।'' (୧୭)

ଏତଦ୍‌ବ୍ୟତୀତ ସେ ସମୟର ଅନେକ ବୁଦ୍ଧିଜୀବୀ ମଧୁପର ପ୍ରଶଂସାରେ ଶତମୁଖ ହୋଇଛନ୍ତି ।

ମଧୁପ ପରି ଏକ ଶିକ୍ଷଣୀୟ ପତ୍ରିକା ପ୍ରକାଶର ଆବଶ୍ୟକତା ଥିଲା । ଏ ଆବଶ୍ୟକତାକୁ ଉପଲବ୍‌ଧି କରି ଏହାର ପରିଚାଳକ ବୃନ୍ଦ ଏକ ବର୍ଷ ଚଳାଇବା ପାଇଁ କୃତସଂକଳ୍ପ ହୋଇଛନ୍ତି । ଏକ ବର୍ଷ ପରୀକ୍ଷାମୂଳକ ଚଳାଇବା ପରେ ଏହାର ଫଳାଫଳ ଉପରେ ପରବର୍ତ୍ତୀ ପ୍ରକାଶନ ନିର୍ଭର କରେ ବୋଲି ଘୋଷଣା କରିଛନ୍ତି । ଆଦୃତ ହେଲେ ଏହାର କଳେବର ବୃଦ୍ଧି କରିବାର ଆଶ୍ୱାସନା ଦିଆଯାଇଛି । (୧୮) ବର୍ଷ ସମାପ୍ତି ପରେ ଏହାର ଅସମ୍ଭବ ଜନାଦୃତର ପରିଚୟ ପାଇ ଏହାକୁ ଚଳାଇବା ପାଇଁ ସମ୍ପାଦନାମଣ୍ଡଳୀ ବଦ୍ଧ ପରିକର ହେଲେ । ପ୍ରଥମ ସଂଖ୍ୟାରେ ୨୦୦ ଖଣ୍ଡ ଛପା ହୋଇଥିଲା ବେଳେ ବର୍ଷ ଶେଷ ବେଳକୁ ଏହା ୪୦୦ ଖଣ୍ଡ ମୁଦ୍ରିତ ହୋଇଥିଲା । (୧୯) ମଧୁପ ପ୍ରଥମ ବର୍ଷ ପ୍ରକାଶନର ଅପୂର୍ବ ପ୍ରତିକ୍ରିୟା କବି ରାମକୃଷ୍ଣ ସାହାଙ୍କ ବକ୍ତବ୍ୟରୁ ମିଳିଥାଏ । '' x x x ମଧୁପକୁ ଉତ୍କଳର ଏକମାତ୍ର ସର୍ବୋତ୍କୃଷ୍ଟ ମାସିକ କାଗଜ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଏ କାଗଜ ସକାଶେ ସର୍ବସାଧାରଣଙ୍କ ଏତେ ଆଗ୍ରହ ବଢ଼ିଅଛି ଯେ କାଗଜ



Digitized by srujanika@gmail.com

ବାହାରିବାକୁ ଅଳ୍ପ ବିଳମ୍ବ ହେଲେ ସେମାନେ ଅସହ୍ୟବୋଧ କରନ୍ତି ଏବଂ ଘନ ଘନ ପତ୍ର ଲେଖନ୍ତି ଯେ ମଧୁପ କାହିଁକି ବାହାରିବାକୁ ବିଳମ୍ବ ହେଉଛି ।'' (୨୦)

ମଧୁପ ୧ମ ଭାଗ ୨ୟ ସଂଖ୍ୟାଠାରୁ ରେଜେଷ୍ଟ୍ରିଭୁକ୍ତ ହୋଇଥିଲା ( Regd. No. N-27) ୧୯୦୨ ଜାନୁୟାରୀ ପର୍ଯ୍ୟନ୍ତ ପ୍ରାୟ ୧୯ଟି ସଂଖ୍ୟା ବାମଣ୍ଡା ସୁଢ଼ଳ ପ୍ରେସରୁ ପ୍ରକାଶିତ। ୧୯୦୨ ଜାନୁୟାରୀରେ ବିଦ୍ୟାରତ୍ନଙ୍କ ବାମଣ୍ଡା ପରିତ୍ୟାଗ ପରେ ମଧୁପ ପ୍ରକାଶନ ଖଲ୍ଲିକୋଟକୁ ସ୍ଥାନାନ୍ତରିତ ହୋଇ ୧୯୦୪ ପର୍ଯ୍ୟନ୍ତ ଚାଲିଥିଲା । ପତ୍ରିକାର ୫ମ ଭାଗ ପରେ ଅନିବାର୍ଯ୍ୟ କାରଣବଶତଃ ଏହା ଦଶ ବର୍ଷ କାଳ ବନ୍ଦ ରହିଥିଲା । ପୁନଶ୍ଚ ୧୯୧୫ ଅଗଷ୍ଟରୁ ଦ୍ୱିତୀୟ ପର୍ଯ୍ୟାୟ ରୂପେ ଷଷ୍ଠ ଭାଗ ପ୍ରଥମ ସଂଖ୍ୟା ବୃହତ - ଖେମୁଣ୍ଡି ଅଧୀଶ୍ୱର କୃପାମୟ ଦେବ ଗଜପତିଙ୍କ ଆନୁକୂଲ୍ୟରେ ଗଜପତି ଭୀମଦେବ ପ୍ରେସ୍, ଦିଗପୁଡିରୁ ପ୍ରକାଶ ପାଏ (୨୧) ଏ ପର୍ଯ୍ୟାୟରେ ଏହାର ରେଜେଷ୍ଟି ନଂ. - M-1200 (ଷଷ୍ଠଭାଗ/୨ୟ ସଂଖ୍ୟା)। ୧୯୧୫ରୁ ପ୍ରାୟ ୧୯୨୦ ପର୍ଯ୍ୟନ୍ତ 'ମଧୁପ' ବଡଖେମୁଣ୍ଡିରୁ ପ୍ରକାଶ ପାଇ ଦୁଇବର୍ଷ ବନ୍ଦ ରହେ ପୁଣି ୧୦ମ ଭାଗ ପ୍ରଥମ ସଂଖ୍ୟା ଉତ୍କଳ ସାହିତ୍ୟ ପ୍ରେସ୍ କଟକରୁ ନବକଳେବରରେ ପ୍ରକାଶ ପାଏ । (୨୨) ୧୯୨୨ ବେଳକୁ ବିଦ୍ୟାରତ୍ନ 'ଉତ୍କଳ ଦୀପିକା'ର ସମ୍ପାଦନା ଦାୟିତ୍ୱ ଗ୍ରହଣ କରନ୍ତି । ଫଳରେ କଟକରୁ ମଧୁପ ପରିଛନ୍ନ ରୂପସଜ୍ଜାରେ ପ୍ରକାଶ ଲଭେ । ଉତ୍କଳ ସାହିତ୍ୟ ପ୍ରେସରୁ ମଧୁପ ନିୟମିତ ପ୍ରକାଶ ପାଉଥିବାର ସୂଚନା 'ଦୀପିକା'ରୁ ମିଳେ । ୧୯୨୩ ଜୁନ୍‌ରେ ପ୍ରକାଶିତ ୧୦ମ ଭାଗ/ ୩ୟ ସଂଖ୍ୟାର ଉପାଦେୟତାକୁ 'ଦୀପିକା' ସ୍ୱାଗତ କରେ । (୨୩) ଗଞ୍ଜାମ ଶିକ୍ଷା ଅଧିକାରୀ 'ମଧୁପ'ର ଉଚ୍ଚ ପ୍ରଶଂସା କରି ଏହାକୁ ଗଞ୍ଜାମ ସ୍କୁଲମାନଙ୍କରେ ପ୍ରଚଳନର ସ୍ୱୀକୃତି ଦିଅନ୍ତି । ବିହାର ଓଡ଼ିଶା ଶିକ୍ଷା ବିଭାଗର ଡିରେକ୍ଟର ଏହାକୁ ତାଙ୍କ ଅଧୀନସ୍ଥ ସ୍କୁଲମାନଙ୍କରେ ଚଳିବାକୁ ଅନୁମତି ପ୍ରଦାନ କରନ୍ତି । (୨୪)

୨୬-୭-୧୯୨୪ରେ ବିଦ୍ୟାରତ୍ନଙ୍କ ଦେହାନ୍ତ ହୁଏ । (୨୫) ଦେହାନ୍ତ ପୂର୍ବରୁ ମଧୁପ ପାଇଁ ପ୍ରାୟ ପାଞ୍ଚବର୍ଷ ପ୍ରକାଶନ ନିମିତ୍ତ ପ୍ରବନ୍ଧାଦି ସେ ସଂଗ୍ରହ କରି ରଖି ଦେଇଥିଲେ । ଏହାର ସତ୍ୟତା ପଣ୍ଡିତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣଙ୍କ ବକ୍ତବ୍ୟରୁ ପ୍ରମାଣିତ ହୁଏ ।

'' ୰ ପଣ୍ଡିତ ବିଦ୍ୟାରତ୍ନ ମହାଶୟଙ୍କ ବିୟୋଗ ସଙ୍ଗେ ସଙ୍ଗେ ମଧୁପର ତିରୋଧାନ ସୁନିଶ୍ଚିତ ବୋଲି ସମସ୍ତେ ଭାବନା କରିଥିଲେ । ଦେଖି ଆଶାନ୍ୱିତ ହୋଇ ଅଛୁଁ ଯେ ଉତ୍କଳ ମଧୁପ ପୁନଃ ପ୍ରକାଶିତ ହୋଇଅଛି । ଉତ୍କଳର ଲବ୍ଧପ୍ରତିଷ୍ଠ ସୁଲେଖକ ଓ ସୁବକ୍ତା



Digitized by srujanika@gmail.com

ପଣ୍ଡିତ ଶ୍ରୀ ବିଶ୍ୱନାଥ କର ମହାଶୟ ଅବୈତନିକ ଭାବେ ମଧୁପର ସମ୍ପାଦକତ୍ୱ ଗ୍ରହଣ କରିଅଛନ୍ତି । x x x ବିଦ୍ୟାରତ୍ନ ମହାଶୟ ମଧ୍ୟ ମଧୁପ ପାଞ୍ଚବର୍ଷ ଚଳିବା ଭଳି ପ୍ରବନ୍ଧ ସଞ୍ଚୟ କରି ଯାଇଛନ୍ତି । ଏପରି ଅବସ୍ଥାରେ ମଧୁପ ପ୍ରକାଶରେ କୌଣସି ଅସୁବିଧା ନାହିଁ ।'' (୨୬)

ବିଦ୍ୟାରତ୍ନଙ୍କ ଅବର୍ତ୍ତମାନରେ ମଧୁପର ଆଦର୍ଶ ଓ ଆଭିମୁଖ୍ୟ ସୁରକ୍ଷା ଦିଗରେ ବିଶ୍ୱନାଥ କର, ତ୍ରିପତି ଗାୟକରତ୍ନ ପ୍ରମୁଖଙ୍କ ଉଦ୍ୟମ ପ୍ରଶଂସନୀୟ ।

'ମଧୁପ' ଥିଲା ଏକ ବିଶ୍ୱକୋଷ ଓ ବିବିଧ ଜ୍ଞାନର ଭଣ୍ଡାର । ଜ୍ଞାନ ବ୍ୟତୀତ ଏଥିରେ ଥିଲା ବିଭିନ୍ନ ସମସ୍ୟାର ସମାଧାନ ବିଭିନ୍ନ ରୋଗର ନିଦାନ । ମଧୁପ ଉଦ୍ଦିଷ୍ଟ ଥିଲା ସବୁ ଶ୍ରେଣୀର, ସବୁ ବୟସର ପାଠକ ପାଇଁ । ବିଦ୍ୟାରତ୍ନଙ୍କ ବହୁମୁଖୀ ପ୍ରତିଭା କେବଳ ସମ୍ବାଦ ସରବରାହ, ନୂତନ ଲେଖକ ସୃଷ୍ଟି ବା ଓଡ଼ିଆ ସାହିତ୍ୟର ପରିପୁଷ୍ଟିକୁ ଏକମାତ୍ର ଆଭିମୁଖ୍ୟ ରୂପେ ଗ୍ରହଣ କରି ନ ଥିଲା, ସେ ସମାଜର ସର୍ବାଙ୍ଗୀନ ଉନ୍ନତି ସାଧନ କରି ସାଧାରଣ ମଣିଷଙ୍କୁ ଶିକ୍ଷିତ କରିବାର ଅଭିଳାଷ ପୋଷଣ କରିଥିଲା । ବାମଣ୍ଡା ରହଣିବେଳେ ' ସମ୍ବଲପୁର ହିତୈଷିଣୀ' ପରି ବୃହତ୍ ପତ୍ରିକା ସହିତ ପ୍ରକାଶ ଲଭିଲା ' ମଧୁପ'- ଗଞ୍ଜାମ ଅଞ୍ଚଳରେ 'ପ୍ରଜାବନ୍ଧୁ' ଓ 'ଗଞ୍ଜାମ ଗୁଣଦର୍ପଣ' ସହିତ ଏବଂ ପରିଶେଷରେ କଟକରୁ 'ଦୀପିକା' ସହିତ ସମତାଳରେ ' ମଧୁପ'ର ହେଲା ଶୁଚିଶୁଭ୍ର ପ୍ରକାଶ । ଦ୍ୱୈତ ସମ୍ପାଦନାରେ ଏକ ମୌଳିକ ଯୋଗସୂତ୍ର ଓ ସମନ୍ୱୟ ରକ୍ଷାକରି ବିଦ୍ୟାରତ୍ନ ଉଭୟ ପତ୍ରିକାକୁ (ପ୍ରତି ସ୍ଥାନରେ) ସିଦ୍ଧି ପ୍ରଦାନରେ ସଫଳ ହୋଇଛନ୍ତି । ଏହାହିଁ ବିଦ୍ୟାରତ୍ନଙ୍କ ପ୍ରତିଭାର ସର୍ବଶ୍ରେଷ୍ଠ କୃତିତ୍ୱ ।

ମଧୁପର ସମସ୍ତ ସଂଖ୍ୟା ସଂଗ୍ରହ ଏକ ଜାତୀୟ କର୍ତ୍ତବ୍ୟ । ବର୍ତ୍ତମାନ ଓଡ଼ିଶାର ''ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସ୍ମୃତି ସଂସଦ'' ''ବିଦ୍ୟାରତ୍ନ ସ୍ମରଣ କମିଟି'' ପ୍ରଭୃତି ଗଢ଼ି ଉଠି ବିଦ୍ୟାରତ୍ନ ପ୍ରତିଭାକୁ ଉପଯୁକ୍ତ ସମ୍ମାନ ଦେବାରେ କୃତସଂକଳ୍ପ ହୋଇଛନ୍ତି । ଏ ସମସ୍ତ ଅନୁଷ୍ଠାନ ସହିତ ଓଡ଼ିଆ ପାଠକ ଓ ବୁଦ୍ଧିଜୀବୀ ଗୋଷ୍ଠୀଙ୍କୁ ବିଦ୍ୟାରତ୍ନ ରଚନା ସମଗ୍ର ସଂକଳନ ସହିତ ''ମଧୁପ'' ସଂଗ୍ରହ ଦିଗରେ ଉଚିତ ପଦକ୍ଷେପ ଗ୍ରହଣ ପାଇଁ ଅନୁରୋଧ କରୁଛି ।□□□

## ସହାୟକ ପଞ୍ଜିକା


୧) ଶତପଥୀ, ଗୋକୁଳ ଚନ୍ଦ୍ର: ଉତ୍କଳ ମଧୁପ: ଭଞ୍ଜ ପ୍ରଦୀପ, ବାରିପଦା ପୌଷ ୧୩୪୮ରୁ ସମସ୍ତ ତଥ୍ୟ ଗୃହୀତ ।

୨) ବାମଣ୍ଡାରେ ନୂତନ ପତ୍ରିକା: ସମ୍ବଲପୁର ହିତୈଷିଣୀ-୧୨/୫, ୬-୬-୧୯୦୦ ।




Digitized by srujanika@gmail.com

୩) ରାୟ, ରାଧାନାଥ: 'ଉତ୍କଳ ମଧୁପ' ସମ୍ବନ୍ଧରେ ମନ୍ତବ୍ୟ: 'ଉତ୍କଳ ମଧୁପ' ୧/୩ ଅଗଷ୍ଟ ୧୯୦୦ ।
୪) ମଧୁପ: ୧/୧ ଜୁନ୍-୧୯୦୦ ।
୫) ବାସନା ଓ ପ୍ରାର୍ଥନା : ମଧୁପ - ୬/୧ ଅଗଷ୍ଟ ୧୯୧୫ ।
୬) ନନ୍ଦ, ଫଣୀନ୍ଦ୍ର ଭୂଷଣ: ନୀଳମଣି ବିଦ୍ୟାରତ୍ନ: ଏକ ସ୍ମୃତିଚାରଣ: କୋଣାର୍କ: ୯୩ ସଂଖ୍ୟା: ଜୁନ୍ - ୧୯୯୪ ।
୭) ରଥ, ଭାଗୀରଥି: 'ଉତ୍କଳ ମଧୁପ' ସମ୍ବନ୍ଧରେ ମନ୍ତବ୍ୟ: ମଧୁପ ୧/୩ ଅଗଷ୍ଟ-୧୯୦୦ ।
୮) (ଟଷ୍କର ଭାଷା): ମଧୁପ ୧/୧ ଜୁନ୍- ୧୯୦୦, ପୃ-୪
୯) ତା- ମଧୁପ ୧/୧ ପୃ-୫
୧୦) ନଗର ଓ ବନ : ମଧୁପ - ୧/୧ ପୃ-୨୨
୧୧) ଆବେଦନ, ସମ୍ବାଦ: ମଧୁପ ୧/୪, ସେପ୍ଟେମ୍ବର-୧୯୦୦ ।
୧୨) ଦେବ, ସାର ବାସୁଦେବ ସୁଢ଼ଳ, ବିସୂଚିକା ଚିକିତ୍ସା ଉପରେ ମତାମତ ସ: ହି: ୫/୪,୨୮-୬-୧୮୯୩ ।
୧୩) ତତ୍ରୈବ ।
୧୪) ଉତ୍କଳ ମଧୁପ ସମ୍ବନ୍ଧରେ ମନ୍ତବ୍ୟ : ମଧୁପ -୧/୧୨ ମେ-୧୯୦୧
୧୫) ମନ୍ତବ୍ୟ- ମଧୁପ-୧/୩ ଅଗଷ୍ଟ-୧୯୦୦ ।
୧୬) ମନ୍ତବ୍ୟ, ମଧୁପ ୧/୧୨ ମେ-୧୯୦୧ ।
୧୭) ପ୍ରଧାନ, ଦୀନବନ୍ଧୁ, ଉତ୍କଳ ମଧୁପ: ସ: ହି: ୧୨/୩୯, ୬-୨-୧୯୦୧ ।
୧୮) କାର୍ଯ୍ୟାଧ୍ୟକ୍ଷଙ୍କ ନିବେଦନ : ମଧୁପ ୧/୧ ।
୧୯) ବର୍ଷ ସମାପ୍ତି : ମଧୁପ ୧/୧୨ ।
୨୦) ସାହା, ରାମକୃଷ୍ଣ, ମଧୁପର ବାରା ମାସ: ସ: ହି: ୧୩/୧,୧୫-୫-୧୯୦୧ ।
୨୧) ମଧୁପ: ୬/୧ ।
୨୨) ଉତ୍କଳ ମଧୁପ : ଦୀପିକା - ୫୮/୧୧, ୧୬-୩-୧୯୨୩ ।
୨୩) ଉତ୍କଳ ମଧୁପ : ଦୀପିକା- ୫୮/୨୩, ୯-୬-୧୯୨୩ ।
୨୪) ମଧୁପର ଆଦର: ଦୀପିକା - ୫୮/୪୯,୨୨-୧୨-୧୯୨୩ ।
୨୫) ପରଲୋକଗତ ବିଦ୍ୟାରତ୍ନ : ଦୀପିକା : ୫୯/୩୧,୨-୮-୧୯୨୪ ।
୨୬) ଦାଶ, ସ୍ୱପ୍ନେଶ୍ୱର: ଉତ୍କଳ ମଧୁପ: ସାଧନା- ୩/୨୧,୧୧-୯-୧୯୨୪ ।

**ସଂକ୍ଷେପୀକରଣ ସୂଚନା**

ମଧୁପ- ଉତ୍କଳ ମଧୁପ
ସ: ହି: ସମ୍ବଲପୁର ହିତୈଷିଣୀ
ଦୀପିକା - ଉତ୍କଳ ଦୀପିକା



Digitized by srujanika@gmail.com

# ଚିତ୍ର କବିତା ଓ ଚିତ୍ର ସମନ୍ୱୟ

ପ୍ରକୃତିର ରୂପ ସଂଭାର ମଣିଷକୁ ଚିରଦିନ ବିଭୋର କରିଛି । ସମ୍ବେଦନଶୀଳ ଦୃଷ୍ଟି ଏହି ରୂପକୁ ଅବଲୋକନ କରି ଆତ୍ମହରା ହୋଇଛି । ସୁନ୍ଦର ସୃଷ୍ଟିକୁ ନିଜସ୍ୱ ଢ଼ଙ୍ଗରେ ପରିବେଷଣ କରିବାର ଅଦମ୍ୟ ପିପାସା ଜନ୍ମଦେଇଛି କଳା ଓ ସାହିତ୍ୟକୁ । ମୂର୍ତ୍ତ ଓ ଅମୂର୍ତ୍ତ ବିର୍ଷବିଭାକୁ ଅନୁଭୂତି ଦ୍ୱାରା ରସାଣିତ କରି କଳାକାର ତିଆରି କରିଛି କଳାର କୋଣାର୍କ । ପ୍ରକୃତିର ବିଭିନ୍ନ ବିଭାବକୁ ଚିତ୍ରପଟରେ ଉତ୍କୀର୍ଣ୍ଣ କରିଛି, ଶିଳାରେ ଖୋଦିତ କରିଛି । ଚିତ୍ରପଟ କଳାର ଅନ୍ୟରୂପ ।' ଦୃଶ୍ୟର ଅତୀତ ବିଗତ ସମୟର ସ୍ମୃତିକୁ ଧରି ରଖିବା ଏବଂ ଆନନ୍ଦ ପ୍ରଦାନ କରିବା କଳାର ଅନ୍ୟତମ ଉଦ୍ଦେଶ୍ୟ । ଚିତ୍ରପଟ ମାଧ୍ୟମରେ କଳାକାରର ସୃଜନୀଶକ୍ତି ପରିସ୍ଫୁଟ ହୁଏ । ଅନ୍ୟପକ୍ଷରେ ଯୁଗାନ୍ତରର ଭାବ ଆବେଦନ ଚିତ୍ରମାଧ୍ୟମରେ କାଳଜୟୀ ସ୍ୱାକ୍ଷର ପ୍ରଦାନ କରେ । ଦୂରସ୍ଥ ପ୍ରକୃତି, ଦୃଷ୍ଟିର ଅତୀତ ପ୍ରିୟାର ରୂପ ସଂଦର୍ଶନ କରାଇବାରେ ଚିତ୍ରପଟର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପୌରାଣିକ ଓ କାବ୍ୟଯୁଗର ସାହିତ୍ୟରେ ନାୟିକା ଓ ନାୟକମାନଙ୍କର ଚିତ୍ରପଟ ପ୍ରଦର୍ଶନ ଓ ରୂପବର୍ଣ୍ଣନାର ପରଂପରା ଏକ ଉର୍ଜସ୍ୱଳ ସାରସ୍ୱତ ଧାରା । ନାୟକ ଓ ନାୟିକାର ମିଳନର ପୂର୍ବରାଗ ରୂପେ ଚିତ୍ରପଟ ପ୍ରଦର୍ଶନ ଓ ରୂପ ବର୍ଣ୍ଣନା ସ୍ୱୀକୃତ । ଲାବଣ୍ୟବତୀ କାବ୍ୟରେ ବଦନିକା ଗଣିକା ଦ୍ୱାରା ଚନ୍ଦ୍ରଭାନୁକୁ ଲାବଣ୍ୟବତୀର ପଟଚିତ୍ର ପ୍ରଦାନ ଓ ରୂପବର୍ଣ୍ଣନା 'ଚିତ୍ର କବିତା'ର ସ୍ୱରୂପ ପ୍ରଖ୍ୟାପନ କରେ । ବିଭିନ୍ନ ପୁରାଣ ଆଖ୍ୟାୟିକା ଗୁଡିକରେ ଦାସ, ବୟସ୍ୟ, ସଖୀ, ସଖା, ଗଣିକା, ଜ୍ୟୋତିଷ, ବିଦୂଷକ, ସୂତ୍ରଧର ପ୍ରଭୃତିଙ୍କ ଦ୍ୱାରା ନାୟକ/ ନାୟିକାର ଚିତ୍ରପଟ ପ୍ରଦର୍ଶନ ଓ ତଦ୍‌ଜନିତ ରୂପବର୍ଣ୍ଣନା ଏହି ପ୍ରସଙ୍ଗରେ ସ୍ମରଣଯୋଗ୍ୟ । ଚିତ୍ରଦେଖି ରୂପବର୍ଣ୍ଣନା କରିବାର ଏହି ସମୃଦ୍ଧ ପରମ୍ପରା ପ୍ରାକୃତ କାବ୍ୟରୁ ଆସିଥିବାର ପଣ୍ଡିତମାନେ ସ୍ୱୀକାର କରନ୍ତି । ବିଶ୍ୱ ସାହିତ୍ୟରେ ମୋନାଲିସା ଓ ହେଲେନ୍‌ଙ୍କ ଚିତ୍ରପଟକୁ ନେଇ କାଳଜୟୀ ସାହିତ୍ୟ ସୃଷ୍ଟି ହୋଇଛି ।

'ଚିତ୍ର କବିତ୍ୱ' ବିଶ୍ୱ ସାହିତ୍ୟରେ ଏକ ସମୃଦ୍ଧ ପରମ୍ପରା । ଭଞ୍ଜ କବି ଦୃପ୍ତ କଣ୍ଠରେ ଘୋଷଣା କରନ୍ତି -

'' ଏତେ ପ୍ରକାରେ କରି ଛାନ୍ଦ ଗୀତ ।
ଚିତ୍ର କବିତ୍ୱେ ବଳାଇଲି ଚିତ୍ତ'' ( ଚିତ୍ରକାବ୍ୟ ବନ୍ଧୋଦୟ)

ଭଞ୍ଜଙ୍କ ପୂର୍ବେ ଓ ପରେ ବିଭିନ୍ନ ଭାଷାର କବି ' ଚିତ୍ର କବିତ୍ୱ'ରେ ନିଜର ପାରାକାଷ୍ଠା



Digitized by srujanika@gmail.com

ପ୍ରଦର୍ଶନ କରିଛନ୍ତି । ସଂସ୍କୃତ, ପାରସ୍ୟ ଓ ଗ୍ରୀକ୍ ସାହିତ୍ୟରେ ଚିତ୍ରକାବ୍ୟର ଦୃଷ୍ଟାନ୍ତ ପ୍ରଚୁର ରହିଛି । (ଚିତ୍ର କବିତ୍ୱ ଶୈଳଜ ରବି : ଝଙ୍କାର ଏପ୍ରିଲ୍ ୨୦୦୧)

ଚିତ୍ରକାବ୍ୟ ବା ବନ୍ଧକାବ୍ୟ ଉପରେ ଆଲୋଚନା ଏ ପ୍ରବନ୍ଧର ଲକ୍ଷ୍ୟ ନୁହେଁ । ବରଂ ଚିତ୍ର ଓ କବିତା ମଧ୍ୟରେ ଥିବା ସୂକ୍ଷ୍ମ ପାର୍ଥକ୍ୟର ଅବଲୋକନ ଏବଂ କୌଣସି ଚିତ୍ରପଟ୍ଟର ଭାବକୁ ବାଚିକ ଭାଷାରେ ବା କବିତାରେ ରୂପାନ୍ତର କରିବାର କଳା କାରିଗରୀ ଉପରେ ଅନୁଧ୍ୟାନ ହିଁ ଏହି ଆଲୋଚନାର ମୂଳଧ୍ୟେୟ ।

କବି ବା କଳାକାର ନିଜ ଭାବଜଗତରେ ସୃଷ୍ଟି ହୋଇଥିବା ଚିତ୍ର ପ୍ରତୀତିକୁ କଥିତ ଭାଷା ବା ଚିତ୍ର ଭାଷାରେ ରୂପଦିଏ । ଯେ କୌଣସି ମାଧ୍ୟମ ହେଉ ସର୍ଜନଶୀଳତାର ମୂଳଲକ୍ଷ୍ୟ ମନୋରଞ୍ଜନ । ବ୍ୟାକରଣର ଊର୍ଦ୍ଧ୍ୱରେ ଏହାର ପ୍ରତିଷ୍ଠା । ଚିତ୍ରକୁ କବିତାରେ ରୂପାନ୍ତର କରିବାର ଏହି ସୂକ୍ଷ୍ମକଳା ଦୁଇଟି ସମସ୍ୟାର ସମ୍ମୁଖୀନ ହୁଏ । ଗୋଟିଏ ହେଲା ଅବଲୋକନ ପ୍ରକ୍ରିୟା (cognition) ଗତ ସମସ୍ୟା । କବି ଦୃଷ୍ଟି ବା ଚିତ୍ର ଦୃଷ୍ଟିର ସମସ୍ୟା । ଆରଟି ହେଲା ଅନୁବାଦର ସମସ୍ୟା । (ଚିତ୍ର କବିତ୍ୱ: ଶୈଳଜ ରବି ଝଙ୍କାର ଏପ୍ରିଲ-୨୦୦୧)

ସଂଶିତ ଆଲୋଚନାରେ ଚିତ୍ର ଭାଷାକୁ ବାଚିକ ଭାଷାରେ ରୂପାନ୍ତର ସହିତ ସଫଳ କବିତା ରଚନାର ଏକ ବିଶେଷ ପରୀକ୍ଷା ନିରୀକ୍ଷା ପ୍ରତି ଦୃଷ୍ଟି ଦିଆଯାଇଛି । ଏଠାରେ 'ଚିତ୍ର କବିତା' ରୂପେ ଚିତ୍ରକୁ ଅବଲମ୍ବନ କରି କବିତା ରଚନାର ପରମ୍ପରାକୁ ନିର୍ଦ୍ଦେଶ କରାଯାଇଛି ।

'ଚିତ୍ର କବିତା'ର ଏକ ଶୁଦ୍ଧ ପରମ୍ପରା ବାମଣ୍ଡାରେ ସୃଷ୍ଟି ହୋଇଥିଲା । ଏହାର ଅନନ୍ୟ ପ୍ରତିଭୂ ଥିଲେ ସଚ୍ଚିଦାନନ୍ଦ ଦେବ । ସେଥିଲେ ଏକାଧାରରେ ଚିତ୍ରକର ଓ କବି । ବାସ୍ତବ ବିଷୟକୁ ଉଭୟ ବାଚିକ ଓ ଚିତ୍ର ଭାଷାରେ ସୃଜନଶୀଳତାର ବେହରଣ ପିନ୍ଧାଇବାରେ ସେ ସିଦ୍ଧହସ୍ତ । ବାମଣ୍ଡାରେ ବିଭିନ୍ନ ଚିତ୍ରକରଙ୍କ ଚିତ୍ରପଟକୁ ନେଇ କାବ୍ୟ ରଚନାର ପରମ୍ପରା ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକରେ ଉତ୍କର୍ଷତାର କୋଟୀକୁ ସ୍ପର୍ଶ କରିଥିଲା । ଆଧୁନିକ ସାହିତ୍ୟର ପରୀକ୍ଷାଗାର ବାମଣ୍ଡାରେ ଚିତ୍ରକୁ ନେଇ କବିତା ରଚନା ଏବଂ ତାର ସମନ୍ୱୟ ରଚନାର ସମୃଦ୍ଧ ବାଣୀବିଳାସ ଦେଖାଦେଇଥିଲା । ଚିତ୍ର କବିତାର ଏହି ସର୍ଜନଶୀଳ ଦିଗ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ ହିଁ ପ୍ରସ୍ତୁତ ଆଲୋଚନାର ଲକ୍ଷ୍ୟ ।

ବାମଣ୍ଡା ଦରବାର ଓ ଆଲୋଚନା ସଭାରେ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ବିଭିନ୍ନ ବିଭାବ ଉପରେ ପରୀକ୍ଷା ନିରୀକ୍ଷା ଚାଲିଥିଲା । ସମସ୍ୟା ପୂରଣ, ପାଦ ପୂରଣ, ଗୋଟିଏ ଶୀର୍ଷକକୁ ନେଇ କବିତା ରଚନା, ଯୌଥ କବିତା ରଚନା ପ୍ରଭୃତି ଏହି ପ୍ରସଙ୍ଗରେ



Digitized by srujanika@gmail.com

ସ୍ମରଣଯୋଗ୍ୟ । ୧୮୯୪ରେ ସଚ୍ଚିଦାନନ୍ଦଙ୍କ ସଂକଳିତ ' ପାରିଜାତମାଳା'ରେ ତିନିଜଣ କବିଙ୍କ ଷଡ଼ଋତୁ ବର୍ଣ୍ଣନା ସନ୍ନିବେଶିତ । ବସନ୍ତ ଓ ବର୍ଷା ଉପରେ ଦାମୋଦର ମିଶ୍ରଙ୍କ କବିତା, ଶରତ୍ ଓ ହେମନ୍ତ କବିତା ସଚ୍ଚିଦାନନ୍ଦ ଦେବ ଏବଂ ଗ୍ରୀଷ୍ମ ଓ ଶିଶିର କବିତା ଜଳନ୍ଧର ଦେବଙ୍କ ରଚିତ । ଓଡ଼ିଆ ସାହିତ୍ୟରେ ଏହା ପ୍ରଥମ ଏକାଧିକ କବି ରଚିତ କବିତା ସଂକଳନ । ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ବଳଭଦ୍ର ଦେବଙ୍କ 'ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ' ସମସ୍ୟାର ପୂର୍ତ୍ତି ଅନେକ କବି କରନ୍ତି । ଗଙ୍ଗାଧର ପ୍ରମୁଖ ଅନେକ କବିଙ୍କୁ ଏହି ସମସ୍ୟା ଆକୃଷ୍ଟ କରିଥିଲା। ଜହ୍ନମାମୁଁ ଶୀର୍ଷକରେ ସୁଢ଼ଳଦେବ ଅନେକ କବିଙ୍କ କବିତା ଆହ୍ୱାନ କରିଥିଲେ । ବାରଜଣ କବିଙ୍କ ଉକ୍ତ ଶୀର୍ଷକର ୧୦୪ ପଂକ୍ତି ୧୯୦୩ରେ 'ଜହ୍ନମାମୁ' ପୁସ୍ତକ ରୂପେ ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସରୁ ପ୍ରକାଶିତ ।

ବାମଣ୍ଡାର ବିଭିନ୍ନ ସାଂସ୍କୃତି ଓ ସାମାଜିକ କାର୍ଯ୍ୟକ୍ରମରେ ପଣ୍ଡିତ ସଭା, ସମସ୍ୟା ପୂରଣ ଏକ ମୁଖ୍ୟ ଅଙ୍ଗ ଥିଲା । ସୁଢ଼ଳଦେବଙ୍କ ଚତୁର୍ଥ ରାଜକୁମାରୀଙ୍କ ବିବାହ ଉତ୍ସବରେ (୧୮୯୯) ପଣ୍ଡିତ ସଭାକୁ ଭାରତ ବିଖ୍ୟାତ ଶିବକୁମାର ଶାସ୍ତ୍ରୀଙ୍କଠୁ ଆରମ୍ଭ କରି ଅନେକ ଦିଗ୍‌ଗଜ ପଣ୍ଡିତ ଅଳଙ୍କୃତ କରିଥିଲେ । ଏହି ପଣ୍ଡିତ ସଭାରେ ସାର ବାସୁଦେବ ସୁଢ଼ଳଦେବ ଦୁଇଗୋଟି ସମସ୍ୟା ପୂରଣ ସକାଶେ ପ୍ରଦାନ କରିଥିଲେ-

୧: ''ଅତଃ ପର୍ଯ୍ୟୁଷିତଂ ପଦ୍ମଂ ଭୃଙ୍ଗାଳି ପରିଚୁମ୍ବତି ।''

୨: '' ତତ୍‌ମାତ୍ କୃତୌ ଭବତିସା ଖଳୁଚିତ୍ ପ୍ରବୃତ୍ତି''

ପ୍ରଥମ ସମସ୍ୟା ୨୮ ଜଣ ଏବଂ ଦ୍ୱିତୀୟ ସମସ୍ୟା ୧୩ ଜଣ ପଣ୍ଡିତ/କବି ପୂରଣ କରିଥିଲେ । ଏହି ପଣ୍ଡିତ ସଭାରେ ଭାରତ ମାର୍ତ୍ତଣ୍ଡ ଶିବକୁମାର ଶାସ୍ତ୍ରୀ (କାଶୀ)''ଅବ ବିଦ୍ୟାରସଃ'' ଖୋଦିତ ସ୍ୱର୍ଣ୍ଣପଦକ ସାର୍ ସୁଢ଼ଳଦେବ ପ୍ରଦାନ କରିଥିଲେ । (ବାମଣ୍ଡା ସାରସ୍ୱତ ସଭା: ଭୋଳାନାଥ ସାମନ୍ତରାୟ : ବାଲେଶ୍ୱର ସମ୍ବାଦବାହିକା ୩୧-୮-୧୮୯୯)

କବି ରାମକୃଷ୍ଣ ସାହୁଙ୍କ କବି ଭୂଷଣ ଉପାଧି ପ୍ରାପ୍ତି ଉପଲକ୍ଷେ 'ସମ୍ବଲପୁର ହିତୈଷିଣୀ' ତରଫରୁ ଭଞ୍ଜଙ୍କ ନିମ୍ନ କବିତାଂଶର ବିଶଦ ଅର୍ଥ କରିବାକୁ ଆହ୍ୱାନ କରାଯାଇଥିଲା ।

'' ଦିନେ ହୋଇଥିଲା ଘୋର ବରଷା
ବୋଇଲି ବାନ୍ଧବୀ ଖେଳିବା ପଶା
ପଶା ଖେଳ ମୋତେ ଆସଇ ନାହିଁ
ଦାନ ପଡିଲେ ସାରଦେବି ବାହି
ସେ ଚତୁରୀ ବାଳୀ
ସାର ବାଛିନେଲା ହଳଦୀ କାଳୀ ।''(ସମ୍ବଲପୁର ହିତୈଷିଣୀ-୧୭-୮-୧୮୯୨)



Digitized by srujanika@gmail.com

୧୯୦୩ରେ ''ବାହୁନୁଥିଲେ ସବୁ ଅସୁନ୍ଦର'' ସମସ୍ୟାର ପାଦପୂରଣ କରିବାକୁ ସମ୍ବଲପୁର ହିତୈଷିଣୀ ତା ୨୦.୬.୧୯୦୩ରେ ଦିଆଯାଇଥିଲା । ୧୯୦୫ରେ ଦିବ୍ୟଶଙ୍କର ଦେବ ( ସଚ୍ଚିଦାନନ୍ଦଙ୍କ ପୁତ୍ର)ଙ୍କ ବ୍ରତୋତ୍ସବ ଉପଲକ୍ଷେ ବାମଣ୍ଡା ଆଲୋଚନା ସଭାରେ ବୀର ବିକ୍ରମଦେବ ଖଡିଆଳ ଅଧିପତି '' କି ବିଚାରି ବଂଧୁ । ଚମ୍ପାଫୁଲେ ଦେଲ କଜ୍ଜଳବିନ୍ଦୁ'' ସମସ୍ୟା ପ୍ରଦାନ କରିଥିଲେ । ଏହି ପାଦପୂରଣ କରି ପଣ୍ଡିତ ଜଗନ୍ନାଥ ସାଂଖ୍ୟ ନ୍ୟାୟ ରତ୍ନ ପ୍ରଥମ ପୁରସ୍କାର ପାଇଥିଲେ । ( ସମ୍ବଲପୁର ହିତୈଷିଣୀ-୩.୬.୧୯୦୫)

ପାଦପୂରଣର ଏହି ପରମ୍ପରା ପରବର୍ତ୍ତୀ ପର୍ଯ୍ୟାୟରେ 'ଚିତ୍ର କବିତା' ରଚନାରେ ପର୍ଯ୍ୟବେଶିତ ହୋଇଛି । ବିଭିନ୍ନ ଚିତ୍ରକରଙ୍କ ଉତ୍କୃଷ୍ଟ ଚିତ୍ର ଦର୍ଶନ କରି ବାମଣ୍ଡାର କବିବୃନ୍ଦ କାଳଜୟୀ କବିତା ସୃଷ୍ଟି କରିଛନ୍ତି ।

**-କ-**

ସଚ୍ଚିଦାନନ୍ଦ ଦେବଙ୍କ ' ଚିତ୍ର' ପୁସ୍ତକ ୧୯୧୦ରେ ସ୍ବୁଡ଼ଲ ପ୍ରେସ, ବାମଣ୍ଡାରେ ପ୍ରକାଶିତ । ଏଥିରେ ରବିବର୍ମାଙ୍କ ପାଞ୍ଚଟି ଚିତ୍ର ଅବଲମ୍ବନରେ ପାଞ୍ଚଟି କବିତା ରଚିତ । ପୁସ୍ତକର ଭୂମିକାରେ (ପାଠକମାନଙ୍କ ପ୍ରତି) କବି ସ୍ୱୀକାର କରନ୍ତି- ''ପ୍ରଥିତଯଶା ଚିତ୍ର ଧୂରନ୍ଧର ରାଜା ରବି ବର୍ମାଙ୍କ ଚିତ୍ରିତ ଜୀବନ୍ତ ପ୍ରତିମ ଭାବ ପ୍ରକାଶକ ପାଞ୍ଚଗୋଟି ଆଲେଖ୍ୟକୁ ଅବଲମ୍ବନ କରି ଏହା ରଚିତ ହୋଇଅଛି । ପ୍ରିୟ ପାଠକବୃନ୍ଦ ଚିତ୍ରକାରଙ୍କ ଚିତ୍ରିତ ଉକ୍ତ ମୂଳଚିତ୍ର ସନ୍ଦର୍ଶନ ପୂର୍ବକ ଏହା ପଠନ କଲେ କବିତାର ପ୍ରକୃତ ମାଧୁରୀ ଓ ଉଦ୍ଦେଶ୍ୟ ସହଜରେ ହୃଦୟଙ୍ଗମ କରିପାରିବେ । (ପାଠକମାନଙ୍କ ପ୍ରତି : ଚିତ୍ର: ସଚ୍ଚିଦାନନ୍ଦଦେବ-୧୯୧୦) 'ଚିତ୍ର ସଂକଳନରେ ସନ୍ନିବେଶିତ କବିତାଗୁଡିକ 'ସମ୍ବଲପୁର ହିତୈଷିଣୀ'ର ବିଭିନ୍ନ ସଂଖ୍ୟାରେ ପୂର୍ବରୁ ପ୍ରକାଶିତ ଓ ପାଠକୀୟ ସମ୍ବେଦନା ଆକର୍ଷଣରେ ସଫଳୀକୃତ। ଶକୁନ୍ତଳାର ପତ୍ରଲିଖନ ୧୬-୧୦-୧୯୦୯, ଶ୍ରୀକୃଷ୍ଣ ସହ ରାଧିକା ୨୩-୧୦-୧୯୦୯, ଗଙ୍ଗାବତରଣ ୩୦-୧୦-୧୯୦୯ ଯମୁନା କୂଳେ ରାଧିକା ଓ ସଖୀ ଲଳିତା ୨୬-୨-୧୯୧୦ ଓ ମୋହିନୀ ୨୭-୮-୧୯୧୦ ସଂଖ୍ୟାରେ ପ୍ରକାଶ ପାଇଥିଲା । ପତ୍ରିକାରେ ପ୍ରକାଶ ସମୟରେ ଏହି କବିତାଗୁଡିକ ଏସ୍‌ଟିଡି ଛଦ୍ମନାମରେ ମୁଦ୍ରିତ ।

ଚିତ୍ର କବିତାଗୁଡିକ ସଚ୍ଚିଦାନନ୍ଦଙ୍କ କାବ୍ୟସିଦ୍ଧିର ଅମ୍ଳାନ ସ୍ୱାକ୍ଷର । ଏଥିରେ ତାଙ୍କର ଦୃଷ୍ଟିର ଗଭୀରତା ଓ ଚିନ୍ତନର ବ୍ୟାପକତା ପରିସ୍ଫୁଟ । ତାଙ୍କର ପ୍ରତିନିଧି ଶ୍ରେଣୀର ଶ୍ରେଷ୍ଠ କବିତା ରୂପେ ଏଗୁଡିକୁ ଚିହ୍ନିତ କରାଯାଇପାରେ । 'ଶକୁନ୍ତଳାର ପତ୍ରଲିଖନ' କବିତାରେ ନୈସର୍ଗିକ ପ୍ରେମର ପଟ୍ଟାନ୍ତରହୀନ ଦୃଷ୍ଟାନ୍ତ ସଂଯୋଜିତ । ବିଗତ ପ୍ରଣୟ ଚିନ୍ତାରେ ଶକୁନ୍ତଳାର ସୌନ୍ଦର୍ଯ୍ୟ କବିଲେଖନୀରେ ମହୀୟାନ ହୋଇଛି । ପ୍ରେମ ପତ୍ରର ପ୍ରାରମ୍ଭରେ



Digitized by srujanika@gmail.com

ଲଜ୍ଜାଶୀଳାବାଳା 'ଆର୍ଯ୍ୟପୁତ୍ର' ସମ୍ବୋଧନ ସହିତ ପ୍ରାଣର ପୁଞ୍ଜିଭୂତ ଅନୁରାଗକୁ ଢ଼ାଳି ଦେଇଛି ।

''କି ସୁଖେ ସୁନ୍ଦରୀ ମଣି ! ବିସିନୀ ପତ୍ରରେ
ରାଜର୍ଷି- ପ୍ରଣୟ- ଚିନ୍ତା ହୃଦୟେ ସୁମରି
ଏକାଗ୍ରେ ନିବେଶି ମନ ପୁଲକ - ଅନ୍ତରେ
ଚିନ୍ତୁଅଛି କାନ୍ତ-ମୁଖ-ଭାବ ଅନୁସରି ?
ସମ୍ବୋଧି ମଧୁରେ ଧୀରେ 'ଆର୍ଯ୍ୟପୁତ୍ର' ! ବୋଲି
ସଖି -ଅନୁରୋଧେ କରେ ଲେଖନୀ ଚାଳନା
ଗାତ୍ର ଢ଼ାଳି କିଶଳୟେ, ଭାବ-କଳ୍ପ-ବଲ୍ଲୀ,
ଭାବ-ଗର୍ଭ-ପ୍ରିୟଲେଖ କରଇ ରଚନା ।''(ଚିତ୍ର-୧୯୧୦: ପୃ-୧)

ଏହି ପର୍ଯ୍ୟାୟରେ କବିତାଗୁଡିକ ସଚ୍ଚିଦାନନ୍ଦଙ୍କ କ୍ଷୁଦ୍ରକବିତା ରଚନା ଓ ଅମିତ୍ରାକ୍ଷର ଛନ୍ଦ ପ୍ରୟୋଗର ଅମଳିନ କୃତି । ୧୯୧୨ରେ ସୁପ୍ରସିଦ୍ଧ ବଙ୍ଗଳା ଲେଖକ ବିଜୟ ଚନ୍ଦ୍ର ମଜୁମ୍‌ଦାର ସଚ୍ଚିଦାନନ୍ଦ ଦେବଙ୍କ ଗ୍ରନ୍ଥାବଳୀର ନିର୍ବାଚିତ ଅଂଶକୁ ବଙ୍ଗଳାରେ ଅନୁବାଦ କଲାବେଳେ 'ଚିତ୍ର'କବିତାଗୁଡିକୁ ଅଗ୍ରାଧିକାର ଦେଇଛନ୍ତି। ଯାଫଳରେ ସଚ୍ଚିଦାନନ୍ଦଙ୍କ କାବ୍ୟ ମାଧୁର୍ଯ୍ୟ ପାନରେ ବଙ୍ଗଳା ପାଠକ ଆତ୍ମହରା ହେବା କଥା 'ପ୍ରବାସୀ' 'ଭାରତବର୍ଷ' ପ୍ରଭୃତି ବଙ୍ଗଳା ପତ୍ରିକା ସ୍ୱୀକାର କରନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ବିଜୟ ମଜୁମ୍‌ଦାରଙ୍କ ଅନୁବାଦର କିଛି ଅଂଶ ଉଦ୍ଧାର କରାଯାଇପାରେ ।

''ସୁଖିନୀ ସୁନ୍ଦରୀ ମଣି ବସିୟା ବିଜନେ
ରାଜର୍ଷିର ମଧୁସ୍ମୃତି ପ୍ରୀତ ମୁଗ୍ଧ ମନେ
ଲିଖିଛେନ ପ୍ରେମଲିପି ପ୍ରାଣେଶେର ତରେ
ପୁଲକ ଚାଳିତ କରେ ପଦ୍ମପତ୍ର ପରେ ।
ପ୍ରେମ ଧ୍ୟାନେ ମଗ୍ନବାଳା ହେରେ ପୁରୋଭାଗେ
ସମୁଦିତ ଯେନ କାନ୍ତ ନବ ଅନୁରାଗେ ।
ପ୍ରଣୟୀର ପ୍ରାଣ ମାଝେ ପ୍ରାଣ ଖାନି ତାର
ମିଳାୟେ ମିଶାୟେ ଲଭେ ଆନନ୍ଦ ଆପାର ।
ଅଙ୍ଗ କିଶଳୟ ତିଲେ ମାନସ କଳ୍ପନା
ଭାବକଳ୍ପ ବଲ୍ଲୀମାଝେ ଉଲ୍ଲାସେ ମଗନା ।
ସଖୀ ଅନୁରୋଧେ ଲେଖେ କରିୟା ଯତନ
ଆର୍ଯ୍ୟେ ପୁତ୍ର ବୋଲିକରି ପ୍ରିୟ ସମ୍ଭାଷଣ ।''



Digitized by srujanika@gmail.com

(ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ (ବଙ୍ଗଳା)- ପୃ-୮୨)

'ଶ୍ରୀକୃଷ୍ଣ ଓ ଦୂତୀ ସହ ରାଧିକା' କବିତାରେ ଚିତ୍ରର ବିଷୟବସ୍ତୁ ସହିତ କାନଭାସରେ ଚିତ୍ରିତ ପ୍ରକୃତିର ବର୍ଣ୍ଣନାରେ କବିଲେଖନୀ ସଫଳ ହୋଇଛି । ଚିତ୍ର ସାମଗ୍ରିକ ବିଭାକୁ ଶବଦରେ ପ୍ରତିଫଳିତ କରିବାର ଚେଷ୍ଟା ମହୀୟାନ ହୋଇଛି । ଯମୁନା ତୀରର ପୃଷ୍ଠଭୂମି ଶ୍ରୀକୃଷ୍ଣଙ୍କୁ ଦେଖି ରାଧା ଓ ଦୂତୀ ମନରେ ଭାବାନ୍ତର ସୃଷ୍ଟି ହୋଇଛି। ଧୀର ସମୀରଣ ପ୍ରେମିକା ହୃଦୟର ଉନ୍ମାଦନାକୁ ହରଣ କରୁଛି । ଦୃଷ୍ଟିର ଅତୀତ ଏହି ଭାବକୁ ପ୍ରତୀକାତ୍ମକ ଭାବେ କବି ପରିବେଷଣ କରିଛନ୍ତି ।

''ଭାନୁସୁତା- କଲ୍ଲୋଳିନୀ-ଶୀତ ସମୀରଣ
ବହୁଅଛି ଧୀରେ ଧୀରେ ଅଳକ କମ୍ପାଇ
ଲାଜ-ସ୍ୱେଦ-ବିନ୍ଦୁ ପୁଣି କରୁଛି ହରଣ,
ପ୍ରେମିକା ହୃଦୟ ପ୍ରେମେ ନିରତ ମଜାଇ ।''(ଚିତ୍ର: ବାମଣ୍ଡା, ୧୯୧୦-ପୃ-୩)

ପ୍ରେମର ଜ୍ୱଳନକୁ 'ଲୋହିତ-ଜ୍ୱଳନ' ରୂପେ କବି ଅବିହିତ କରିଛନ୍ତି । 'ଅରଣ - କୁଙ୍କୁମେ ଲିପ୍ତ ବାରୁଣୀ-ଗଗନ' ପରି ପ୍ରେମିକା ହୃଦୟର 'ଲୋହିତ ଜ୍ୱଳନ' ଶ୍ରୀକୃଷ୍ଣଙ୍କ ଦର୍ଶନରେ ଶାନ୍ତ ହୋଇ ଉଠୁଛି ।

'ଗଙ୍ଗାବତରଣ'ର ଦୃଶ୍ୟକୁ କବି ସହୃଦୟତାର ସହିତ ଯେତିକି ଦେଖିଛନ୍ତି ବୈଜ୍ଞାନିକ ଦୃଷ୍ଟିକୋଣରୁ ସେତିକି ତୁଳନା କରିଛନ୍ତି । ଗଙ୍ଗାକୁ ସଂଯୋଗୀଦାମିନୀ ( Positive Electricity) ଓ ଶିବଙ୍କ କଳାରାଶିକୁ 'କୃଷ୍ଣ ଅଭ୍ର' ( Negative charge) ରୂପେ କବି କଳ୍ପନା କରିଛନ୍ତି । ମେଘ ପକ୍ଷରେ ସଂଯୋଗୀ ଓ ବିଯୋଗୀର କଳ୍ପନା କରାଗଲା ବେଳେ ପ୍ରକୃତି ପୁରୁଷର ମିଳନକୁ କାମାସକ୍ତ ମହାଦେବ ରୂପେ ବର୍ଣ୍ଣନା କରାଯାଇଛି । ଗଙ୍ଗାଙ୍କ ଧରାବତରଣକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ କବି ବାସ୍ତବରୂପ ପ୍ରଦାନ କରିଛନ୍ତି ।

'' ଆକାଶୁଁ ଓହ୍ଲାଇ ଅବା ସଂଯୋଗୀ ଦାମିନୀ
ପରଶିବ ଭୂମିପୃଷ୍ଠେ ତୁଙ୍ଗ ଗିରିବର
ମିଶାଇବ କୃଷ୍ଣ ଅଭ୍ର ସଙ୍ଗେ କାଦମ୍ବିନୀ
ବୈପରୀତ୍ୱ ଗୁଣ ଯୋଗେ ଟଳିବ ଭୂଧର ।''(ଗଙ୍ଗାବତରଣ : ଚିତ୍ର : ପୃ. - ୫,୬)

'' ଯମୁନା କୂଳେ ରାଧିକା ଓ ସଖୀ ଲଳିତା'' କବିତାରେ ରାଧିକା ସଖୀକୁ ସମ୍ବୋଧନ କରି ନିଜ ପ୍ରାଣର ଅନନ୍ୟ ପ୍ରେମ ଅଭିଳାଷ ବ୍ୟକ୍ତ କରିଛନ୍ତି । ପ୍ରିୟର ଅଦର୍ଶନରେ ପ୍ରିୟାମନର ବ୍ୟାକୁଳତା ଓ ବିରହ ବ୍ୟଥା ବହୁଗୁଣିତ ହୋଇଛି ।

'' ସଖି !
କାହିଁ ମୋ କୌମାର -ହର ହୃଦୟ ଦେବତା ?



Digitized by srujanika@gmail.com

କାହିଁ ସେହି ପ୍ରେମାକାଶ- ଉଦିତ ଭାସ୍କର ?
କାହିଁ ଋତୁରାଜ ଛାଡି ବାସନ୍ତିକ ଲତା ?
କାହିଁ ମଧୁକାଳ- ପ୍ରିୟମତ୍ତ ମଧୁକର ?''
(ଯମୁନା କୂଳେ ରାଧିକା ଓ ସଖୀ ଲଳିତା : ଚିତ୍ର-ପୃ.୭)

'' ମୋହିନୀ'' କବିତାରେ ମୋହିନୀର ଅପରୂପ ଲାବଣ୍ୟ ଶବ୍ଦରୂପ ଗ୍ରହଣ କରିଛି । ଏହି ଅତୁଳନୀୟ ସୌନ୍ଦର୍ଯ୍ୟକୁ ଶବ୍ଦ ମାଧମରେ ଧରି ରଖିବାର ଚେଷ୍ଟା ସଫଳ ହୋଇଛି ।

–'ଖ'–

ସଚ୍ଚିଦାନନ୍ଦଙ୍କ ' ଚିତ୍ର ସଂକଳନ ପରେ ପରେ ବାମଣ୍ଡା ହିତୈଷିଣୀ ପ୍ରେସରୁ ୧୯୧୩ରେ ବୃନ୍ଦାବନ ନାଥ ଶର୍ମାଙ୍କ 'ଚିତ୍ର ପରିଚୟ' କାବ୍ୟ ପୁସ୍ତକ ପ୍ରକାଶିତ । ଏହି ପୁସ୍ତକଟି ଶ୍ରୀଶର୍ମା ଚିତ୍ର କବି ତଥା ସାହିତ୍ୟସେବକ ସଚ୍ଚିଦାନନ୍ଦଙ୍କ ପ୍ରତି କୃତଜ୍ଞତା ପ୍ରଦର୍ଶନ କରି ଉତ୍ସର୍ଗ କରିଛନ୍ତି । ଏହି ପୁସ୍ତକରେ ଦଶଗୋଟି ଚିତ୍ର କବିତା ସ୍ଥାନିତ । ଏଥିରୁ 'ରାଜା ହରିଶ୍ଚନ୍ଦ୍ରଙ୍କ ସର୍ବସ୍ୱ ଦାନ', ବାଲ୍ମୀକିଙ୍କ ରାମାୟଣ ରଚନା, ଯାତ୍ରୀ, ବୁଦ୍ଧଦେବଙ୍କ ସଂସାର ତ୍ୟାଗ ଯଥାକ୍ରମେ ଉତ୍କଳ ସାହିତ୍ୟ ୧୫/୫, ୧୫/୧୨, ୧୫/୧୦ ଓ ୧୫/୨ ସଂଖ୍ୟାରେ ପ୍ରକାଶିତ । ଜଗାଇ ମାଧାଇ, ବିନ୍ଦିନୀ ସୀତା, ଉମାର ଶିବ ପୂଜା, ମହାଦେବଙ୍କ ତାଣ୍ଡବ ନୃତ୍ୟ ଯଥାକ୍ରମେ ସମ୍ବଲପୁର ହିତୈଷିଣୀ, ୨୯-୧-୧୯୧୦, ୧୭-୯-୧୯୧୦, ୨୪-୯-୧୯୧୦ ଓ ୨୨-୨-୧୯୧୩ ସଂଖ୍ୟାରେ ପ୍ରକାଶିତ । ମହାମୁନି କପିଳ ଓ କୌଣସି ଆଲେଖ୍ୟ ଦର୍ଶନେ କୌଣସି ପତ୍ରିକାରେ ପ୍ରକାଶ ପାଇ ନ ଥିବାର 'ଭୂମିକା'ରୁ ସ୍ପଷ୍ଟ ହୁଏ । (ଭୂମିକା : ବୃନ୍ଦାବନ ନାଥ ଶର୍ମା: ଚିତ୍ର ପରିଚୟ: ବାମଣ୍ଡା- ୧୯୧୩)

ସଚ୍ଚିଦାନନ୍ଦଙ୍କ 'ଚିତ୍ର' କବିତାଗ୍ରନ୍ଥର ସମସ୍ତ କବିତା ରବି ବର୍ମାଙ୍କ ଚିତ୍ରମାଳା ଅବଲମ୍ବନରେ ରଚିତ । ବୃନ୍ଦାବନ ନାଥ ଶର୍ମାଙ୍କ କବିତା ସମୂହ ବିଭିନ୍ନ ଚିତ୍ରକରଙ୍କ ଚିତ୍ରର ଅବଲମ୍ବନରେ ରଚିତ। ସଚ୍ଚିଦାନନ୍ଦ ଅମିତ୍ରାକ୍ଷର ଛନ୍ଦରେ କବିତା ରଚନା କଲାବେଳେ ବୃନ୍ଦାବନ ମିତ୍ରାକ୍ଷର ଛନ୍ଦକୁ ଗ୍ରହଣ କରିଛନ୍ତି ।

'ରାଜା ହରିଶ୍ଚନ୍ଦ୍ରଙ୍କ ସର୍ବସ୍ୱ ଦାନ' କବିତାଟି ଚିତ୍ରକର ରାଜା ରବି ବର୍ମାଙ୍କ ପୁତ୍ର ରାମ ବର୍ମାଙ୍କ ଅଙ୍କିତ ଚିତ୍ର ଦର୍ଶନେ ରଚିତ ।

ଜନପୂର୍ଣ୍ଣ ରାଜପଥେ ବିଷର୍ଣ୍ଣ ହୃଦୟେ
ଏକ ଧ୍ୟାନେ; ଏକମନେ କି ଭାବୁଛ ରାୟେ !
ନାଗରିକ ତବ ଦୁଃଖ ଦର୍ଶନେ ବିସ୍ମିତ
କିନ୍ତୁ ଦେବ, ତବହୃଦ ଶାଶ୍ୱତେ ମଣ୍ଡିତ ।



Digitized by srujanika@gmail.com

ଅନନ୍ତ ବିଶ୍ୱ ସ୍ରଷ୍ଟାଙ୍କ ଅସୀମ ଗରିମା
ବିସ୍ତାରିଛି ଜଳେ ସ୍ଥଳେ ନାହିଁ ତାର ସୀମା ।''
(ରାଜା ହରିଶ୍ଚନ୍ଦ୍ରଙ୍କ ସର୍ବସ୍ୱ ଦାନ: ଚିତ୍ର ପରିଚୟ ପୃ-୧)

'ବାଲ୍ମୀକିଙ୍କ ରାମାୟଣ ରଚନା' ବଙ୍ଗୀୟ ଶିଳ୍ପୀ ଉପେନ୍ଦ୍ର କିଶୋର ରାୟ ଚୌଧୁରୀଙ୍କ ଅଙ୍କିତ ପ୍ରତିଲିପି ଦର୍ଶନରେ ପ୍ରସ୍ତୁତ । ଏଥିରେ ପ୍ରତିଲିପି ଦର୍ଶିତ ଚିତ୍ରର ବର୍ଣ୍ଣନା ସହିତ ରାମାୟଣର ସୂକ୍ଷ୍ମ ଅବତାରଣା କରାଯାଇଛି । 'ଜଗାଇ ମାଧାଇ' ବଙ୍ଗୀୟ ଶିଳ୍ପୀ ନନ୍ଦଲାଲ ବସୁଙ୍କର ଅଙ୍କିତ ଚିତ୍ରପଟର ପ୍ରତିଲିପି ଦର୍ଶନରେ ରଚିତ । ଚୈତନ୍ୟଙ୍କ ପ୍ରଭାବରେ ଏମାନଙ୍କ ଚରିତ୍ର ସଂଶୋଧନ ହିଁ କବିତାର ମୁଖ୍ୟ ବିଷୟ । 'ଯାତ୍ରୀ' କବିତାଟି ବଙ୍ଗୀୟ ଶିଳ୍ପୀ ଶ୍ରୀଯୁକ୍ତ ଯାମିନୀ ପ୍ରକାଶ ଗଙ୍ଗୋପାଧ୍ୟାୟଙ୍କ ଅଙ୍କିତ ଚିତ୍ରପଟର ଅନୁକରଣରେ ଲିଖିତ । ଚିତ୍ରକରଙ୍କ ଅପ୍ରକଟ ଭାବକୁ କବି ବିସ୍ତାରିତ କରିଛନ୍ତି । ଅନନ୍ତ ପଥର ଯାତ୍ରା ପାଇଁ ଯାତ୍ରୀଙ୍କୁ ପ୍ରସ୍ତୁତ ହେବାକୁ କବି ନିର୍ଦ୍ଦେଶ ଦେଇଛନ୍ତି । ଦାର୍ଶନିକ ଚିନ୍ତାଧାରାର ଅନନ୍ୟ ପ୍ରକାଶ ଘଟିଛି କବିତାରେ -

'' ହେ ଯାତ୍ରୀ ଯୁଗଳ ! ତୁମ୍ଭେ କେଉଁ ଆଶା ଧରି
ହେଉ ଅଛ ଅଗ୍ରସର ସଂସାର ବିସ୍ମରି,
ଅନନ୍ତ ଅକ୍ଷୟ ପଥେ ପଥିକ ରୂପରେ
ଗମୁଛ ନିଶ୍ଚଳେ ଯାତ୍ରୀ, ନିଶ୍ଚଳ ମନରେ,''(ଯାତ୍ରୀ-ଚିତ୍ର ପରିଚୟ - ପୃ.୫)

'ବନ୍ଦିନୀ ସୀତା' ବଙ୍ଗୀୟ ଶିଳ୍ପୀ ଉପେନ୍ଦ୍ର କିଶୋର ରାୟ ଚୌଧୁରୀଙ୍କ ଅଙ୍କିତ ଚିତ୍ରର ଭାଷାରୂପ । ଏହି କବିତାରେ ବୃନ୍ଦାବନ ନାଥ ଶର୍ମାଙ୍କ ପୃଷ୍ଠଭୂମି ବର୍ଣ୍ଣନାର ଚାତୁର୍ଯ୍ୟ ପରିଲକ୍ଷିତ ହୁଏ । ଅସୁରୁଣୀମାନଙ୍କର ଭୟଙ୍କରତା ସହିତ ପ୍ରକୃତିର ସ୍ନିଗ୍ଧତା ଶବ୍ଦକଳାରେ ଅପରୂପ ଐଶ୍ୱର୍ଯ୍ୟ ଲାଭ କରିଛି । ସୀତାଙ୍କ ମାନସିକ ଅବସ୍ଥାର ଚିତ୍ରଣରେ କବି ଲେଖନୀ ସଫଳ ହୋଇଛି । ଚିତ୍ରକର ରେଖା ମାଧମରେ ଯେଉଁ ଚିନ୍ତାର ପ୍ରକାଶ କରିଛନ୍ତି ଶବ୍ଦରୂପରେ ତାହା ବାସ୍ତବତା ପାଇଛି ।

'ଉମାର ଶିବ ପୂଜା' ପ୍ରାଚୀନ ଭାରତୀୟ ଶିଳ୍ପୀଙ୍କ ଅଙ୍କିତ ଚିତ୍ର ପ୍ରଦର୍ଶନରେ ରଚିତ । ଏଠାରେ ଭକ୍ତିର ଅମଳିନ ନିର୍ଯ୍ୟାସ ପ୍ରତିଫଳିତ ।

''ତୁମ୍ଭର ଭକ୍ତି ଦର୍ଶନେ ହୋଇ ବିମୋହିତ
ବିଗଳିତ ଧାରେ ଗଙ୍ଗା ମସ୍ତକେ ପତିତ
ସମଗ୍ର ବିଶ୍ୱ ପ୍ରକୃତି ସଚଞ୍ଚଳ ରୂପେ
ଆରାଧନ୍ତି ଶାନ୍ତ ମନେ ତବ ହୃଦ ରୂପେ ?
ସମସ୍ତଙ୍କ ଭକ୍ତି ଜ୍ୟୋତି ହୋଇ ସମ୍ମିଳିତ



Digitized by srujanika@gmail.com

ତୁମ୍ଭର ହୃଦସରୋଜ ହୁଏ ପ୍ରସ୍ଫୁଟିତ ।''(ଉମାର ଶିବପୂଜା : ଚିତ୍ର ପରିଚୟ- ପୃ.୯)

'ମହାମୁନି କପିଳ' କବିତା ଭିନ୍‌ସେଣ୍ଟସ୍ମିଥଙ୍କ' "The Fine Art in India and Ceylon" ନାମକ ପୁସ୍ତକର ପ୍ରଦତ୍ତ ପ୍ରତିଲିପି ଆଧାରରେ ରଚିତ । ଏହି କବିତାରେ ସାଂଖ୍ୟ ଦର୍ଶନର ପ୍ରଣେତା ମହର୍ଷି କପିଳଙ୍କ ଗୁଣ ବର୍ଣ୍ଣିତ । ଜ୍ଞାନର ଶକ୍ତି ପାଖରେ ଶାରୀରିକ ଶକ୍ତି କିପରି ବିଫଳ ଓ ନ୍ୟୁନ ତାହାହିଁ ସାଗର ସନ୍ତାନଙ୍କ ଭସ୍ମୀଭୂତ ଆଖ୍ୟାନ ସୂଚାଏ । ଏହି ପୌରାଣିକ ଆଖ୍ୟାନ ସହିତ ଜ୍ଞାନର ଦିଗନ୍ତକୁ ଋଦ୍ଧିମନ୍ତ କରିଥିବା କପିଳ ମହର୍ଷିଙ୍କ ଶାଶ୍ୱତ ଚିନ୍ତାଧାରାର ପ୍ରତିଫଳନ ଏହି କବିତା । 'ମହାଦେବଙ୍କ ତାଣ୍ଡବ ନୃତ୍ୟ'ଚ଼ାଙ୍ଗଡା ଉପତ୍ୟକାରୁ ସଂଗୃହୀତ ଚିତ୍ରର ପ୍ରତିଲିପି ଉପରେ ଆଧାରିତ ।ଏହା ଏକ ଦୀର୍ଘ କବିତା । ଶିବଙ୍କର ଅମୃତମୟ ତାଣ୍ଡବ ନୃତ୍ୟରେ ସମଗ୍ର ବିଶ୍ୱ ମଙ୍ଗଳମୟ ହୋଇଉଠିଛି । ନୃତ୍ୟର ଶାଶ୍ୱତ ଆଭାକୁ କବି ଶବ୍ଦ ମାଧ୍ୟମରେ ପରିବ୍ୟାପ୍ତ କରିଛନ୍ତି । 'ବୁଦ୍ଧଦେବଙ୍କ ସଂସାର ତ୍ୟାଗ' ଯୋଶିଓ କାତ୍‌ସୁତା ନାମା ଜାପାନୀ ଚିତ୍ରକରଙ୍କ ଅଙ୍କିତ ଚିତ୍ରର ପ୍ରତିଲିପି ଦର୍ଶନରେ ରଚିତ । 'ଅନିତ୍ୟ ସଂସାର'ର ବନ୍ଧନ ପରିତ୍ୟାଗ କରି ପରମ ସତ୍ୟର ସଂଧାନରେ ବୁଦ୍ଧଦେବଙ୍କ ସଂସାର ତ୍ୟାଗର ଏହି ଚିତ୍ରର ବିଷୟବସ୍ତୁ । 'କୌଣସି ଆଲେଖ୍ୟ ଦର୍ଶନେ' ବିଖ୍ୟାତ ମହାରାଷ୍ଟ୍ର ଚିତ୍ରକର ମହାଦେବ ବିଶ୍ୱନାଥ ଧୁରନ୍ଧରଙ୍କ ଅଙ୍କିତ ଚିତ୍ରର ପ୍ରତିଲିପିକୁ ଅବଲମ୍ବନ କରି ପ୍ରସ୍ତୁତ । ଏହି କବିତାରେ ବାଳକ ଭରତଙ୍କ ସିଂହ ସମ୍ମୁଖରେ ଦଣ୍ଡାୟମାନ ହେବାର ଶୌର୍ଯ୍ୟ କାହାଣୀ ଅଭିବ୍ୟଂଜିତ । ଅପରୂପ ପ୍ରକୃତି ସହିତ ବାଳକର ପଟ୍ଟାନ୍ତରହୀନ ବୀରତ୍ୱର କାହାଣୀ କବିତାର ମୁଖ୍ୟ ଉପଜୀବ୍ୟ ।

ବୃନ୍ଦାବନ ନାଥଶର୍ମା ଓଡ଼ିଆ ସାହିତ୍ୟରେ ଜଣେ ବହୁପ୍ରସୂ ପ୍ରାବନ୍ଧିକ ଓ ସମାଲୋଚକ ଭାବେ ସ୍ୱୀକୃତ । ତାଙ୍କର ଅନେକ କବିତା ସମକାଳୀନ ପତ୍ରପତ୍ରିକାରେ ପ୍ରକାଶିତ । ଚିତ୍ରକୁ ନେଇ କବିତା ରଚନାର ଏହି ପରମ୍ପରାକୁ ସମୃଦ୍ଧ କରିବାରେ ତାଙ୍କର ' ଚିତ୍ର ପରିଚୟ' ଏକ ଅନନ୍ୟ ଯୋଗଦାନ ।

**-ଗ-**

ବାମଣ୍ଡାର ସାରସ୍ୱତ ସାମ୍ରାଜ୍ୟରେ ଚିତ୍ରକୁ ନେଇ ଅନେକ କବିତା ରଚିତ ହୋଇଥିଲା । ସଚ୍ଚିଦାନନ୍ଦଙ୍କ 'ଚିତ୍ର' ଓ ବୃନ୍ଦାବନଙ୍କ 'ଚିତ୍ର ପରିଚୟ' ବ୍ୟତୀତ ଅନ୍ୟ କୌଣସି କବିଙ୍କର ଚିତ୍ର କବିତା ସଂକଳନ ଉପଲବ୍‌ଧ ହୋଇନାହିଁ । କିନ୍ତୁ ବିଭିନ୍ନ କବିଙ୍କ ଚିତ୍ର କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିବାର ଜଣାପଡେ । ସେ ମଧ୍ୟରୁ ନିର୍ବାଚିତ କିଛି ' ଚିତ୍ର କବିତା'ର ସମ୍ୟକ୍ ପରିଚୟ ଏହି ପ୍ରସଙ୍ଗରେ ଉପସ୍ଥାପିତ ।

ବଳଭଦ୍ର ଦେବ (୧୮୭୮-୧୯୩୭) ଓଡ଼ିଆ ସାହିତ୍ୟରେ ଜଣେ କୃତବିଦ୍ୟ କବି ରୂପେ ସ୍ୱୀକୃତ । ତାଙ୍କର ଅନେକ କାବ୍ୟକବିତା ପ୍ରକାଶିତ । ''ସୁନାମୁଣ୍ଡା'' 'ବାଲ୍ୟସ୍ମୃତି',



Digitized by srujanika@gmail.com

'ଭ୍ରାନ୍ତି ହିଲ୍ଲୋଳ', 'ପାର୍ବତୀ ଉତ୍ତରାର୍ଦ୍ଧ', 'ଶିବରାତ୍ରି', 'ଚଞ୍ଚରିକା' ପ୍ରଭୃତି କାବ୍ୟ ଏବଂ 'ଋତୁସଂହାର', 'କାଦମ୍ବରୀ', 'ରଘୁବଂଶ'ର ଅନୁବାଦ ତାଙ୍କୁ ଜଣେ ଏକନିଷ୍ଠ କବିର ସମ୍ମାନ ପ୍ରଦାନ କରେ । ବଳଭଦ୍ରଙ୍କ ' କୌଣସି ଆଲେଖ୍ୟ ପ୍ରତି' କବିତାଟି ସମ୍ବଲପୁର ହିତୈଷିଣୀ ତା. ୧୭।୧୨।୧୯୧୦ରେ ପ୍ରକାଶ ପାଇଥିଲା । ଏହି କବିତାଟି ରବି ବର୍ମାଙ୍କ 'ଶକୁନ୍ତଳାଙ୍କ ପ୍ରତି ଦୁର୍ବାସାଙ୍କ ଅଭିଶାପ' ଚିତ୍ର ଅବଲମ୍ବନରେ ରଚିତ ।

'କେ ଗୋ! ତୁମ୍ଭେ ପୁଣ୍ୟମୟି ! ବଳ୍କଳ ବସନା !
ବସିଅଛ ଶିଳାସନେ ଗଣ୍ଡେ କର ଥୋଇ ?
ମହାଧ୍ୟାନେ, ସୁକୁଞ୍ଚିତ କେଶପାଶ ଫିଟି
ରାଜଇ ଚରମେ, ଯଥା ସୌଦାମିନୀ ପୃଷ୍ଠେ
ପୟୋଧର, ପଲକ ତ ଗଲାଣି ପାଶୋରି
ଆୟତ ଚଞ୍ଚଳ ଚାରୁ ବିଲୋଚନ ବେନି
କେଉଁ ଧ୍ୟାନେ, x xx
x x xx
ଏ ରୂପେ ତନ୍ମୟ ହୋଇ ପାଶୋରି ନିଜକୁ
ରହିଅଛ କାହା ଧ୍ୟାନେ ? କି ଲାଗି ରୂପସୀ ?

(କୌଣସି ଆଲେଖ୍ୟ ପ୍ରତି : ସମ୍ବଲପୁର ହିତୈଷିଣୀ - ୨୨/୬, ୧୭-୧୦-୧୯୧୦)

ବଳଭଦ୍ର ଦେବଙ୍କ ପ୍ରଶ୍ନମୂଳକ ବ୍ୟଞ୍ଜନାକୁ ସ୍ପଷ୍ଟ କରିବାକୁ ଯାଇ ' ଆଲେଖ୍ୟର ପରିଚୟ' ଶୀର୍ଷକ କବିତା ସଚ୍ଚିଦାନନ୍ଦ ସମ୍ବଲପୁର ହିତୈଷିଣୀରେ ପ୍ରକାଶ କରିଛନ୍ତି ।

'' ଭାଇ !
ଚିହ୍ନୁ ନାହଁ ? ଏହି ସେହି ବଳ୍କଳ ବସନା
ଲଳନା ଲଲାମ ଦେବୀ ପୌରବ- ମୋହିନୀ
ମେନକା-ଗର୍ଭ-ସମ୍ଭୂତା ଶକୁନ୍ତ-ଲାଳିତ ।
ବୈଶ୍ୱାମିତ୍ରୀ ଶକୁନ୍ତଳା, ଜନ୍ମିଲେ ଯା କ୍ରୋଡ଼େ
ଅରାତି ଦମନ 'ସର୍ବଦମନ' କୁମାର
ଅଦିତି - ଆଶ୍ରମେ, ଲଭି ଦିବ୍ୟ ତେଜଃ ପୁଞ୍ଜ
ଭାରତ-ପ୍ରଥିତ ଯଶା ଦୁଷ୍ମନ୍ତ ପାଶରୁ ।''

(ଆଲେଖ୍ୟର ପରିଚୟ: ସମ୍ବଲପୁର ହିତୈଷିଣୀ-/ ୨୨/୧୦ ତା ୨୪-୧୨-୧୯୧୦)



Digitized by srujanika@gmail.com

ବଳଭଦ୍ର ଦେବଙ୍କ ' ଆଲେଖ୍ୟର ପରିଚୟ' କବିତାଟି ବଳଭଦ୍ର ଗ୍ରନ୍ଥାବଳୀ (୧୯୩୨)ରେ ସ୍ଥାନିତ ହେଲାବେଳେ ଆମୂଳଚୂଳ ସଂଶୋଧିତ ଓ ପରିବର୍ଦ୍ଧିତ ହୋଇଥିବାର ଜଣାପଡେ । ବଳଭଦ୍ରଙ୍କ ଉଦ୍ଧୃତ ପ୍ରଥମ କେଇ ଧାଡି ଗ୍ରନ୍ଥାବଳୀରେ ନିମ୍ନରୂପ ଧାରଣ କରିଛି ।

କେ ଗୋ ତୁମ୍ଭେ ପୁଣ୍ୟମୟୀ ବଲ୍କଳ ବସନା ?
ବହଳ ପଲ୍ଲବଯୁକ୍ତ ତରୁଛାୟା ତଳେ
ବସିଅଛ ଶିଳାପରେ, ଗଣ୍ଡେ କର ଥୋଇ
ଅଶୋକ ବନରେ ଯଥା ବୈଦେହୀ ରୂପସୀ
ତରଙ୍ଗ କୁଞ୍ଚିତ କେଶ ପୃଷ୍ଠ ଅତିକ୍ରମି
ପଡିଛି ଉପଳ ପରେ ଅସମ୍ଭାଳେ ଫିଟି;
ସୌଦାମିନୀ ପୃଷ୍ଠଦେଶେ ନବଘନ ଯଥା ।
(ଚିତ୍ର ପ୍ରତି : ବଳଭଦ୍ର ଗ୍ରନ୍ଥାବଳୀ (୧୯୩୨) ପୃ.୭୮୩)

ସମ୍ବଲପୁର ହିତୈଷିଣୀରେ ପ୍ରକାଶିତ 'କୌଣସି ଆଲେଖ୍ୟ ପ୍ରତି' ରେ ୪୮ ଧାଡି ଥିଲାବେଳେ ଗ୍ରନ୍ଥାବଳୀରେ ହୋଇଛି ୬୮ ଧାଡି । ପୁନଶ୍ଚ ଏହାର ଶୀର୍ଷକକୁ ବଦଳାଇ କବି ରଖିଛନ୍ତି 'ଚିତ୍ର ପ୍ରତି' । ମଜ୍ଜାର କଥା ହେଲା ରବି ବର୍ମାଙ୍କ 'ଶକୁନ୍ତଳାଙ୍କ ଇନ୍ଦ୍ରଚିତ୍ର' ଅବଲମ୍ବନରେ ବଳଭଦ୍ରଦେବ ଅନ୍ୟ ଏକ କବିତା ରଚନା କରିଛନ୍ତି ଯାହାର ଶୀର୍ଷକ ଦେଇଛନ୍ତି 'କୌଣସି ଆଲେଖ୍ୟ ପ୍ରତି' । ବଳଭଦ୍ର ଦେବ ଜଣେ ସର୍ଜନଶୀଳ କବି । ତାଙ୍କର କାବ୍ୟକୃତିରେ ଅନେକ ମଣ୍ଡନ ଓ ଖଣ୍ଡନର ଦୃଷ୍ଟାନ୍ତ ସୁଲଭ । ପ୍ରତିଟି କବିତାକୁ ସେ ବାରମ୍ବାର ଅଦଳ ବଦଳ କରି ଯୁଗୋପଯୋଗୀ କରି ଗଢ଼ିଛନ୍ତି । ଗ୍ରନ୍ଥାବଳୀରେ ପ୍ରକାଶିତ ଏହି ' କୌଣସି ଆଲେଖ୍ୟ ପ୍ରତି' କବିତାର ପ୍ରାରମ୍ଭ ପୂର୍ବ କବିତା ପରି ପ୍ରଶ୍ନସୂଚକ ।

'' କିଏ ? ଏହି ଚାରୁନେତ୍ରୀ ? କର କମଳରେ
କିଶଳୟ ମୃଦୁକାନ୍ତି ଶିଶୁଟିଏ ଧରି
ବଢ଼ାଇ ଦେଉଛି ଆଗେ, ରକ୍ତ ଶତଦଳେ
ଥୁଆ ହୋଇଅଛି କିରେ କେତକୀ ପାଖୁଡା ।''
(କୌଣସି ଆଲେଖ୍ୟ ପ୍ରତି : ବଳଭଦ୍ର ଗ୍ରନ୍ଥାବଳୀ- ପୃ.୭୮୧)

ଲିଙ୍ଗରାଜ ପାଣିଗ୍ରାହୀ (୧୮୯୪-୧୯୫୭) ବାମଣ୍ଡାର ଜଣେ କୃତବିଦ୍ୟ ସାଧକ । ତାଙ୍କର ସମଗ୍ର ଜୀବନକାଳ ସର୍ଜନାତ୍ମକ ସାହିତ୍ୟ ସୃଷ୍ଟି ପାଇଁ ଥିଲା ଉତ୍ସର୍ଗୀକୃତ । ସମକାଳୀନ ଅନେକ ପତ୍ରପତ୍ରିକାରେ ତାଙ୍କର କାବ୍ୟ କବିତା ପ୍ରକାଶିତ । ତାଙ୍କର ପୁଷ୍ପାଞ୍ଜଳି, କଳିକାଞ୍ଜଳି,



Digitized by srujanika@gmail.com

ନଡିଆ ପଇତା, ବିଛୁଆତି ପତ୍ର, ଅମୃତେବିଷ ପ୍ରଭୃତି କାବ୍ୟକବିତା ଅଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ତାଙ୍କର ଅନେକ 'ଚିତ୍ର କବିତା' ଦୃଷ୍ଟି ପଥାରୂଢ଼ ହୁଏ ।

'ସାଗର ଦର୍ପଦଳନ' ବିଖ୍ୟାତ ଚିତ୍ରକର ରବିବର୍ମାଙ୍କର ଅଙ୍କିତ ଚିତ୍ର ଦର୍ଶନ କରି ରଚିତ । ଏଥିରେ ରାମଚନ୍ଦ୍ରଙ୍କ ସାଗର ଦର୍ପଦଳନ ଆଖ୍ୟାୟିକା ବର୍ଣ୍ଣିତ । ସାବଲୀଳ ଶବ୍ଦସଜ୍ଜା ମଧ୍ୟରେ ଲିଙ୍ଗରାଜଙ୍କ ବର୍ଣ୍ଣନା ଆକର୍ଷଣୀୟ ହୋଇଛି-

'' ଅଯୋଧ୍ୟା- ଗଗନ- ବିଧୁ ହେ ବୀରେନ୍ଦ୍ର ମଣି
ଅକୂଳ ଅନନ୍ତ ଏହି ପୟୋଧି ପୂଳିନେ
କିମ୍ବା ଏ ପ୍ରଚଣ୍ଡାନଳ ମୂର୍ତ୍ତି ତବ ଆଜି ?
ଆରକ୍ତ, ଭ୍ରୂକୁଟିପୂର୍ଣ୍ଣ ନେତ୍ରେ ସ୍ଫୀତ ବକ୍ଷେ
କିମ୍ବା ଉଭା ହୋଇଅଛ ମିତ୍ର ବଂଶଧ୍ୱଜ ।''

(ସାଗର ଦର୍ପଦଳନ : ପୁଷ୍ପାଞ୍ଜଳି- ହିତୈଷିଣୀ ପ୍ରେସ, ବାମଣ୍ଡା-୧୯୧୩- ପୃ. ୧୨-୧୩)

ଲିଙ୍ଗରାଜ ପାଣିଗ୍ରାହୀଙ୍କ 'ଉତ୍କଳ ଜନନୀ' କବିତାଟି ନଡିଆ ପଇତା (୧୯୧୯)ସଂକଳନରେ ସ୍ଥାନିତ । ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କ ଅଙ୍କିତ ଏବଂ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ଚିତ୍ର ଦେଖିଲା ପରେ ଏହି କବିତା ରଚିତ । କବିତାଟିରେ ଜାତୀୟତାବୋଧକ ଚେତନାର ଉଦ୍‌ଗୀରଣ ଦେଖାଯାଏ । ସମସ୍ତ ଉତ୍କଳୀୟ ଭ୍ରାତାଙ୍କୁ ଏକମନ ଏକପ୍ରାଣ ହୋଇ ବିଷର୍ଣ୍ଣା ଉତ୍କଳ ମାତାଙ୍କ ସେବା କରିବାକୁ ଆହ୍ୱାନ ଦିଆଯାଇଛି ।

'ଚିତ୍ର କବିତା'ର ଦୁଇଟି ଦୃଷ୍ଟାନ୍ତ କବିଙ୍କ 'କଳିକାଞ୍ଜଳି' (ବାମଣ୍ଡା-୧୯୧୯) ସଂକଳନରେ ସହଜ ଲଭ୍ୟ । ଉତ୍କଳ ସାହିତ୍ୟ -୨୧/୧ ସଂଖ୍ୟାରେ ପ୍ରକାଶିତ ଏକ ଚିତ୍ରକୁ ଆଧାର କରି 'ଶ୍ମଶାନରେ କବିବର ରାଧାନାଥ' କବିତା ରଚିତ । ଏହି କବିତାଟି ଏକ ଶୋକ କବିତା ଯେଉଁଠି ଜୀବନର ଅସାରତା ତଥା ରାଧାନାଥ ଜୀବନୀର ସାରବତ୍ତାର ଉପାଦେୟତାକୁ ସ୍ମରଣ କରାଯାଇଛି । ଏହି ଦୀର୍ଘ କବିତାଟି ରାଧାନାଥଙ୍କ ସ୍ମୃତିରେ ରଚିତ ଅନ୍ୟତମ ଶ୍ରେଷ୍ଠ କବିତା । ସେହି ସଂକଳନସ୍ଥ ' ଚୋର ରତ୍ନାକର' କବିତାଟି କୌଣସି ଆଲେଖ୍ୟ ଦର୍ଶନ ପରେ ରଚିତ । ଏଥିରେ ବାଲ୍ମୀକି ଉପାଖ୍ୟାନ ବର୍ଣ୍ଣିତ । ଏହି କବିତାଟି ସମ୍ବଲପୁର ହିତୈଷିଣୀ ତା. ୩-୬-୧୯୧୬ ସଂଖ୍ୟାରେ ପ୍ରକାଶିତ ହୋଇ ପାଠକୀୟ ସମ୍ବେଦନା ଆକର୍ଷଣରେ ସଫଳ ହୋଇଥିଲା ।

ଲିଙ୍ଗରାଜଙ୍କ ବିଛୁଆତି ପତ୍ର ( ୧୯୨୨) ସଂକଳନରେ ସ୍ଥାନିତ 'ଅର୍ଜୁନ ଓ ଉର୍ବଶୀ' କବିତାଟି ବଙ୍ଗୀୟ ପତ୍ରିକା 'ଭାରତବର୍ଷ'ରେ ପ୍ରକାଶିତ ଏକ ଚିତ୍ରକୁ ଦେଖିଲା ପରେ



Digitized by srujanika@gmail.com

ରଚିତ । କବିତାଟି ପ୍ରଥମେ ସଂବଲପୁର ହିତୈଷିଣୀ ତା.୧୫।୧୧।୧୯୧୯ ସଂଖ୍ୟାରେ ପ୍ରକାଶ ପାଇଥିଲା । କବିତାରେ ଅର୍ଜୁନଙ୍କ ବୀରତ୍ୱ ବ୍ୟଞ୍ଜକ ପ୍ରତିମୂର୍ତ୍ତି ସହିତ ସୌନ୍ଦର୍ଯ୍ୟମୟୀ ନାୟିକା ଉର୍ବଶୀର ବର୍ଣ୍ଣନା ଅତିସୁନ୍ଦର ହୋଇଛି ।

" କିଏ ଏ ପୁରୁଷ ସିଂହ ସୌମ୍ୟ ବୀରମୂର୍ତ୍ତି
ବୀର୍ଯ୍ୟଦୀପ୍ତ, ବୀରତ୍ୱର ମହା ରଙ୍ଗମଞ୍ଚ ?
ସୁଗଠନ ତନୁ ଯେହ୍ନେ ବିଶ୍ୱଜୟୀ କାମ,
ବିଶାଳ ଲଲାଟ ପଟେ ହୁଅଇ ବିମ୍ବିତ
ବିଶ୍ୱବ୍ୟାପ୍ତି ପ୍ରତିଭାର ମଧୁମୟ ଛବି ;
କପାଟ ବିସ୍ତୃତ ବକ୍ଷ, ଶୌର୍ଯ୍ୟ ସିଂହାସନ;(ଅର୍ଜୁନ ଓ ଉର୍ବଶୀ: ବିଛୁଆତି ପୃ.୨୮)

ଲିଙ୍ଗରାଜଙ୍କ 'ମୃତ ପତି ପାର୍ଶ୍ୱବର୍ତ୍ତିନୀ ଉତ୍ତରା' କବିତାଟି ମଧ ଆଲେଖ୍ୟ ଦର୍ଶନର ଅନୁଭବ ଉପରେ ପର୍ଯ୍ୟବସିତ । ଏହି କବିତା ସମ୍ବଲପୁର ହିତୈଷିଣୀର ତା. ୨୦-୧୧-୧୯୧୨ ସଂଖ୍ୟାରେ ପ୍ରକାଶିତ ।

ହରିହର ମହାପାତ୍ର (୧୮୮୫-୧୯୬୧) ବାମଣ୍ଡାର ଅନ୍ୟତମ ବିଶିଷ୍ଟ କବି । ସେ ଉତ୍କଳୀୟ ବାଙ୍ମୟରେ ବାଣୀ ଆରାଧନା ପାଇଁ ପ୍ରତିଷ୍ଠିତ । ଉଚ୍ଚାଙ୍ଗ ଅନୁଭୂତିକୁ ଧରି ରଖିବାରେ ତାଙ୍କର କାବ୍ୟ ସମୂହ ସଫଳ । ବିବିଧ ସଂଗୀତ (୧୯୦୭), ହେମ କମଳିନୀ (୧୯୧୧), କୁମାର କଣ୍ଠାଭରଣ (୧୯୧୨), ବିସ୍ମୃତିର ପରିଣାମ (୧୯୧୨), କଲ୍ୟାଣ କୁସୁମ (୧୯୧୩), ପ୍ରତିଭାମୁକୁର (୧୯୧୯) ନୈବେଦ୍ୟ, ଶାନ୍ତି ଭିକ୍ଷା (୧୯୩୩), ବିବ୍ରତା ଭାରତୀ (୧୯୩୩), ଖଣ୍ଡାଧାର, ଭରତ ( ଅପ୍ରକାଶିତ କାବ୍ୟ) ପ୍ରଭୃତି କାବ୍ୟ କବିତା ହରିହରଙ୍କ ଅନବଦ୍ୟ ସୃଷ୍ଟି । ହରିହରଙ୍କ 'ଶାନ୍ତି ଭିକ୍ଷା' ସଂକଳନରେ 'ଭବିତବ୍ୟର ବିଚିତ୍ରତା' କବିତା ସ୍ଥାନିତ । ଏହା ରବିବର୍ମାଙ୍କ ଅଜ ବିଳାପ ଚିତ୍ର ଅବଲମ୍ବନରେ ଲିଖିତ । କବିତାଟି ସମ୍ବଲପୁର ହିତୈଷିଣୀ ତା.୩.୧୨.୧୯୧୦ରେ 'ରବିବର୍ମାଙ୍କ ଅଜବିଳାପ ଚିତ୍ର ପ୍ରତି' ଶୀର୍ଷକରେ ପ୍ରଥମେ ପ୍ରକାଶ ପାଇଥିଲା । ଏହି କବିତାରୁ କବିଙ୍କ ବାଣୀ ବ୍ୟଞ୍ଜନା ସୁସ୍ପଷ୍ଟ ।

" ଏ କିହେ ବୀରେନ୍ଦ୍ରମଣି ! ବିଷଣ୍ଣ ବଦନେ
ଅନିମେଷ ଉର୍ଦ୍ଧ୍ୱନେତ୍ରେ ପ୍ରସାରି ହୃଦୟେ
ଅନନ୍ତ ବୈଚିତ୍ର୍ୟମୟ ଅନନ୍ତ ଗଗନେ
ଅସ୍ମିତା ବରଜି କିବା କରୁଅଛ ଲୟ ?
ଦକ୍ଷ ପ୍ରବେଶିନୀ ପ୍ରାନ୍ତେ ବିଶ୍ୱ ନଶ୍ୱରତା
ସର୍ବେ୍ୟ ହଳାହଳମୟ ଭାଗ୍ୟ ପରିଣାମ,



Digitized by srujanika@gmail.com

ଦେଖାଇ ବରଜି ହୃଦ୍ୟ ବୀରତା ଧୀରତା
ଜଣାଉଛି ଦେବଗଣେ ନିଜ ମନସ୍କାମ ?''
(ଭବିତବ୍ୟର ବିଚିତ୍ରତା: ଶାନ୍ତିଭିକ୍ଷା- ସାରସ୍ୱତ ପ୍ରେସ, କଟକ-୧୯୩୩)

ବାମଣ୍ଡାର ବିଶିଷ୍ଟ ନାରୀ କବି ସୁଲୋଚନା ଦେଈଙ୍କ କାବ୍ୟ ସାମ୍ରାଜ୍ୟରେ ଚିତ୍ରକୁ ନେଇ ଅନେକ କବିତା ରଚିତ ହୋଇଥିବାର ଜଣାପଡେ । ' ଆଲେଖ୍ୟ ପ୍ରତି', 'ବଡୀଶରେ ମୀନ ଦର୍ଶନେ', 'ବସନ୍ତ ପ୍ରଦୋଷେ' ପ୍ରଭୃତି କବିତାଗୁଡିକ ବିଭିନ୍ନ ଚିତ୍ର ଅବଲମ୍ବନରେ ରଚିତ । ବାମଣ୍ଡାର କୃତବିଦ୍ୟ କବି ରତ୍ନାକର ଶର୍ମା ଓ ବ୍ରଜବନ୍ଧୁ ମିଶ୍ରଙ୍କ କିଛି ଚିତ୍ର କବିତା ମଧ୍ଯ ଦୃଷ୍ଟିଗୋଚର ହୁଏ । ସମ୍ବଲପୁର ହିତୈଷିଣୀର ୧୯୦୮ ରୁ ୧୯୧୨ର ବିଭିନ୍ନ ସଂଖ୍ୟାରେ ଅନେକ 'ଚିତ୍ରକବିତା' ପ୍ରକାଶିତ । ହିତୈଷିଣୀ ୧୦-୨-୧୯୧୨ରେ ସୁଖଲତା ରାୟଙ୍କ ଚିତ୍ର ଅବଲମ୍ବନରେ ବଳଭଦ୍ର ଶତପଥୀଙ୍କ 'ସାବିତ୍ରୀ ଚିତ୍ର ଦର୍ଶନେ' କବିତା, ତା. ୯.୧.୧୯୧୨ ସଂଖ୍ୟାରେ ରାଜୀବ ଲୋଚନ ଦେବଙ୍କ 'ଧ୍ୟାନମଗ୍ନ ବ୍ୟାସଦେବ' ଚିତ୍ରକବିତା ପ୍ରକାଶିତ ।

ଆଲୋଚିତ ସମୟ ଖଣ୍ଡରେ ଅନେକ ଚିତ୍ରକବିତା ରଚିତ ଓ ପ୍ରକାଶିତ । କବିତା କ୍ଷେତ୍ରରେ ନୂଆ ଏକ ଧାରା ପ୍ରତିଷ୍ଠାର ଝୁଙ୍କ ହିଁ 'ଚିତ୍ର କବିତା'କୁ ଜନ୍ମଦେଇଛି । ଓଡ଼ିଶାରେ ଚିତ୍ର କବିତାର ଜନ୍ମ ଏବଂ ଏହାର ସାମଗ୍ରିକ ମୂଲ୍ୟାୟନ ଏକ ଦୀର୍ଘ ଆଲୋଚନାର ଅପେକ୍ଷା ରଖେ । ଏଠାରେ କେବଳ ବାମଣ୍ଡା ଖଣ୍ଡରେ ଗଢ଼ି ଉଠିଥିବା ରୁଚିପୂର୍ଣ୍ଣ ଧାରାର ଏକ ସାଧାରଣ ସୂଚନା ଦିଆଗଲା ।

ପୂର୍ବ ଆଲୋଚନାରୁ ସ୍ପଷ୍ଟ ଯେ, ' ଚିତ୍ର କବିତା'ର ଏକ ସମୃଦ୍ଧ ପରଂପରା ବାମଣ୍ଡାରେ ଦେଖାଦେଇଥିଲା । ଚିତ୍ରକୁ ଦେଖି କବିତା ଏବଂ ସେହି କବିତା ଉପରେ ସମନ୍ୱୟ ରଚନାର ଏକ ବୁଦ୍ଧିଜୀବୀ ତଥା ଆବେଗପ୍ରବଣ ପରୀକ୍ଷା ହୋଇଥିଲା ବାମଣ୍ଡାର ଆଲୋଚନା ସଭାରେ । ଏହି ସଭାରେ ସଚ୍ଚିଦାନନ୍ଦ ଦେବ ଘୋଷଣା କରିଥିଲେ, ' ଏହି ଚିତ୍ର କାବ୍ୟ ସମନ୍ୱୟରେ ମୋର ଏହି ସାହିତ୍ୟ ସଭାର ସଭାସଦ୍‌ବୃନ୍ଦଙ୍କ ମଧ୍ୟରୁ ଯଦି କେହି ପଦ୍ୟ ରଚନା କରିବେ ଓ ଉକ୍ତ ପଦ୍ୟ ଯଦି ମୋର ମନୋନୀତ ହେବ; ତେବେ ମୁଁ ତାହାଙ୍କୁ ମୋର ଏହି ସାହିତ୍ୟ ସଭାରୁ ଗୋଟିଏ ସ୍ୱର୍ଣ୍ଣପଦକ ପ୍ରଦାନ କରିବି । (ଅଭିମତ: ଚିତ୍ର ସମନ୍ୱୟ: ବ୍ରଜବନ୍ଧୁ ମିଶ୍ର ବାମଣ୍ଡା -୧୯୧୩)

ଏହି ଘୋଷଣାରେ ଉତ୍ସାହିତ ହୋଇ ବ୍ରଜବନ୍ଧୁ 'ଚିତ୍ର ସମନ୍ୱୟ' ରଚନା କରି ସଚ୍ଚିଦାନନ୍ଦଙ୍କ ଦ୍ୱାରା ପୁରସ୍କୃତ ହୁଅନ୍ତି । 'ଚିତ୍ର ସମନ୍ୱୟ' ରଚନା ଓଡ଼ିଆ ସାହିତ୍ୟରେ ଏକ ଅଭିନବ ଦୃଷ୍ଟାନ୍ତ । ଏହି 'ଚିତ୍ର ସମନ୍ୱୟ' ବାମଣ୍ଡା ହିତୈଷିଣୀ ପ୍ରେସରେ ୧୯୧୩ ରେ ପୁସ୍ତକାକାରେ ପ୍ରକାଶିତ ହୁଏ । ଚିତ୍ରକାବ୍ୟ ରଚନା ଓଡ଼ିଆରେ ବିଧିବଦ୍ଧ ଭାବରେ



Digitized by srujanika@gmail.com

ପ୍ରଥମେ ସଚ୍ଚିଦାନନ୍ଦ ଆରମ୍ଭ କରିଥିଲେ । ଚିତ୍ରକବିତା ସମନ୍ୱୟ ରଚନାରେ ବ୍ରଜବନ୍ଧୁଙ୍କ ଉଦ୍ୟମ ପ୍ରାରମ୍ଭିକ ମନେହୁଏ ।

ବ୍ରଜବନ୍ଧୁ ମିଶ୍ର (୧୮୫୪-୧୯୪୦) ଉନବିଂଶ ଓ ଆଦ୍ୟବିଂଶ ଶତକର ଜଣେ ବହୁପ୍ରସୂ କବି । ସେ ତାଳଚେର ଜନ୍ମିତ ଅଥଚ ବାମଣ୍ଡା ତାଙ୍କର ସାଧନାପୀଠ । ସେ ଉତ୍କଳବନ୍ଧୁ (୧୮୯୬), ସମ୍ବଲପୁର ହିତୈଷିଣୀ (ବିଦ୍ୟାରତ୍ନଙ୍କ ପରେ ୧୯୦୨), ଉତ୍କଳ ସେବକ (୧୯୧୩) ଓ ଗଡଜାତ ବାସିନୀ (କିଛି ସମୟ ପାଇଁ) ପ୍ରଭୃତି ପତ୍ରିକାର ସମ୍ପାଦନା କାର୍ଯ୍ୟ ନିର୍ବାହ କରିଥିଲେ । ବ୍ରଜବନ୍ଧୁ ଅର୍ଦ୍ଧଶତାଧିକ ପୁସ୍ତକର ସ୍ରଷ୍ଟା । ସଦ୍ୟୋଜାତ ସ୍ତବ, ଦୁର୍ଗାସ୍ତବ, ଛାନ୍ଦ ମନାସ, କୀଚକବଧ, ଭୀଷ୍ମ ଶରଶଯ୍ୟା, ଶ୍ରୀକୃଷ୍ଣ ସ୍ତବ, ପଞ୍ଚଧାରା, କୁସୁମଲତା, ବସନ୍ତ କାନନ, ଶିଶିର ପଲ୍ଲୀ, ବୀଣାପାଣି, ଜୀବନ ଦର୍ପଣ, ଉତ୍କଳ ମାତା, ଆଲେଖ୍ୟ ଗୀତି, ଉପଦେଶ ସୁଧାନିଧି, ମଦୁଆର ବିଳାପ, ପ୍ରାର୍ଥନା, କୌତୁକ ଗୀତି, ଅଦ୍‌ଭୁତ ସ୍ୱପ୍ନ, ପ୍ରେମବାଣୀ, ନବ ସଙ୍ଗୀତ, ସଙ୍ଗିନୀ ଚଉତିଶା, ସୁଢ଼ଳ କୋଇଲି, ତାଳଚେର ପ୍ରଶସ୍ତି ପ୍ରଭୃତି ତାଙ୍କର କାବ୍ୟ ପରାକାଷ୍ଠାର ପରିଚୟ ପ୍ରଦାନ କରେ । ତାଙ୍କର ଉପଧା ବିଚାର ଓ ଉପଧା ଅନିଷ୍ଟ ଚିନ୍ତା ଶ୍ରେଷ୍ଠ ଆଲୋଚନା ପୁସ୍ତକ । ଉପଧା ପ୍ରଚଳିତ ଯୁଗରେ ଏହି ଦୁଇଟି ପୁସ୍ତକ ଉପଧା ମିଳନ ବିରୁଦ୍ଧରେ କ୍ରାନ୍ତିକାରୀ ପଦକ୍ଷେପ । 'ବସନ୍ତ ମାଳତୀ' (୧୯୦୨) ତାଙ୍କର ଏକ ଲୋକପ୍ରିୟ ଉପନ୍ୟାସ । ସଚ୍ଚିଦାନନ୍ଦ ଦେବଙ୍କ ମାୟାଶବରୀ ଓ ଭୀଷ୍ମ କାବ୍ୟକୁ ଯାତ୍ରାରୂପ ପ୍ରଦାନ କରି ସେ ଯାତ୍ରା ଆନ୍ଦୋଳନକୁ ବଳିଷ୍ଠ କରିଥିଲେ ।

'ଚିତ୍ର ସମନ୍ୱୟ' ରଚନା ବ୍ରଜବନ୍ଧୁଙ୍କ ଆକସ୍ମିକ ଉଦ୍ୟମର ଫଳ ନୁହେଁ । ବରଂ ପ୍ରଲମ୍ବିତ କାବ୍ୟସାଧାନାର ଧାରାରେ ସେ ଅନେକ ପଥିକୃତ୍ ଉଦ୍ୟମ କରିଛନ୍ତି । 'ଚିତ୍ର ସମନ୍ୱୟ' ରଚନାର ବହୁ ପୂର୍ବରୁ ୧୮୯୭ରେ ସେ ରାଧାନାଥଙ୍କ ଚିଲିକା କାବ୍ୟର ବହୁଚର୍ଚ୍ଚିତ ପଂକ୍ତି- '' ଦେବୀ ବୀଣାପାଣି କେଉଁ ପାପ ଫଳେ କରୁଣା ତୋହର ଊଣା ଏ ଉତ୍କଳେ ।'' ର ଦଶପ୍ରକାର ସମନ୍ୱୟ ରଚନା କରି 'ବୀଣାପାଣି' ପୁସ୍ତକ ପ୍ରକାଶ କରିଥିଲେ । ଉକ୍ତ ପୁସ୍ତକଟି ଉତ୍କଳ ହିତୈଷିଣୀ ପ୍ରେସରେ ୧୮୯୭ରେ ମୁଦ୍ରିତ ହୋଇଥିଲା । ଏହାର ପ୍ରଥମ ସମନ୍ୱୟଟି ପାଠକଙ୍କ ଅବଗତି ପାଇଁ ଉଦ୍ଧୃତ ହେଲା:

'' ପବିତ୍ର ହୃଦୟା ପ୍ରସନ୍ନ ବଦନା
ନିତ୍ୟ ପୂଜନୀୟା ସୁଶୁକ୍ଳ ବସନା
ମାନବ ଜୀବନେ ଉଲ୍ଲାସ ଦାୟିନୀ
'ଚିଦାନନ୍ଦ ମୟି' କୃପାସ୍ୱରୂପିଣୀ
ଅଖିଳ ଅନନ୍ୟ ଜାଗ୍ରତ କାରିଣି
କୁମୁଦ ହାସିନି ମଧୁର ଭାଷିଣି



Digitized by srujanika@gmail.com

ଜ୍ୟୋତ୍ସାମୟୀ, ଜ୍ୟୋତ୍ସ୍ନା ଆସନ ମଣ୍ଡନା
'ବିଧାତାର ବାଣୀ' ତ୍ରିଲୋକ ବନ୍ଦନା
'ଦେବି ବୀଣାପାଣି' କେଉଁ ପାପଫଳେ
କରୁଣା ତୋହର ଉଣା ଏକ ଉତ୍କଳେ ।''(ବୀଣାପାଣି: ବ୍ରଜବନ୍ଧୁ ମିଶ୍ର- ପୃ.୧)

'ଚିତ୍ର' କବିତାରେ ଥିବା ସଚ୍ଚିଦାନନ୍ଦଙ୍କ ପାଞ୍ଚଟି କବିତାର ପ୍ରତିପଦର ପାଞ୍ଚ ପ୍ରକାର ଲେଖାଏଁ ସମନ୍ୱୟ ରଚନା କରିଛନ୍ତି ବ୍ରଜବନ୍ଧୁ । ସମନ୍ୱୟ ରଚନା ଏକ ସାଧାରଣ ପ୍ରକ୍ରିୟା ନୁହେଁ । ଏହା ଅନୁବାଦ କାର୍ଯ୍ୟ କରି ଦୁରୂହ ଓ କଷ୍ଟପ୍ରଦ । ମୂଳ କବିତାର ଭାବ ଓ ଶୈଳୀକୁ ଅକ୍ଷୁର୍ଣ୍ଣ ରଖି ଶବ୍ଦ ସଜ୍ଜାକୁ ଶୃଙ୍ଖଳିତ କରିବା ଏହାର ପ୍ରଥମ ନିୟମ । ଦ୍ୱିତୀୟତଃ ପୃଷ୍ଠଭୂମି ଓ ଆଙ୍ଗିକରେ ସାମ୍ୟରକ୍ଷା କରିବା ଉଚିତ । ସଚ୍ଚିଦାନନ୍ଦଙ୍କ ଶୈଳୀକୁ ଗଭୀର ଭାବେ ଅନୁଧ୍ୟାନ କରି ସେହି ଛନ୍ଦ ଓ ଶୈଳୀରେ ବ୍ରଜବନ୍ଧୁ ସମନ୍ୱୟ ରଚନା କରିଛନ୍ତି । କୌଣସି କବିର ମୌଳିକ ଶୈଳୀକୁ ଗର୍ଭସ୍ଥ କରି ପୁନଃ ସୃଷ୍ଟି କରିବା ଏକ ଅନୁଭବି, ପ୍ରାଜ୍ଞ କବି ଲେଖନୀର ଅପେକ୍ଷା ରଖେ । ଏପରି ଏକ କଷ୍ଟକର କାବ୍ୟ ସାଧନାରେ ବ୍ରଜବନ୍ଧୁ ସଫଳ ହୋଇଥିବାର ଜଣାପଡେ । ଏହି ମହନୀୟ କବିକୃତିଟି ସଂପ୍ରତିଦୁଷ୍ପ୍ରାପ୍ୟ । ଏପରି ଏକ ବିରଳ କାବ୍ୟ - ପରୀକ୍ଷା ପ୍ରତି ଆଗ୍ରହୀ ପାଠକ ଓ ଗବେଷକଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ 'ଶକୁନ୍ତଳା ପତ୍ରଲିଖନ' କବିତାର ସମନ୍ୱୟର କିଛି ଅଂଶ ଉଦ୍ଧୃତ ହେଲା ।

୧: ଶକୁନ୍ତଳା ପତ୍ର ଲିଖନ: ଚିତ୍ର : ସଚ୍ଚିଦାନନ୍ଦ ଦେବଙ୍କ ପ୍ରଥମ ପଦ: -
'' କି ସୁଖେ ସୁନ୍ଦରୀ ମଣି ବିସିନୀ ପତ୍ରରେ
ରାଜର୍ଷି- ପ୍ରଣୟ ଚିନ୍ତା ହୃଦୟେ ସୁମରି,
ଏକାଗ୍ରେ ନିବେଶି ମନ ପୁଲକ ଅନ୍ତରେ
ଚିନ୍ତୁ ଅଛି କାନ୍ତ - ମୁଖ - ଭାବ ଅନୁସରି ।''

**ବ୍ରଜବନ୍ଧୁଙ୍କ ସମନ୍ୱୟ (୧):** ଦେଶ
କାଳ ଉପଯୋଗୀ- ଲେଖନୀ କରରେ
ନବପ୍ରେମେ ବିହ୍ୱଳିତା ନବଭାବ ଧରି
ମାଳିନୀ ତଟିନୀ ତୀର କାନନ ମଧ୍ୟରେ
ବୃକ୍ଷ ତଳେ ସୁଶ୍ୟାମଳ ଦୁର୍ବାଦଳୋପରି-
କି ସୁଖେ ସୁନ୍ଦରୀ ମଣି ... (ଚିତ୍ର ସମନ୍ୱୟ- ପୃ-୧)

୨: ଆବାଲ୍ୟ ସଙ୍ଗିନୀ ବେନି ପ୍ରିୟ ସହଚରି
(ଅନୁସରନ୍ତିଯେ ଛାୟା ସମାନ ନିରତେ
ଶୟନେ ଜାଗ୍ରତେ) ମୁନି କୁମାରୀ ସୁନ୍ଦରୀ



Digitized by srujanika@gmail.com

ଅନସୂୟା ପ୍ରିୟମ୍ବଦା ନୟନ ଅଗ୍ରତେ-
କି ସୁଖେ ସୁନ୍ଦରୀମଣି... ( ଚିତ୍ର ସମନ୍ୱୟ - ପୃ-୧ , ୨ )
୩: ବେନିଦିଗେ ବେନିସଖୀ ଉଦ୍ରାକ୍ଷ ମାଳିନୀ
ଉପବେଶି ଭଙ୍ଗିକ୍ରମେ, ପରାମର୍ଶ ଦାତ୍ରୀ,
କକ୍ଷା-ବଲ୍କଳ- ବସନା, ସମାନ ଦୁଃଖିନୀ
ଦେଖନ୍ତି କି ? ଚିନ୍ତାନ୍ୱିତା ଚିର ପ୍ରିୟପାତ୍ରୀ
କି ସୁଖେ ସୁନ୍ଦରୀମଣି... (ଚିତ୍ର ସମନ୍ୱୟ - ପୃ-୨ )
୪: ବିଶାଳ ଭାରତଭୂମି ନବ ବିଶ୍ୱକର୍ମା
(ଚିରଜୀବୀ ଯେହୁ ରାଜ୍ୟେ ଆଲେଖ୍ୟ ବଳରେ)
ଭାଗ୍ୟବାନ ମହାମତି ଦେବ ରବି ବର୍ମ୍ମା-
ଚିତ୍ରିତ ଏ ଚିତ୍ର ଭାବ ଆଣଇ ମନରେ
'' କିସୁଖେ ସୁନ୍ଦରୀମଣି... ( ଚିତ୍ର ସମନ୍ୱୟ-ପୃ-୨ )
୫. ବିଲୋକି ଏ ଚିତ୍ରପଟ କଳ୍ପନା ନେତ୍ରରେ
ଗଙ୍ଗବଂଶ ଅବତଂଶ ସୁଢ଼ଳ ନନ୍ଦନ
ନରେନ୍ଦ୍ର ସଚ୍ଚିଦାନନ୍ଦ, କବିତା ଛନ୍ଦରେ
ଗାଇଲେ ସାନନ୍ଦେ ଏବେ ଉତ୍କଳ ବଚନ-
'' କି ସୁଖେ ସୁନ୍ଦରୀ ମଣି ... (ଚିତ୍ର ସମନ୍ୱୟ- ପୃ.୩)

ଏହିପରି ପ୍ରତିଟି ପଦର ପାଞ୍ଚ ପ୍ରକାର ସମନ୍ୱୟ ରଚିତ ହୋଇଛି । ପୂର୍ଣ୍ଣାଙ୍ଗ ଗ୍ରନ୍ଥର ପଠନ ମାଧ୍ୟମରେ ଏହି ମହନୀୟ କୃତିର ରସ ଆସ୍ୱାଦନ କରାଯାଇପାରେ । ଅଭିବ୍ୟକ୍ତିର ଚିତ୍ର ଓ କବିତା ଭାବ ଓ ଆବେଗ ଦୁଇଟି ଭିନ୍ନ ମାଧ୍ୟମ । ଭାବ ସଞ୍ଚରଣ ଦିଗରେ ଉଭୟର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିଛି । ଭୂମିଗତ ଭିନ୍ନତା ସତ୍ତ୍ୱେ କଳ୍ପନାର ସୁଦୂର ଦିଗନ୍ତରେ ଉଭୟର ଅପୂର୍ବ ମିଳନ ସଂଘଠିତ ହୁଏ। ସେହି କଳ୍ପନା ବିନ୍ଦୁରୁ ଉତ୍ସରିତ ଧାରା ସ୍ଥାନିକ ଓ ସମୟ ଭିତ୍ତିକ ଭାବେ ଦ୍ୱିଧା ବିଭ୍ରାନ୍ତ ହୁଏ । ଏକ ଦରଦୀ, ଆବେଗ ପ୍ରବଣ କବିସତ୍ତା ହିଁ କବିତାରେ ଚିତ୍ର ପ୍ରତୀତି ସୃଷ୍ଟି କରେ; ଚିତ୍ରର ଭାଷାକୁ କାବ୍ୟ ଭାଷାରେ ରୂପାନ୍ତରିତ କରିପାରେ । ରୂପାନ୍ତରର ଏହି ଜଟିଳ ପ୍ରକ୍ରିୟାକୁ ଉଚ୍ଚତର ପ୍ରତିଭା ନିଜସ୍ୱ ଅନୁଭବର ଗଭୀରତାରେ ରସାଣିତ କରି ସରଳୀକୃତ କରିଥାଏ । ପ୍ରତିଭାର ବଶଂବଦ ଶବ୍ଦ ଚିତ୍ରକୁ ମନୋମତ ରୂପ ଦିଏ । ଫଳରେ କବିତାର ଭିନ୍ନ ଏକ ରୂପ ଝଲସି ଉଠେ । ଏପରି କଳାରେ ମାହିର ଥିଲେ ବାମଣ୍ଡାର କବିଗଣ । ଏଣୁ ବାମଣ୍ଡାରୁ ଭୂମିଷ୍ଠ 'ଚିତ୍ରକବିତା' ଏକ ଉଚ୍ଚାଙ୍ଗ ତଥା ମହନୀୟ କାବ୍ୟକଳାର ଗୌରବ ଦାବି କରେ ।□□□



Digitized by srujanika@gmail.com



## ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

ଜନ୍ମ : ୩୦-୧୨-୧୯୫୯

କବି ଫଣୀନ୍ଦ୍ର ଭୂଷଣ ନନ୍ଦ ଓଡ଼ିଆ ସାହିତ୍ୟର ଏକ ଶ୍ରଦ୍ଧାଶୀଳ ନାମ। ଦୀର୍ଘ ଦୁଇ ଦଶନ୍ଧିରୁ ଅଧିକ ସମୟ ସେ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନକରି ଯଶସ୍ୱୀ ହୋଇଛନ୍ତି। ଗଳ୍ପ, କବିତା, ନାଟକ ଓ ପ୍ରବନ୍ଧ ବିଭାଗରେ ତାଙ୍କ ରଚିତ କୃତିଗୁଡ଼ିକ ପାଠକ ପାଠିକାଙ୍କ ଶ୍ରଦ୍ଧାଭାଜନ ହେବାସହ ବେଶ୍ ଲୋକପ୍ରିୟ ହୋଇ ପାରିଛି। ପ୍ରବନ୍ଧ ରଚନା ବେଳେ ନିଜର ଗବେଷଣାଲବ୍ଧ ଜ୍ଞାନରେ ସେ ଉଭୟ ଆଙ୍ଗୀକ ଓ ଆତ୍ମିକଭାବେ ବିଷୟକୁ ଉପସ୍ଥାପନା କରି ପାଠକଙ୍କୁ ବିଭୋର କରିଦିଅନ୍ତି।

ଶ୍ରୀ ନନ୍ଦଙ୍କ ଏହି ପୁସ୍ତକଟି ଲୋକପ୍ରିୟ ହୋଇପାରିଲେ ଆମ ଶ୍ରମ ସାର୍ଥକ ହେବ।

-ପ୍ରକାଶକ

Digitized by srujanika@gmail.com